କବି ବିଶ୍ୱନାଥ ଖୁଣ୍ଟିଆଙ୍କ ବିରଚିତ

# ବିଚିତ୍ର ରାମାୟଣ





ଓଡ଼ିଆ କୋହିନୂର ପ୍ରେସ
[illegible] ଓ ପୁସ୍ତକ ଭଣ୍ଡାରେ

# ସୂଚୀପତ୍ର

—:o:—



ପ୍ରାପ୍ତିସ୍ଥାନ—ଓଡ଼ିଶା କୋହିନୁର ପ୍ରେସ ଓ ପୁସ୍ତକ ଭଣ୍ଡାର
ଚୌଧୁରୀ ବଜାର, କଟକ-୧

# ବିଚିତ୍ର ରାମାୟଣ

## ଆଦ୍ୟକାଣ୍ଡ

### ୧ମ ଛାନ୍ଦ—ମଙ୍ଗଳାଚରଣ

ଗୁଣସାଗର—ବାଣୀ

ଶ୍ରୀ ନୀଳଗିରି ଶିଖରେ ବିଜେ ହରି ଦ୍ୱାଦଶ ଯାତ୍ରା ବିନୋଦେ
ସ୍ନାନ ଶ୍ରୀଗୁଣ୍ଡିଚା ଅୟନ ଶୟନ ପାର୍ଶ୍ୱ ପାଲଟ ମୋଦେ ।
ଦେବ ଉତ୍ଥାପନ ମକର ଓଡ଼ଣ ଦୋଳ ଦମନକ ଚୈତ୍ର
ଚନ୍ଦନ ଚମ୍ପକ * ଉତ୍ସବ ସହିତେ ଏ ବିଧି ଲୀଳା ଆଚରି ।।
ଦ୍ୱାଦଶ ଯାତ୍ରାରୁ ତିନି ଯାତ୍ରା ସାର ଦୋଳସ୍ନାନ ଶ୍ରୀଗୁଣ୍ଡିଚା
ସକଳ ଜୀବର ଅବଲୋକନରେ ପାତକସମୂହ ମୁଞ୍ଚା ।
ଶ୍ରୀଜଗନ୍ନାଥ ଚଢ଼ିଣ ନନ୍ଦିଘୋଷ ଗୁଣ୍ଡିଚା ଘରେ ବିଜୟ
ଦେଖି ନାଗ ନର ଗନ୍ଧର୍ବ କିନ୍ନର କରୁଛନ୍ତି ଜୟ ଜୟ ।
ରତ୍ନକୁଣ୍ଡଳ ମୁକୁଟ ବ୍ୟାଘ୍ରନଖ ହୀରଚୂଳ କଣ୍ଠମାଳ
ହୃଦୟ ପୂରି ପଦକ ଝଞ୍ଜ ଝଞ୍ଜ ପଦ୍ମମାଳ ପାଦତଳ ।
ହେମ ଶ୍ରୀପୟରେ ହେମ ଯେ ଭୁଜରେ ଶୋହେ ହେମ ଧନୁର୍ବାଣ
ଯେବଣ ଦକ୍ଷିଣ ମୂର୍ତ୍ତି ଦର୍ଶନକୁ ଠାକଥାନ୍ତି ବିଚକ୍ଷଣ ।।
ସିଂହଦ୍ୱାରେ ହରି ରଥରୁ ବିଜୟ କରନ୍ତେ କମଳା ଭେଟ
ସେହି ସମୟରେ ଜନସମୂହର ଫିଟିଲା ମୁଦ କବାଟ ।
ଠାକୁର ଠାକୁରାଣୀ ଚନ୍ଦ୍ର ଆଳତି ଦୁର୍ବାକ୍ଷତ ବନ୍ଦାପନା
ଜୟଧ୍ୱନି ଜଗତରେ ଯେ କରନ୍ତି ହୋଇଣ ଆନନ୍ଦମନା ।।
ଜୟ ବିଜୟଦ୍ୱାରେ ହରି ବିଜୟ କବାଟ ପଡ଼ିବା ଲୀଳା
ଅନେକମତେ ପ୍ରବୋଧିଣ ପ୍ରିୟାଙ୍କୁ କହିଲେ କମଳଡୋଳା ।
ତଦନ୍ତରେ ହରି ଶ୍ରୀମା ଭେଟ ସାରି ରତ୍ନସିଂହାସନେ ବିଜେ
ଶ୍ରୀଦିବ୍ୟସିଂହ ଗଜପତି ଶ୍ରୀଜଗନ୍ନାଥ ଶ୍ରୀଚରଣେ ଭଜେ । ୫ ।

---

* ଚମ୍ପକ ଦ୍ୱାଦଶୀ

ଶୁଣ ହେ ସୁଜନେ ଶ୍ରୀରାମ ଚରିତ ଶତକୋଟି ଗ୍ରନ୍ଥ ସାର
ସୁଧାସାଗରୁ କୁଶଅଗ୍ରେ ଆଣନ୍ତେ ଅଇଲା ଯେତେକ ନୀର ।
ବାଲମୀକ ମୁନି ରାମାୟଣ କରି କଲେକ ତାହା ରଚନା
ଚବିଶସହସ୍ର ଗ୍ରନ୍ଥ କଲେ ମୁନି ହୋଇଣ ଆନନ୍ଦମନା ॥
ସେ ରାମାୟଣ ଶତଭାଗ କରିଣ ଭାଗେ ତହିଁରୁ ଆଣିଲେ
ବିବିଧ ରାଗରେ ଉତ୍କଳଭାଷାରେ ଗୀତ କରିଣ ଗାଇଲେ ।
ହେ ବୁଧଜନେ ନ ଘେନ ମୋର ଦୋଷ ଶ୍ରୀରାମ ଭକତି ଘେନ
କବିର ଦୋଷକୁ ବିଚାରି ନ କର ନମାମିହେ କବିଜନ ॥
ରାମ ନାମ ମହାପାତକ ନାଶନ ଜନ୍ମ ମୃତ୍ୟୁ ବିନାଶନ
ତେଣୁ ଏହି ନାମ ଗାୟନ କରନ୍ତି ଚତୁର୍ଦ୍ଦଶ ଲୋକମାନ ।
ଚତୁର ଆନନ ଶିବ ସନକାଦି ଜପୁଛନ୍ତି ଏହି ନାମ
ନାମ ଆଶ୍ରାକଲା ଜନକୁ ଦେଖିଣ ଦୂରୁ ଅପସରେ ଯମ ॥
ଏକା ରାମ ନାମ ବିଷ୍ଣୁ ସହସ୍ରନାମ ଫଳ ଅଟଇ ସମାନ
ଏଣୁକରି ରାମ ଚରିତ ବଖାଣ କରିବାକୁ ହେଲା ମନ ।
ଶ୍ରୀରାମଚରଣ ତରୁଣ ଅରୁଣ କମଳରେ ନିରନ୍ତର
ବୁଦ୍ଧି ମକରନ୍ଦ ପାନ କରଇ ବିପ୍ରୀ ମତ୍ତ ମଧୁକର । ୯ ।

—।—

## ୨ୟ ଛାନ୍ଦ—ଗଣେଶଙ୍କ ବନ୍ଦନା

ରାଗ– କଳଶା

ବନ୍ଦଇ ଶ୍ରୀ ଗଣନାଥ ଗଉରୀକୁମର । ଗଜମୁଖ ଏକଦନ୍ତ କପାଳେ ସିନ୍ଦୂର ॥ ଦେବ ଅଗ୍ରଗଣ୍ୟ ତୁମ୍ଭେ ଅଯୋନିସମ୍ଭୂତ । ଲମ୍ବୋଦର ବିଘ୍ନହର ସଦାଶିବ ସୁତ ॥ ଆହେ ଗଣନାଥ ମୋର ଘେନବାର ସେବା । ସୁପ୍ରସନ୍ନ ହୋଇ ମୋତେ ପଦ କହିଦେବା ॥ ଅନୁଗ୍ରହ କରିବାରେ ଇନ୍ଦୁର ବାହନ । ଶ୍ରୀରାମ ଚରିତ କିଛି କରିବି ବର୍ଣ୍ଣନ ॥ କୃତାଞ୍ଜଳିପୁଟେ କରୁଅଛି ନମସ୍କାର । ଭଣେ ବିକ୍ରମ ନରେନ୍ଦ୍ର ଶ୍ରୀପଦେ କୋଟିର । ୫ ।

—※—

## ୩ୟ ଛାନ୍ଦ—ସର୍ବଦେବାଦେବୀ ବନ୍ଦନା

ବୋଲ ହରି ହେ । ହରି ଭଜ ରାମ ଭଜ ଭଜ ଦଇତାରି ହେ । ଘୋଷା । ପ୍ରଥମେ ବନ୍ଦିଲୁ ଆମ୍ଭି ଶ୍ରୀଗୁରୁ ଚରଣ । ଯାହାର କୃପାତେ ହୁଏ ବିଷ୍ଣୁ ଦରଶନ ହେ ॥ ଦଶରଥସୁତ ବନ୍ଦୁଁ ଶ୍ରୀରାମଚରଣ । ତାହାର ସାନୁଜ

ବନ୍ଦୁ ବୀର ଲଇକ୍ଷଣ ହେ ॥ ସୀତାଠାକୁରାଣୀ ବନ୍ଦୁ ଜନକନନ୍ଦନୀ । ବଶିଷ୍ଠ ଯାବାଳି ବନ୍ଦୁଁ ଯେତେ ମହାମୁନି ହେ ॥ ଷେଦର ମହିମା କିଛି କଳନା ନ ଯାଏ । ଚଣ୍ଡାଳ ହସ୍ତରୁ ଅନ୍ନ ବିପ୍ର ଲୟା ଖାୟେ ହେ ॥ ଯେଉଁ ସ୍ଥାନେ ହୁଏ ଭାଇ ନାମସଂକୀର୍ତ୍ତନ । ସେହୁ ସ୍ଥାନ ବୋଲିଏ ଗୋଲୋକ ବୃନ୍ଦାବନ ହେ ॥ ଏହୁ ତ ରାମେର ଲୀଳା ଶୁଣ ଓରେ ଭାଇ । ଭକ୍ତଜନ ଉଦ୍ଧାରତେ ଯଦୁନନ୍ଦନ ଗାଇ ହେ ॥ ଧୀନ ବଶି ବୋଲେ ଏହୁ ହରଷିତ ମନ । ହରି ହରି ବୋଲ ହେ ସକଳ ସଭାଜନ ହେ । ୭ ।

—*—

## ୪ର୍ଥ ଛାନ୍ଦ—ବିଷ୍ଣୁଙ୍କ ବନ୍ଦନା

ରାଗ—କଳସା

ଜୟ ଜୟ ଜଗନ୍ନାଥ ଜୟ ଲକ୍ଷ୍ମୀପତି । କ୍ଷୀରସିନ୍ଧୁ ମଧ୍ୟରେ ସର୍ବଦା ଯାର ସ୍ଥିତି ॥ ଅନନ୍ତଅଙ୍କରେ ସଦା ଯାହାର ଶୟନ । ଶଙ୍ଖ ଚକ୍ର ଗଦା ପଦ୍ମ ଶ୍ରୀକରେ ଶୋଭନ ॥ କୋଟି କୋଟି ବ୍ରହ୍ମାଣ୍ଡ ଯା ଲୋମମୂଳେ ଅଛି । ସେ ପ୍ରଭୁ ବିଚିତ୍ରଲୀଳା ଜଗତେ ବ୍ୟାପିଛି । ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଶରୀରେ । ଅଲକ୍ଷିତରୂପେ ବିହରନ୍ତି ନିରନ୍ତରେ ॥ ସଦା ସିଦ୍ଧଗଣ ଯାର ପାଦପଦ୍ମ ଚିନ୍ତି । ଭୀଷଣ ସଂସାର ଶୋକ ତାପୁଁ ତରିଯାନ୍ତି ॥ ଯାହାଙ୍କ ମାୟାରେ ଏ ପୃଥିବୀ ଗତାଗତ । ଚନ୍ଦ୍ର ସୂର୍ଯ୍ୟ ଯାହା ଆଜ୍ଞା ପାଳନ୍ତି ନିୟତ ॥ ଗ୍ରୀଷ୍ମ ବରଷା ଶରତ ଷଡ଼ଋତୁ ଆଦି । ଏକ ପରେ ଏକ ଯାଉଛନ୍ତି କାର୍ଯ୍ୟ ସାଧି ॥ ସେ ଦେବ ପାଳନ୍ତି ଏ ବ୍ରହ୍ମାଣ୍ଡ ଚରାଚର । ବୋଲେ ବିକ୍ରମ ତା ପାଦେ ଶରଣ ମୋହର । ୮ ।

—*—

## ୫ମ ଛାନ୍ଦ—ସରସ୍ୱତୀଙ୍କ ବନ୍ଦନା

ଜୟ ଜୟ ସରସ୍ୱତୀ ଗୋ ଜୟ ଦେବୀ ଶାରଦା । ତୋତେ ଯେହୁ ଆଶ୍ରେ କରନ୍ତି ଦେଉ ଅନେକ ବିଦ୍ୟା ॥ ତୋହର କରୁଣା ହୋଇଲେ ମୂର୍ଖ ହୁଏ ପଣ୍ଡିତ । ଏବେ ମୋହ କଣ୍ଠେ ବସିଣ କହ ରାମ ଚରିତ ॥ ଏ ଶ୍ରୀରାମ ନାମ ଗୁପତେ ଥିଲ ଯାମ ବେଦତରେ । ଚତୁର୍ମୁଖ ବ୍ରହ୍ମା ଜାଣିଣ ଭାବୁଥାନ୍ତି ମନରେ ॥ ମୂଳମନ୍ତ୍ରବୀଜ ଏହିଟି ଆଦ୍ୟକାଣ୍ଡର ରସ । ଭଣଇ ବିକ୍ରମ ନରେନ୍ଦ୍ର ଶୁଣି ବୈକୁଣ୍ଠ ବାସ ।

—*—

## ୬ଷ୍ଠ ଛାନ୍ଦ—କଟକଚଣ୍ଡୀଙ୍କ ବନ୍ଦନା

ଜୟ ଜୟ ଦେବୀ ମାଗୋ ଜୟ କଟକଚଣ୍ଡୀ । କଣ୍ଠେ ଧଣ୍ଡାମାଳ ଯେ ସିନ୍ଦୂର ମୁଖେ ମଣ୍ଡି । ମାଗୋ ଜୟ କଟକଚଣ୍ଡୀ । ଘୋଷା । ମନ୍ଦାର ପୁଷ୍ପକୁ

ମାଗୋ ତୋହର ଶରଧା । ତୋହର ନାମ ଧରନ୍ତେ ଛୁଟଇ ପାପାବାଧା । ତୋହର କରୁଣା ମାଗୋ ହୁଅଇ ଯାହାକୁ । ରାଜଦଣ୍ଡ କାଳଭୟ ନଥାଇ ତାହାକୁ ॥ ତୋହ ଶ୍ରୀଚରଣ ତଳେ ସର୍ବଦା ଆଶ୍ରିତ । ଦୀନ ହୀନ ଲକ୍ଷ୍ମଣର ଫେଡ଼ ମୋ ଦୁରିତ । ୩ ।

—※—

## ୭ମ ଛାନ୍ଦ—ରାମଚନ୍ଦ୍ରଙ୍କ ବନ୍ଦନା

ରାଗ—ରାମକେରୀ

ଜୟ ଜୟ ରଘୁନାଥ ହେ ପ୍ରଭୁ କୌଶଲ୍ୟା ସୁତ । ଧରା ଭାରଭର ନାଶନେ ତୁମ୍ଭେ ମର୍ତ୍ତ୍ୟରେ ଜାତ । ନବୀନ ନୀରଦ ବରନ ଆହା ଦିଶେ କି ଶୋଭା । ଅଯୋଧ୍ୟା-ଆକାଶ ଘନରେ ଯେହ୍ନେ ବିଦ୍ୟୁତ ଆଭା ॥ ଶ୍ରୀଭୁଜେ ଶୋଭିତ କୋଦଣ୍ଡ କାଣ୍ଡ କି ମନୋହର । ନୂଆ ମଦନ କି ବିଜୟ ଘେନିଣ ପୁଷ୍ପଶର ॥ ଶ୍ରୀମୁଖ ଶୋଭାକୁ ଦେଖିଣ ଚନ୍ଦ୍ର ହେଲେ ଲଜ୍ଜିତ । ଉପମା କି ଦେବି ନ ମିଳେ ଖୋଜି ତ୍ରିଭୁବନପୁରୀ ତ ॥ କୌଶଲ୍ୟା ଆନନ୍ଦ ବର୍ଦ୍ଧନକାରୀ ଦଶରଥଙ୍କ । ନୟନପୁତ୍ତଳିକା ପ୍ରାୟ ଧନ ପ୍ରାପ୍ତ କି ରଙ୍କ । ଅଯୋଧ୍ୟା ନରନାରୀ ପ୍ରାଣ ଯେଉଁ ରଘୁନନ୍ଦନ । ତାଙ୍କ ଶ୍ରୀଚରଣେ ଶରଣ ଏ ପଦ୍ମନାଭ ଦୀନ ॥

—※—

## ୮ମ ଛାନ୍ଦ—ସୀତାଙ୍କ ବନ୍ଦନା

ରାଗ—ଖଣ୍ଡିତା

ଜୟ ଜୟ ଜାନକୀ ଗୋ ଜନକକୁମାରୀ । ସର୍ବ ସୁଲକ୍ଷଣୀ ଶ୍ରୀରାମଙ୍କ ମନୋହାରୀ । କୃପା କର ଗୋ । ନିରନ୍ତରେ ଶରଣ ତୋହର ଗୋ ॥ କଣ୍ଟତରେ ସୁଦୟା ତୁ କରୁ ଯାହାଠାରେ । ଅବିଘ୍ନେ ପ୍ରାପତ ସର୍ବ ମଙ୍ଗଳ ତାହାରେ । ତ୍ରିଭୁବନେ ଗୋ । ପ୍ରଶଂସା କରନ୍ତି ସୁର ନରେ ଗୋ ॥ ତୋହଠାରେ ଯେଉଁ ଜନ କରଇ ଭକତି । କ୍ଷଣକେ ତୁ ଦେଇପାରୁ ଅଚଳ ବିଭୂତି । ସୁମଙ୍ଗଳେ ଗୋ । ନାହିଁ ତୋ ପରି ମହୀମଣ୍ଡଳେ ଗୋ ॥ ମାନବ ଦେହରେ ଗର୍ବ କରି କେ ସଂସାରେ । ପ୍ରଶଂସା କରିବ ତୋର ତୋ ବିନା କୃପାରେ । ଗୋପୀ ଭଣି ଗୋ । ଦୟାକର ଜଗତଜନନୀ ଗୋ । ୪ ।

—※—

## ୯ମ ଛାନ୍ଦ—ଲକ୍ଷ୍ମଣଙ୍କ ବନ୍ଦନା

ରାଗ—ରାମକେରୀ

ଜୟ ଶ୍ରୀରାମଙ୍କ ଅନୁଜ ସୁମିତ୍ରାଙ୍କ ନନ୍ଦନ । ଜନକସୁତା ଊର୍ମିଳାର ହୃଦତଟ ଚନ୍ଦନ ॥ ସକଳ ଗୁଣେ ପରିପୂର୍ଣ୍ଣ ଯୋଗୁଁ ନାମ ଲକ୍ଷ୍ମଣ । କ୍ଷତ୍ରିୟ ପଣେ ତ୍ରିଭୁବନେ ନାହିଁ ତୁମ୍ଭ ସମାନ । ସାବତ ଜନନୀ

ହିଂସ୍ରକ ଭାବ ନ ଥିବେ ମନେ । ଗୃହ ରାଜ୍ୟ ସୁଖ ସମ୍ପଦ ଭୁଲିଅଛ କାନନେ ॥ ଚଉଦ ବରଷ ଭ୍ରାତାଙ୍କୁ ସେବା କଲ ବନରେ । ବଞ୍ଚିତ ହୋଇଣ ଆହାର ନିଦ୍ରା ମଇଥୁନରେ । ଧନୁର୍ଦ୍ଧର ବୀର ଲକ୍ଷ୍ମଣ ତୁମ୍ଭ ପାଦେ ସେବିବି । ତୁମ୍ଭ ଦାସର ଦାସ ହୋଇ ଗଣନାକୁ ଆସିବି ॥ ସପ୍ତମ ଅବତାରରେ ତୁମ୍ଭେ ସୁମିତ୍ରା ସୁତ । ଦୁଃସହ ଭୂଭାରକୁ ନାଶି ମାଇଲ ଇନ୍ଦ୍ରଜିତ ॥ କର ମୋହଠାରେ କରୁଣା ହେ କରୁଣା-ସରିତ । ତୁମ୍ଭର ପ୍ରସନ୍ନେ କହିବି ରାମାୟଣ ଚରିତ ॥ ହୁଅ ମୋର କଣ୍ଠେ ପ୍ରସନ୍ନ ପ୍ରତ୍ୟେକ ପଦ ଦିଶୁ । ବିକ୍ରମ କହେ ତବ ଯଶ ଜଗତରେ ପ୍ରକାଶୁ । ୮ ।

—×—

## ୧୦ମ ଛାନ୍ଦ—ବାଲ୍ମୀକିଙ୍କ ବନ୍ଦନା

ରାଗ—ଖଣ୍ଡିତା

ଜୟ ଜୟ ବାଲମୀକି ଜୟ ମହାମୁନେ । ସୁଧାସମ ରାମାୟଣ ରଚିଲ ଆପଣେ ॥ କିବା ନାହିଁ ହେ । ସଂସାରର ସାର ଅଛି ଥୋଇ ହେ ॥ ଏ ସବୁ ସୁଗୁଣ ବଳେ ମର୍ତ୍ତ୍ୟରେ ମାନବ । ଯୋଗ୍ୟ ହୋଇ ଭୋଗନ୍ତି ଅତୁଳ ବଇଭବ । ଇହ ପରେ ହେ । ସଦାଗତି ଲଭନ୍ତି ସୁଖରେ ହେ ॥ ପିତୃଭକ୍ତି ଭ୍ରାତୃସ୍ନେହ ପତିବ୍ରତାପଣ । ବୀର ଧୀର ସତ୍ୟବନ୍ତ ପ୍ରଭୁଭକ୍ତ ଗୁଣ । କି ସୁନ୍ଦର ହେ । ଯୋଜନା କରିଛ ଚମତ୍କାର ହେ ॥ ତୁମ୍ଭ ଗ୍ରନ୍ଥ ସଂସାରରେ ଆଦରର ଧନ । ତୁମ୍ଭେ ଅଟ କବିଙ୍କର ମସ୍ତକ ଭୂଷଣ । ଗୁଣମଣି ହେ । ସଂକ୍ଷେପେ ବିକ୍ରମ ଗୀତେ ଭଣି ହେ । ୪ ।

—×—

## ୧୧ଶ ଛାନ୍ଦ—ଗ୍ରନ୍ଥାରମ୍ଭ

ରାଗ—ଚକ୍ରକେଳି

ଏକଦିନେ ନାରଦ ମହାଋଷି । ବାଲମୀକି ଆଶ୍ରମେ ହେଲେ ଆସି ॥
ତାଙ୍କୁ ଦେଖିଣ ବହୁ ପୂଜା କଲେ । ମନ ସଂଶୟ ତାଙ୍କୁ ପଚାରିଲେ ॥
କେଉଁ ପୁରୁଷଠାରେ ସର୍ବଗୁଣ । ଅଛି କାହାଠାରେ ସର୍ବ ଲକ୍ଷଣ ॥
ରବି ପ୍ରାୟେ ହୋଇବ ତେଜୋବନ୍ତ । ପବନ ପ୍ରାୟେ ହେବ ବଳବନ୍ତ ॥
ସତ୍ୟ, ଶାନ୍ତ, ଦୟା, କ୍ଷମାସାଗର । କୃତାନ୍ତକ ପ୍ରାୟେ ହୃଦ ନିଷ୍ଠୁର । ॥
ମହୀ ପ୍ରାୟେକ ହୋଇବ ସହଣୀ । ଧନବନ୍ତରେ କୁବେରଙ୍କୁ ଜିଣି ॥
ଶକ୍ରୁ ଅଧିକ ହେବ ଧନୁର୍ଦ୍ଧର । ବିଦ୍ୟାରେ ହେବ ବୃହସ୍ପତି ବର ॥
କ୍ରୋଧେ ହୋଇବ ଅନଳ ପ୍ରଖର । ଶାନ୍ତଗୁଣେ ଶରଦ ଶୀତକର ॥
ଧାତା ପ୍ରାୟେକ ହୋଇବ କରତା । ତମୋଗୁଣେ ଶିବଙ୍କୁ ଅଧିକତା ॥
ମନମଥ ଜିଣି ହେବ ସୁନ୍ଦର । ସର୍ବଗୁଣରେ ହୋଇବ ଉଦାର ॥

କିଛି ନ ଥିବ ତାର ଅବଗୁଣ । କେଉଁ ପୁରୁଷ ଅଛି ଏଡ଼େ ଜାଣ ॥
ଶୁଣି ନାରଦ ବୋଲନ୍ତି ବଚନ । ରାମଚନ୍ଦ୍ର ଦଶରଥ ନନ୍ଦନ ॥
ତାହାଙ୍କଠାରେ ଅଛି ସର୍ବଗୁଣ । ସେ ସେ ଅଟନ୍ତି ସ୍ୱୟଂ ନାରାୟଣ ॥
ତାଙ୍କ ଚରିତ ଅପାରୁଁ ଅପାର । ତାଙ୍କୁ ଉପାସନା କରି ନିସ୍ତର ॥
ସର୍ବ କହି ନାରଦ ମୁନି ଗଲେ । ବାଲମୀକି ରାମଙ୍କୁ ଲୟ କଲେ ॥
ତାଙ୍କୁ ପ୍ରସନ୍ନ ହେଲେ ଜଗନ୍ନାଥ । ବୋଲେ ନିଶି ପୂରିଲା ମନୋରଥ ॥

—×—

## ୧୨ଶ ଛାନ୍ଦ—ଅଦ୍ୟଶ୍ଲୋକ

ସଙ୍ଗମଣ୍ଡଆରି—ବାଣୀ

ତମା ନଦୀ ତଟରେ ଗମନ୍ତେ ମୁନି । ସଙ୍ଗତେ ଗୋଡ଼ାଇ ଅଛନ୍ତି ଶିଷ୍ୟ ବେନି ॥ ନିତ୍ୟକର୍ମ ସମସ୍ତେ ନଦୀରେ ସାରିଲେ । ଆଶ୍ରମକୁ ଯିବାକୁ ବାହାରି ହୋଇଲେ ॥ କ୍ରୌଞ୍ଚ କ୍ରୌଞ୍ଚୀ ବୋଲି ତହିଁରେ ପକ୍ଷୀ ବେନି । ବ୍ୟାଧ ସେ କ୍ରୌଞ୍ଚପକ୍ଷୀକି ଗଲାକ ହେନି ॥ କ୍ରୌଞ୍ଚୀ କାନ୍ଦି ଗୁଣ ଗୁଣି ରୋଦନ କଲା । ବାଲମୀକି ମୁନି ଶ୍ରବଣକୁ ଶୁଭିଲା ॥ ବ୍ୟାଧକୁ ଶାପ ଦିଅନ୍ତେ ହେଲା ଶୋଲକ । ଦିଶିଲା ତାହାଙ୍କୁ ପଦ୍ୟ ପାଦ ଅନେକ ॥ ମନେ ମନେ ଭାଳି ମୁନି ମଠକୁ ଗଲେ । ଆସନ କରିଣ ଧ୍ୟାନ କରି ବସିଲେ ॥ ମରାଳ ଚଢ଼ିଣ ପିତାମହ ପ୍ରବେଶ । ଦେଖି ବାଲମୀକି ପୂଜା କଲେ ବିଶେଷ ॥ ଧାତା ବୋଲନ୍ତି ସୁନ୍ଦର ରାମ ଚରିତ । ଶ୍ଲୋକବନ୍ଧରେ ସ୍ଫୁରିଲା ମୁନିଙ୍କ ଚିତ୍ତ ॥ ଏହା ଶୁଣି ଧ୍ୟାନ ବସି ବିଚାର କଲେ । ଗୀତ ବନ୍ଧ କରି ରାମାୟଣ ରଚିଲେ । ୯ ।

—+—

## ୧୩ଶ ଛାନ୍ଦ—ଅନନ୍ତଶୟନ

ରାଗ—କଳସା

ଶୁଣ ହେ ସୁଜନଜନେ ଅପୂର୍ବ ଆଖ୍ୟାନ । ଆଦ୍ୟକାଣ୍ଡ ବାଣୀ ରାମ ଚରିତ ବର୍ଣ୍ଣନ ॥ ଦନୁଜଙ୍କ ଭାରା ନ ସହିଣ ବସୁମତୀ । ପ୍ରବେଶ ହୋଇଲେ ଯହିଁ ଥିଲେ ଲକ୍ଷ୍ମୀପତି ॥ ଶିରେ କର ଦେଇଣ କହଇ ବସୁନ୍ଧରା । ଆଉ ସହି ନ ପାରେ ମୁଁ ଦୈତ୍ୟ ପାଦ ଭରା । ପାରିଲେ ଉଦ୍ଧାର ବେଗେ କର କୁଶପାଣି । ନୋହିଲେ ରସାତଳରେ ପଡ଼ିଲିଟି ଜାଣି ॥ ଉପସ୍ଥିତ ଦେବଗଣେ ଦୁଃଖ ନିବେଦିଲେ । ଏ ସଙ୍କଟୁ ରକ୍ଷାକର ବୋଲିଣ ବୋଇଲେ ॥ ରାବଣର ଦର୍ପେ ସ୍ୱର୍ଗ ରହି ହେଉ ନାହିଁ । ଅସହ୍ୟ ଯାତନା କେତେ ଭୋଗିବୁ ଗୋସାଇଁ ॥ ରକ୍ଷାକର ରକ୍ଷାକର ଦେବ

କୁଶପାଣି । ପ୍ରତିକାର ନ କଲେ ମଲୁଁ ସର୍ବେ ଜାଣି ॥ ଏହା କହି ଦେବଗଣେ ମଉନ ହୋଇଲେ । ଶ୍ରୀରାମ ଚରଣ ଚିନ୍ତି ପଦ୍ମନାଭ ବୋଲେ । ୮ ।

---

## ୧୪ଶ ଛାନ୍ଦ

ରାଗ—ଯମକ

ଦେବତାଙ୍କ ମୁଖୁଁ ଏହା ଶୁଣି ପ୍ରଜାପତି । ଭାବିଲେ ବିଷ୍ଣୁଙ୍କ ବିନା ନାହିଁ ଅନ୍ୟଗତି ॥ ସକଳ ଦେବଙ୍କୁ ସେ ଘେନିଣ ସଙ୍ଗତରେ । ପ୍ରବେଶ ହୋଇଲେ ଯେ ଅନନ୍ତ ଶଯ୍ୟାଠାରେ । ଏକମୁଖ ହୋଇ ସର୍ବେ କରୁଛନ୍ତି ସ୍ତୁତି । ଆଗଭର ହୋଇଣ ଜାଣନ୍ତି ପ୍ରଜାପତି । ନମସ୍ତେ ନମସ୍ତେ ବିଷ୍ଣୁ କମଳାଲୋଚନ । ଦୁଃଖୀ ଦୁଃଖହାରୀ ପ୍ରଭୁ ଭକ୍ତ ପ୍ରାଣଧନ ॥ ଲଙ୍କାପତି ଉପଦ୍ରବ ଶୁଣନ୍ତୁ ଗୋସାଇଁ । ଦ୍ୱାରପାଳ କାର୍ଯ୍ୟେ ସୂର୍ଯ୍ୟ ତା ଦ୍ୱାର ଜଗଇ ॥ ପୁଷ୍ପହାର ଗୁନ୍ଥେ ଇନ୍ଦ୍ର ଭୟେ ବ୍ୟସ୍ତ ହୋଇ । ଚନ୍ଦ୍ର ଦେବତା ମସ୍ତକେ ଧରିଥାନ୍ତି ଛତ୍ର ॥ ପାକ ସମ୍ପାଦନ୍ତି ଅଗ୍ନି ଦେବତା ତାହାର । ଧୀରେ ଧୀରେ ବିଞ୍ଚୁଥାନ୍ତି ଭୟରେ ସମୀର ॥ ଯେତେ ପାଣି ଲୋଡ଼ା ଆଣି ଦିଅନ୍ତି ବରୁଣ । ବସୁମତୀ କରୁଥାନ୍ତି ଗୃହ ସମାର୍ଜ୍ଜନ ॥ ଯମ କଥା କହି ନୁହେଁ ମାଡ଼ୁଅଛି ହସ । ତା ହାତୀ ଘୋଡ଼ା ନିମନ୍ତେ କାଟୁଛନ୍ତି ଘାସ ॥ ଯେ ଶନି ଦୃଷ୍ଟିରେ ଭସ୍ମ ହୁଏ ତିନିପୁର । ସେ ମଅଳଲୁଗା ନିତି କାଚେ ରାବଣର ॥ ଚତୁର୍ବଦନ ବୃହସ୍ପତି ପାଞ୍ଜି ପଢ଼ୁଛନ୍ତି । ମୋର ଖଟିଣି ଶୁଣିବା ହେଉ ଲକ୍ଷ୍ମୀପତି ॥ ସୃଷ୍ଟିକର୍ତ୍ତା ହୋଇଣ ହୋଇଛି ଅବଧାନ । ନିତି ନିତି ପଢାଏ ବାଳୁତ ସନ୍ତାନ ॥ ଏହିପରି ସର୍ବଦେବେ କରିଅଛୁ ସେବା । କେଉଁପରି ଏହା ହସ୍ତୁ ମୁକତି ଲଭିବା ॥ ଏହା ଦୁରାଚାରୁ ରକ୍ଷା କର ଚକ୍ରଧର । ନୋହିଲେ ନିଶ୍ଚୟ ନାଶ ଯିବ ତିନିପୁର ॥ ଏତେବୋଲି ବେଦପତି ଆରମ୍ଭିଲେ ସ୍ତୁତି । ବୋଲେ ଦୀନ ପଦ୍ମନାଭ ରାମପାଦ ଚିନ୍ତି । ୧୫ ।

—*—

## ୧୫ଶ ଛାନ୍ଦ

ରାଗ—କଳଶା

ନମସ୍ତେ ନମସ୍ତେ ପ୍ରଭୁ ଭକତ ବତ୍ସଳ । ନମୋ ପତିତପାବନ ପ୍ରଭୁ ଆଦିମୂଳ ॥ ନମୋନମ ଶୋକତାପହାରୀ ଦଇତାରି । ଦୁଃଖି ଦୁଃଖ ହର କରେ ଶଙ୍ଖ ଚକ୍ର ଧରି ହେ ॥ ଯୁଗେ ଯୁଗେ ଅସୁର ନାଶନେ ତୁମ୍ଭ କ୍ରୀଡ଼ା । ରାବଣ ବିନାଶି କଷ୍ଟ ଫେଡ଼ିବା ନିରତ ହେ ॥ ଅଗୋଚର ମହିମା ପ୍ରଭୁ ଅଟଇ ତୁମ୍ଭର ହେ । ବେଦ ଉଦ୍ଧରି ଧରିଲ ମୀନ କଳେବର ହେ ॥ ମନ୍ଦରଧାରଣ କରି କୂର୍ମ ଅବତାରେ । ଦୈତ୍ୟ ପରାଜୟ କଲ ମୋହିନୀ ରୂପରେ ହେ ॥

ବରାହ ରୂପରେ ଦନ୍ତେ ଧରିଲ ଧରଣୀ । ହିରଣାକ୍ଷ ନାଶିଲ ନୃସିଂହ ରୂପେ ପୁଣି ହେ ॥ ବାମନ ରୂପରେ ତ୍ରିପାଦ ଭୂମିଦାନ । ମାଗି ବଳିନୃପେ ଦେଲ ପାତାଳରେ ସ୍ଥାନ ହେ । ୯ । ଏହିପରି ଅବତାର ଦେବେ ଅଗୋଚର । ରାବଣ ବିନାଶି ପ୍ରଭୁ ମହୀ ଭାର ହର ହେ ॥ ତୁମ୍ଭେ ଗୋଲକର ପତି ଅଗତିର ଗତି । ଏ ଘୋର ସଙ୍କଟୁ ଦେବ କରିବାକୁ ମୁକ୍ତି ହେ । ଏହି ରୂପେ ସ୍ତୁତି କରନ୍ତେଣ ଶୂଳପାଣି ଶୁଣି ତୋଷ ହେଲେ ପ୍ରଭୁ ପଦ୍ମନାଭ ଭଣି ହେ । ୧୦ ।



## ୧୯ଶ ଛାନ୍ଦ

ରାଗ—ଯମକ

ଦେବଙ୍କ ଆକୁଳ ଦେଖି ପ୍ରଭୁ ଦଇତ୍ୟାରି । ଦିବ୍ୟ ଚକ୍ଷୁ ଫେଇଣ ଗୃହିଁଲେ ଧୀର କରି ॥ ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ଭୁଜ ଚାରି । ଲକ୍ଷ୍ମୀ ସରସ୍ୱତୀ ପାଶେ ଖଟନ୍ତି ତାଙ୍କରି ॥ ବ୍ରହ୍ମା ମୁଖ ଗୃହିଁଣ କହନ୍ତି ନାରାୟଣ । ଅସୁରଙ୍କୁ ଏଡ଼େ ବର ଦିଅ କି କାରଣ ॥ ପୂର୍ବାପର ବିଚାର ନ କର ବେଦପତି । ସେ ହେତୁ ଘଟଇ ଆସି ସମସ୍ତ ବିପତ୍ତି ॥ ବୃଥା ଦେବଗଣେ ଆଉ ନ କର ଭାବନା । ଅବିଳମ୍ବେ ପୂର୍ଣ୍ଣ ହେବ ତୁମ୍ଭର ବାସନା ॥ ନିର୍ଭୟ ଚିତ୍ତରେ ଯାଅ ନିଜ ନିଜ ଧାମ । ଅବଶ୍ୟ ମର୍ତ୍ତ୍ୟରେ ଆମ୍ଭେ ହୋଇବୁ ଜନମ । ଚତୁର୍ଦ୍ଧା ରୂପରେ ଆମ୍ଭେ ଜନମ ହୋଇବୁଁ । ଅସୁର ବଳ ମାରିଣ ମହୀ ଉଦ୍ଧାରିବୁଁ ॥ ଏହା ଶୁଣି ଦେବଗଣେ ହରଷେ ଚଳିଲେ । ବିକ୍ରମ ନରେନ୍ଦ୍ର ରାମ ଚରଣେ ଭଜିଲେ । ୮ ।



## ୧୯ଶ ଛାନ୍ଦ—ସୀତାଙ୍କ ଜନ୍ମ

ରାଗ—ଯମକ

ଶୁଣ ହେ ସୁଜନ ଜନେ ହୋଇ ଏକମନ । ସୁଧାସମ ରାମାୟଣ ଚରିତ୍ର ଆଖ୍ୟାନ ॥ ଭରତଖଣ୍ଡ ମଧ୍ୟରେ ମିଥିଳା ନାମେ ଦେଶ । ତଥି ଅଧିପତି ସେ ଜନକ ନରେଶ ॥ ବଡ଼ାଇ ପ୍ରତାପୀ ରାଜା ଅତି ଭାଗ୍ୟବନ୍ତ । ତାହାର କୁଳରେ ନାହିଁ ନୋହିଲୁକ ପୁତ୍ର ॥ ଦିନୁ ଦିନୁ ଦୁଃଖାନଳ ହୋଇ ପ୍ରଜ୍ୱଳିତ । ଝୁଲିତନୁ କୃଶ କରି ଦିଅଇ ନିୟତ ॥ ଏକଦିନେ ମନ୍ତ୍ରୀକି ବରିଣ ମହୀପତି । ରାଜ୍ୟଭାର ସମର୍ପିଣ ଚଳିଲ୍ ଝଟତି ॥ ହରଷ ଯୋଗୁଣ ରାଜା ବିଚାର ମନରେ । ତପ ଆରମ୍ଭିଲ ଯାଇଁ କାଉଶିକ ତୀରେ ॥ ଯୋଗ ଲମ୍ବ କରିଣ ଜନକ ମହୀପତି । ଶୁଦ୍ଧମନେ ବିଷ୍ଣୁଙ୍କୁ

କରଇ ବଡ଼ଭକ୍ତ ॥ ବଳାଇ ସାହସ ମନେ ନିଷ୍ଠଲେ ରହିଲ । ବାଙ୍କମ କହେ ଏପରି କେତେଦିନ ଗଲା । ୮ ।

—※—

## ୧୮ଶ ଛାନ୍ଦ

ରାଗ—ରାମକେରୀ

ଏମନ୍ତ ସମୟେ ଶୂନ୍ୟରେ ମେନକା ଅପସରୀ । ଶାପୁ ମୁକ୍ତହୋଇ ମର୍ତ୍ତ୍ୟରୁ ଯାଉଛି ସ୍ୱର୍ଗପୁରୀ ॥ ଦିଶେ ଅତି ଶୋଭା ଶ୍ରୀଅଙ୍ଗ ରଙ୍ଗ ବିଜୁଳି ଘନେ । ତପ ତ୍ୟାଗକରି ଜନକ ଦେଖିଲେକ ନୟନେ ॥ ବୋଲନ୍ତି ଧନ୍ୟରେ ସୁନ୍ଦରୀ ଧନ୍ୟ ତୋ ରୂପରାଶି । ଧନ୍ୟ ବିଧି ତୋତେ ଗଢ଼ିଲା କେତେ କାଳକୁ ବସି ॥ ନାହିଁ ନାହିଁ ଶୋଭା ସୁନ୍ଦରି ତୋହପରି ଜଗତେ । ଏସନ ସଦୃଶ କୁମାରୀ ଯେବେ ମିଳନ୍ତା ମୋତେ ॥ ପୁରଠାରୁ ଶତଗୁଣରେ ପାଳନ୍ତି ମୁଁ ଅବଶ୍ୟ । ଏତେକ ଭାଳଣ ଜନକ ମନ କଲେ ବିରସ ॥ ମନରେ ଭାଳେଣି ଜାଣିଲା ଶୂନ୍ୟେ ସ୍ୱର୍ଗ ଯୁବତୀ । ସ୍ତମ୍ଭୀଭୂତହୋଇ ବୋଲଇ ଶୁଣ ହେ ରାଜପତି ॥ ଅବଶ୍ୟ ତୋହର କୋଳରେ ଜାତ ହୁଅନ୍ତି ମୁହିଁ । ଯାଉଅଛି ସ୍ୱର୍ଗପୁରକୁ ଶାପୁଁ ମୁକତ ହୋଇ ॥ ଶୁଣିଣ ଜନକ ବୋଲନ୍ତି କହ କହ ସୁନ୍ଦରୀ । ଯେଉଁ ପାପ ଯୋଗୁଁ ମର୍ତ୍ତ୍ୟରେ ଥିଲୁ ତୁ ଅବତରି । ଏ ବଚନ ଶୁଣି ମେନକା କହଇ ହସି ହସି । ବାଙ୍କମ କହେ ସେ ଚରିତ ଶୁଣ ହେ ରାଜଋଷି ॥

—※—

## ୧୯ଶ ଛାନ୍ଦ

ରାଗ—ଖେମଟା

ରାଜାର ବଚନେ କହେ ସ୍ୱର୍ଗ ଯୁବତୀ ॥ ଯାହା ପଚାରିଲେ ତାହା ଶୁଣ ହେ ଯତି ॥ ଏକଦିନେ ଅଷ୍ଟ ଅପସରୀ ଏ ଆସି । ଗାନ କରୁଥିଲୁଁ ଇନ୍ଦ୍ର ଆଗରେ ବସି ॥ ବ୍ରହ୍ମା ଇନ୍ଦ୍ର ବରୁଣ ଦଶଦିଗପାଳ । ସଭା ପୂରି ରହିଥିଲେ ଦେବ ସକଳ ॥ ଚିତ୍ରସେନର ସୌନ୍ଦର୍ଯ୍ୟ ଦେଖିଣ ତୋଳେ । ବିହ୍ୱଳିତ ହୋଇ ପଡ଼ିଲି ସଭାତଳେ ॥ ଏହା ଦେଖି ଇନ୍ଦ୍ର ମୋତେ ଶାପ ଦିହିଲା । ମ୍ଲେଚ୍ଛ ତନୁ ଧରି ମର୍ତ୍ତ୍ୟେଯାଅ ବୋଇଲା । ଦେବସ୍ତ୍ରୀ ହୋଇ ତୁ ପାପ ଆଚରିଲୁ । ମୋ ପୁରକୁ ଦେଖି କାମେ ବଶ ହୋଇଲୁ ॥ ଏତେ କହି କ୍ରୋଧ କଲା ସହସ୍ରଲୋଚନ । ବହୁ ବିନୟେ କହିଲି ମୁକ୍ତ ବିଧାନ ॥ କେତେକାଳେ ଗିରିଜା ଦର୍ଶନ ପାଇବୁ । ମ୍ଲେଚ୍ଛ ତନୁଛାଡ଼ି ତୁ ସ୍ୱର୍ଗକୁ ଆସିବୁ । ଇନ୍ଦ୍ର ପ୍ରମାଣେ ଶାପ ଭୋଗ କରି । ମୁକ୍ତ ହୋଇ ଯାଉଛି ଏବେ ସ୍ୱର୍ଗପୁରୀ । ଅବଶ୍ୟ ତୋ କୋଳେ ରାଜା ହୁଅନ୍ତି ଜନ୍ମ । ଏବେ ମୁହିଁ କହୁଛି ସ୍ୱରୂପ ବଚନ ॥ ପୂର୍ବେ ନାରଦ

କହିଲେ ବ୍ରହ୍ମା ଅଗ୍ରତେ । ଅବଶ୍ୟ କନ୍ୟା ଏ ପ୍ରାପ୍ତ ହୋଇବ ତୋତେ ॥ ମୋଠାରୁ ଶତଗୁଣେ ସୁନ୍ଦରୀ କୁମାରୀ । ମିଳିବ ବିକ୍ରମ କହେ ହେ ବ୍ରହ୍ମଚାରୀ । ୧୧ ।

## ୨୦ଶ ଛାନ୍ଦ

ରାଗ—ରାମକେରୀ

ଶୁଣିଣ ଜନକ ପୁଚ୍ଛନ୍ତି କହ କହ ସୁନ୍ଦରି । କେମନ୍ତ ପ୍ରକାରେ ପ୍ରାପତ ମୋତେ ହେବ କୁମାରୀ ॥ ରାଜାର ବଚନେ ବୋଲଇ ମେନକା ଅପସରୀ । ତାହାଁର ବୃତ୍ତାନ୍ତ କହିବା ଶୁଣ ହେ ବ୍ରହ୍ମଚାରି ॥ ପୂର୍ବେ କୁଶଧ୍ୱଜ ରାଜାଏ ଥିଲେ ମହୀମଣ୍ଡଳେ । ବେଦବତୀ ବୋଲି କନ୍ୟାଏ ହେଲେ ସେ ରାଜା କୋଳେ ॥ ଅତ୍ୟନ୍ତ ସୁନ୍ଦରୀ ଅଟଇ କିବା ସ୍ୱର୍ଗ ଯୁବତୀ । ତାହାର ମୋହନ ମୂରତି ଦେଖି ଜଳିବେ ଯତି ॥ ତାହାର ସମାନ ସୁନ୍ଦର ବର ପ୍ରାପ୍ତ ନୋହିଲା । ବିରସ ହୋଇଣ ସେ କନ୍ୟା ଘୋର ତପେ ରହିଲା ॥ ମନରେ ସଂକଳ୍ପ କରଇ ବିଷ୍ଣୁ ହେବ ମୋ ବର । କେତେ କାଳ ତପେ ରହିଲା ତେଜି ନିଦ୍ରା ଆହାର । ଏମନ୍ତ ସମୟେ ଲଙ୍କାର ନାୟକ ଦଶଶିର । ଧିଗବିଜେ କରି ଆସନ୍ତେ ଦେଖିଲା ନାରୀବର । ଅନ୍ତରୀକ୍ଷେ ବେଗେ ସେଠାକୁ ଆସି ଯାନ ଛୁଡ଼ାଇ । କାମେ ବଶହୋଇ ସୁରତି ମାଗିଲା ସେହିଠାଇଁ ॥ ଶୁଣି ବେଦବତୀ କନ୍ୟା ଯେ କ୍ଷଣେ ମଉନ ହେଲା । ନାସ୍ତି କରନ୍ତେଣ ରାବଣ ବଳତ୍କାରେ ଧରିଲା ॥ ଗାତେ ଅଙ୍ଗ ଭିଡ଼ି ମୁଖରେ ଦିଅନ୍ତେ ଚୁମ୍ବଦାନ । ଛାଡ଼ ଛାଡ଼ ବୋଲି ବୋଇଲା କ୍ରୋଧେ ନାରୀ ରତନ ॥ ଛାଡ଼ ଦିଅନ୍ତେ ସେ ରାବଣ ବେଦବତୀ କହଇ । ଶୁଦ୍ଧକାୟ ମୋର ଅଶୁଦ୍ଧ କଲୁ ଅସୁର ହୋଇ ॥ କହୁଁ କହୁଁ କ୍ରୋଧ ପ୍ରବଳୁଁ ଅଗ୍ନି ଜାତ ହୋଇଲା । ମୋହ ଯୋଗୁଁ ନାଶ ହୋଇବୁ କହି ପ୍ରାଣ ଛାଡ଼ିଲା ॥ ମହାଭୟ ପାଇ ରାବଣ ତହୁଁ ଆଇଲା ଖରେ । ପ୍ରବେଶ ହୋଇଲା ଯାଇଣ ନିଜ ଲଙ୍କା ଗଡ଼ରେ ॥ ଏସନ ସମୟେ ନାରଦ ଲଙ୍କେ ହେଲେ ପ୍ରବେଶ ॥ ରାବଣଙ୍କୁ ଋଷି ବୋଲନ୍ତି ଶୁଣ ବିଶ୍ରବାଶିଷ୍ୟ ॥ ଯେଉଁ ଦେବତାର କନ୍ୟାକୁ ଆଜ ରମିଲୁ ବଳେ । ଅପମାନ ପାଇ ଝାସିଲା ଅଙ୍ଗ କ୍ରୋଧ ଅନଳେ ॥ ଦହନ ନୋହିଣ ଯେ ଶବ ସେହି ରୂପ ପଡ଼ିଛି । ତାହା ଯୋଗେ ତୁହି ମରିବୁ ଶୁଣ ବିଶ୍ରବାବହ୍ନି ॥ ନୋହିଲେ ସେ ଶବ ଅଣାଇ ବେଗେ କର ବିନାଶ । ଏତେକ କହିଣ ନାରଦ ଶୂନ୍ୟେ ହେଲେ ଅଦୃଶ୍ୟ ॥ ସେ କଥା ଶୁଣିଣ ରାବଣ ଜଗତରୁ ଉଠିଲା ସେ ଶବ ଅଣାଇ ସତ୍ୱର ମନ୍ଦୋଦରୀକି ଦେଲା ॥ ଷଡ଼ରସେ ଏହା ବ୍ୟଞ୍ଜନ କରି

ଗୋ ପ୍ରାଣସହ୍ର । ଏତେ କହ୍ହି ତହୁଁ ବ୍ରଜସ୍ଥ କଲକ ଲଙ୍କସାଇଁ ॥ ଏମନ୍ତ ସମୟେ ନାରଦ ରାଣୀ ପାଶେ ପ୍ରବେଶ । ବୋଲନ୍ତି ରାଣୀ ଗୋ ବ୍ୟଞ୍ଜନ କର ଆନ ମାଏଁସ ॥ ଏ ଶବ ନେଇଣ ସମୁଦ୍ର ଜଳେ ଦିଅ ଭସାଇ । ତାଙ୍କ ଆଜ୍ଞା ପ୍ରତି ପାଳିଲା ମନ୍ଦୋଦରୀ ସୁମୁହିଁ ॥ ଦକ୍ଷିଣ ସମୁଦ୍ର କୂଳରେ ସେହି ଲଗି ଅଛଇ । ଲଙ୍ଗଳ ଦ୍ୱାର ସେ ସ୍ଥାନକୁ ଚଷ କର ତୁ ଯାଇ । ଅବଶ୍ୟ କୁମାରୀ ପ୍ରାପତ ଆଜ ହୋଇବ ତୋତେ । ବ୍ରହ୍ମ କହଇ ମେନକା କହିଗଲା ଝିରତେ । ୨୩ ।

—× ×—

## ୨୧ଶ ଛାନ୍ଦ

### ଭାଗବତ ବୃତ୍ତେ

ଏମନ୍ତ କହି ସେ ସୁନ୍ଦରୀ । ଶୂନ୍ୟେ ଚଳିଲା ସ୍ୱର୍ଗପୁରୀ ॥ ଶୁଣିଣ ଜନକ ଆନନ୍ଦ । ଚକ୍ଷୁ ଯେସନେ ପାଏ ଅନ୍ଧ ॥ ହରଷେ ସେଠାରୁ ଚଳିଲେ । ନିଜ ରାଜ୍ୟରେ ପ୍ରବେଶିଲେ ॥ ପାତ୍ର ମନ୍ତ୍ରୀଙ୍କି ଘେନ ସଙ୍ଗେ । ଚଳିଲେ ଜନକ ସତ୍ୱରେ ସଫଳକାମ ହେବାପାଇଁ । ସଙ୍କେତ ସ୍ଥାନେ ହେଲେ ଯାଇଁ ॥ ବିଧିପୂର୍ବକ କାର୍ଯ୍ୟ କରି । ଯଜ୍ଞ ସାଧିଲେ ଦଣ୍ଡଧାରୀ ॥ ଆହୁତି ଦେଲେ ନିୟମିତ । ଯଜ୍ଞ ହୋଇଲା ସମାପତ ॥ ସ୍ୱର୍ଗେ ଚଳିଲେ ଦେବଗଣେ । ମୁନିଏ ଗଲେ ଯେଝା ସ୍ଥାନେ ॥ ଜନକ ସତାନନ୍ଦ ରାଇ । ଆଜ୍ଞା ଦେଲେ ଆନନ୍ଦ ହୋଇ ॥ ହଳଲଙ୍ଗଳ ଯାଅ ଆଣ ଚଷାଅ ବେଗେ ଯଜ୍ଞସ୍ଥାନ । ଆଜ୍ଞା ପାଇଣ ସତାନନ୍ଦ । ଚଷିଲ ମାତେ ଫାଳନ୍ଦନେ । ବାହାର ମଞ୍ଜୁଷା ତକ୍ଷଣେ । ବେଗେ ସେ ମଞ୍ଜୁଷା ମେଲଇ । ଗୃହାନ୍ତ ଏକମୁଖ ହୋଇ । ଦଗଧ ହେମପ୍ରାୟ କାନ୍ତି । ଶରଦ ଶଶୀ ମୁଖଜ୍ୟୋତି ଦେଖିଣ ଜନକ ହରଷ । ଘେନ ଚଳିଲେ ନିଜ ଦେଶ ॥ ଅନ୍ତଃପୁରରେ ପ୍ରବେଶିଲେ । ରାଣୀଙ୍କଠାରେ ସମର୍ପିଲେ । ହରଷ ହୋଇ ସର୍ବବାଳୀ । ପୁତ୍ରଠାରୁ ଅଧିକେ ପାଳ ॥ ଯେବଣ ଲକ୍ଷ୍ମୀଙ୍କ ଚରଣେ । ସେବନ୍ତ ସୁରସିଦ୍ଧ ଗଣେ ॥ ସେ ଏବେ ଜଗତର ହିତେ । ହୋଇଲେ ଜନକ ଦୁହିତେ ॥ ବିଦେହେ ହେବାରୁ ସମ୍ଭୂତ । ବୈଦେହୀ ନାମେ ହେଲେ ଖ୍ୟାତ । ଜନକକୁମାରୀ ନିମନ୍ତେ । ଜାନକୀ ବୋଲନ୍ତି ଜଗତେ ॥ ମିଥିଳା ରାଜାଙ୍କ ଦୁଲାଳୀ । ତେଣୁ ସେ ନାମ ମଇଥିଳୀ ॥ ଜନମୀ ତାଙ୍କର ପୃଥିବୀ । ତେଣୁ ନାମ ଅଟେ ପାର୍ଥିବୀ ॥ ଶରୀର ଯୋଜନେ ବାସଇ । ତେଣୁ ଯୋଜନାଗନ୍ଧା ସେହି ॥ ଲଙ୍ଗଳ ମୂନରୁ ବାହାର । ହେବାରୁ ସୀତା ନାମ ତାର ॥ ଏମନ୍ତେ ବିଭିପରକାର । ନାମ କହିଲେ ମୁନିବର ॥ ଦିନକୁ ଦିନ ଚନ୍ଦ୍ରକଳା । ସମାନ ବଢ଼େ ରାଜ ବାଳା ॥ ସୀତା ଜନମ

ହେଲା ଶେଷ । ଶୁଣିଲେ ଖଣ୍ଡେ ଭବକ୍ଳେଶ ॥ ସେ ସୀତା ଚରଣାରବିନ୍ଦ । ଭଜଇ ବିକ୍ରମ ନରେନ୍ଦ୍ର । ୩ ।

—××—

## ୨୨ଶ ଛାନ୍ଦ—ରାମଜନ୍ମ

ରାଗ—ଯମକ

ଏଥି ଉତ୍ତାରୁ ବାଲ୍ମୀକ ନାମେ ମହାପଣ୍ଡ । ରାମାୟଣ ଆଦ୍ୟଲୀଳା ଯାହା କହିଛନ୍ତି ॥ ସାମବେଦୁଁ ସମ୍ଭୂତ ଅମୃତମୟ ରସ । ଶୁଣନ୍ତି ପାର୍ବତୀ ଦେବୀ କହନ୍ତି ମହେଶ ॥ ଭରତଖଣ୍ଡ ମଧ୍ୟରେ ଅଯୋଧ୍ୟା ନାମେ ପୁର । ଅଜସୁତ ଦଶରଥ ତହିଁ ଦଣ୍ଡଧର ॥ ତାହାଙ୍କ ମଇତ୍ର ଚମ୍ପାବତୀ ନରେଶ୍ୱର । ଲୋମପାଦ ବୋଲି ନାମ ଅଇଟ ତାହାର ॥ ବିପ୍ରଶାପେ ବୃଷ୍ଟିହୀନ ହେଲା ତାର ଦେଶ । ଜଳବିନା ପୁରଜନେ ଲଭିଲେକ କ୍ଲେଶ ॥ ଋଷିଶୃଙ୍ଗ ଆଇଲେ ଯେ ଜଳ ବରଷିବ । ବୋଲଇ ବିକ୍ରମ ଚମ୍ପାବତୀ ସୁସ୍ଥ ହେବ । ୨ ।

—××—

## ୨୩ଶ ଛାନ୍ଦ

ରାଗ—ଯମକ

ପାର୍ବତୀ ବୋଲନ୍ତି ମୋତେ କହ ହେ ଧୂର୍ଜଟି । କେବଳ ଦୋଷରୁ ଇନ୍ଦ୍ର ନ କଲେକ ବୃଷ୍ଟି । ଚମ୍ପାବତୀଦେଶ ରାଜା କେଉଁଦୋଷ କଲା । ବାରବରଷ କେପାଇଁ ଇନ୍ଦ୍ର ନ ପାଳିଲା ॥ ଏଥିର ଚରିତ ମୋତେ କହ ଗଙ୍ଗାଧର । ମନର ସଂଶୟ ଯେ ଛେଦନ କର ମୋର ॥ ପାର୍ବତୀଙ୍କ ବଚନେ କହନ୍ତି ଶୂଳପାଣି । ପୂର୍ବର ଚରିତ ଏବେ ଶୁଣ ଗୋ ସର୍ବାଣୀ ॥ ଏକଦିନେ ଲୋମପାଦ ବ୍ରାହ୍ମଣଙ୍କୁ ଆଣି । ଗୋରୁ ଦାନ ଦେଲା ଯେ ତାହାଙ୍କ ମନ ଜାଣି ॥ ଗାବି ଘେନ ଦ୍ୱିଜଗଣେ ଗଲେ ନିଜ ଘର । ଏକ ଗୋରୁ ପଳାଇ ପଶିଲା ଗୋଗୋଷ୍ଠର ॥ ଅଙ୍ଗଦେଶ ନୃପତି ଯେ ତହିଁ ଆରଦିନ । ଅନ୍ୟବ୍ରାହ୍ମଣଙ୍କୁ ସେ ଗୋରୁକୁ ଦେଲା ଦାନ ॥ ଗାବି ଘେନ ବିପ୍ର ଯାଉ ଯାଉ ନିଜ ପୁର । ଆଗ ନେଲା ଦ୍ୱିଜ ଦେଖି ବୋଲେ ଏତ ମୋର ॥ ପଛ ବିପ୍ର ବୋଲେ ମୋତେ ରାଜାଦାନ ଦେଲା । ଆଗ ବିପ୍ର ବୋଲେ ମୋତେ ଆଗ ଦେଇଥିଲା । ଦୁଇ ବ୍ରାହ୍ମଣଙ୍କର ଲାଗିଲା ବିବାଦ କଳି । ରାଜାଂକ ଛାମୁଁରେ ଯାଇ କଲେକ ଗୁହାରି ॥ ନୃପତି ବୋଇଲେ ତୁମ୍ଭେ ଶୁଣ ହେ ବ୍ରାହ୍ମଣ । ପଳାଇ ପଶିଲା ଗୋରୁ ଆମ୍ଭ ଗୋଗୋଷ୍ଠେଣ ॥ ନ ଜାଣି ବିପ୍ରଙ୍କୁ ଆମ୍ଭେ ଦାନ ଦେଲୁ ଗୋରୁ । ଏବେ ଅନ୍ୟ ଗୋରୁ ଦେବା କଆଁ କୋପ କରୁ ॥ ବ୍ରାହ୍ମଣ ବୋଇଲା ନେବ ସେହି ଗୋରୁ ମୋର । ଆଗେ ଦେଇ ପଛେ ହରୁ କେଉଁ ଧର୍ମ ତୋର ॥ ଏବେ ତୁ ମୋର ଶାପ ଘେନ ମହୀପାଳ ॥

ତୋର ରାଜ୍ୟେ ବୃଷ୍ଟି ନ କରିବ ଆଖଣ୍ଡଳ ॥ ବାରବର୍ଷଯାଏ ରାଜ୍ୟ ହେବ ଅପାଳକ । ଅନ୍ନ ନ ପାଇଣ ଯେ ମରିବେ ସର୍ବଲୋକ ॥ ଏତେ କହି ବ୍ରାହ୍ମଣ ଯେ ଗଲା ନିଜଘର । ପଛେ ପଛେ ଗୋଡ଼ାଇ ବୋଲଇ ନୃପବର । ଶାପ ପ୍ରତିକାର ମୋତେ କହ ଦ୍ୱିଜବର । ରାଜ୍ୟ ନାଶ ଯିବ ମୋର ଦୋଷ କ୍ଷମାକର ॥ ରାଜାର ବିକଳ ଦେଖି କହିଲା ସେ ଦ୍ୱିଜ । ଯେବେ ଆଣିପାରୁ ବିଭାଣ୍ଡକର ତନୁଜ ॥ ଋଷ୍ୟଶୃଙ୍ଗ ଅଟନ୍ତି ଯେ ବିଭାଣ୍ଡକ ବାଳ । ଆଇଲେ ଅବଶ୍ୟ ରାଜ୍ୟେ ବରଷିବ ଜଳ ॥ ପୂର୍ବର ଚରିତ ତୁମ୍ଭେ ଶୁଣିସି ଗୋବା । ଚମ୍ପାବତୀ ରାଜ୍ୟେ ବୃଷ୍ଟି ନ କଲା ମଘବା । ସହୁଁ ଆକୁଳ ହୋଇଲେ ରାଜ୍ୟର ପରଜା । ପୂର୍ବକଥା ଚିନ୍ତିଲା ଲୋମପାଦ ରାଜା ॥ ମନରେ ଅତି ଭାବନା ହୋଇଲା ତାହାର । କେ ଆଣିବ ବିଭାଣ୍ଡକ ଋଷିର କୁମର ॥ ଋଷ୍ୟଶୃଙ୍ଗ ଆଇଲେ ହୋଇବ ଜଳବୃଷ୍ଟି । ବିକ୍ରମ ନରେନ୍ଦ୍ର କହେ ରକ୍ଷା ହେବ ସୃଷ୍ଟି । ୨୩ ।



## ୨୪ଶ ଛାନ୍ଦ

ରାଗ—ନଳିନୀଗୌଡ଼ା

ମନ୍ତ୍ରୀଙ୍କି ଡକାଇ ରାଜା ବୋଲନ୍ତି ବଚନ । କହ ଋଷ୍ୟଶୃଙ୍ଗଙ୍କର ଜନ୍ମ ବିବରଣ ହେ ॥ ରାଜାଙ୍କ ବଚନେ ଯେ କହଇ ବିଜ୍ଞମନ୍ତ୍ରୀ । ଋଷ୍ୟଶୃଙ୍ଗ ଜନ୍ମକଥା ଶୁଣ ନରପତି ହେ ॥ ଋଷ୍ୟଶୃଙ୍ଗ ଜନମ ଶୁଣନ୍ତୁ ଏକମନେ । ବିଭାଣ୍ଡକ ନାମେ ଋଷି ଥିଲେ ତପସ୍ଥାନେ ହେ ॥ ଏହିକାଳେ ସ୍ୱର୍ଗରୁ ଉର୍ବଶୀ ଅପସରୀ । ନଦୀରେ ପଶିଣ ସ୍ନାନ କରଇ ସୁନ୍ଦରୀ ଯେ ॥ ଜାନୁ ଯଉବନ ଯେ ଦିଶଇ ମର୍ମସ୍ଥାନ । ଦେଖି କାମେ ବଶ ବିଭାଣ୍ଡକ ତପୋଧନ ଯେ । ୫ । ସ୍ନାନ ସାରି ଉର୍ବଶୀ ଯେ ଗଲା ସ୍ୱର୍ଗପୁର । ଧ୍ୟାନଭଙ୍ଗ ଅନ୍ତେ ମୁନି ମିଳିଲେ ଜଳର ଯେ ॥ ସ୍ନାନ କରନ୍ତେଣ ରେତ ହୋଇଲା ସ୍ଖଳିତ । ବାହୁଡି ଆଶ୍ରମକୁ ଗମିଲେ ତପୋବନ୍ତ ହେ । ଏହି ସମୟେ ପ୍ରବେଶ ହୋଇଲା ମୃଗୁଣୀ । ଜଳ ସହିତରେ ରେତ ଭକ୍ଷିଲା ସେକ୍ଷଣି ଯେ ॥ ଗର୍ଭବତୀ ହୋଇ ପୁତ୍ରେ କରିଣ ଜନମ । ଦେହ ଛାଡ଼ି ମୃଗୁଣୀ ଚଳିଲା ସ୍ୱର୍ଗଧାମ ଯେ ॥ ଧରଣୀପୃଷ୍ଠି ହୋଇ ପୁତ୍ର କରଇ ରୋଦନ । ବିକ୍ରମ କହେ ଭରସା ହେଲେ ଭଗବାନ । ୧୦ ।



## ୨୫ଶ ଛାନ୍ଦ

ରାଗ—ସ୍ରମକ

ଶୁଣ ହେ ରାଜନ ଏହି ଅପୂର୍ବ ଚରିତ । ମୁଣ୍ଡେ ଶୃଙ୍ଗେ ନରମୂର୍ତ୍ତି ସେହି ତପୋବନ୍ତ ॥ ବାଳକ କାନ୍ଦିବା ଶୁଣି ବିଭାଣ୍ଡକ ମୁନି । ସେଠାବରେ

ପ୍ରବେଶ ହୋଇଲେ ତତ୍‌କ୍ଷଣି ॥ କୁମରକୁ ଦେଖିଣ ବିସ୍ମୟ ମୁନିବର । ଆକାଶ ମାର୍ଗରେ ଯେ କହିଲେ ବଜ୍ରଧର ॥ ଏହାଦ୍ୱାରା ଦେବକାର୍ଯ୍ୟ ହୋଇବ ବହୁତ । ଯତ୍ନକର ପାଳ ବିଭାଣ୍ଡକ ତପୋବନ୍ତ ॥ ଏ ଯେଉଁ ରାଜ୍ୟକୁ ଯିବେ ବରଷିବ ଜଳ । ବୋଲେ ଗୋପୀ ସୁଦୟା କରିବେ ଆଦିମୂଳ । ୫ ।

—*—

## ୧୭ଶ ଛାନ୍ଦ

ରାଗ—ଯମକ

ମନ୍ତ୍ରୀମୁଖଁ ଏହା ଶୁଣି ଚମ୍ପାବତୀସାଇଁ । ବିଚାର କରଇ ପାତ୍ର ମନ୍ତ୍ରୀଙ୍କି ବସାଇ ॥ ଋଷ୍ୟଶୃଙ୍ଗ ଆଣିବାକୁ କାହା ବୁଦ୍ଧି ଅଛି । ଜଣେ ଜଣେ କରି ରାଜା ସମସ୍ତଙ୍କୁ ପୁଚ୍ଛି ॥ ମନ୍ତ୍ରୀବର ବୋଲେ ଦେବ ଅଛି ଏକ ବୁଦ୍ଧି । ଯେବଣ ପ୍ରକାରେ କାର୍ଯ୍ୟ ହୋଇବଟି ସିଦ୍ଧି ॥ ଧନରତ୍ନ ଗୁଙ୍ଗୁଡ଼ା ଦୋସାଧୁ ହସ୍ତେ ଦେବା । ଦୁନ୍ଦୁଭି ବଜାଇ ନଗ୍ରଯାକ ବୁଲାଇବା ॥ ଋଷ୍ୟଶୃଙ୍ଗ ମୁନିଙ୍କି ଯେ ପାରିବଟି ଆଣି । ଏରତ୍ନ ଗୁଙ୍ଗୁଡ଼ା ନିଶ୍ଚେ ପାଇବ ସେ ପୁଣି ॥ ଶୁଣିକରି ନୃପତି ସାନନ୍ଦ ମନ ହେଲା । ପଞ୍ଚରତ୍ନ ଗୁଙ୍ଗୁଡ଼ା ଦୋସାଧୁ ହସ୍ତେ ଦେଲା । ଆଦରେ ଦାଣ୍ଡିଣ୍ଡୀ ଯେ ବଜାଇ ବୀର ତୂର ॥ ଦୋସାଧୁ ବୋଲଇ ତୁମ୍ଭେ ଶୁଣ ସର୍ବ ନର ॥ ଋଷ୍ୟଶୃଙ୍ଗ ମୁନି ଅଟେ ବିଭାଣ୍ଡକ ଶିଷ୍ୟ । କଉଶିକ ନଦୀତଟରେ କରିଥାଇ ବାସ । ସେ ମୁନି ଅଇଲେ ଯେ ହୋଇବ ଜଳବୃଷ୍ଟି । ଯେ ଆଣିବ ନେବ ସେହୁ ରତ୍ନ-ଗୁଙ୍ଗୁଡ଼ାଟି ॥ ଏହାଶୁଣି ଜରତା ନାମେଣ ନଟକାରୀ । ବିଧାତା ଉପାସ୍ୟେ ସେ ଯେ ଅଛି ଅବଚାରି ॥ ସେ ଆସିଣ ପଞ୍ଚରତ୍ନ ଗୁଙ୍ଗୁଡ଼ା ଧଇଲା । ମୁହିଁ ଋଷିଶୃଙ୍ଗ ଆଣି ଦେବଇଁ ବୋଇଲା ॥ ଶୁଣିକରି ଦୋସାଧୁ ହରଷମନ ହୋଇ । ରାଜାର ସ୍ମୁମୁଖକୁ ତାକୁ ଗଲାକ ଘେନାଇଁ ॥ ଦେଖିଣ ଆନନ୍ଦ ଯେ ହୋଇଲେ ମହୀପାଳ । ଜରତା କଣ୍ଠରେ ନେଇ ଲମ୍ବାଇଲେ ମାଳ ॥ ବିନୟୀ ହୋଇଣ ଯେ ବୋଲଇ ନୃପମଣି । ମୋହର ରାଜ୍ୟକୁ ରକ୍ଷା କର ଗୋ ତରୁଣୀ । ଜରତା ବୋଲଇ ଯେ ଯୋଡ଼ିଣ ବେନିକର । ଶୁଣ ଦେବ ଚମ୍ପାବତୀ ନଗ୍ରର ଠାକୁର ॥ ଅଗମ୍ୟ ଅରଣ୍ୟ ସେ ଯେ ଶାଳ ଶୀଳ ବାଟ । ପାଦରେ ଗମିଲେ ଯେ ଲଭିବୁ ବଡ଼ କଷ୍ଟ ॥ ଦୁଇ ନାବ ସଜକରି ଦିଅ ନୃପବର । ଅପ୍ରମାଦେ ଆଣିଦେବୁଁ ଋଷିର କୁମର ॥ ଶୁଣିକରି ସନ୍ତୋଷ ହୋଇଲେ ନୃପମଣି । ଆଜ୍ଞା ଦେଲେ ନାବ ଗଢ଼ି ଦେଲେକ ବଢ଼ାଣୀ । ନଉକା ଉପରେ ଯେ ବିବିଧ ବୃକ୍ଷ ରୋପି । ଫଳିଲା ଫୁଟିଲା ବୃକ୍ଷମାନ ତହିଁ ଥାପି ॥ ଆମ୍ର ପଣସ

କଦଳୀ ଟଭ ନାରିକେଳ । ଜେଉଟ ନାରଙ୍ଗ ଆଦି ନାନା ରମ୍ୟ ଫଳ । ଟଟେର ଡଗଟ ଯେ ମନ୍ଦାର ମଲ୍ଲୀ ଯୂଈ । ଚମ୍ପା ନାଗେଶ୍ୱର କଅା କନଅର ଜାଈ ॥ ଶୁଭ ଅନୁକଳ ଯୋଗେ ଜରତା ବାହାର । ସଙ୍ଗରେ ଘେନଣ ବାରବନତା ଆବର । ବସ୍ତ୍ର ଅଳଙ୍କାର ମଣ୍ଡି ସୁବେଶ ସୁନ୍ଦରୀ । ବୋଲଇ ବାହମ ଦଣେ ସ୍ୱର୍ଗ ଅପସରୀ । ୨୩ ।

—×—

## ୨୨ଶ ଛାନ୍ଦ

ରାଗ—ସମକ

ଗଙ୍ଗାର ଭିତରେ ନାବ ବାହିଣ ଘେନଲେ । କେତେକ ଦିନରେ ଯାଇଁ ପ୍ରବେଶ ହୋଇଲେ ॥ କଉଶିକ ନଦୀଘାଟରେ ହୋଇଲେ ପ୍ରବେଶ । ମୁନି ଦେଖି ଜରତା ଲଭିଲେ ଅତି ତୋଷ ॥ ମଡ଼ିଆ ଦୁଆରେ ଯେ ଅଛଇ ବେଲଗଛ । ତାହାଁ ତଳେ ବସିଛନ୍ତି ବିଭାଣ୍ଡକ ବତ୍ସ ॥ କୃଷ୍ଣାଜନ ମାଡ଼ିବସି ଊର୍ଦ୍ଧ୍ୱ ମୁଖ ହୋଇ ରୁଦ୍ରାକ୍ଷର ମାଳା କରେ ଘେନଣ ଜପଇ ॥ କର୍ଣ୍ଣରେ ତମ୍ବ କୁଣ୍ଡଳ ଗୁରଗୋଟି ଜଟ ବେନଗୋଟି ଶୃଙ୍ଗ ତାର ଶିରକୁ ମୁକୁଟ ॥ ଏ ସମୟେ ଜରତା ଯେ ପ୍ରବେଶ ହୋଇଲେ । ତାଙ୍କୁ ଦେଖି ଋଷ୍ୟଶୃଙ୍ଗ ଆଚମ୍ଭିତ ହେଲେ ॥ ଜନ୍ମରୁ ସ୍ତ୍ରୀବର୍ଣ୍ଣ ତାର ଦେଖିବାର ନାହିଁ । ଗଉରବ କରି ତାଙ୍କୁ ପାଖରେ ବସାଇ ॥ ଜରତାକୁ ଦେଖି ମୁନି ପୁଚ୍ଛନ୍ତି ବଚନ । କେଣିକହେ ମହାଋଷି କରୁଛଗମନ ॥ କାମମୋହିନୀ ବୋଇଲେ ଶୁଣ ମୁନିବର । ମକରେ ରହିଲୁ ଆମ୍ଭେ ପ୍ରୟାଗତୀର୍ଥର ॥ କୁମ୍ଭମାସେ ଅଇଲୁଯେ ହରଦ୍ୱାର ବାଟେ । ଚଇତ୍ରେ ରହିଲୁ ଆମ୍ଭେ କାଶୀନଦୀ ତଟେ ॥ ମେଷ ମାସେ ବାରାଣସୀ କ୍ଷେତ୍ରରେ ରହିଲୁଁ । ଏବେ ଅଯୋଧ୍ୟାକୁ ଆମ୍ଭେ ଯିବୁଟି ବୋଇଲୁଁ ॥ ଶୁଣିକରି ଋଷ୍ୟଶୃଙ୍ଗ ଆନନ୍ଦ ହୋଇଲେ । ଆପଣାଆସନେ ତାଙ୍କୁନେଇ ବସାଇଲେ ॥ ହରିଡା ବାହାଡ଼ା ମୁନି ଘେନି ନିଜ କର । କନ୍ଦମୂଳ ଫଳ କିଛି ଦେଲେ ଉପହାର ॥ ତାହା ଦେଖି ଜରତା ଯେ ହସ ହସ ହୋଇ । ଏହା ଅଟେ କସ ଫଳ ବୋଲି ପଗୃରଇ ॥ ଏହି ଫଳ ମୁନି ଆମ୍ଭେ ନକରୁ ଆହାର । ଆମ୍ଭର ରାଜ୍ୟର ଫଳ ଦେଖ ମୁନିବର ॥ ଏତେ ବୋଲି ରମ୍ଭା ଲଡୁ ନେଇ ସମର୍ପିଲେ । ଭୁଞ୍ଜି କରି ଋଷ୍ୟଶୃଙ୍ଗ ଆନନ୍ଦ ହୋଇଲେ ॥ କାମମୋହିନୀଙ୍କ ସ୍ତନହିଁ ଋଷି ପଗୃରନ୍ତି । ତୁମ୍ଭର ଅଙ୍ଗରେ କସ ଫଳ ହୋଇଛନ୍ତି ॥ ଜରତା ବୋଲଇ ତୁମ୍ଭେ ଶୁଣ ମହାମୁନି । ଏ ଆମ୍ଭର କୁଚଶମ୍ଭୁ ଅଙ୍ଗେ ଆଉଁ ଘେନି ॥ ଅବନା ଅକ୍ଷର ପାଦ ନାହିଁ ଏହାଙ୍କର । କରରେ ମର୍ଦ୍ଦନ କଲେ ଦିଅନ୍ତି ଏ ଯେ ବର ॥ ନୟନେ

ଅଞ୍ଜନରଞ୍ଜି କପାଳେ ସିନ୍ଦୂର । ପର ପୁରୁଷର ସଙ୍ଗେ ପୀରତି ଆମ୍ଭର ॥ ଦିବ୍ୟ ପୁରୁଷକୁ ଦିବ୍ୟ ଭୁବନକୁ ନେଇ । ଦିବ୍ୟ ରତିରସେ ତାଙ୍କୁ ଦିବ୍ୟ ଭୋଗ ଦେଉଁ ॥ ଏତେ କହି କାମିନୀ ଯେ ମୁନିଙ୍କି ଧଇଲେ । ଅଙ୍କେ ବସାଇଣ ଅଙ୍ଗେ ଅଙ୍ଗ ଲଗାଇଲେ ॥ ହସ ହସ ହୋଇ ମୁନି ବୋଲନ୍ତି ବଚନ । ଚାଲ ତୁମ୍ଭ ରାଜ୍ୟକୁ ହେ କରିବା ଗମନ ॥ ତାହା ଶୁଣି ମୁନିଙ୍କି ଯେ ନାବେ ବସାଇଲେ । ସାତଦିନେ ଚମ୍ପାବତୀ ନଗରେ ମିଳିଲେ ॥ ମୁନି ଆସନ୍ତେଣ ବୃଷ୍ଟି କଲା ଆଖଣ୍ଡଳ । ବୋଲେ ଗୋପୀ ଜନପ୍ରଜା ଆନନ୍ଦ ସକଳ । ୨୫ ।

---

## ୨୮ଶ ଛାନ୍ଦ

ରାଗ—ଯମକ

ଆନନ୍ଦ ହୋଇଲେ ଦେଖି ଲୋମପାଦ ରାଜା । ଋଷ୍ୟଶୃଙ୍ଗ ମୁନିଙ୍କର କଲେ ପାଦପୂଜା ॥ ହେମମୟ ପୁରେ ନେଇ ବିଜେ କରାଇଲେ । ଭୋଜନ ନିମନ୍ତେ ନାନା ଉପଚାର ଦେଲେ ॥ ମହାସୁଖ ପାଇ ଋଷ୍ୟଶୃଙ୍ଗ ଯେ ଆନନ୍ଦ । ଶ୍ରୀରାମ ଚରଣେ ଭଜେ ବିକ୍ରମ ନରେନ୍ଦ୍ର । ୩ ।

---

## ୨୯ଶ ଛାନ୍ଦ

ରାଗ—ଯମକ

ଶୁଣ ହେ ସୁଜନ ଜନ ଅପୂର୍ବ ଚରିତ । ଯାହା ଶୁଣି ପ୍ରାଣୀମାନେ ହୋଇବେ ମୁକତ । ହର କୋଳେ ବସିଣ ଯେ ପୁଚ୍ଛନ୍ତି ଗଉରୀ । ଶ୍ରୀରାମଜନ୍ମ ଚରିତ କହ ତ୍ରିପୁରାରି । ପାର୍ବତୀଙ୍କ ବଚନେ କହନ୍ତି ଶୂଳପାଣି । ଶ୍ରୀରାମଜନ୍ମ ଚରିତ ଶୁଣ ଗୋ ସର୍ବାଣି । ଏଥୁ ଅନନ୍ତରେ ଲୋମପାଦ ନୃପସାଇଁ ॥ ଋଷ୍ୟଶୃଙ୍ଗେ ବିଭାଦେଲେ ଆପଣା ତନୟୀ ॥ ଶାନ୍ତା କନ୍ୟାକୁ ବିବାହ ହୋଇଲେକ ମୁନି । ଲୋମପାଦେ ଗୃହେ କରିଅଛନ୍ତି ରହଣି ॥ ଏ ସମୟେ ଅଯୋଧ୍ୟାର ସାଇଁ ଦଶରଥ । ଚିନ୍ତିତରେ ଆନ୍ତି କେହ୍ନେ ଲଭିବେକ ସୁତ । ପାତ୍ର ମନ୍ତ୍ରୀ ପୁରୋହିତମାନଙ୍କୁ ଡ଼କାଇ । ନିକଟେ ବସାଇ ରାଜା ଏମନ୍ତ କହଇ ॥ ଷାଠିଏ ହଜାର ବର୍ଷ ହେଲା ମୋତେ ଜାଣ । ପୁତ୍ର ପାଇଁ ଚିନ୍ତାନଳ ଦହେ ହୃଦ ବନ ॥ ଏଥକୁ କେଉଁ ଉପାୟ କଲେ ପୁତ୍ର ହେବ । କହ ପାତ୍ର ମନ୍ତ୍ରୀଗଣ ଯାହା ଜାଣ ସର୍ବ ॥ ଶୁଣିଣ ସୁମନ୍ତ ମନ୍ତ୍ରୀ ବୋଇଲେ ଯୋଡ଼କର । ମୁଁ ଯାହା କହୁଛି ଦେବ ଶୁଣନ୍ତୁ ସ୍ଥିରେ ॥ ଋଷିମାନଙ୍କ ମୁଖରୁ ଶୁଣିଅଛି ପୂର୍ବେ । ତୁମ୍ଭ ଆଗେ ସତ୍ୟକରି କହୁଅଛି ଏବେ ॥ ଅବଶ୍ୟ ତୁମ୍ଭର ହେବେ ଚାରିଗୋଟି ସୁତ । ଆସି ଯଜ୍ଞକଲେ ଋଷ୍ୟଶୃଙ୍ଗ ତପୋବନ୍ତ ॥ ଦଶରଥ

ବୋଲନ୍ତି ସେ ଋଷିଚନ୍ଦ୍ର କାହିଁ । କିଏ ଆଣିଦେବ ମୋତେ କାହୁଁ ପାଇବଇଁ ॥ ମନ୍ତ୍ରୀବର ବୋଲେ ଚମ୍ପାବତୀରେ ସେ ଛନ୍ତି । ଲୋମପାଦ ଭୂମିର ଯେ ମଇତ୍ର ଅଟନ୍ତି ॥ ସେଠାକୁ ଗମନ କଲେ ପାଇବ ନିଶ୍ଚୟ । ଏହା ଅଟେ ସୁନିଶ୍ଚିତ ଶୁଣ ନରରାୟ ॥ ଏହା ଶୁଣି ଆନନ୍ଦ ହୋଇଲେ ଦଣ୍ଡଧାରୀ । ଚତୁରଙ୍ଗ ବଳ ସାଜ ବେଗେ ବଜେ କରି ॥ ବଜାଇଣ ନାନା ବାଦ୍ୟ ଚମକ ନିଶାଣ । ମହାସମାରୋହେ ରାଜା କଲେକ ପ୍ରୟାଣ ॥ ଦିନନ୍ଦନେ ଚମ୍ପାବତୀ କଟକେ ପ୍ରବେଶ । ବେନି ମିତ୍ର ଭେଟ ହୋଇ ହୋଇଲେ ସନ୍ତୋଷ ॥ ଋଷ୍ୟଶୃଙ୍ଗ ବୋଇଲେ ହେ ଦଶରଥରାଜା । କୁଶଳେ ଅଛନ୍ତି ଟିକି ତୋର ରାଜ୍ୟ ପ୍ରଜା ॥ କୁଶଳେ ବୃଷ୍ଟି କରାଇ ଟିକି ଆଖଣ୍ଡଳ । କହ କହ ତୋର ପୁତ୍ର ନାତିଙ୍କ କୁଶଳ ॥ ଶୁଣି ଦଶରଥ ଶୋକେ ଗଦ ଗଦ ହୋଇ । ଚରଣତଳେ ପଡ଼ିଲେ ଗଡ଼ି ଯାଇ ଶୋଇ ॥ ବୋଲନ୍ତି ଭୂମି ପ୍ରସାଦେ ସର୍ବ ଶୁଭ ମୋର । ପୁତ୍ରଦାନଦେଇ ମୋ ବଂଶକୁ ରକ୍ଷାକର ॥ ଶୁଣିକରି ଋଷ୍ୟଶୃଙ୍ଗ କଲ୍ୟାଣ ବାଞ୍ଛିନ୍ତି । ଏମନ୍ତେ ବସିଣ ବେନି ରାଜା ବିଚାରନ୍ତି ॥ ଦଶ-ରଥେ ଗୃହିଁ ଋଷି ବୋଲନ୍ତି ବଚନ । ଚଳ ଭୂମି ରାଜ୍ୟକୁ ହେ କରିବା ଗମନ ॥ ଶୁଣି ଦଶରଥ ରାଜା ହର୍ଷଚିତ୍ତ ହୋଇ । ଋଷ୍ୟଶୃଙ୍ଗ ଲୋମପାଦ ଘେନିଣ ଚଳଇ ॥ ଦିନନ୍ଦନେ ଅଯୋଧ୍ୟାରେ ପ୍ରବେଶିଲେ ଯହୁଁ । ବୋଲେ ପଦ୍ମନାଭ ଯାଗ ଆରମ୍ଭିଲେ ତହୁଁ । ୨୭ ।

—×—

**୩୦ ଶ ଛାନ୍ଦ**

ମୁନିବର ବାଣୀ

ଋଷ୍ୟଶୃଙ୍ଗ ଯାଗ କଲେ । ଦେବତା ସନ୍ତୋଷ ହେଲେ । ପୂର୍ଣ୍ଣ ଆହୁତିର ଶେଷେ । ଜାତ ପୁରୁଷେ, ସୁଜନେ ହେ ॥ ହାତେ ସୁବର୍ଣ୍ଣ ଶରା । ପାଇଁସ ଘେନିଛି କର । ମୁନିଙ୍କ କରେ ସେ ଦେଲେ । ଅଦୃଶ୍ୟ ହେଲେ ॥ ମୁନି ଦେଲେ ରାଜା କର । ଘେନିଣ ସେ ନୃପବର । କୌଶଲ୍ୟା କେକେୟୀ ରାଣୀ । ଦେଲେ ସେ ଆଣି ॥ ବେନି ରାଣୀ ବେନି ଭାଗ । ସୁମିତ୍ରାକୁ ଅନୁରାଗ । କରନ୍ତି ତାହାଙ୍କୁ ଦେଲେ । ଚରୁ ଖାଇଲେ ॥ ଉଦେ ନୋହୁ ରବିପ୍ରଭା । ଯେହ୍ନେ ପ୍ରାଚୀ ଦିଗେ ଶୋଭା । ସେହିରୂପେ ସେ ସୁନ୍ଦର । ରହି ଗର୍ଭର ॥ ଗଲା ବେନି ପଞ୍ଚମାସ । ହେଲା ପ୍ରସବ ଦିବସ । ଚଇତ୍ର ଶୁକ୍ଳ ନବମୀ । ପୁତ୍ର ଜନମି ॥ ଯେତେ ସେ ଲକ୍ଷଣମାନ । କହିଥିଲେ ତପୋଧନ । ତହିଁକି କୋଟିଏ ଗୁଣେ । ଜାତ ଲକ୍ଷଣେ ॥ ତନୁ ମର୍କତ ଶ୍ରେଣୀ । ସକଳ ଦେବ ଅଗ୍ରଣୀ । କୌଶଲ୍ୟା ଉଦରୁ ଜାତ । ଅଖିଳତାତ ॥ କେକେୟୀ ଉଦରୁ ପୁତ୍ର

ଦୁର୍ବାଦଳ ପ୍ରାୟ ଗାତ୍ର । ଅବତରିଲେ ନନ୍ଦନ । ତାହାଙ୍କ ସାନ ॥ ସୁମିତ୍ରା ଗର୍ଭରୁ ଜାତ । ହୋଇଲେ ସେ ବେନି ସୁତ । ଶୁଦ୍ଧ ସୁବର୍ଣ୍ଣ ଶରୀର । ଅତି ମଧୁର ॥ ଦେଖି ଦଶରଥ ତୋଷ । ଗାଇଲେ ଦ୍ୱିଜ ବିଶେଷ । ଅଶ୍ୱଗଜ ଗାବ ଦାନ । ଦେଲେ ହିରଣ୍ୟ ॥ ହେଲା ହାଟ ଲୁଟ ଜୁର । ନେଲେ ସେ ଇତର ନର । ଦେବତା ମାନଙ୍କୁ ତୋଷ । କରି ସନ୍ତୋଷ ॥ କରାଇଲେ ନୃତ୍ୟ ଗୀତ । ଉତ୍ସବ ହେଲା ବହୁତ । ଦୁନ୍ଦୁଭି ବାଜେ ସ୍ୱର୍ଗରେ । ହୃଷ୍ଟ ଅମରେ ॥ କଲେକ ନାଭି ଛେଦନ । ସୁଗନ୍ଧ କଲେ ଲେପନ । ଉଷ୍ମଜଳରେ ଯେ ସ୍ନାନ କଲେ ବହନ ॥ ଶ୍ରୀଅଙ୍ଗ ପୋଛି ବସନ । କରାଇଲେ କ୍ଷୀରପାନ । ରତ୍ନଦୋଳି ପରେ ତୋଳ । ଶୁଆନ୍ତି ବାଳୀ ॥ ଯେବଣ ରାମ ଚରଣ । ସକଳ ଲୋକ ଶରଣ । ସେ ପ୍ରଭୁ ଜନମ ଆସି । ଭଣିଲେ ବିଶି । ସୁଜନେ ହେ । ୧୭ ।



## ୩୧ଶ ଛାନ୍ଦ

ରାଗ—ଖେମଟା

ପଞ୍ଚୁଆତି ଷଷ୍ଠୀଘର ଉତ୍ସବ ଗଲା । ଏକବିଂଶ ଦିବସ ପ୍ରବେଶ ହୋଇଲା ବଶିଷ୍ଠ ଆଦି ସକଳ ବ୍ରାହ୍ମଣଗଣ । ଦଶରଥ କରାଇଲେ ନାମ କରଣ । ରାମ ନାମ ଜ୍ୟେଷ୍ଠର ଭରତ କନିଷ୍ଠ । ଶତ୍ରୁଘ୍ନ ନାମ ଦେଲେ ମୁନି ବଶିଷ୍ଠ । ସୁଲକ୍ଷଣ ଦେଖି ଲକ୍ଷ୍ମଣ ନାମ ଦେଲେ । ଶତ୍ରୁଘ୍ନ ତାଙ୍କ ସାନୁଜକୁ ବୋଇଲେ ॥ ଦିନୁଦିନୁ ବଢିଲେ ସେ ଚାରି ନନ୍ଦନ । ଦେଖି ଦଶରଥ ରାଜା ଆନନ୍ଦ ମନ ॥ ପାଳନ୍ତି ଦୋଳି ସୁତ ଗାଇଣ ଗୀତ । ବଜାନ୍ତି ଯୁବତୀ ବୀଣାବାଦ୍ୟ ନିରତ ॥ ଗୁଲୁଗୁଲୁରେ ଅଧରୁ ବହଇ ନାଳ । ଝାଳ ବିନ୍ଦୁ ଗଳିତ ଶ୍ରୀମୁଖମଣ୍ଡଳ ॥ କମଳଦଳ ଲୋଚନୁ ବହେ କଜ୍ଜ୍ୱଳ । ଝୁଲିବାରେ ଧ୍ୱନି କରେ ମେଖଳାମାଳ ॥ କୁଟିଳ କୁନ୍ତଳମାନ ମୁକୁତା ଫଳ । ବାଜେଣି ନୂପୁର ବାଜେ ଚରଣ ତଳ ॥ କରଟି ବାହୁଟୀ ହେମମୁଦେ ଛନ୍ଦଣୀ । କଟିତଟେ ପୀତାମ୍ବର ସୁମଣି ଶ୍ରେଣୀ ॥ ଆଣୁ ଆଇ ଭରା ଦେଇ ପୁଣ ଉଠନ୍ତି । କେତେବେଳେ କାନ୍ଦି ଧରଣୀରେ ପଡନ୍ତି ॥ ଯୁବତୀ ବେଢି ନଚାନ୍ତି ବଜାଇ ତାଳ । କରି ଶାବକ ମଣ୍ଡିକ କରନ୍ତି କେଳି । ଚାରି କୁମରେ ଯେ ଧୂଳିଖେଳେ ତତ୍ପର । ଲୀଳା ଗତିରେ ଆବୋରନ୍ତି ବାଲି ନଅର ॥ ପାଞ୍ଚବରଷ ପୂରନ୍ତେ ସେହି କୁମରେ । ଆରୋହଣ କଲେ ଅଶ୍ୱ-ଗଜ ନିକରେ ॥ ସୁବେଗ ବଳିଲା ଚିତ୍ତ ହୋଇଲେ ଧୀର । ସମସ୍ତ ଗୁଣେ ନିକର ବୀରଙ୍କ ବର ॥ ଶୁକ୍ଳପକ୍ଷ ଚନ୍ଦ୍ର ପ୍ରାୟେ ବଢନ୍ତି ରାମ । ଚୂଡ଼ାଦି ହେଲି

ପାଞ୍ଚ କଲେ ବ୍ରତକର୍ମ ॥ ପଢିଲେ ବେଦ ପୁରାଣ ଶାସ୍ତ୍ର ଆଗମ । ଦଣ୍ଡା ଖଣ୍ଡା ଧନୁର୍ବିଦ୍ୟା କ୍ଷତ୍ରିୟ ଧର୍ମ ॥ ବଶିଷ୍ଠଙ୍କଠାରୁ ଶିକ୍ଷା କଲେ ସକଳ । ତପ୍ତରବିରୁ ରବି ପ୍ରାୟ ତେଜ ପ୍ରବଳ ॥ ମୃଗୟା କରଣ ମୃଗମାନ ମାରନ୍ତି । ଶରଧା କରଣ ମୃଗପକ୍ଷୀ ଧରନ୍ତି ॥ ଧରନ୍ତି କଷାପୂଥରୁ କଷାଶାବକ । ମାରନ୍ତି ଶାର୍ଦ୍ଦୂଳ ଗଣ୍ଡା ଜୀବ ଅନେକ ॥ ଛୁଆସିଂହ ପ୍ରାୟ ଗଢ ଦଶେ ଲବଣ୍ୟ । ସପ୍ତମ ବରଷ ଆସି ହୁଏ ସମ୍ପୂର୍ଣ୍ଣ ॥ ନବଘନ କଶୋର ବୟସ ଶ୍ରୀରାମ । ଛବି ଦେଖି ମୁର୍ଚ୍ଛିତ ହୁଅଇ କାମ ॥ କାମଶାସ୍ତ୍ର ପଠନରେ ବଳଲା ମନ । ସୁବେଶ ଯୁବଶାରେ ନଶ୍ଚଳ ନୟନ ॥ ସଙ୍ଗତେ ଶରଧା ଶତ୍ରୁ ଶୁଣନ୍ତି ଗୀତ । ବୋଲେ ବଣି ମନସିଜ ମନରୁ ଜାତ । ୨୪ ।

—×—

## ୩୨ଶ ଛାନ୍ଦ

ରାଗ—ଦେଶାକ୍ଷ

ଏକଦିନେ ସଭାକରି ଦଶରଥ ଦଣ୍ଡଧାରୀ ବିଜେ କରିଅଛନ୍ତି ଆସ୍ଥାନେ । ବଶିଷ୍ଠ ଜାବାଲୀ ବାମଦେବ ସୁମନ୍ତ୍ର ସଙ୍ଗତେ ସଭା ଶୋଭା ଦିଶନ୍ତି ଏମାନେ ହେ । ଗାଧିସୁତ । ଏହି ସମୟେ ପ୍ରବେଶ ହେଲେ । ଦେଖିଣ ରାଜନ ହୃଷ୍ଟ ମାନ୍ୟକରି ମୁନିଶ୍ରେଷ୍ଠ ବସିବାକୁ ଦିବ୍ୟାସନ ଦେଲେ ସେ ॥

ବିଶ୍ୱାମିତ୍ର ତପୋଧନ ଅଯୋଧ୍ୟାପୁର ରାଜନ ବହୁବିଧିରେ କଲେକ ପୂଜା । ଏ ମୋହର ବେନି ନେତ୍ର ଅଜ ହୋଇଲା ପବିତ୍ର କୃତାଞ୍ଜଳି ହୋଇ କହି ରାଜ ହେ । ମୁନିବର । କି କାରଣେ କଲେ ଆଗମନ । ଏ ମୋର ପାତକୀ କାୟ ମୋଠାରେ ଏଡ଼େ ସଦୟ ପବିତ୍ର ହୋଇଲା ମୋ ଭବନ ହେ ॥

ବୋଲନ୍ତି ସେ ଯୋଗୀଶ୍ୱର ଶୁଣ ଆହେ ନୃପବର ସିଦ୍ଧବନେ ସର୍ବ ମୁନିମାନେ । ଆରମ୍ଭ କରନ୍ତେ ଯାଗ ଅସୁରେ କରନ୍ତି ଭୋଗ ଭାଙ୍ଗିଲେ ସେ ଆମ୍ଭ ଯଜ୍ଞସ୍ଥାନ ହେ । ନୃପବର । ରାମ ଲକ୍ଷ୍ମଣଙ୍କୁ ମୋତେ ଦେବ ହେ । ମାରିବେ ଅସୁରକୁଳ ଶୁଣ ହେ ନୃପ ଶାର୍ଦ୍ଦୂଳ କ୍ଷିତିରେ ବହୁଯଶ ପାଇବହେ ॥

ଏମନ୍ତ ଶୁଣି ରାଜନ ମଣିଲେ ବଜ୍ରପତନ ବିକଳ ହୋଇଲା ତାଙ୍କମନ । ଦଶଦିଗକୁ ଅନାଇ ଖରନିଶ୍ୱାସ ପକାଇ ବେଳୁଁ ବେଳୁଁ ହୋଇଲେ ଅଜ୍ଞାନ ସେ । ନୃପବର । ମୋହ ତେଜ ମହୀରୁ ଉଠିଲେ । ଭୟରେ ହୋଇ କାତର ବହଇ ନୟନୁ ନୀର ବଶିଷ୍ଠଙ୍କ ମୁଖକୁ ଚାହିଁଲେ ସେ ॥

ବୋଲନ୍ତି ବଶିଷ୍ଠ ଯତି ଶୁଣ ଆହେ ମହୀପତି ରାମଚନ୍ଦ୍ର ଦିଅ ମୁନି ସଙ୍ଗେ । ଶୋକ ମନୁହରି ରାୟ ଏଥକୁ ନକର ଭୟ ମାରିବେ ଅସୁର ରଣରଙ୍ଗେ ହେ । ନୃପବର । ନ ଦେଲେ ହୋଇବ ସର୍ବନାଶ । ତୁମ୍ଭର ରାମ କୁମର ସ୍ୱୟଂ ହରି ଅବତାର ପାଇବ ଏଥିରୁ ବହୁ ଯଶ ହେ ॥

କହନ୍ତି ସେ ନୃପବର ଏ ମୋର ବେନି କୁମର ନ ଜାଣନ୍ତି ଧନୁଶର ଧରି । ଜନମାଙ୍କ ସୁଖସୀମା ଆମ୍ଭ ନୟନ ପ୍ରତିମା କେବଳ ନେଉଛ ତାହା ହରି ହେ । ମୁନିବର । ରାମଲକ୍ଷ୍ମଣଙ୍କ ଭୁଜ ଧରି । ପଡ଼ିଲେ ମୁନିଙ୍କ ପାଦ ଶୋକେ ହୋଇ ଗଦଗଦ ବୋଲେ ଋଷି ସମର୍ପିଲେ ହରି । ୬ ।

—×—

## ୩୩ଶ ଛାନ୍ଦ

ରାଗ—ଯମକ

ପିତାଙ୍କ ବିକଳ ଦେଖି ଶ୍ରୀରାମ ଲକ୍ଷ୍ମଣ । ପ୍ରବୋଧ କରି କହନ୍ତି ଧରି ଧନୁବାଣ । ମାତାଙ୍କଠାରୁ ମେଲାଣି ହୋଇ ବେନି ଭାଇ । ମୁନି ସଙ୍ଗେ ଧୀରେ ଧୀରେ ଗଲେ ପଥ ବାହି ॥ ଆଗେ ବିଶ୍ୱାମିତ୍ର ମୁନି ପଛେ ବେନିଜନ । ପ୍ରବେଶ ହୋଇଲେ ଯାଇ ନିବିଡ଼କାନନ । ଦେଖିଲେ ଅତି ସୁନ୍ଦର ମହାବନ ଘୋର । ବିଷମ କହେ ଦିବସେ ଯେହ୍ନେ ଅନ୍ଧକାର । ୪ ।

—×—

## ୩୪ଶ ଛାନ୍ଦ ତାଡ଼କା ବଧ

ରାଗ—କାମୋଦୀ

ରାମ ଲକ୍ଷ୍ମଣ ବେନି, ଘେନି କୌଶିକ ମୁନି, ସରଯୂ ପାରି ହୋଇ ଗଲେ । ଗହନ ଗିରିମାଳ, ବିବିଧ ତରୁକୁଳ, ମଧ୍ୟରେ ପ୍ରବେଶ ହୋଇଲେ ହେ । ସୁଜ୍ଞଜନେ । କାମେଶ୍ୱର ସନ୍ନିଧେ ମୁନି । ପାଶେ ବସାଇ ଭାଇ ବେନି । ଦେଲେ କୋଦଣ୍ଡ ଦୀକ୍ଷା ସମସ୍ତ ମନ୍ତ୍ରଶିକ୍ଷା କରାଇ ଧନୁର୍ବେଦ ମୁନି ସେ ॥ ସେ ଦିନ ସୁଖେ ତହିଁ ରହି ନିଶି ପୁହାଇ ପ୍ରାତରୁ ସ୍ନାନ ସନ୍ଧ୍ୟା କଲେ । ବେନି ଭାଇଙ୍କୁ ଘେନି, ଆନନ୍ଦ ହୋଇ ମୁନି ପଥ ଅନୁସରଣ କଲେ ହେ । ସୁଜ୍ଞ ଜନେ । ଭେଟିଲେ ମହାଘୋର ବନ । ମୁନି କହନ୍ତି ଛନ୍ନ-ଛନ୍ନ । ମୁନି ଭରସା ପାଇ, ଧନୁରେ ଗୁଣ ଦେଇ ଟଙ୍କାରେ କଲେ ଘନ ଘନ ସେ ॥ ଗର୍ଜନ ଶୁଣି କରି, ଗର୍ଜି ତାଡ଼କାସୁରୀ, ଅନାଇ ରୋଷେ କଉପାଶ । ତରୁ ଆପୂର୍ଣ୍ଣ ଘେନି, ବୁଲାଇ ନେତ୍ରବେନି, ପଥରେ ହୋଇଲା ପ୍ରବେଶ ହେ । ସୁଜ୍ଞଜନ । ଦଶନେ ଗୃପିଣ ଅଧର । ତୁଣ୍ଡରୁ ଗଳଇ ରୁଧିର । କେଶ କରି ମୁକୁଳ, ଟେକି ବାହୁଯୁଗଳ; ଦିଶଇ ମହା ବିକରାଳ ହେ ॥ ରାମସଙ୍ଗେ ଅସୁରୀ, ବହୁ ସମର କରି, ମୁନିଙ୍କି କରୁଥିଲା ଭକ୍ଷ । ତାହା ଜାଣି ଶ୍ରୀରାମ ଧନୁରେ ସନ୍ଧି ଗୁଣ ପ୍ରହାରିଲେ ଅସୁରୀ ମୁଖ ହେ । ସୁଜ୍ଞଜନେ । ବାମ ଶର ତା ମୁଖେ ପଡ଼ି । ସ୍ୱର୍ଗେ ଗଲା ବିମାନ ଚଢ଼ି । ମହା ଗର୍ଜନ କରି ମୃତ୍ୟୁପିଣ୍ଡ ତାହାରି, ପଡ଼ିଲା ବନ ଗିରି ମାଡ଼ି ହେ । ସିଦ୍ଧବନେ ପ୍ରବେଶ ରାମ ଦେଖି ହରଷ, ହୋଇଲେ ସର୍ବ ମୁନିମାନେ । ଉଚ୍ଚାରିଲେ ନିଗମ, ଯେ

ବିଧି ଯଜ୍ଞ କର୍ମ, ଜଗିଲେ ରାମ ସାବଧାନେ ହେ । ସୁଜ୍ଞଜନେ । ମାତା ମରଣ ଜାଣି ସୁତେ । କ୍ରୋଧରେ ଅଇଲେ ତ୍ୱରିତେ । ଘେନି ଅସୁର ସୈନ୍ୟ, ଋଷି ତପ ଅରଣ୍ୟ, ପ୍ରବେଶ ହୋଇଲେ ସେ ସର୍ବେ ହେ । ଶ୍ରୀରାମ ମହାବାହୁ, ଦୁରୁ ଦେଖି ସୁବାହୁ, ମାରିଚ ସଙ୍ଗତରେ ଘେନି । ରାମ ଲକ୍ଷ୍ମଣଙ୍କର, ସମ୍ମୁଖରେ ସମର, କଲେକ ଆସି ଘାରି ବେନି ହେ । ସୁଜ୍ଞଜନେ । ଶ୍ରୀରାମ ଶର କି କେଶରୀ । ବିଦାରିଲା ଅସୁର କରି । ଅସୁରବଳ ତୃଣ ଶର କି ହୁତାଶନ ଜଣେହେଁ ନ ଗଲେ ଉବୁରି ଯେ ॥ ଭ୍ରାତୃ ମରଣ ଗୃହିଁ, ମାରିଚ ଧାଇଁ ଧାଇଁ, ଶ୍ରୀରାମ ନିକଟେ କହିଲା । କମ୍ପା ଆମ୍ଭଙ୍କୁ ମାରି, ଧାତା ଯାକୁ ନ ପାରି, ସେ ଋଷି ଖାଇବୁଁ ବୋଇଲା ହେ । ସୁଜ୍ଞଜନେ । ଶ୍ରୀରାମ ଶୁଣି ତା ଉତ୍ତର । ବୋଇଲେ ଦେଖି ଧନୁଶର । ଏମନ୍ତରେ ମାରିବୁଁ, ତୁମ୍ଭଙ୍କୁ ଯେ ନାଡ଼ିବୁଁ, ଦେଇଅଛନ୍ତି ବେଦବର ହେ ॥ ଶ୍ରୀରାମ ବାକ୍ୟ ଶୁଣି, ମୁଖୁଁ ନ ସ୍ଫୁରେ ବାଣୀ, ତକ୍ଷଣେ ହୋଇଲା ବୃଷଭ । ତାକୁ ପ୍ରାଣେ ନ ମାରି; ହାବଡ଼ା ଶରେ କରି, ଫିଙ୍ଗିଣ ଦେଲେକ ରାଘବ ହେ । ସୁଜ୍ଞଜନେ । ଅସୁରମାନେ କ୍ଷୟ ଗଲେ । ମୁନିମାନେ ସେ ଯଜ୍ଞ କଲେ । ବୋଇଲେ ଘାନ ବସି, ଦେବତାମାନେ ଆସି, ଆକାଶୁଁ ପୁଷ୍ପବୃଷ୍ଟି କଲେ ହେ । ୮ ।

—x—

## ୩୪ଶ ଛାନ୍ଦ ଅହଲ୍ୟା ନିସ୍ତାରଣ

ରାଗ—ଭୈରବ

କଉଶିକ ସଙ୍ଗେ ରାମ । ଗଲେ ଗଉତମ ଗ୍ରାମ । ଦେଖିଲେ ତାଙ୍କୁ ଶ୍ରୀରାମ । ପଡ଼ିଛି ପାଷାଣ ହେମ ॥ ତା ପରେ ଉଠନ୍ତେ ରାମ । ବାହାରି ହୋଇ .. ହେମ-ଗଉତ୍ସ ନାରୀ ଉତ୍ତମ । ଯୁବତୀ ଅହଲ୍ୟା ନାମ ॥ ଶ୍ରୀରାମଙ୍କ ବେନିପାଦ ପାଦୁକ-ବକ୍ଷକୁ ଗଦ । ଗୁଡ଼ିଲା ଶାପ ପ୍ରମାଦ । ହୋଇଲା ମହା ପ୍ରମୋଦ କୃତାର୍ଥ ରମଣ ବେନି । ଦେଖି ଦଶରଥ ପୁତ୍ର । ପବିତ୍ର ହୋଇଲା ଗାତ୍ର । ଲୀ ଶ୍ରୀଚରଣ ମାତ୍ର ॥ ଫଳ ଜଳ ପୁଷ୍ପ ଘେନି । ପାଦକୁ ପୂଜେ କାମିନୀ । ବୋଲେ ଋଷି ସଙ୍ଗେ ଘେନି । ମିଥିଳା ଗଲେକ ମୁନି । ୫ ।

—❋—

## ୩୭ଶ ଛାନ୍ଦ

ରାଗ—ବରାସ ମଙ୍ଗଳ ଗୁଜ୍ଜରୀ

ଶ୍ରୀରାମ ପଚ୍ଛରନ୍ତି ହେ ମୁନେ କହ ମୋତେ । ନାରୀ ଅବା ପାଷାଣ ହୋଇଲା କି ନିମନ୍ତେ । ଘୋଷା । ମୁନି କହନ୍ତି ଶ୍ରୀରାମ ଶୁଣ ହେ ସନ୍ଦେଶ । ଶାପ ସକାଶୁଁ ହୋଇଲା ଏମନ୍ତ ଭବିଷ୍ୟ ॥ ଏକ ଦିନେ ଗଉତମ ତପ ..

ଗଲେ । ପୁରନ୍ଦର ଗଉତମ ଶରୀର ଧଇଲେ ॥ ପ୍ରବେଶ ହୋଇଲେ ଗଉତମଙ୍କ ସଦନ । ରମିଲେ ସେ ଋଷିନାରୀ ଯୁବତୀ ରତନ ॥ ବାହାର ହୁଅନ୍ତେ ପୁରୁଁ ଦେଖିଲେକ ଋଷି । ଶାପ ଦେଲେ ତା ବୃଷଣ ପଡ଼ିଲାକ ଖସି ॥ ଅହଲ୍ୟାନ୍ତେ ଦେଖିଣ ଦେଲେକ ଏହି ଶାପ । ରାମପାଦ ଲାଗିଲେ ସେ ଯିବ ତୋର ପାପ ॥ ଏବେ ରାମ ଅହଲ୍ୟାକୁ କଲ ଯେ କାରଣ । ବୋଲେ ବିଶି ନମସ୍କରଇ ଲାଗି ଶ୍ରୀଚରଣ ।୬।



## ୩୭ଶ—ଛାନ୍ଦ

ରାଗ—ମୁଖାରୀ

ପଥ ଗମନରେ ଦିନ ଶେଷ । କଉଶିକୀତୀରେ ପରବେଶ ॥
ରାମ ପୁଚ୍ଛନ୍ତି କେବଣ ଦେଶ । ଏଥି ନୃପତିର ନାମ କିସ ॥
ମୁନି ବୋଲନ୍ତି ଶୁଣ ଶ୍ରୀରାମ । ଆମ୍ଭେ କହିବା ଏଥିର ନାମ ॥
କୁଶକେତୁ ସେ ଯେ କୁଶନାଭ । କୁଶବ୍ରହ୍ମାଙ୍କଠାରୁ ସମ୍ଭବ ॥
କୁଶନୃପର ଶତ ନନ୍ଦିନୀ । ଦିବ୍ୟସୁନ୍ଦରୀ ଜଗନ୍ମୋହିନୀ ॥
ଦେଖି ମୋହିତ ହେଲେ ମରୁତ । ବିଭା ହେବାକୁ କଲେକ ଚିତ୍ତ ॥
କନ୍ୟାମାନେ ତୋଟାପୁରେ ଥିଲେ । ତାଙ୍କ ପାଶକୁ ବୋଲିଣ ଗଲେ ॥
ଆମ୍ଭଙ୍କୁ ବର ବୋଲି ବୋଇଲେ । ଜଣେହେଁ ସ୍ୱୀକାର ନ କଲେ ॥
ତେଣୁ କ୍ରୋଧ କରିଣ ସମୀର । କୁଜ କଲେ କନ୍ୟାଙ୍କ ଶରୀର ॥
ତେଣୁ କୁଜକନ୍ୟା ଗଲେ ଦେଶ । ଗାଧି ଅଟନ୍ତି ତାହାଙ୍କ ଅଂଶ ॥
ତାଙ୍କଠାରୁ ଅବତାର ଆଂଭେ । ଯାହା ପଚାରିଲ ରାମ ତୁଂଭେ ॥
ଆଂଭ ଭଗ୍ନୀ କଉଶିକୀ ନଦୀ । ବହୁ ଅଛନ୍ତି ପାତାଳ ଭେଦି ॥
କୁଶଅଂଶ ଆଂଭେ କଉଶିକ । ଏହା ବୋଲନ୍ତି ସକଳ ଲୋକ ॥
ଶୁଣି ସନ୍ତୋଷ ରଘୁନାୟକ । ତହିଁ ବଞ୍ଚିଲେ ରଜନୀ ଏକ ॥
ପ୍ରାତୁଁ ନିତ୍ୟକର୍ମ ବଢ଼ାଇଲେ । ମୁନି ଆଗେ ପଥ କଢ଼ାଇଲେ ॥
ଗଙ୍ଗାତୀରେ ହୋଇଲେ ପ୍ରବେଶ । ବୋଲେ ବିଶି ଗଙ୍ଗାଦେଖି ତୋଷ



## ୩୮ଶ ଛାନ୍ଦ

ରାଗ—ଦକ୍ଷିଣ କାମୋଦୀ

ଗଙ୍ଗାକୂଳେ ଶ୍ରୀରାମ ଲକ୍ଷ୍ମଣ ମୁନି । ଡାକନ୍ତି ଧୀବର ଆସନାବ ଘେନି ॥ ନ କର ବିଳମ୍ବ ଯିବା ପଥ ଦୂର । ନ ଶୁଣଇ ରାମ ବାଣୀ ସେ ଧୀବର ॥ ଦେଖି ଶ୍ରୀରାମ ବୋଲନ୍ତି ଏ କି ରୀତି । ବଧିର ହେଲୁ କି ଏବେ ତୋର ଶ୍ରୁତି ॥

ଶୁଣି ଧୀବର ବୋଲଇ ରଘୁବୀର । ବଧିର ନୁହଇ ବୀର ଶୁଣୁଅଛୁ ॥ ତୋ ପାଦର ବାଲି ଲାଗି ରଘୁପତି । ପଥରେ ପଥର ହୋଇଛୁ ଯୁବତୀ ॥ ନ ପୁଣ ନଉକା ମୋର ସେହିମତି । ନାରୀ କା ହେଲେ ମରିବ ଦୁଃଖେ ଅତି ॥ ଏତେ ବୋଲି ଗଙ୍ଗାନୀର କରେ ଧରି । ପାଦ ପଖାଳିଲା ଅତି ଯତ୍ନ କରି ॥ ଯତନ କରି ବସନେ ପୋଛି ଦେଲା । ନାବେ ବସାଇ ରାମଙ୍କୁ ପାରିକଲା ॥ ଜାହ୍ନବୀ ଶୋଭା ଦେଖନ୍ତି ରଘୁପତି । ବୋଲେ ଗୋପୀ ସକଳ କହନ୍ତି ମୁନି ॥

—×—

## ୩୯ଶ ଛାନ୍ଦ

ରାଗ- ଭାଟିଆରୀ

ମୁନି ବୋଲେ ଗଙ୍ଗା ରାମ । ଦିଶନ୍ତି ଅତି ଉତ୍ତମ ॥
ଚତୁର୍ଦ୍ଦଶ ଲୋକେ ବିଦିତ ହୋଇ ପତିତପାବନୀ ନାମ ହେ ॥
ସାଗର ନାମେ ରାଜନ । ଷାଠିଏସହସ୍ର ନନ୍ଦନ ।
ଦହନ ତାଙ୍କୁ କରୁଥିଲେ କୋପରେ କପିଲଙ୍କର ନୟନ ହେ ॥
ଭଗୀରଥ ତପୋବଳେ । ବିଜେକଲେ ରବିତଳେ ।
ସଗରସୁତଙ୍କୁ ମୁକତ କରିଣ ସଙ୍ଗମ ସାଗର ଜଳେ ହେ ॥
ତୁମ୍ଭର ଚରଣ ନୀର । ଅଭିଷେକ ଶିବଶିର ।
ଜାହ୍ନବୀର ଜଳ ଏ ତୁମ୍ଭ ବଂଶର କୀରତ୍ତି ରଘୁବୀର ହେ ॥
ଶୁଣିକରି ସ୍ନାନ କଲେ । ରାମ ତୃପତ ହୋଇଲେ ।
ବୋଲେ ଋଷି ନଶି ସେଠାରେ ପୁହାଇ ମିଥିଳାପୁରକୁ ଗଲେ ହେ ॥

—×—

## ୪୦ଶ ଛାନ୍ଦ ସୀତା ସ୍ୱୟମ୍ବର

ରାଗ—ରୈଶ୍ୱୀ

ଶୁଣ ହେ ସୁଜନଜନ ମିଥିଳାପୁର ରାଜନ ଆଜ୍ଞାଦେଲେ ସତାନନ୍ଦ ମନ୍ତ୍ରୀଙ୍କୁ ଗୃହିଁ । କନ୍ୟା ଅନୁରୂପେ ନରବରଙ୍କୁ ବରଣ କରି ସୀତାଙ୍କୁ ବିବାହ ବେଗେ କରିବାପାଇଁ । ଶୁଣି ସତାନନ୍ଦ ଚଳିଲା । ଦେଶେ ଦେଶେ ରାଜାଙ୍କୁ ନିମନ୍ତ୍ରଣ କଲା ॥ ବିଦର୍ଭ କର୍ଣ୍ଣାଟ ଭୋଟ ଆବିର ଯେ ମରହଟ୍ଟା ଅଙ୍ଗ ବଙ୍ଗ କଳିଙ୍ଗ ଭୂପାଳ ନେପାଳ । କାଶ୍ମୀର ଯେ କନାଉଜ ମାଳବ ମଗଧରାଜ ମ୍ଳେଚ୍ଛ ମଧ୍ୟଦେଶ ଆଦି କୁରୁ-ପଞ୍ଚାଳ । ଏହା ସବୁ କହିବା କେତେ । ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣ ଯେତେ ॥ ବାରତା ପାଇଣ ଭୂପେ ସାଜି ସୈନ୍ୟ ଯେଝା ରୂପେ ମିଥିଳା କଟକେ ଯାଇଁ ପ୍ରବେଶ ହେଲେ । ଯେଝା ଅନୁରୂପେ ମାନ୍ୟ କଲେ ଜନକ

ରାଜନ ସଭାରେ ନୃପମାନଙ୍କୁଟେ ବିଜୟ କଲେ । ପୁଚ୍ଛିଲେ ଜନକଙ୍କୁ ରୁହିଁ । ଲଙ୍କେଶ୍ୱରଜା ବରଣ ହେବ କଲ କାହିଁପାଇଁ ॥ କହନ୍ତି ଜନକ ନୃପ ଅଛି ମୋର ଶିବଚାପ ତାହାକୁ ଯେ ନିଜ ଭୁଜବଳେ ତୋଳିବ । ଅଛଇ ମୋର ଦୁହିତା ନାମ ତାର ଅଟେ ସୀତା ନିଶ୍ଚୟ ତାହାକୁ ସେ ତ ବିବାହ ହେବ । ଶୁଣି ବାହ୍ୟଗିର ରାଜନ । ଧନୁ ତୋଳିବାକୁ ସେ ଉଠିଲା ବହନ ॥ ଫିଟାଇଲେ ଧନୁଘର ଦେଖନ୍ତେ ସେ ନୃପବର ଗ୍ରାଗଲ ଫଳକୁ ଯେହ୍ନେ ଶାର୍ଦ୍ଦୂଳ ଝାମ୍ପେ । ସେହିପରି ଧାଇଁ ଧାଇଁ ଭୂମିରେ ପଡିଲା ତହିଁ ବାତେ ରମ୍ଭା ପରି ଧନୁ ତରାସେ କମ୍ପେ । ବାହୁଡ଼ି ସଭାରେ ପ୍ରବେଶ । ପ୍ରତିଜ୍ଞା କରି ଉଠିଲା ଲବଣଶିଷ ॥ ବେନି ନଗେ କର ଦେଇ ଜନକ ମୁଖକୁ ରୁହିଁ ॥ କି କହିବି ତୋତେ ବାମଭୁଜେ ଫିଙ୍ଗିଦେବି ଏ ଶରାସନ । ଏତେ ବୋଲି ବୀର ଧାଇଁଲା । ଧନୁ ତେଜ ଲାଗନ୍ତେ ସେ ତଳପଡ଼ିଲା । ତାହା ଦେଖି କୋପମୂର୍ତ୍ତି ଡାହାଳ ଦେଶାଧିପତି ଆଗୁସାର ହୋଇଣ ସେ ବେଗେ ଧାଇଁଲା । ବାହାସ୍ଫୋଟ ମାରି ବୀର ସମ୍ବୋଧେ କହଇ ଗିର କାହିଁଅଛି ଧନୁ ତୋର ଦେଖା ହେବ ଭଲ । ଶୁଣି ସତାନନ୍ଦ କହଇ । ତୁ କିସ ତୋଳିବୁ ଧନୁ ଯାଅ ପଳାଇ । ସତାନନ୍ଦ ବାଣି ଶୁଣି କନଉଜ ନରମଣି ସଭାକୁ ଅନାଇ ସେ ଯେ କୋପେ କହିଲା । କାହିଁ ଶିବ ସରାସନ ଆଣ ଜନକ ରାଜନ ନିଶ୍ଚେ ତୋ କୁମାରୀ ଆଜ ମୋର ହୋଇଲା । ଏତେ କହି ଧାଇଁଲା ଖରେ । ପ୍ରବେଶ ହେଲା ଯାଇ ଧନୁଥିବା ଦ୍ୱାରେ ॥ ଫିଟାଇ ସେ ଘରଦ୍ୱାର ଧନୁ ଦେଖିଣ କାତର ତେଜରେ ରହି ନ ପାରି ଗଲା ପଳାଇ । ତାହା ଦେଖି ରାଜାଗଣ ମୁଖେ ନ ... ରେ ବଚନ ତଳକୁ ମୁଖ ପୋତିଲେ ମଉନ ହୋଇ । ସଭା ନିଶବଦ ହୋଇଲା । ରାମପାଦ ଶରଣ ବିକ୍ରମ ବୋଇଲା । ୯ ।

## ୪୧ଶ ଛାନ୍ଦ

ରାଗ—ମଙ୍ଗଳଗୁଜ୍ଜରୀ

ଶ୍ରୀରାମ ଲକ୍ଷ୍ମଣ ବେନି ମିଥିଳା ପ୍ରବେଶ । ଦେଖିଣ କାମିନୀମାନେ କାମରେ ଅବଶ ଯେ ॥ ଏ ପରା ରାମ ଲକ୍ଷ୍ମଣ ଏହି ପରା ମୁନି । ଏ ପରା ତାଡ଼କା ସୁବାହୁ ମାରିଲେ ବେନି ଗୋ ॥ ଯାଙ୍କ ପାଦ ଲାଗି ପରା ପାଷାଣ ନିବେଶ । ରୁହିଁବା ମାନଙ୍କେ ହୁଅନ୍ତିଅଛି ଆମ୍ଭ ମତି ଗୋ ॥ ଦେଖିଣ ଜନକ ରାଜା କଲେ ବହୁ ପୂଜା । ରୂପ ଦେଖି ଚକିତ ହୋଇଲେ ସର୍ବ

ରାଜା ଯେ ॥ ବସିଲେ ସଭାର ମଧ୍ୟେ ହୋଇ ଚେନ୍ତ ତୁଷ୍ଟି । ବୋଲେ ବଶି ପଡ଼ିଲା ଭୂମିସୁତାଙ୍କ ଦୃଷ୍ଟି ଯେ । ୫ ।

—※—

## ୪୨ଶ ଛାନ୍ଦ

ରାଗ—ଦକ୍ଷିଣ କାମୋଦୀ

ଶ୍ରୀରାମ ମଧୁର ମୂର୍ତ୍ତି ଦେଖି ରମା । ପଚାରନ୍ତି ସଖୀଙ୍କି ଜନକଜେମା ॥ କେବଳ ଦେଶ ନୃପତି କାହାସୁତ । ଦେଖିଲାବେଳୁ କାତର ହୁଏ ଚିତ୍ତ ॥ ତନୁ ନିନ୍ଦଇ ନବୀନ ଦୁବାଦଳ । କ୍ଷୀଣମଧ୍ୟା ସୁବିପୁଳ ବକ୍ଷସ୍ଥଳ ॥ ସୁନ୍ଦର ନାସିକା ନିନ୍ଦେ ତିଳଫୁଲ । ଜବାପୁଷ୍ପ ଅଧରକୁ ନୁହେ ତୁଲ ॥ ତ୍ରିଭୁବନ ଜୟ କରି ମାର ବୀର । ନୟନେ ରଖିଲା କି କୁସୁମ ଶର ॥ କରିକର ପ୍ରାୟ ଦେଖ ବାହୁ ବେନି । ଶିବଧନୁ ସତେ କି ପାରିବେ ଘେନି ॥ କି ଜାଣି ବିଧାତା କି କରିବ ସଖି । ସ୍ପନ୍ଦୁଅଛି ତ ମୋହର ବାମ ଆଖି ॥ ଧନୁ ଭାଙ୍ଗି ବିଭା ମୋତେ ହେବେ ପରା । ବରିବାକୁ ମୋ ମନ ହେଉଛି ଚୋରା ॥ ଏଡ଼େ ଭାଗ୍ୟ ସଖି କି ମୁଁ ଅଛି କରି ! ଗଗନ ଚନ୍ଦ୍ର ଲୋଡ଼ଇ ହସ୍ତେ ଧରି ॥ ଦାରୁଣ ପିଅର ମୋର କଲେ ସତ୍ୟ । ଯେଉଁ ଧନୁ ଧରି ନ ପାରିଲେ ଦୈତ୍ୟ ॥ ଚିହାନ୍ତି ଜଗତ୍ରେ ସବୁ ସଖୀ । ବୋଲେ ବଶି ପିଛଣ୍ଡା ନ ପଡ଼େ ଆଖି । ୧୧ ।

—※—

## ୪୩ଶ ଛାନ୍ଦ

ରାଗ—ଚଉତିଶାବାଣୀ

ଜନକ ମହାଋଷି ହସି କହନ୍ତି ରାଜସଭାକୁ ଅନାଇଁ ।
ସମସ୍ତ ମହୀପତିମାନେ ବସିଛ ମସ୍ତକ ପୋତି କପାଇ ବା ।
ଆଉ ମହୀରେ ନାହାନ୍ତି ବୀର । କେହ୍ନି ଧନୁରେ ନ ଦେଲେ କର । ଘୋଷା ।
ରାବଣ ସହସ୍ରାର୍ଜ୍ଜୁନ ବାଣାସୁର ଆଉ ବୀର ଛନ୍ତି ଯେତେ ।
ଧନୁ ନ ଭାଙ୍ଗି କନ୍ୟାକୁ ନେବ ବୋଲି ବିଚାରିଅଛ କି ଚିତ୍ତେ ବା ।
ଗନ୍ଧର୍ବ କିନ୍ନର ଯକ୍ଷ ନାଗ ନର ଇନ୍ଦ୍ର ଆଦି ଦିଗପାଳ ।
ଋଣ୍ଡାରୁ ବ୍ରାହ୍ମଣ ପରଯନ୍ତେ ହେଉ ଯାହା ଅଙ୍ଗେ ଥିବ ବଳ ବା ॥
ଯେ ଏ ଶିବଧନୁ ଭାଙ୍ଗିବ ସୁତନୁ ସୀତା ନିଶ୍ଚେ ପ୍ରାପ୍ତ ହେବ ।
ଏହି ସତ୍ୟଗୀର ଅଟଇ ମୋହର କେବେହେ ଆନ ନୋହିବ ବା ॥
ଜନକଙ୍କ ବାରତା ଶୁଣି ନରପତିମାନଙ୍କ ମଉନ ହୋଇଲେ ।
ବିଶ୍ୱାମିତ୍ରଙ୍କୁ ଚାହିଁଣ ରାମଚନ୍ଦ୍ର ଧନୁ ଦେଖିବା ବୋଇଲେ ବା ॥

ଶୁଣିଣ ଜନକ ନୃପତି ସଭାରୁ ଶ୍ରୀରାମଚନ୍ଦ୍ରଙ୍କୁ ନେଲେ ।
ବୋଲେ ବଶି ଧନୁ ମଞ୍ଜୁଷା ଅଣାଇ ଶ୍ରୀରାମଙ୍କୁ ଦେଖାଇଲେ ବା । ୫ ।

—×—

## ୪୪ଶ ଛାନ୍ଦ—ଧନୁଭଙ୍ଗ

ରାଗ—ଆନନ୍ଦ ଭୈରବ

ଧନୁ ଧରି ରାମ ହୋଇଲେ ଉଭା । ଲକ୍ଷେ ନୃପତିରେ ହସନ୍ତି ଶୋଭା । ବାମଦେବ କୋଦଣ୍ଡ ହୋଇଲା ବେନିଖଣ୍ଡ । ଧ୍ୱନି କଲା ପ୍ରଚଣ୍ଡ । ମୋହେ ସକଳ ପିଣ୍ଡ । ଘୋଷା । ଲକ୍ଷ୍ମଣ କରେ ନେଇ ଧନୁଶର । ରାଜସଭାକୁ ବୋଲନ୍ତି ଉତ୍ତର ॥ ପାରିଲେ ସକଳେ ଧନୁକୁ ଧର । ଧନୁ ଭାଙ୍ଗି ଯଶ ରଖ ମନ୍ତ୍ର ॥ ଶୁଣି ରାଜାମାନେ ରାମ ଉତ୍ତର । ଭୂମିକି ଚାହିଁ ନମ୍ର କଲେ ଶିର ॥ ବାମକରେ ଧନୁ ଧରନ୍ତି ରାମ । ଚଢ଼ାଇ ଟଙ୍କାରିଲେ ଗୁଣଧାମ ॥ ଯେତେ ଲଉଁଥାଇ ଶର ଆସନ । ତେତେ ଲଉଁଥାଇ ମୁକୁଟମାନ ॥ ଯେତେବେଳେ ରାମ ଟାଣିଲେ ଗୁଣ । ଟାଣିଲେ କି ସବୁ ନୃପତି ପ୍ରାଣ ॥ କର୍ଣ୍ଣସରିକି ଆଣିଲେ ଓଟାରି । ହସ୍ତୀକି ଯେହ୍ନେ ଧଇଲା କେଶରୀ ॥ ଯେବେଳେ ଭଗ୍ନ କଲେ କୋଦଣ୍ଡ । ହସ୍ତୀ ଭାଙ୍ଗିଲା କି ଏ ଇକ୍ଷୁଦଣ୍ଡ ॥ ନୃପତିଙ୍କର ଯେତେ ଆଶା ଥିଲା । ଧନୁ ସଙ୍ଗତେ ସେ ଭଗ୍ନ ହୋଇଲା ॥ ଧନୁ ଭାଙ୍ଗି ରାମ ବିଜେ ଆସ୍ଥାନେ । ଦେଖିଣ ବିରସ ନୃପତିମାନେ ॥ କନ୍ୟାକୁ ଆଣି ମୁଦୁସୁଲ୍ଲି ଗଲେ ବୋଲେ ବଶି ଜନକ ଆଜ୍ଞା ଦେଲେ ॥

—×—

## ୪୩ ଶ ଛାନ୍ଦ

ରାଗ—କୁମ୍ଭକାମୋଦୀ

ଧନୁ ଭଗ୍ନ ଦେଖି ଜାନକୀର ଭ୍ରୁରୁ ମଧ୍ୟମା ସ୍ଫୁରିଲା । ଏହି ସମୟରେ କୁସୁମଧନୁ କି ଧନୁଅମଣ୍ଡିଲା ॥ ଶମ୍ଭୁ କୋଦଣ୍ଡ ବେନିଖଣ୍ଡ ଦେଖିଣ ହୋଏ କି ଆନନ୍ଦ । ମଳୟ ପବନ ଲାଗିଲେ ଯେସନେ ପଲ୍ଲବେ ମାକନ୍ଦ । ରାମଭୁଜଦଣ୍ଡ ପ୍ରଚଣ୍ଡ ଦେଖିଣ ହରଷକାତର ॥ କୁସୁମ ଶର କୁଶୁମଶର ଭେଦେ ମରମ ଭିତର ॥ ସଖୀ ଜାଣି ବୋଲି ନ ଡର ତରୁଣୀ ଦେଖ ଦ୍ୱିଜମଣି । କରଣ ଲାଗିଣ ଫାଟଇ ଧରଣୀ ଆନନ୍ଦ ନଳିନୀ ॥ ଯେବଣ ଭ୍ରମର ଶୁଷ୍କ ତରୁବର ବଦନେ ଫୋଡ଼ଇ । ସେ ପୁଣି ମାଳତୀ କୁସୁମ ଚୁମ୍ବିଲା ମାତେକେ ଲୁଚଇ ॥ ସଖୀ ବାଣୀ ଶୁଣି ସରୋଜଲୋଚନା ହୋଇଲେ ପ୍ରମୋଦ । ବୋଲେ ବଶି ରାମଚନ୍ଦ୍ର ଦେଖି ଫୁଟେ ଜାନକୀ କୁମୁଦ । ୬ ।

—×—

## ୪୭ଶ ଛାନ୍ଦ

ରାଗ—ଆନନ୍ଦଭୈରବ

ସୁନ୍ଦରୀ ସୁବେଶ କରି ସହଚରମାନେ । ଜଗତୀରୁ ଓହ୍ଲାଇ ଆଣନ୍ତି ସୁଖାସନେ । ମନ ହେଉଛି ଆନନ୍ଦ । ରବି ଦେଖି ପ୍ରଫୁଲ୍ଲ କି ନବ ଅରବିନ୍ଦ । ଘୋଷା । ରାଜସଭା ନିକଟକୁ ଓହ୍ଲାଇ ଆଣନ୍ତି । ବେଢ଼ି ସମସ୍ତ ଯୁବତୀ ହୁଳହୁଳୀ ଦ୍ୟନ୍ତି ॥ ଯୁବତୀ ସମୂହ ମଧ୍ୟେ ଶୋଭେ ମଇଥିଳୀ । ଯେସନେ ନକ୍ଷତ୍ର ମଧ୍ୟେ ପୂର୍ଣ୍ଣଚନ୍ଦ୍ର ମିଳି ॥ ଚନ୍ଦ୍ରମା ଉଦୟ କି ଦେଖିଲା ଚନ୍ଦ୍ରମଣି । ସେହିରୂପେ ସୀତାଙ୍କୁ ଦେଖିଲେ ରଘୁମଣି ॥ ଯେତେବେଳେ ରମଣୀ ସଭାକୁ ଦେଲେ ଦୃଷ୍ଟି ରାଜାଙ୍କ ଶରୀରେ କାମକଲା ଶରବୃଷ୍ଟି ॥ ହେମମାଳ ବାଳା ରାମ କଣ୍ଠେ ଲମ୍ବାଇଲେ । ଶ୍ରୀଫଳ ଶ୍ରୀକରେ ଦେଇ ଶରଣ ପଶିଲେ ॥ ବାହୁଡ଼ିଣ ନିଜପୁରେ ପ୍ରବେଶ ହୋଇଲେ । ଜନକ ଅନେକ ରତ୍ନ ବ୍ରାହ୍ମଣଙ୍କୁ ଦେଲେ ॥ ଲଜ୍ଜା ପାଇଣ ରହିଲେ ପ୍ରିୟ ରାଜାମାନେ । ବୋଲେ ହସି ଥୋକ ଏକ ଗଲେ ଅପମାନେ ।

—×—

## ୪୭ଶ—ଛାନ୍ଦ

ରାଗ—ଗୈଣ୍ଡି

ଆନନ୍ଦ ହୋଇ ଜନକ ବିଶ୍ୱାମିତ୍ରଙ୍କୁ ଅନେକ
ଗଉରବ କରି ନିଜ ପୁରକୁ ନେଲେ ।
ରାମ ଲକ୍ଷ୍ମଣଙ୍କୁ କୋଳେ ବସାଇ ଋଷିଙ୍କ ମେଳେ
ବିଗୁରିଣ ଲେଖା ଲେଖି ଦୂତଙ୍କୁ ଦେଲେ
ଦଶରଥ ଅଇଲେ ବିଭା । ନ ଜଣାଇ କଲେ ତ ହରିବ ଅଶୋଭା ।
ଜନକ ନୃପତି ଦୂତ ଅଯୋଧ୍ୟା ପୁରେ ଉଦିତ
ଭୁରିତେ ଚିଠାଉ ଦେଲା ରଜାଙ୍କ ପାଶେ ।
ହେ ପ୍ରଭୁ ତୁମ୍ଭ କୁମର ବିଶ୍ୱାମିତ୍ରଙ୍କ ସଙ୍ଗର
ବିଜୟ କରି ଅଛନ୍ତି ମିଥିଳା ଦେଶେ ।
ଶିବଧନୁ ଭାଙ୍ଗିଲେ ହେଳେ । ଲକ୍ଷେ ରାଜା ଚୁଣ୍ଡହୋଇ ଦେଖିଲେ ଡ଼ୋଳେ ।
ମାରି ତାଡ଼କା ସୁବାହୁ ରାମଚନ୍ଦ୍ର ମହାବାହୁ
ଯାଗ ରଖିଣ ମୁନିଙ୍କି ଅଭୟ ଦେଲେ ।
ଗଉତମଙ୍କ ଯୁବତୀ ଶାପରେ ପାଷାଣମୂର୍ତ୍ତି
ଚରଣ ଲଗାଇ ତାଙ୍କୁ ଯୁବତୀ କଲେ ।
ବିଜେ କଲେ ବିଭା ହୋଇବ । ଜନକ କୁମ୍ଭ ଗ୍ରାମୁଁକୁ ପେଷିଲେ ଦେବ ।

ଶୁଣି ନୃପତି ଆନନ୍ଦ ଚକ୍ଷୁ କି ପାଇଲା ଅନ୍ଧ
ଦୂତଙ୍କୁ ଧନ ବସନ ବଧାଇ ଦେଲେ ।
ସଙ୍ଗେ ଭରତ ଶତ୍ରୁଘ୍ନ ଆବର ସକଳ ସୈନ୍ୟ
ଘେନି ନୃପତି ମୁକୁଟ ବାହାର ହେଲେ ।
ମିଥିଳା ନଗରେ ପ୍ରବେଶ । ବୋଲେ ବିପ୍ର ଶୁଭୁଅଛି ମଙ୍ଗଳ ଘୋଷ ।

—❊—

## ୪୮ଶ—ଛାନ୍ଦ

ରାଗ—କଳଶୀ

ଶ୍ରୀରାମ ଲକ୍ଷ୍ମଣ ବିଶ୍ୱାମିତ୍ର ସଙ୍ଗେ ଘେନି । କିଛି ଦୂର ପାଛୋଟି ଆଇଲେ ରାଜମୁନି । ଦଶରଥ ମନ୍ତ୍ରୀପତି ସଙ୍ଗେ ହେଲେ ଭେଟ । ମାନ୍ୟ ଗଉରବ କଲେ ଯେ ଯାହାର ଶ୍ରେଷ୍ଠ ॥ ହେମମୟପୁରେ ନେଇ ବିଜେ କରାଇଲେ । ଭୋଜନ ନିମନ୍ତେ ବହୁ ଉପହାର ଦେଲେ । ଚତୁରଙ୍ଗ ବଳ ସେ ସମସ୍ତେ ହେଲେ ସୁସ୍ଥ । ସୁଖେ ନିଦ୍ରାଗଲେ ନିଶୀ ହେଲାକ ପ୍ରଭାତ ॥ ନିତ୍ୟକର୍ମ ସାରିଣ ଦଶରଥ ରାଜ । ସଙ୍ଗତରେ ବଶିଷ୍ଠ ଆବର ବହୁଦ୍ୱିଜ ॥ ଜନକରାଜା ପୁରକୁ ବିଜେ କରିଗଲେ । ଦେଖି ମୁନି ଆଲିଙ୍ଗନ କରି ବସାଇଲେ ॥ ବଶିଷ୍ଠ ଦେଖି ଜନକ ହେଲେ ବହୁ ହୃଷ୍ଟ । କାଲି ଭାବ ହେବ ବୋଲି କହିଲେ ବଶିଷ୍ଠ । ବେନି ଜନଙ୍କର ବେନି ବଂଶାନୁଚରିତ । କହିଲେକ କଉଶିକ ଅତ୍ୟନ୍ତ ପବିତ୍ର ॥ ବୋଲନ୍ତି ବଶିଷ୍ଠ ଆହେ ଶୁଣ ରାଜଋଷି । ଭରତ ଶତ୍ରୁଘ୍ନ ଲକ୍ଷ୍ମଣ ଛନ୍ତି ଆସି ॥ ତିନି କୁମାରଙ୍କୁ କର ଏହାଙ୍କୁ ପ୍ରଦାନ । ଶୁଣି ସାଉକାର କଲେ ମିଥିଳା ରାଜନ ॥ ବିଶ୍ୱାମିତ୍ର ମହିମା ବୋଲେ ବଶିଷ୍ଠ ମୁନି । ତପସ୍ୟାୟୁ ବ୍ରହ୍ମା ଅବତରିଛନ୍ତି ମେଦିନୀ । ଧାତାର ଅଭାବ କଲେ ଅଭିନବ ସୃଷ୍ଟି । ଏଣୁଟି ବୋଲନ୍ତି ଏହି ତପସ୍ୱୀ ପରମେଷ୍ଠି ॥ ସମସ୍ତେ ଯେ କଲେ ବିଶ୍ୱାମିତ୍ରଙ୍କୁ ଯେ ସ୍ତୁତି । ଶୁଣିଣ ମହାହରଷ ହେଲେ ମହୀପତି । ଆଜ ଅଧିବାସ ରାମ କାଲି ହେବେ ବିଭା । ଏମନ୍ତ ନିର୍ଣ୍ଣୟ କରି ଭାଙ୍ଗିଲେକ ସଭା । ସେ ନିଶୀରେ ରାମ ସୀତା ଅଧିବାସ କଲେ । ମହାଉତ୍ସବ କରିଣ ବାଦ୍ୟ ବଜାଇଲେ । ହୁଳହୁଳୀ ଦେଲେ ଚହିଁ ସକଳ କାମିନୀ । ବୋଲେ ବିପ୍ର ସୁଖେ ଶେଷ ହୋଇଲା ଯାମିନୀ । ୮ ।

—❊—

## ୪୯ଶତି ଛାନ୍ଦ—ରାମବିଭା

ରାଗ—ସାମନ୍ତ

ଏଥୁଅନନ୍ତରେ ରାମ ବିଭାର ଚରିତ । ଶ୍ରବଣେ ଶୁଣନ୍ତେ ନରେ ହୋଇବେ ପବିତ୍ର । ମିଥିଳା କଟକରେ ଉତ୍ସବ କରାଇଲେ । ହେମ

କଲଶରେ ନେତ ଚରାଳ ବାନ୍ଧିଲେ । ବାଇଲେ ମଙ୍ଗଳଗୀତ ଦେଲେ ହୁଳହୁଳି । ବିବିଧ ବାଦ୍ୟନାଦରେ ସିନ୍ଧୁକି ଉଛୁଳି ॥ ନିଶୀ ଅବଶେଷେ ରୁଣ୍ଡ ହୋଇ ସର୍ବବାଳୀ । ହେମକୁମ୍ଭେ ଚନ୍ଦନ କର୍ପୂର ଜଳେ ଗୋଳି ॥ ଶ୍ରୀରାମ ସୀତାଙ୍କ ଶିରେ ଢ଼ାଳିଲେ ତା ତୋଳି । ପୁଣି ସୁବାସ ଜଳରେ ଶ୍ରୀଅଙ୍ଗ ପଖାଳି ॥ ସର୍ବାଙ୍ଗ ପୋଛି କୁସୁମେ ବିମୁଣ୍ଡ ବାନ୍ଧିଲେ । ବସନ ପୀତପଟ୍ଟରେ କାଛି ପିନ୍ଧାଇଲେ । ମଣିମୟ ଭଡାଗ ଶ୍ରୀଅଙ୍ଗେ ଲଗି କରି କରି । ଭାଲପଟେ ସିନ୍ଦୁରି ତିଳକଦେଲେ ନାରୀ ॥ ହେମବେଦିକା ଉପରେ ରତ୍ନର ମଣ୍ଡପ । ଶୋଭା ଦିଶଇ ଦ୍ରୁମର ଗୁରୁ ଚନ୍ଦ୍ରାତପ ॥ ସେ ବେଦିକା ଉପରେ ଶ୍ରୀରାମ ଆସି ବସି । ମହାବାକ୍ୟରେ ସଂକଳ୍ପ କରାଇଲେ ଋଷି ଦଶରଥ ଗଉତମ ଆବର ଜନକ । ବଶିଷ୍ଠ ଜାବାଳି ବାମ-ଦେବାଦି ଯେତେକ ॥ ଏମାନେ କରନ୍ତି ବିଭା ବେଦ ମନ୍ତ୍ର ପଢି । କନ୍ୟାକୁ ଆଣିଲେ ସର୍ବ ପରିବାରୀ ବେଢ଼ି ॥ କୋଦଣ୍ଡଧର କରରେ ଦେଲେ କନ୍ୟାକର । କୁଶ ରଜ୍ଜୁରେ ବନ୍ଧନ କଲେ ମୁନିବର ॥ କୁମାରୀ ଗୋଟିଏ ସେ ବନ୍ଧନ ଫେଡ଼ି ଦେଲେ । ସେହିଦିନ ମହାବାଳୀ ଶ୍ରୀରାମର ହେଲେ । ଜନକ ଅନେକ ଦେଲେ ରତ୍ନ ଆଭରଣ । ରଥ ଗଜ ଅଶ୍ୱ ଆଦି ଦ୍ରବ୍ୟ ନାରୀଗଣ ॥ ଲଜାହୋମ ସାରି ରାମ ଭିତରେ ବିଜୟେ । ଏହିରୂପେ ତିନି ଭାଇଙ୍କର ବିଭା ହୋଏ ॥ ପଞ୍ଚରାସି ମଣୋହି ସାରି ବଡ଼ଆ ଲଗି । ବୋଲେ ବିଶି ମଧୁଶଯ୍ୟାରେ ପ୍ରବେଶି ବେଗି । ୧୬ ।

—×—

## ୫୦ଶ ଛାନ୍ଦ ମଧୁଶଯ୍ୟା

ରାଗ—ଘଣ୍ଟାରବ

ଗଜଗମନୀ ସୁବେଶ କରି ସହଚରୀମାନେ ସମର୍ପିଲେ ଶ୍ରୀରାମପାଶେ । ଅତି ସୁକୁମାରୀ ଆମ୍ଭ କୁମାରୀ ନବବୟସୀ ନ ଜାଣନ୍ତି ସୁରତି ବିଶେଷେ ହେ । ରାଘବ ମନମଥ ମନମୋହିନୀ । ସୁଖେ ଭୋଗ କର ଏ ରଜନୀ ॥ ନୁହଇଟି ଏ ଶିବଧନୁ ଶିରୀଷକୁସୁମ ତନୁ ନ ଧରିବ ଅତି ସାହସେ । ଜାତିକୁସୁମେ ମଧୁପ ମଧୁପାନ କରେ କିଏ ଶେଷେ ଯେସନେ ପୀଡ଼ା ନ ପାଏ ସେ ॥ ପରିହାସ କରି ସହଚରୀ ଗଲେ ଅପସରି କରି ଧରି ଶ୍ରୀରାମ । ବସାଇଲେ ନିଜ ଅଙ୍କେ ଦନ୍ତୀଦନ୍ତର ପଲଙ୍କେ ଲଜରିପୁ ସାଧିଲାକ କାମ ॥ ଏକପତ୍ନୀ ପ୍ରୀତି ରାମ ଅଗ୍ନି ସାକ୍ଷୀ କରିଗଲେ କରାଇଲେ ରମାରତନ ୨ କଲେ ବିବିଧ ସୁରତ କାମପାଠ ବିଧିମତ କାମଜଳେ ବୃଡ଼ିଣ ଅଙ୍ଗନ ॥ ହୋଇଲେ ବେନି ପ୍ରମୋଦ ଛାଡିଲେ

ମନରୁ ଖେଦ କମଳମା ରଘୁନନ୍ଦନ । ବୋଲେ ବିଶି କଶୀ ପ୍ରଭାତରୁ ସବୁ ସଖୀ ବେଢ଼ି ପରୁରନ୍ତି କେଳିର ବିଧାନ । ୫ ।

—×—

## ୫୧ଶତ୍ ଛାନ୍ଦ

ରାଗ—ଆଷାଢ଼ ଶୁକ୍ଳ

ଫିଟିଛୁ କୁସୁମ ସନ୍ଧତେ ବେଣୀ । କାଳନ୍ଦୀରେ ଭାସେ କି ହଂସଶ୍ରେଣୀ । ରାହୁମୁଖରୁ କି ଖସିଲା ଶଶୀ । ସରୋଜ ନେତ୍ରୀ ସେହୁ ମତେ ଦିଶି ।। ଲିଭିଛୁ ଚନ୍ଦନ । ବର୍ତ୍ତୁଳ କୁଚେ ନଖ କ୍ଷତ ମାନ ।। ତୁଟିଛୁ ଉରହାର ଗଜମୋତି । ତୁଟିଛୁ ଅଧର ରଙ୍ଗିମା ଜ୍ୟୋତି । ରଙ୍ଗିମା ଦିଶୁଛୁ ନୟନ ବେନି । କାନ୍ତ ଅନୁରାଗ ଅଛୁ କି ଘେନି । ଫିଟିଛୁ ବସନ । ପାବରୁ ଅନ୍ତର କିବା କାଞ୍ଚନ ।। ଶୁଣି କେଉଁ ସଖୀ ବୋଲେ ବଚନ । କର୍ମ ଥିଲା ପରା ତନୁ ଲବଣ୍ୟ । ଅଙ୍ଗ ଛୁଅନ୍ତେ ନ କଲ କି ନାହିଁ । ଗୃହ୍ଣ ନ କଲେ କି ବନସ୍ପି ହୋଇ । ଲାଜ କଲଟିକି । ସୁରତେ ତୁମ୍ଭଙ୍କୁ ଜିଣିଲେ ନିକି ।। ରାମ କଲେ କାମ ଭଣ୍ଡାର ଜୁର । ଜାଣିଲୁ ଆମ୍ଭେ ବେଶରୁ ତୁମ୍ଭର । ମୁକୁତା ଅଳକା ପଡ଼ିଛୁ ଖସି । ଚନ୍ଦ୍ର କି ବରଷଇ ହସି । ଗୋ ନଳମାବର । ବୋଲେ ବିଶି ରାମ ତୁମ୍ଭଙ୍କୁ ବର ।

—×—

## ୫୨ଶତ୍ ଛାନ୍ଦ—ପର୍ଶୁରାମ ଭେଟ

ରାଗ—ଘଣ୍ଟାରବ

ବହୁ ମହୋତ୍ସବ କଲେ ଯେ ସାତ ମଙ୍ଗଳାଇ ଗଲେ । ଜଣେ ଜଣେ କରି ଜନକ ଅନେକ ରତନ ବସନ ଦେଲେ ଯେ ।। ଦଶରଥ ବେନିକର ଯେ ଧରି ରାଜାଋଷିବର । ମିଥିଳା ନଗର ଆଜନ୍ତୁଁ ତୁମ୍ଭର ଅଯୋଧ୍ୟା ନଗର ମୋର ହେ ।। କୁମାରୀମାନଙ୍କ ଦୋଷ ହେ କ୍ଷମା କରିବ ନରେଶ । ପୁଣି ନୃପତି ଆଲିଙ୍ଗନ କରଣ ହୋଇଲେକ ହସ ହସ ଯେ ।। ଦଶରଥ ମହାରାଜା ଯେ ବଜାଇଲେ ଘୋର ବାଜା । ବିଭ ବଢ଼ାଇ ବାହୁଡ଼ା ସାଜେ କଲେ ସଙ୍ଗେ ଘେନି ଛିତଭୂଜା ଯେ ।। ଚଳେ ଚତୁରଙ୍ଗ ବଳ ଯେ କୁସୁମ ଟଳ ମଟଳ । ସମୁଦ୍ରମନ୍ଥନ ପ୍ରାୟେକ ଶୁଭୁଛୁ ମୁଖରବର ଚହଳ ଯେ ।। ଶୁଣିକରି ଭୃଗୁପତି ଯେ କୋପେ ବସିଲ ତା ଏତି । ପର୍ଶୁ ଝମକାଇ ଓଗାଳିଲେ ଆଗେ ଦଶରଥ ମଣ୍ଡପତି ଯେ ।। ବୋଲନ୍ତି ଯେ ତୁ ରହ ରହରେ ତୋର ସୁତ କାହିଁ କହ । କେମନ୍ତ ସ୍ବରୂପ କେତେକ ବୟସ ଆମ୍ଭଙ୍କୁ ଥରେ ଦେଖାଅ ହେ ।। ଶୁଣିକରି ନୃପବର ଯେ ଶିରେ ଦେଲେ ବେନିକର । ସବୁଦନେ ମୁହିଁ ତୁମ୍ଭର କୋମ୍ଭର ପର୍ଶୁଧର ରକ୍ଷା କର ହେ । କୋପେ ହୋଇ ପରଖର ଯେ

ବୋଲେ ଭୃଗୁପତି ଗିର । ବାତୁଳ କି ମୁହିଁରେ ଅଯୋଧ୍ୟାସାଇଁ ଉଣ୍ଡାଉ ସେହି ପ୍ରକାର ଯେ ॥ କେ ନ ଜାଣେ ମୋର ଗୁଣରେ ଯେତେ ଛତ୍ରି ନୃପଗଣ । ଏକବିଂଶ ବାର ନିକ୍ଷତ୍ର କରଛି ତୋର ହେଲା ଏତେ ଝଣରେ ॥ ହେଲଣି ଏତେକ ଗର୍ବରେ ବଜାଇଣ ବୀର ବାଦ୍ୟ । ନିଃଶଙ୍କ ମନରେ ଯାଉ ମୋ ପଥରେ କରିବି ତୋ ଗର୍ବ ଖର୍ବ ରେ ॥ ସୈନ୍ୟସହ ଆଜ ତୋର ରେ ଆବର ତ ଶୂରଙ୍କର । ଶିର ହାଣି କରି ତାପିତ ପ୍ରାଣଙ୍କୁ ଶୀତଳ କରିବ ମୋର ରେ । କେତେ ଯୋଦ୍ଧା ତୋର ସୂତରେ ଆଣ ମୋ ପାଶେ ଉଭିତ । ଶିବଧନୁ ଭାଙ୍ଗି ସୀତାଙ୍କୁ ନେଇଛୁ ମୋ ଧନୁ ଧରୁ ତୋ ପୁରରେ ॥ ରାମର ବଡାଇପଣେ ରେ ହୋଇଲୁଣି ପରା ଜଣେ । ନାରୀମଧ୍ୟେ ଲୁଚିଥିବା ବେଳ କଥା ନାହିଁକି ତୋହର ମନେରେ ॥ ଶୃଗାଳ ହେଲେ ପାଗଳ ରେ ସିଂହ ନ କରେ ଖାତର । ସେହିମତି ତୋର ବାଲବୁଦ୍ଧି ଦେଖି ସହ୍ୟ ନ ହୁଏ ମୋହରରେ ॥ ମୋ ଦାଉ ମୁଁ ଆଜ ନେବିରେ ରାମନାମ ପୋଛି ଦେବ । ନୋହିଲେ କାହିଁକି କ୍ଷତ୍ରି ବିମର୍ଦ୍ଦନ ବାନାକୁ ଉଡ଼ାଉ ଥିବି ଯେ ॥ ( ଦଶରଥ ) ବୀରବର ପଶୁରାମ ହେ ଯେଉଁନବା ହିନ ଜଣାଣ । ବାଳୁତ ନନ୍ଦନେ ମାରି କିବା ଯଶ କର ମୋ ଶିର ଛେଦନ ହେ । ରାଜା ବଚନ ନ ଶୁଣି ଯେ ଗର୍ଜ୍ଜିଇ ଯେସନେ ଫଣୀ । ଦେଖନ୍ତି ଏ ରୀତି ଲକ୍ଷ୍ମଣ ଭାଷନ୍ତି ଏହୁଝାକଏ ସେ ପୁଣି ଯେ ॥ ବାତୁଳ ପ୍ରାୟକ ମତି ଯେ ହୋଇ କେହ୍ନେ ହକୁତି । ଆମ୍ଭ ଆଠ ମଧ୍ୟେ କପାଇଁ ପଶିଛୁ ପଳାଇ ଯାଉ ଝଟତି ଯେ ॥ ବୋଲେ ବୀର ପଶୁରାମ ଯେ ରେ ଦଶରଥ ନନ୍ଦନ । ଏତେକ ସାହାସ ହେଲଣି ତୋହର କହୁ ଇଙ୍ଗିତ ବଚନ ରେ ॥ ରହିଥିଲା ବହୁଦିନୁ ରେ ଘୁଣଖିଆ ଶିବଧନୁ । ଭାଙ୍ଗିବାରୁ ରାମ ତାର ଭାଇ ବୋଲି ପରିଚୟ ଦେଉ ତେଣୁ ରେ ॥ ମୂଷା ଖାଇଲେ ଗଞ୍ଜାଇରେ ବିରାଡ଼କ ଶଙ୍କେ ନାହିଁ । ସେହିମତି ତୋର ଦେଖୁଛୁ ବେଭାର ତୋ ବାକ୍ୟେ ହସ ମାଡଇରେ ॥ ଲକ୍ଷ୍ମଣ କୋପରେ କହଯେ ଆଶ୍ଚର୍ଯ୍ୟ ଦେଖଇ ମୁହିଁ । ଶଶାକୁଆ କାହିଁ ସିଂହକ ଧୈର୍ଯ୍ୟ ରତ ଦେଖିଲା ଶୁଣିଲା ନାହିଁ ଯେ ॥ ତୁମ୍ଭେ ବ୍ରାହ୍ମଣ ସନ୍ତାନ ଯେ କ୍ଷତ୍ରି ବୃତ୍ତିରେ ପ୍ରଧାନ । ଲଭିଥିବା ହେତୁ ମାତାଙ୍କୁ ହାଣିଛ ନ ଜାଣି କ୍ଷତ୍ରି କାରଣ ଯେ ॥ କ୍ଷତ୍ରିଙ୍କ ହୃଦୟ ଝାଣ ଯେ ଶ୍ରେଷ୍ଠ ଅଟେ କ୍ଷତ୍ରିଧର୍ମ । ସଦା ଧର୍ମେ ଖ୍ୟାତ ଜୀବହିଂସା ଆଦି ନ କରନ୍ତି କ୍ଷତ୍ରିଗଣ ଯେ ॥ ଏ ହେଉନ କ୍ଷତ୍ରିୟ ଯେତେ ଯେ ନ ଯୁଝି ତୁମ୍ଭ ସଙ୍ଗତେ । ପ୍ରାଣେ ନାଶ ହୋଇଲେ ଧର୍ମ ନ ଛାଡ଼ିଲେ ଏଥିକି ବଡ଼ାଇ ଏତେ ଯେ ॥ ପିତା ମୋ ଧାର୍ମିକ ଅଛି ଯେ ।

ନାସ୍ତିମଧ୍ୟେ ଗଲେ ଲୁଚି । ନୋହିଲେ ତୋ ମୁଣ୍ଡ ଖଣ୍ଡ ଖଣ୍ଡ କରି ନ ଥାନ୍ତେ ଟିକି ଦୁର୍ମତି ରେ ॥ ଧର୍ମଭୟ ହୋନ୍ତେ ଚଉତ୍ରେ ରେ ତୁ ବୋଲୁ ଲୁଚିଲୁ ମୋତେ । ଶଶାନ୍ତୁଆକୁ ସିଂହ କାହିଁ ଲୁଚଇ ଶୁଣି ହସ ମାଡ଼େ ମୋତେ ଯେ ॥ କେଉଁ ଶିବଧନୁ ଦେଖି ଯେ ପଳାଇଲ ବୁଜି ଆଖି । ସେ ଧନକୁ ରାମ ଶ୍ରୀ କରେ ଭାଙ୍ଗନ୍ତେ ଘୂଣିଆ ନୋହିବ କି ଯେ ॥ ଏହା ଶୁଣି ପର୍ଶୁରାମ ଯେ ଗାତ୍ର କମ୍ପେ ଥର ଥର । ବାତେ ରମ୍ଭା ପ୍ରାୟେ ସମ୍ଭାଳି ନ ହୁଏ କ୍ରୋଧେ ବୋଲେ ଏହୁ ଗିର ଯେ ॥ ରହ ରହ କ୍ଷଣ ମାତ୍ରେ ରେ ଆଗେ ରାମ ପଛେ ତୋତେ । ବଧି-ବଇଁ ଦେଖ ଏ ପର୍ଶୁ କଳଙ୍କ ଛଡ଼ାଇବି ତୁମ୍ଭ ରକ୍ତେ ରେ ॥ ଏତେ ବୋଲି କୋପ ହୋଇ ଯେ ରାମ ନିକଟେ ମିଳଇ । ପଦ୍ମନାଭ ଦ୍ୱିଜ କରଇ ଜଣାଣ ସ୍ୱାମୀକର ସୀତାସାଇଁ ହେ । ୩୨ ।

— X —

## ୪୩ଶତ୍ ଛାନ୍ଦ

ଏଥୁଅନ୍ତେ ଶୁଣ ଜନେ ଯେ ପର୍ଶୁରାମ କ୍ରୋଧମନେ । ଶ୍ରୀରାମ ନିକଟେ ପ୍ରବେଶ ହୁଅନ୍ତେ ଭୟେ ଦଶରଥ ଭଣେ ଯେ ॥ ହେ ମହାତ୍ମା ବୀରବର ହେ ମୋ ଅପରାଧ କ୍ଷମାକର । ଦଣ୍ଡିବା ଶକତ ଯା ନିକଟେ ଥାଏ ସେ କରେ କ୍ଷମା ବିଚାର ଯେ ॥ ଏ ମୋର କୁମର ଗୁରୁ ଯେ ଚରୁଅନ୍ନ ଅବତର । ଅଳପ ଅଳପ କିଶୋର ବୟସ ନ ଜାଣନ୍ତି ଧନୁ ଧରି ଯେ ॥ ବୋଲେ ପର୍ଶୁ ହୋଇ ତେଜ ଯେ ବୁଲଇ ନେଇ ସରୋଜ । ଶିବଧନୁ ଭାଙ୍ଗି ସୀତାଙ୍କୁ ନେଉଛି ମୋର ଧନୁ ଧରୁ ଆଜ ଯେ ॥ ଧରି ପର୍ଶୁରାମ କର ଯେ ଭେଟାଇଲେ ରଘୁପତି । ତୁମ୍ଭ କୃପାବଳେ ଏହାଙ୍କୁ ପାଇଛି ଏ କି ନୁହନ୍ତି ତୁମ୍ଭର ॥ ରାମେ ଗୃହିଁ ପର୍ଶୁଧର ଯେ କ୍ରୋଧେ ବୋଲଇ ଏ ଗିର । ମିଥିଳାରେ ଶିବଧନୁ ଭଗ୍ନ କଲେ ମୋର ଧନୁ ଏବେ ଧର ଯେ ॥ ପର୍ଶୁରାମ ବାକ୍ୟ ଶୁଣି ଯେ ଶ୍ରୀରାମ ବୋଲନ୍ତି ବାଣୀ । କିଏ ତୁମ୍ଭେ କାହୁଁ ତୁମ୍ଭର ଉତ୍ପତ୍ତି ନାମ ଗୋତ୍ର କହ ଶୁଣି ହେ ॥ ଦିଶୁଛ ବ୍ରାହ୍ମଣ ପ୍ରାୟ ହେ କ୍ଷତ୍ରିୟ ଆୟୁଧ ବହ । ଅଟ କାହା ସୁତ କେଉଁ କୁଳେ ଜାତ କହ ମୋ ନାଶ ସଂଶୟ ହେ ॥ ପର୍ଶୁଧର ବୋଲେ ଶୁଣ ହେ ମୋର ବୀର କ୍ଷତ୍ରିପଣ । ମୋ ସମାନେ କ୍ଷତ୍ରି କ୍ଷିତିରେ ନାହାନ୍ତି କହୁଛି ବଂଶାନୁଗଣ ହେ ॥ ଶ୍ରୀରାମପଦ୍ମ ଚରଣେ ଯେ ଧ୍ୟାଇ ପଦ୍ମନାଭ ଦୀନ । ବୋଲେ ଏ ଘୋରେ ରକ୍ଷ ନ ପାରଇ କେତେ କେତେ ଯୋଦ୍ଧା ଠାଣ ଯେ । ୧୦ ।



## ୫୪ ଶତ୍ ଛାନ୍ଦ

ରାମେ ପଶୁରାମ କହି ଯେ ଶୁଣ ଏକଚିତ୍ତ ହୋଇ । ମୋ ବଂଶାନୁଗୁଣ ଜନମ ବୃତ୍ତାନ୍ତ ବର୍ଣ୍ଣନା କରୁଅଛଇ ଯେ ॥ ପୂର୍ବେ କନାଉଜ ଦେଶ ଯେ ଗାଧିନାମେ ନୃପଈଶ । ପୁତ୍ର ପୌତ୍ରାଦି ନ ଥିବା ହେତୁ ବଂଶେ ହୋଇ ଦୁଃଖିତ ମାନସ ଯେ ॥ ଈଶ୍ୱରଙ୍କୁ ଆରାଧନା ଯେ କରନ୍ତେ ସେ ମହାମନା ॥ କେତେଦିନ ପରେ ବରପ୍ରାପ୍ତ ହୋନ୍ତେ ଜାତ ହେଲା ଏକ କନ୍ୟା ଯେ ॥ ନାମ ଦେଲେ ସତ୍ୟବତୀ ଯେ ହୋନ୍ତେ ପ୍ରୌଢ଼ାବସ୍ଥା ପ୍ରାପ୍ତି । ଋଚିକମୁନିଙ୍କି ବିବାହ ଦିଅନ୍ତେ ହୋଇଣ ଆନନ୍ଦମତି ॥ ବିଭାହୋଇ ମୁନିବର ଯେ ଘେନିସଙ୍ଗେ ନାରୀବର । ଆପଣା ଆଶ୍ରମ ନିକଟେ ଚଳଲେ ଗୌତମୀ ନଦୀର ତୀର ଯେ ॥ ତହିଁ ଯାନ୍ତେ କିଛିଦିନ ଯେ ଗାଧିରାଜା ସନ୍ନିଧାନ । ଗାଧିରାଣୀ କରଯୋଡ଼ି ଜଣାଇଲେ ଧିକ୍ ହେଉ ଆମ୍ଭ ଜନ୍ମ ଯେ ॥ କୋଳେ ନୋହିଲା କୁମର ଯେ କେ ବହିବ ରାଜ୍ୟଭାର । ଆମ୍ଭ ଅନ୍ତେ ସିନା ବଂଶ ଲୋପ୍ୟ ହେବ ରାଜ୍ୟ ହେବ ଛାରଖାର ଯେ ॥ ପୁତ୍ର କାମନା ଅର୍ଥରେ ଯେ ଯାଉଛୁ ଝିଅ ବାସରେ । ଏହାଶୁଣି ରାଜା ସମ୍ମତ ହୁଅନ୍ତେ ମିଳିଲେ ଜ୍ୱାଇଁ ମନ୍ଦିରେ ଯେ ॥ ଝିଅ ଦେଖିଣ ମାତାଙ୍କୁ ଯେ ପାଦ୍ୟେଷ୍ଟି ନେଲେ ଗୃହକୁ । ମାତା ଆସିବାର ସମ୍ବାଦ ପ୍ରକାଶ କଲେ ନେଇ ଋଚିକଙ୍କୁ ଯେ ॥ ଋଚିକ ବୋଲନ୍ତି ଗିର ଯେ କି ନିମନ୍ତେ ଆସିବାର । ଏହାଶୁଣି ଗାଧିରାଣୀ ଭଣି ବାଣୀ ଶୁଣିବା ଋଷିପ୍ରବର ହେ ॥ ମୋ କୋଳେ ନାହିଁ କୁମର ଯେ ଆବର ସତ୍ୟବତୀର । ମାତା ଝିଅ ଦୁହିଁଙ୍କର ପୁତ୍ର ନାହିଁ ପୁତ୍ର ଦାନ ଦୟା କର ହେ ॥ ଯୋଗାରୂଢ଼ ଋଷିବର ଯେ ଶୁଣି ଶାଶୁଙ୍କ ଉତ୍ତର । ହୋହରାଗ୍ନି ପୂଜା କରି ବେନି ଚରୁ ଜାତ କରନ୍ତେ ସତ୍ୱର ଯେ ॥ ଡାକି ଭାର୍ଯ୍ୟା ସତ୍ୟବତୀ ଯେ ଆନନ୍ଦେ ମୁନି ବୋଲନ୍ତି । ପଶ୍ଚିମ ଭାଗ ଚରୁକୁ ତୁମ୍ଭେ ନିଜେ ଭକ୍ଷଣ କର ତତକ୍ଷଣ ଯେ ॥ ଏ ପୂର୍ବଭାଗ ଚରୁକୁ ଗୋ ଦିଅ ତୁମ୍ଭର ମାତାଙ୍କୁ । ଏହା କହି ଋଷି ତପସ୍ୟା ନିମନ୍ତେ ଗଲେ ଅରଣ୍ୟ ମଧ୍ୟକୁ ଯେ ॥ ଦୁଇ ଚରୁପାକ ନେଇ ଯେ ଏକାଠାବେ ରଖି ଦେଇ । ମାତା ଝିଅ ଦୁହେଁ ଆନନ୍ଦରେ ଗଲେ ଗୋମଣ୍ଡଳ ସ୍ନାନପାଇଁ ହେ ॥ ମାତା ବେଗେ ସ୍ନାନ ସାରୁ ଯେ ଭକ୍ଷିଲେ ଝିଅର ଚରୁ । ଝିଅ ସ୍ନାନ ସାରି ମାତା ଚରୁ ଭକ୍ଷି ଆନନ୍ଦ କେ କହି ପାରୁ ଯେ ॥ ଗତହୋନ୍ତେ କିଛି ଦିନ ଯେ ଗର୍ଭ ହେଲେ ବେନିଜନ । ତପ ସାରି ଋଷି ଆଶ୍ରମେ ମିଳିଣ ଗର୍ଭ କଲେ ନିରୀକ୍ଷଣ ହେ ॥ ପାଦେ ରଖି ସତ୍ୟବତୀ ଯେ ଋଷି ବଚନ ବୋଲନ୍ତି । ଚରୁ ପାଲଟଇ ଭକ୍ଷଣ କରିଲ ହୋଇଲା ବିଷମ ଅତି ଯେ ॥ ଋଷି ପୁତ୍ର

ରାଜା ହେବ ଯେ ରାଜପୁତ୍ର ଋଷି ହେବ । ଏହା ଶୁଣି ଗାଧିରାଣୀ ଶୋକେ କହେ କେ ମୋର ରାଜ୍ୟ ଭୁଞ୍ଜିବ ଯେ ॥ ଋଷି ବୋଲନ୍ତି ଉତ୍ତର ଯେ ତୁମ୍ଭ ପୁତ୍ର ଋଷିବର । ହେଲେ ମଧ୍ୟ ବେଳେବେଳେ ବୁଝୁଥିବ ରାଜ୍ୟ ପ୍ରଜା ସମାଗ୍ରର ଯେ ॥। ଆପଣା ପତ୍ନୀକି କହି ଯେ ତୋରପୁତ୍ର କ୍ଷତ୍ରି ହୋଇ । ତିନି ପୁରୁଷ ପର୍ଯ୍ୟନ୍ତ କ୍ଷତ୍ରି ବୃତ୍ତି ସାଧିବେକ ହୃଷ୍ଟ ହୋଇ ଯେ ॥ ଶୁଣି ଋଷିଙ୍କର ବାଣୀ ଯେ ବିଦାହେଲେ ଗାଧିରାଣୀ । ଆପଣ ଭୁବନେ ପ୍ରବେଶ ହୋଇଲେ ଗଲା କେତେଦିନ ପୁଣି ଯେ ॥ ଦଶମାସ ଦଶଦିନ ଯେ ଗର୍ଭ ହୁଅନ୍ତେ ସମ୍ପୂର୍ଣ୍ଣ । ଗାଧିରାଣୀଠାରୁ ପୁତ୍ରେକ ଜନ୍ମିଲା ଦେଲେ ବିଶ୍ୱାମିତ୍ର ନାମ ଯେ ॥ ସତ୍ୟବତୀ କୋଳେ ଜନ୍ମ ଯେ ହୋଇଲା ଏକ ନନ୍ଦନ । ଋଚିକ ଋଷି ନାମକରଣ କରି ଦେଲେ ଯମଦଗ୍ନି ନାମ ଯେ ॥ ଗତ ହୋଇନ୍ତେ କେତେ ବର୍ଷ ଯେ ଯୁବାବସ୍ଥା ପରବେଶ । ବିଦର୍ଭ ଦେଶ ରାଜକନ୍ୟା ରେଣୁକା ବିଭାହେଲେ ଋଷିଶିଷ୍ୟ ଯେ ॥ ତାଙ୍କ କୋଳେ ଆମ୍ଭେ ଜାଣ ଯେ ହେଲୁ ଚାରିଭ୍ରାତା ଜନ୍ମ ମାଲରାମ, ବଳରାମ, ଗଣ୍ଡରାମ, ପର୍ଶୁରାମ ଆମ୍ଭେ ସାନ ଯେ ॥ ଶୁଣିଲ ବଂଶାନୁ ଗୁଣ ସେ ଦିଅ ମୋ ଧନୁରେ ଗୁଣ । ନୋହିଲେ ଏକ୍ଷଣି ଭୁଲାଇ ଦେବଟି ଶିବଧନୁ ଭଙ୍ଗାପଣ ଯେ ॥ ବୋଲନ୍ତି କୋଦଣ୍ଡଧର ଯେ ତୁମ୍ଭେ କନିଷ୍ଠ କୁମର । ଜ୍ୟେଷ୍ଠ ବୋଲିକରି କର୍ମା ଲୋକେ ଖ୍ୟାତ କହ କାରଣ ଏହାର ଯେ ॥ କୋପେ କହି ପର୍ଶୁରାମ ଯେ ଶୁଣ ତୁମ୍ଭେ ଦେଇ ମନ । ଦିନେ ମୋର ପିତା ଯମଦଗ୍ନି କରୁଥିଲେ ପିତୃ ତରପଣ ଯେ ॥ ମାତା ମୋ ରେଣୁକା ନାରୀ ଯେ ଘେନି ପାଣି ଆଣିଲେ ବାରି । ତରପଣକାଳେ ଜଳ ଦେଉଥାନ୍ତି ଜଳେ ଛାୟା ଦେଖିକରି ଯେ ॥ ଅନାଇ ଦେଖନ୍ତେ ଆକାଶେ ସେ ଚିତ୍ରସେନ ରଥ ଦିଶେ । ଦୃଷ୍ଟିବନ୍ଧ ହେତୁ ଜଳ ପଡ଼ିଗଲା ଯଜ୍ଞପାତ୍ର ଆରପାଶେ ଯେ ॥ ଦେଖି ପିତା କୋପେ କହି ଯେ ଦୋଷୀରୁଣୀ ଅଟୁ ତୁହି । ପରପୁରୁଷରେ ପ୍ରୀତି ଥିବା ହେତୁ ଅନ୍ୟମନ ହେଲୁ ତୁହି ଯେ ॥ ଗୃହେ ନାହାନ୍ତି ଋଷିଭ୍ରାତେ ଯେ ବନେ ବୁଲନ୍ତି ମୃଗୟାର୍ଥେ । ଏ ସମୟେ ମୋର ଜ୍ୟେଷ୍ଠ ତିନିଭ୍ରାତ ପ୍ରବେଶିଲେ ଗୃହଗତେ ଯେ ॥ ତାଙ୍କୁ ଦେଖି ପିତା କହି ଯେ ମାତା ଦୋଷିଣୀ ଅଟଇ । ଆଜ୍ଞା ପରମାଣେ ତାର ଶିରଚ୍ଛେଦ ଶୁଣି ଚିତ୍ତ ତିନିଭାଇ ଯେ ॥ ପିତାଙ୍କ ଆଜ୍ଞା ଅବଜ୍ଞା ଯେ ହୋଇନ୍ତେ କୋପେ ମହାତମା । ବସିଛନ୍ତି ମୋର ପଥ ଅନୁସରି ମନରେ କରି କଳ୍ପନା ଯେ ॥ ଏ ସମୟେ ମୁଁ ପ୍ରବେଶ ଯେ ହୋଇନ୍ତେ ଦେଖିଲି ଭବିଷ୍ୟ । ପିତା ମାତା ଆଉ ଭ୍ରାତାଗଣଙ୍କର ମନରେ ନାହିଁ ହରଷ ଯେ ॥ ଏସନ ଗୁଣ ଦେଖିଣ ଯେ ପୁଣି ପିତାଙ୍କୁ କହିଲି । ପିତା ବୋଇଲେ ଆରେ ତୋ

ତିନବାଇ ସହ ମାତା ମୁଣ୍ଡ ହାଣ ଯେ ॥ ଶୁଣି ପିତାଙ୍କ ଉତ୍ତର ଯେ ଛେଦିଲି ସକଳ ଶିର । ଦେଖି ପିତା ମୋର ସନ୍ତୁଷ୍ଟ ହୋଇଣ ବୋଇଲେ ମାଗ ତୁ ବର ଯେ ॥ ମାଗିଲି ମୁଁ ଏହି ବର ଯେ ମାତା ଭ୍ରାତାମାନେ ମୋର । ମୃତ ପିଣ୍ଡଗ୍ରାଡ଼ ଜୀବଦାନ ପାନ୍ତୁ ଏହି ଅନୁଗ୍ରହ କର ଯେ ॥ ଅସ୍ତୁ ବୋଲିଣ ବୋଇଲେ ଯେ ସେମାନେ ଜୀବ ପାଇଲେ । ସେହି ଦିନଠାରୁ ପୁନର୍ଜନ୍ମ ପାଇ ମୋତେ ଜ୍ୟେଷ୍ଠରେ ଗଣିଲେ ଯେ ॥ ଯାହା ପୂଚ୍ଛାକର ମୋତେ ହେ କହିଲି ତୁମ୍ଭ ଅଗ୍ରତେ ଏବେ ଯେ ଧନୁରେ ଗୁଣକୁ ଚଢ଼ାଅ ପଦ୍ମନାଭ ବୋଲେ ଗୀତେ ଯେ । ୪୧ ।

—×—

## ୫୫ଶତ—ଛାନ୍ଦ

ଶ୍ରୀରାମ ବୋଲନ୍ତି ବାଣୀ ଯେ ଶୁଣ ଆହେ ଷାରମଣି । କେଉଁଠାରୁ ଏ ଜାନୁଘଣ୍ଟ ପାଇଲ କହ କହ ଥରେ ପୁଣି ॥ ଶୁଣି କହେ ପର୍ଶୁରାମ ଯେ ଖଡ଼୍‌ଗେ ମାତାଙ୍କୁ ଛେଦନ । କରନ୍ତେ ସେ ଖଡ଼୍‌ଗ ହସ୍ତୁ ନ ଖସିଲି ରହିଲି ହୋଇ ସଲଗ୍ନ ଯେ ॥ ପିତାଙ୍କୁ ଜଣାନ୍ତେ ପୁଣି ଯେ ଧ୍ୟାନବଳେ ଋଷି ଜାଣି । ମାତୃହତ୍ୟା ଯୋଗୁ ଏସନ ଘଟିଛି ଶୁଣ ତୁ କୁମରମଣି ଯେ ॥ ସନ୍ନ୍ୟାସୀ ବେଶକୁ ଧର ରେ ତୀର୍ଥ ପର୍ଯ୍ୟଟନ କର । ଆମ୍ଭ ଆଜ୍ଞା ପରମାଣେ ଖଡ଼୍‌ଗଗୋଟି ନ ରହୁ ତୋହର କର ଯେ ॥ ଶୁଣି ପିତାଙ୍କ ଉତ୍ତର ଯେ ସନ୍ନ୍ୟାସୀ ବେଶେ ବାହାର । ହୋଇବାରୁ କରୁ ଖଡ଼୍‌ଗ ଖସିଗଲି ଭିକ୍ଷାକଲି ଦ୍ୱାର ଦ୍ୱାର ଯେ ॥ ଏକଦ୍ୱାରେ ମୌନ ହୋଇ ଯେ ରହିଲି ମୁଁ ଭିକ୍ଷାପାଇଁ । ସାମନ୍ତାଣୀ ଆଗେ ଦାସୀ ତା କହଇ ପର୍ଶୁ ଛନ୍ତି ଉଭାହୋଇ ଗୋ ॥ ଶୁଣି ଦାସୀଠାରୁ ଗିର ଯେ ବୋଇଲି ସେ ରମାବର । ପର୍ଶୁରାମ ଭିକ୍ଷା ମାଗି ଆସିଛନ୍ତି ବୋଲ ପ୍ରତେ ନୁହେ ମୋର ଯେ ॥ ଜାନୁରେ ତ ଘଣ୍ଟ ନାହିଁ ଯେ କପର ଜାଣିବି ମୁହିଁ । ଶୁଣି ସେ ଉତ୍ତର ସେଠାରୁ ସତ୍ୱର ଫେରି ପିତା ପାଶେ ଯାଇଁ ଯେ ॥ କହି ସକଳ ବୃତ୍ତାନ୍ତ ହେ ବୋଇଲେ ସେ ତପୋବନ୍ତ । ଭଗବତୀଙ୍କ ଧ୍ୟାନ କଲେ ମିଳିବ କାମନା ହେବ ସିଦ୍ଧାନ୍ତ ଯେ ॥ ଧ୍ୟାନେ ତୋଷି ଭଗବତୀ ଯେ ଜାଣଇ ପୂର୍ବ ଭାରତୀ । ଜାନୁଘଣ୍ଟ ତାହାଙ୍କ ଠାରୁ ପାଇଅଛି ପଦ୍ମନାଭ ବଦତି ଯେ । ୧୦ ।

—×—

## ୫୬ଶତ ଛାନ୍ଦ

ଶୁଣି ତୋଷ ଗୃପଧର ଯେ ବୈଷ୍ଣବ ଧନୁ ଆବର । ପର୍ଶୁକୁଠାର କେଉଁଠାରୁ ପାଇଲ ତାହା ବେଗେ ବ୍ୟକ୍ତ କର ହେ ॥ ବୋଲେ ଜମଦଗ୍ନି-

ସୁତ ଯେ ଶୁଣ ସେ ସର୍ବ ବୃତ୍ତାନ୍ତ । ଏକଦିନେ ସୈନ୍ୟସହ ସହସ୍ରାର୍ଜ୍ଜୁନ ପାରଧିକି ଉପଗତ ଯେ ॥ ବନେ ଦିବା ଅବସାନ ଯେ ହୋଇନ୍ତେ ସହସ୍ରାର୍ଜ୍ଜୁନ । ଆମ୍ଭ ପିତାଙ୍କ ଆଶ୍ରମରେ ମିଳିଲେ ଘେନିଣ ସାମନ୍ତ ସୈନ୍ୟ ଯେ ॥ ତାଙ୍କୁ ଦେଖି ପିତା ମୋର ଯେ କଲେ ଅତିଥି ସତ୍କାର । ରାତ୍ରରେ ଭୋଜନ ଶୟନ ଆସନ ଦେଇ ହୃଷ୍ଟ ମୁନିବର ଯେ ॥ ପ୍ରଭାତରୁ ରାଜା ଉଠି ଯେ ମନ୍ତ୍ରୀଙ୍କି ବଚନ ଭଣି । କେଉଁଠାରୁ ଏତେ ଦ୍ରବ୍ୟ ଆୟୋଜନ କରି ପକାଇଲେ ଋଷି ଯେ । ଆମ୍ଭର ସୈନ୍ୟ ସାମନ୍ତ ଯେ ଖାଇ କରି ହେଲେ ସୁସ୍ଥ । ରାଜା ବଚନେ ମନ୍ତ୍ରୀବର ବୋଲଇ ଘଟଣା ଶୁଣ ସମସ୍ତ ଯେ ॥ ଅଛି ତାଙ୍କ ପଶେ ରତ୍ନ ଯେ କାମଧେନୁ ନାମେ ଗାଈ । ତାହା ପ୍ରସାଦୁ ଯାହା ଇଚ୍ଛା କରନ୍ତି ସକଳ ପୂରଣ ହୋଇ ଯେ ॥ ଶୁଣି ରାଜା ମନ୍ତ୍ରୀ ଗିରି ଯେ ଋଷିଙ୍କ ପାଶେ ସତ୍ୱର । ପ୍ରବେଶି ବୋଲନ୍ତି କାମଧେନୁ ଗୋଟି ଦିଅ ମୋତେ ଋଷିବର ଯେ ॥ ଶୁଣି ନାସ୍ତି କଲେ ପିତା ସେ ସହସ୍ରାର୍ଜ୍ଜୁନ ବଳବନ୍ତା । ବଳାତ୍କାର କାମଧେନୁ ଘେନିଗଲେ ପିତାକରି ମହାଚିନ୍ତା ଯେ ॥ ବସିଛନ୍ତି ଆଶ୍ରମରେ ଯେ ଆମ୍ଭେ ଏହି ସମୟରେ । ତୀର୍ଥ ପର୍ଯ୍ୟଟନ ସାରିଣ ଦର୍ଶନ ଆଶେ ପିତାଙ୍କ ଶ୍ରୀମୁରେ ଯେ ॥ ପ୍ରବେଶ ହୁଅନ୍ତେ ଆସି ଯେ ପିତା ଏ ସମସ୍ତ ଭଣି । ବାରୁ ମହାକ୍ରୋଧେ ସହସ୍ରାର୍ଜ୍ଜୁନ ରାଜ୍ୟେ ଯାଇଣ ମୁହିଁ ପ୍ରବେଶି ଯେ ॥ ରାଜ୍ୟଭର କଲି ତାର ଯେ ଶୁଣି ଯେ ଯୁଦ୍ଧେ ବାହାର । ହେବାରୁ ପଳାଇ ଆସିଣ ଯେ ମୁହିଁ ସିଦ୍ଧବନେ ଘୋରତର ଯେ ॥ ତପସ୍ୟାକୁ ଆଚରିଲି ଯେ ବିଷ୍ଣୁ ଆରାଧନା କଲି । କେତେ ଦିନ ପରେ ତପ ପୂର୍ଣ୍ଣ ହୋଇନ୍ତେ ବିଷ୍ଣୁଠାରୁ କଲି ନେଲି ଯେ ॥ ଏ ବୈଷ୍ଣବ ଧନୁଶର ଯେ ଆବର ପର୍ଶୁକୁଠାର । ଦେଇ ଭଗବାନ ବୋଇଲେ ହେ ରାମ ଏଥେଁ ଦୁଷ୍ଟ ନାଶ କର ଯେ ॥ ପାଇଣ ଏସନ ବର ଯେ ମାହେଶ୍ୱରୀ କଟକର । ପ୍ରବେଶିଣ ସହସ୍ରାର୍ଜ୍ଜୁନ ସଙ୍ଗେ ଯୁଦ୍ଧକଲି ମୁହିଁ ପରଖର ଯେ ॥ ସୈନ୍ୟ ତାର ବଧ କଲି ଯେ ତା ସହସ୍ରବାହୁ ଛେଦିଲି । ଶେଷେ କାମଧେନୁ ଘେନିଣ ମୁଁ ହର୍ଷେ ପିତା ପାଶେ ପ୍ରବେଶିଲି ଯେ ॥ ଏହି ସମସ୍ତ କାରଣୁ ଯେ ବିଷ୍ଣୁ ଏ ବୈଷ୍ଣବୀ ଧନୁ । ପର୍ଶୁକୁଠାରହି ମୋତେ ଦେଇଛନ୍ତି ଆହେ ଦଶରଥସୁନୁ ଯେ ॥ ଶତ୍ରେ ଚିନ୍ତି ସୀତାକାନ୍ତ ଯେ ପଦ୍ମନାଭ କହେ ଗୀତ । ଉଦ୍ଧାରିଣ ଧରି ପ୍ରଭୁ ଆଦିମୂଳ ଅଟେ ମୁହିଁ ଅପଣ୍ଡିତ ଯେ ।

—X—

## ୫୭ ଶତ ଛାନ୍ଦ

ଶୁଣି ଏସନ ଉତ୍ତର ଯେ ବୋଲନ୍ତି କୋଦଣ୍ଡଧର । କାହିଁପାଇଁ ତୁମ୍ଭେ ନିକ୍ଷତ୍ର କରିଛ ପୃଥ୍ୱୀ ଏକବିଂଶବାର ଯେ ॥ ପର୍ଶୁରାମ ଭଣି ଗିର ଯେ ଶୁଣ ସେହି ସମାଚାର । ସହସ୍ରାର୍ଜ୍ଜୁନର ଏକ ପୁତ୍ର ଥିଲା ନାମ ବିରୋଚନ ବୀର ଯେ ॥ ଯୁଦ୍ଧବେଳେ ବନେ ଯାଇ ଯେ ଲୁଚିଲା ସେ ଭୟ ପାଇ । ପିତା ମୃତ୍ୟୁ ପରେ ଆସିଣ ଦେଖଇ ରାଜ୍ୟ ଛାରଖାର ହୋଇ ଯେ ॥ ମନେ ମହା-କ୍ରୋଧ ଧରି ଯେ କଚ୍ଛୁଦନ ଗତ କରି । ମୋ ପିତା ଆଶ୍ରମ ନିକଟେ ମିଳିଲା ପ୍ରତିଶୋଧ ନେବ ବୋଲି ଯେ ॥ ଦେଖିଲାକ ଆମ୍ଭେମାନେ ଯେ ନାହୁଁ ପିତା ସନ୍ନିଧାନେ । ଏକାକୀ ଦେଖିଣ ତାହାଙ୍କୁ ବଧିଣ ରକ୍ତନେଲା ହର୍ଷମନେ ଯେ ॥ ସେହି ରୁଧିର ଘେନିଣ ଯେ କଲା ପିତୃ ତରପଣ । ଏମନ୍ତ ଅବସ୍ଥା ଦେଖି ଆମ୍ଭ ମାତା ବିକଳେ କଲେ ରୋଦନ ଯେ ॥ ଆମ୍ଭେ ଥିଲୁ ସିଦ୍ଧବଦନ ଯେ ତପସ୍ୟାରେ ହୋଇ ମଗ୍ନ । ଯୋଗବଳେ ତାହା ଜାଣିବାରୁ କଲୁ ମାତା ନିକଟେ ଗମନ ॥ ଶୁଣି ପିତା ବଧବାଣୀ ଯେ ଏ ପ୍ରତିଜ୍ଞାକଲୁ ପୁଣି । ଆସିଠାରୁ ପୃଥ୍ୱୀ ନିକ୍ଷତ୍ର କରିବି ବଂଶେ ନ ଦେବ କେ ପାଣି ଯେ ॥ ଏତେ କହି କୋପ ହୋଇ ଯେ ମିଳିଲି ତା ରାଜ୍ୟେ ଯାଇ । ବିରୋଚନ ସଙ୍ଗେ ଭେଟ ହେଲା ପହୁଁ ପ୍ରାଣେ ବଧ କରି ତହୁଁ ହେ ॥ ରଖିଣ ତାର ରୁଧିରଯେ ଯେତେ ଥିଲେ କ୍ଷତ୍ରିବର । ସମସ୍ତଙ୍କ ଶିର ଛେଦନ କରନ୍ତେ ବହିଲା ରକତ ଧାର ଯେ ॥ ସମସ୍ତ ରକ୍ତ ଘେନିଣ ଯେ କଲି ପିତୃ ତରପଣ । ଏହିପରି ପୃଥ୍ୱୀକୁ ଏକବିଂଶ ବାର କଲି କ୍ଷାରଶୂନ୍ୟ ଯେ ॥ କେବଳ ଏ ଦଶରଥ ଯେ ଥିଲା ବୋଲି ଅପୁତ୍ରିକ । ପ୍ରାଣ ଭୟେ ନାରୀମଧ୍ୟେ ଲୁଚିବାରୁ ନ ଗଲି ମୁଁ ତାର ପାଶ ଯେ ॥ ଏବେ ତୁମ୍ଭେ ହୋଇ ଜନ୍ମ ଯେ ଶିବଧନୁ କଲ ଭଗ୍ନ । ଏ ବୈଷ୍ଣବୀ ଧନୁ ଧରିବାକୁ ହେବ କହେ ପଦ୍ମନାଭ ଘନ ସେ । ୨୩ ।

—x—

## ୫୮ ଶତ ଛାନ୍ଦ

ଦେଖି ଏସନ ରୀତ ଯେ ପୁଣି ପୁଚ୍ଛି ଦାଶରଥି । କେଉଁଠାରୁ ଏହି ଧନୁ ଜାତ ହେଲା କହ ଯମଦଗ୍ନି ବହ୍ନି ହେ ॥ ଶୁଣି ବୋଲେ ପର୍ଶୁ-ଧର ଯେ ପ୍ରସିଦ୍ଧ ସତ୍ୟଯୁଗର । ଶ୍ୱେତରାଜା ଏକ ଯଜ୍ଞ କରିଥିଲେ ଗଲା କଚ୍ଛି ଦିନାନ୍ତର ଯେ ॥ ସେ ଯଜ୍ଞକୁଣ୍ଡରୁ ଜାଣ ଯେ ବାଉଁଶ ବୃକ୍ଷେକ ଜନ୍ମ । ସପ୍ତପତ୍ର ହୋଇ ବଢ଼ନ୍ତେ ହେ ବୃକ୍ଷ ଦେଖି ତୋଷ ଦେବଗଣ ଯେ ॥ ତହୁଁ ସେ ବୃକ୍ଷକୁ ଆଣି ଯେ ତା ପ୍ରଥମ ପତ୍ରକୁ ହାଣି । ଅଜଗବ

ନାମେ ଧନୁ ତିଆରିଲେ ଇନ୍ଦ୍ର ବହିଲେ ତା ପୁଣି ଯେ ॥ କହିଲି ଦ୍ୱିତୀୟ ପର୍ବେଣ ଯେ ପିନାକ ଧନୁ ଉତ୍ପନ୍ନ । ମହାଦେବ କରେ ନେଇ ସମର୍ପିଲେ ନାଶିବାକୁ ଦୁଷ୍ଟଗଣ ଯେ ॥ ତୃତୀୟ ପର୍ବ ସାରଙ୍ଗ ଯେ ବହିଲେ ତା ଶିଖରଙ୍ଗ । ଚତୁର୍ଥ ପର୍ବ ଶିବଧନୁ ହୋଇଲା ନେଇଣ ତା ସଦାଶିବ ଯେ ॥ ଜନକଙ୍କୁ ନେଇ ଦେଲେ ଯେ ତାକୁ ତ ଭାଙ୍ଗିଲ ହେଳେ । ପଞ୍ଚମପର୍ବେ ବୈଷ୍ଣବୀଧନୁ ଜାତ ବିଷ୍ଣୁ ତାହା ମୋତେ ଦେଲେ ଯେ ॥ ଷଷ୍ଠ ପର୍ବରେ ଗାଣ୍ଡିବ ଯେ କରି ସାବର୍ଣ୍ଣିବଲ୍ଲଭ । ଅତି ଯତନରେ ରଖିଛନ୍ତି ପାଶେ ଦ୍ୱାପରେ ଅର୍ଜ୍ଜୁନ ନେବ ଯେ ॥ ସପ୍ତମ ପର୍ବକ ବଂଶୀ ଯେ କଲେ ଦେବ ହୋଇ ଖୁସି । ଦ୍ୱାପରେ ଶ୍ରୀକୃଷ୍ଣ ଅବତାର ହୋଇମୋହିବେକ ଗୋପବାସୀ ହେ ॥ ଏସନକ ଧନୁ ଜନ୍ମ ହେ କହିଲି ଆହେ ଶ୍ରୀରାମ । ନିଅ ଯେ ବୈଷ୍ଣବୀ ଧନୁ ବେଗେ ଧରି କହେ ପଦ୍ମନାଭ ଧ୍ୟାନ । ୧୦ ।



## ୫୯ଶ ଛାନ୍ଦ -

ଏତେ କହି ପର୍ଶୁଧର ଧନୁ ଦେଲେ ରାମ କରି କର । ଧନୁ ବଢ଼ାଇ ବଅନ୍ତେ ପର୍ଶୁଧର ବିଷ୍ଣୁକଳା ଗଲା ତାର ଯେ । ରାମ ଧରି ଧନୁଶର ଯେ କୋପେ ହୋଇ ଜରଜର । କାହାକୁ ଏ ଶର କରିବି ପ୍ରହାର ବେଗେ କହ ପର୍ଶୁଧର ॥ ଯେ ॥ ପର୍ଶୁରାମ ବୋଲେ ବାଣୀ ହେ କ୍ଷମାକର ରଘୁମଣି । ମୁହିଁ ବୁଦ୍ଧିହୀନ ଗର୍ବେ ନ ଚହ୍ନିଣ କଟୁବାକ୍ୟ ଅଛି ଭଣି ହେ ॥ ଯେତେ ଅଛି ପାପମାନ ହେ ପୁରାତନ ଯେ ନୂତନ । କୃପାଦୃଷ୍ଟି କରି ହେ କୋଦଣ୍ଡଧାରୀ ଛେଦ ପକାଅ ବହନ ଯେ ॥ ଶୁଣି ଶ୍ରୀରାମ ହରଷ ଯେ ବାଣ ବିନ୍ଧନ୍ତେ ଆକାଶ । ସର୍ବ ପାପମାନ ହୋଇଲା ଛେଦନ ଭାବେ ଯମଦଗ୍ନି ଶିଷ୍ୟ ଯେ ॥ ଏ ନିଶ୍ଚେ ବିଷ୍ଣୁ ବତାର ଯେ ପ୍ରଦକ୍ଷିଣ ବାରୁବାର । ପଦ୍ମନାଭ କହି ଚଳିଗଲେ ସେହି ଧାଇଁ ଶ୍ରୀରାମ ପୟର ଯେ ।୭।



## ୬୦ତମ ଛାନ୍ଦ

ରାଗ—କଳଶୀ

ଧନୁ ଧରିବା ଦେଖିଣ ଜନକଦୁଲଣୀ । ଧଇର୍ଯ୍ୟ ହରାଇ ଦେବୀ ମନେ ମନେ ଶୁଣି ॥ ଶିବଧନୁ ଭାଙ୍ଗି ରାମ ମୋତେ ବାହାହେଲେ । ପୁଣି ପର୍ଶୁରାମ ଧନୁ ଏଠାରୁ ଧଇଲେ ॥ ଗଲାବେଳେ ସ୍ୱୟମ୍ବର କରିଥିଲେ ଅବା । ପୁଣିହିଁ ଶ୍ରୀରାମ ଏଥି ହୋଇଲେକ ବଭା ॥ ଏତେକ ବିଚାରି ମନଦୁଃଖେ ବଇଦେହୀ ବୋଲେ ଚଗୋଡ଼ୀ ବସିଲେ ତଳ ଧରଣୀକି ଚାହିଁ ।



## ୭୧ତମ ଛାନ୍ଦ

ରାଗ—ମୁଖାରୀ ପଦ୍ମପଞ୍ଚ

ପର୍ଶୁରାମ ଧନୁ ରାମ ଧରିବାର ଦେଖି । ମନୋଦୁଃଖେ ମାନଭର ହେଲେ ଚନ୍ଦ୍ରମୁଖୀ ॥ ଟେକ ସଖି ଟେକ ଏବେ ଶଶିଜିତ ମୁଖ । ଜିଣିବାକୁ ଆସିଥିଲେ ପର୍ଶୁଧର ଦେଖ ॥ ବିମ୍ବାଧରି ତୋ ବିମୁଖ ମୋତେ ବହୁ ଦୁଃଖ । ସୁଖଦାୟିନୀ ତୋ ବିନୁ ଅଛି କାହିଁ ସୁଖ ॥ ପ୍ରତାପ ଛୁଆଇଁ କରାଇଛୁ ଯେଉଁ ସତ୍ୟ । କରିଥାଅ ସଖି ତୁହି ସେହି କଥା ତଥ୍ୟ ॥ ଶୁଣି ରାମ ରମ୍ୟବାଣୀ ରମଣୀରତନ । ଆନନ୍ଦ ହୋଇ ଟେକିଲେ ଚନ୍ଦ୍ରମାବଦନ ॥ ହାସ ରସ ପରିହାସ କଲେ ବହୁ ଲୀଳା । ରସସିନ୍ଧୁରେ ବୁଡ଼ିଲେ ରସକର୍ମଶୀଳା ॥ ଅଯୋଧ୍ୟା ପ୍ରବେଶ ଦଶରଥ ମହୀପତି । ବୋଲେ ଋଷି ରାମକୀର୍ତ୍ତି ଶୁଭ୍ର କଲି କ୍ଷିତି ।

—×—

## ୭୨ତମ ଛାନ୍ଦ

ରାଗ—କୃଷ୍ଣକାଳୀ ବୃତ୍ତେ

ଅଯୋଧ୍ୟା କଟକେ ଦଶରଥ ପରବେଶ । ଅନେକ ନୃପତି ତହିଁ ଅଛନ୍ତି ଯେ ପାଶ ॥ ବାଦ୍ୟମାନଙ୍କରେ ପୂରଇ ଆକାଶ । ସବୁଙ୍କର ଘରେ ନେତ ପତାକା କଳଶ ॥ ସବୁଦ୍ୱାରେ ପୂର୍ଣ୍ଣକୁମ୍ଭ କୁସୁମ ତୋରଣ । ଗାଆନ୍ତି ମଙ୍ଗଳଗୀତ ବାରନାରୀଗଣ ॥ ହୁଳହୁଳୀ ଶବଦ ସିନ୍ଧୁ ଗର୍ଜ୍ଜନ ଜିଣି । ଭାଟ କଏବାର କହୁଛନ୍ତି ବେଳ ଜାଣି ॥ ପୁତ୍ରବଧୂ ପୁତ୍ର ବଧୂ ଘେନିଣ ନୃପତି । ଶ୍ରୀନଗରେ ପରବେଶ ହୋଇଲେ ତତ୍ପରେ ॥ ଶିବିକାମାନରୁ ଓହ୍ଲାଇଣ କନ୍ୟା ବର । ନଉଛାଳି କରି ନେଲେ ଯେ ଯାହାର ପୁର ॥ ହୁଳହୁଳୀ ଦେଇଣ କୁସୁମ ବୃଷ୍ଟି କଲେ । ସବନାରୀ ବନ୍ଦାପନା କରିଣ ଦେଖିଲେ ॥ ରାମ ସୀତା ଦେଖି କଉଶଲ୍ୟାଙ୍କ ଆନନ୍ଦ । ଚକୋର ଦେଖିଲା କିବା ସରଗର ଚନ୍ଦ ॥ ବହୁ ଉତ୍ସବରେ କରାଇଲେ ନୃତ୍ୟ ଗୀତ । ବହୁ ଆନନ୍ଦ ହୋଇଲା ସକଳ ସାମନ୍ତ ॥ ବହୁ ଦ୍ରବ୍ୟମାନ ଦ୍ୱିଜବରେ ଦେଲେ ଦାନ । ଅନ୍ନବସ୍ତ୍ର ଦ୍ୱିଜେ ଦତ୍ତ କଲେ ଅବଚ୍ଛିନ୍ନ ॥ ଅଯୋଧ୍ୟା କଟକ ଦିଶି ସ୍ୱର୍ଗପ୍ରାୟ ଶୋଭା । ଦଶରଥ ମହୀପତି ଦିଶିମି ମଘବା ॥ କାମ ରତି ପ୍ରାୟେ ତହିଁ ଅଙ୍ଗନା ପୁରୁଷ । ବୈକୁଣ୍ଠ ତେଜିଣ ଯହିଁ ଶ୍ରୀହରି ପ୍ରବେଶ ॥ ସେ କଟକ ଶୋଭାକୁ ମୁଁ କି ଦେବି ଉପମା । ତହିଁରେ ବିଜୟେ କରିଛନ୍ତି ସିନ୍ଧୁଜେମା ॥ ରଥ ଗଜ ଅଶ୍ୱ ନର ଚତୁରଙ୍ଗ ବଳ । ସକଳ ନୃପେ ଖଟନ୍ତି ଚରଣର ତଳ ॥ ସମସ୍ତ ନୃପତିମାନେ ହୋଇଲେ ମେଳଣି । ଯେ ଯେମନ୍ତ ତେମନ୍ତ ଦେଖାଇ

ଦେଲେ ଆଣି ॥ ରାଜାମାନଙ୍କୁ ମେଲାଣି ଦେଇଁ ମନ୍ତ୍ରପତି । ଯେ ଯାହା ଦେଶକୁ ଗଲେ ସକଳ ନୃପତି ॥ ଜଣାଇଲେ ଭରତ ଶତ୍ରୁଘନଙ୍କୁ ଯିବାକୁ ନୃପତି ଶରଧା କରଛନ୍ତି ଦେଖିବାକୁ ॥ ଶୁଣି ଦଶରଥ ରାଜା ସ୍ୱୀକାର କଲେ । ଭରତ ଶତ୍ରୁଘନଙ୍କୁ ମାଉଳ ଘେନଗଲେ ॥ ରଥ ଚଢ଼ି ନିଜ ଦେଶେ ହୋଇଲେ ପ୍ରବେଶ । ନାତିଙ୍କି ଦେଖି କୈକେୟୀ ହେଲେ ଅତି ତୋଷ ॥ ବହୁ ସୁଖେ ରହିଲେ ସେ ଭରତ ଶତ୍ରୁଘନ ! ବୋଲେ ବଶି ଏମନ୍ତେ ହେ ଗଲା କେତେ ଦିନ । ୧୦ ।

—×—

## ୭ମ ଛାନ୍ଦ

ରାଗ—ବଙ୍ଗଳ କାମୋଦୀ

ଜାନକୀ ସଙ୍ଗତେ ବହୁ ବିନୋଦ । କମଳ ଚୁମ୍ବଇ କି ଷଟପଦ ॥ ରାମ୍ବଲକ୍ଷଣ ଅଙ୍ଗେ । ମୃଗୟା କରେ ରଙ୍ଗେ । ଘେନି ଜାନକୀ ସଙ୍ଗେ ॥ ଶ୍ରୀରାମ ପ୍ରତିଜ୍ଞା ଶୁଣି ଶ୍ରବଣେ । ଭୟେ କମ୍ପନ୍ତି ବୀର ନୃପଗଣେ । ତାଙ୍କ ତେଜ ରାଜନ । ଆନନ୍ଦ ହେଉଥାନ୍ତି ପ୍ରତିଦିନ ॥ ବିଚାର କରେ ନିତି । ରାମ ହେବ ନୃପତି । ସୁଖେ ପାଳିବେ କ୍ଷିତି ॥ ଏମନ୍ତ ବିଚାର ନୃପତିବର । ରାମ ଅଭିଷେକ ସେ ତତପର ! ରାମଚରିତ ରସ । ବଶି କଲା ପୀୟୂଷ । ପ୍ରଥମ କାଣ୍ଡ ଶେଷ । ୫ ।

—ଆଦ୍ୟକାଣ୍ଡ ସମାପ୍ତ—

—×—

# ଅଯୋଧ୍ୟା କାଣ୍ଡ

## ୧ମ ଛାନ୍ଦ

ଏଥୁଅନନ୍ତରେ କଥା ଶୁଣ ଗୋ ସର୍ବାଣି । ଅଯୋଧ୍ୟାକାଣ୍ଡ ଚରିତ ଅପୂର୍ବ କାହାଣୀ ॥ ଶ୍ରୀରାମ ସୀତାଙ୍କ ସଙ୍ଗେ ବିହାର କରନ୍ତି । ନାନା କଉତୁକେ ଜନମାନଙ୍କୁ ହରନ୍ତି ॥ ବୁଦ୍ଧି ବିବେକଯୋଗରେ ତୁଲ୍ୟ ରାମଚନ୍ଦ୍ର । ଦେଖି ଦଶରଥ ରାଜା ମନରେ ଆନନ୍ଦ ॥ ବିଚାରନ୍ତି ଶ୍ରୀରାମଙ୍କୁ ନୃପତି କରିବି । ରାଜ୍ୟଭାର ସମର୍ପିଣ ତପସ୍ୟାକୁ ଯିବି ॥ ଏତେ ଭାବି ନୃପତି ଯେ ଆସ୍ଥାନେ ବସିଲେ । ବୋଲଇ ବଶିଷ୍ଠ ପାଶେ ମନ୍ତ୍ରୀ ଡକାଇଲେ । ୨ ।

## ୨ୟ ଛାନ୍ଦ—ରାମ ବନବାସ

### ରାଗ—କନଡ଼ା

ଗୁରୁ ଗଉରବ ଛାଡ଼ି ଯେ ଅମାତ୍ୟ ମନ୍ତ୍ରିମାନଙ୍କୁ ପଚାରିଲେ । ରାମ ରାଜ୍ୟକୁ ଯୋଗ୍ୟ କି ହୋଇଲେ । ଯୁଗେ ଯୁଗେ ରାମ ଯୁବରାଜ ହୋନ୍ତୁ ବୋଲି ସମସ୍ତେ ବୋଇଲେ ହେ । ସୁଜନେ ! ରାମ ସକଳ ଗୁଣରେ ନିପୁଣ । ସୂର୍ଯ୍ୟବଂଶ କୁଞ୍ଜବନ ଅରୁଣ । ରିପୁ ନୃପତିଙ୍କି ନିବାରିବା ପାଇଁ ଜାତ ମୃଗେନ୍ଦ୍ର ତରୁଣ ହେ । ଖେ ଦେବ ॥ ଏମନ୍ତ ଶୁଣି ନୃପତି ଚୂଡ଼ାମଣି ମନ୍ତ୍ରୀକି ଗୁହିଁ ଆଜ୍ଞା ଦେଲେ । ନଗ୍ରେ ଉତ୍ସବ କରାଅ ବୋଇଲେ । ଶ୍ରୀରାମଚନ୍ଦ୍ର ଅଯୋଧ୍ୟା ଯୁବରାଜ ହେବାକୁ ଯୋଗ୍ୟ ହୋଇଲେ ହେ । ସୁମନ୍ତ ! ଏବେ ଅଭିଷେକ ବାଦ୍ୟ ଭିଆଅ । ଆମ୍ଭ କଟକେ ଘୋଷଣା ଦିଆଅ । ନକ୍ଷତ୍ର, ବାର, ଚନ୍ଦ୍ର ଯୋଗ ହୋଇଛି ଶ୍ରୀରାମଚନ୍ଦ୍ର ଅଣାଅ ହେ । ସୁମନ୍ତ ! ଆଜ୍ଞା ପ୍ରମାଣରେ ନଗରେ ସୁମନ୍ତ ଉତ୍ସବ ମଣ୍ଡଣୀକି କଲେ । ଅଭିଷେକର ବାଦ୍ୟ ଭିଆଇଲେ । ରାତ୍ର ପାହିଲେ ରାମ ରାଜା ହୋଇବେ ଏ ଘୋଷଣା ଦିଆଇଲେ ସେ ସୁମନ୍ତ ! ରାମଚନ୍ଦ୍ରଙ୍କୁ ରଥରେ ବସାଇ । ଘେନି ଅଇଲେ ରାଜା ଆଜ୍ଞା ପାଇ । ରାମ ନୃପତିଙ୍କି ଦର୍ଶନ କରିଣ ବସିଲେ ଶିର ନୁଆଁଇ ହେ । ସୁଜନେ ॥ ରାମଙ୍କୁ ଗୁହିଁ ଆନନ୍ଦ ହୋଇ ରାଜା ବୋଲନ୍ତି ଆହେ ରାମ ଶୁଣ । ତୁମ୍ଭେ ସକଳ ଗୁଣରେ ନିପୁଣ । ବିଶେଷେ ଜ୍ୟେଷ୍ଠ ରାଣୀଙ୍କ ଜ୍ୟେଷ୍ଠ ପୁତ୍ର କୁଳକୁ ଅଟ କାରଣ ହେ । ଶ୍ରୀରାମ । କାଲି ହୋଇବ ତୁମ୍ଭେ ଯୁବରାଜା । ଆଜ ଅଧିବାସରେ ପାଅ ପୂଜା । ପୁଷ୍ୟାନକ୍ଷତ୍ରରେ କକଡ଼ା ଚନ୍ଦ୍ରମା କହିଲେ ବଶିଷ୍ଠ ଦ୍ୱିଜା ହେ । ଶ୍ରୀରାମ ! ଏମନ୍ତ ବାଣୀ ଅନ୍ତଃପୁରେ ଶୁଭିଲା ଶୁଣି ଅଇଲା ଯେ ମନ୍ଥରୀ । କୈକେୟୀଙ୍କି କହିଲା କରଯୋଡ଼ି । ଶୁଣିଣ ସେ ତାକୁ ଆପଣା କଣ୍ଠରୁ ରତ୍ନମାଳା ଦେଲେ କାଢ଼ି ସେ । ସୁନ୍ଦରୀ ! ଦେଖି ଚକିତ ହୋଇଲା ମନ୍ଥରା । ମାଳା ପକାଇ ବୋଲେ ନାହିଁ ଲୋଡ଼ା ॥ ନୃପତି ସ୍ୱଉଭାଗୀ ରାଣୀ ବୋଲାଅ ଶୁଣି ନ ପାଅ କି ବ୍ରୀଡ଼ା ଗୋ ॥ ପୁଣି ହିଁ ମନ୍ଥରା ବୋଇଲା ତାହାଙ୍କୁ ବୁଝାଇ ଦିଅ କାହିଁପାଇଁ । ତୁମ୍ଭ ପୁତ୍ର ତ ରାଜା ହେଲେ ନାହିଁ । କଉଶଲ୍ୟା ରାଜମାତା ବୋଲାଇବେ ତୁମ୍ଭର ହର୍ଷ କିପାଇଁ ଗୋ । ସୁନ୍ଦରୀ ! ଏବେ ଶୟନ କର କ୍ରୋଧପୁର । ରାଜା ଅଇଲେ ମାଗ ଦେନି ବର । ରାମ ବନେ ଯିବେ ଭରତ ରାଜା ହେବେ ପୂର୍ବକଥା ମନେ କର ଗୋ । ସୁନ୍ଦରୀ ! ମନ୍ଥରା ବାଣୀ କୈକେୟୀ ରାଣୀ ଶୁଣି କ୍ରୋଧ-ମନ୍ଦିରରେ ପଶିଗଲେ । ଦୃଢ଼ କରିଣ କବାଟ ପାଡ଼ିଲେ । ଗୁରୁକ୍ରୋଧ ବହି ଧରଣୀରେ ଶୋଇ ଆଭରଣ ଦୂର କଲେ ହେ । ସୁନ୍ଦରୀ ! ରାଜା ରାମଙ୍କୁ ଦେଇଣ ମେଲାଣି । ନିଜ ସଦନେ ପ୍ରବେଶ ରଜନୀ ॥

ମଦନ ବଶେ କେ କେୟୀରାଣୀ ପାଶେ କହେ ନାନା ଗୁହ୍ୟବାଣୀ ସେ । ରାଜନ ॥ ଉଠ ଉଠ ଆରେ ନରେନ୍ଦ୍ର ନନ୍ଦମା କପାଇଁ କରୁ ଏଡ଼େ ମାନ । କହ କହ ମୋତେ ପ୍ରିୟ ବଚନ । ଯାହା ମାଗିବୁ ତାହା ଯେବେ ନ ଦେବ ନାଶିବ ସୁକୃତମାନ ଗୋ । ସୁନ୍ଦରୀ ! ଶୁଣି ପୂର୍ବ ବରମାଗେ ତରୁଣୀ । ସତ୍ୟ କରାଇ କହେ ପୁଣ ପୁଣି । ଭରତ ରାଜା ହେବେ ରାମ ବନେ ଯିବେ ଏହା ହେବ ନୃପମଣି ହେ । ଶ୍ରେ ଦେବ ॥ ଶୁଣି ତା ନୃପତି ଶିରରେ କୁଳଶ ପଡ଼ିଲା ପ୍ରାୟେକ ହୋଇଲା । ଆଉ ଦେହରେ ଜ୍ଞାନ ନ ରହିଲା । କେତେବେଳେ ପୁଣି ସ୍ୱପ୍ନପ୍ରାୟ ମଣି କଇକେୟୀକି କହିଲ ସେ । ରାଜନ ! ଏହା ମୋତେ ନ ବୋଲରେ ତରୁଣୀ । ପ୍ରାଣ ମାଗିଲେ ଦେବ ଏହିକ୍ଷଣି । ବୋଲେ ବଶି ରାଜାଙ୍କର କ୍ରୋଧଭରେ ବେନନେତ୍ରୁ ବହେ ପାଣି ହେ । ସୁଜନେ । ୯ ।

—×—

## ୩ୟ ଛାନ୍ଦ

ରାଗ—ଆନନ୍ଦଭୈରବ

କଉଶଲ୍ୟା ଆହ ଯେତେକ ନାରୀ । ନ ରହାନ୍ତ ତୋର କୋପକୁ ଡରି । ଶ୍ରୀରାମକୁ ଯେବେ ପେଷିବୁ ବନେ । କ ବୋଲିବେ ମୋତେ ସକଳ ଜନେ । ଆରେ କୋପନାବର । ଏବେ କୋପ ସମ୍ବର । ଯେନ ବିନୟ ମୋର । ଧରୁଅଛି ତୋ କର ॥ ରାମକୁ ନ ଦେଖି ଛାଡ଼ିବ ପ୍ରାଣ । ଏ କଥା ମୋହର ସତ୍ୟ ପ୍ରମାଣ । କରିଥିଲି ତୋତେ ଗଳାର ମଣି । କାଳେ ହୋଇଲୁ ତୁ କାଳସର୍ପିଣୀ ॥ କ ଦୋଷ କଲେ ତୋତେ ମୋର ରାମ । କପାଇଁ ତାହାଙ୍କୁ ହୋଇଲୁ ବାମ ॥ କାଳେ ହେଁ ନ ଥିଲି ତୋର ଏ ରୀତ । ଶିଖାଇଲା ତୋତେ କେଉଁ ଯୁବତୀ ॥ ଗୁହ୍ୟ କହୁଁ ହେଲା ରଜନୀ ଶେଷ । ଶଙ୍ଖ ଶବଦ ଶୁଭିଲା ବିଶେଷ । କେବେହେଁ ତା ମନ ନୋହିଲା ତୋଷ । ବୋଲେ ବଶି କଲା ରୋଷ ଅଶେଷ । ୪ ।

—×—

## ୪ର୍ଥ—ଛାନ୍ଦ

ରାଗ—ସିନ୍ଧୁଡ଼ା

ରାଜାଙ୍କ ବଚନ ଦେଖିଣ କୈକେୟୀ ବୋଲନ୍ତ ଶୁଣ ନୃପତ ।
ଶୁଣିଛ ତ ସତ୍ୟପାଇଁ ପୂର୍ବେ ରାଜାମାନେ କଲେ ଯେତେ ରୀତ ॥
ଆହେ ସତ୍ୟବକତା । ସତ୍ୟ ତେଜିଲେ ମୋହର ହତ୍ୟା ।
ଶୁଭିବ ତ୍ରୈଲୋକ୍ୟ ବାରତା । ଜନ୍ମା ହେଉଛ ଏଡ଼େ ବଞ୍ଚିତା ହେ ॥

ଏମନ୍ତ ସମୟେ ସୁମନ୍ତ ଯାଇଣ ଖଣ୍ଡେଦୂରରେ ହେଲେ ଉଭା ।
ଦେଖିଲେ ନୃପତି ମୂର୍ଚ୍ଛିତ ହୋଇଣ ବିଶୁଅଛନ୍ତି ଅଶୋଭା ॥
ଯୋଡ଼ି ସେ ବେନିପାଣି । ସ୍ତୁତି କରିଣ କହଇ ବାଣୀ ।
ଦେବ ଉଦେ ହେଲେ ଦିନମଣି । ରଜା ଅଇଲେ ସମସ୍ତ ଜାଣି ॥
ରାଣୀ ହିଁ ବୋଇଲେ ରଜା ଆଜ୍ଞା ଦେଲେ ରାମ ଆଣି ଆମ୍ଭ ପାଶ ।
ଆଜ୍ଞା ପାଇଣ ସୁମନ୍ତ ମନ୍ତ୍ରୀ ରାମପୁରେ ହୋଇଲେ ପ୍ରବେଶ ।
ଶୁଭେ ମଙ୍ଗଳ ଘୋଷ । ରାମଚନ୍ଦ୍ର ଅଭିଷେକ ବେଶ ।
ଦେଖି ସୁମନ୍ତ ବହୁ ହରଷ । ରଜା ଆଜ୍ଞା ଦେଲେ ରାମ ଆସ ॥
ପିତା ଆଜ୍ଞା କେଲେ ସାନୁଜ ସତ୍ୱରେ ଅଇଲେ କୋଦଣ୍ଡଧର ।
ନୃପତିଙ୍କି ଗୃହିଁ ନମସ୍କାର କଲେ ଛୁଇଁଣ ବେନି ପୟର ।
ଦେଖି ପିତା ବିକଳ । ନୟନରୁ ବହେ ଅଶ୍ରୁଜଳ ।
ରାମ ବୋଲି ହୋଇଲେ ବିକଳ । ଢଳି ପଡ଼ିଲେ ଅବନୀତଳ ॥
ଓଲଗି ହୋଇ କୈକେୟୀଙ୍କି ପୁଚ୍ଛନ୍ତି ଏଥିର ଚରିତ କହ ।
କେଉଁ କାରଣେ ପିତାଙ୍କ ଶୋକ ଏତେ ଲାଗିଲା ମୋତେ ସନ୍ଦେହ ॥
କିବା ମୋ ଅଭିଷେକ । ସୀଉକାରଲୁ କରନ୍ତି ଶୋକ ।
ନାଶ ଗଲେ କିବା ଜ୍ଞାତି ଲୋକ । ତୁମ୍ଭଯୋଗ୍ୟଁ କି ହୁଏ ଏତେକ ॥
କୈକେୟୀ କହନ୍ତି ଶୁଣ ରାମଚନ୍ଦ୍ର ଯହିଁ ପାଇଁ ଏ ମୂର୍ଚ୍ଛିତ ।
ସେ ନ କହିବେ ମୁଁ ତାହାତ କହିବି କଲେ ତୁମେ ସନମତ ॥
ଶୁଣି ଜନକୀକାନ୍ତ । କହୁଛନ୍ତି ମୋର ଏହା ସତ୍ୟ ।
ପ୍ରାଣ ମାଗିଲେ ଦେବି ତୁରିତ । ଅଗ୍ନି ଜାଳିଣ ହୋଇବି ହତ ॥
ସନ୍ତୋଷ ହୋଇଣ ବୋଲନ୍ତି ଜନନୀ ପୂର୍ବେ ଦେଇଛନ୍ତି ବର ।
ତାହା ମାଗିଲାରୁ ନସତ ହୋଇଣ ଶୋକ କରନ୍ତି ପିଅର ।
ତୁମ୍ଭେ ବନକୁ ଯିବ । ଅଭିଷେକ ଭରତ ହୋଇବ ।
ଆଜ ଷଣେ ବିଳମ୍ବ ନୋହିବ । ତେବେ ପିତାଙ୍କ ସତ୍ୟ ରହିବ ॥
ଚଉଦ ବରଷଯାଏ ରାମ ତୁମ୍ଭେ ଧରିଥିବ ଯତିବେଶ ।
ଫଳ ମୂଳ ଖାଇ ଗ୍ରାମେ ନ ପଶିବ ବକଳ କରିବ ବାସ ।
ତାର ନିଷ୍ଠୁର ବାଣୀ । ରାମ ସନମତ କଲେ ପୁଣି ।
ସେହିଁଷଣି ହୋଇଲେ ମେଲାଣି । ବିନ ବିଶି ଶୋକଭରେ ଘେଣି ॥

—X—

**୫ମ ଛାନ୍ଦ**

ରାଗ—କୁମ୍ଭକାମୋଦୀ

ମାତାଙ୍କୁ ଦର୍ଶନ କରି ରାମଚନ୍ଦ୍ର କହନ୍ତି ବଚନ । ଭରତ ରଜା ହେବ ଆମ୍ଭଙ୍କୁ ବନକୁ ପେଷିଲେ ରାଜନ ॥ ଶୁଣି କଉଶଲ୍ୟା ମୂର୍ଚ୍ଛିତ ହୋଇଣ

ପଡ଼ିଲେ ମହୀରେ । ଯେସନେ ମୂଳଚ୍ଛେଦନ କଲେ ପଡ଼େ ଶୁଷ୍କ ତରୁବର । ରାମଚନ୍ଦ୍ର ତାଙ୍କୁ ଧରେଚେତ କରାନ୍ତେ କରନ୍ତି ରୋଦନ । ତୁମ୍ଭଙ୍କୁ କେମନ୍ତେ ମୁଁ ଛାଡ଼ି ରହିବି ଧିକ ମୋ ଜୀବନ ॥ ବିଚାରୁଥାଇଁ ମୋ ରାମ ରାଜା ହେଲେ ଯିବ ମୋ ସନ୍ତାପ । ବିଧି ଏବେ ତାହା ଦେଖାଇ ହରିଲା କଲି ମୁଁ କି ପାପ ॥ ଏହାଶୁଣି ରାମ ଫାଟି ତ ନ ଗଲା ମୋହର ଶରୀର । ବେଦନା ସହିବାକୁ ଏବେ ହୋଇଲା କୁଳିଶୁଁ କଠୋର ॥ ଚାଲ ରାମ ତୁମ୍ଭ ସଙ୍ଗତରେ ମୁହିଁ ଯିବଇଁ ବନକୁ । କେ ନନ୍ଦା କରିବ ବତ୍ସ ପଛେ ଗୋଡ଼ାଇଲେ ଯେ ଧେନୁକୁ ॥ କୈକେୟୀ ଭୟରେ ଦର୍ଶନ କରିଣ ନ ଯାଏ ନାହାକୁ । ଏବେ ସେହି ମୋତେ ଉପହାସ କଲେ କହିବ କାହାକୁ ॥ ଶୁଣି ରାମଚନ୍ଦ୍ର କହନ୍ତି ଜନନୀ କହ ତ ଅମୃତ । ଯୁବତୀମାନଙ୍କର ସକଳ ଧର୍ମ ପତିଙ୍କି ଭକତି ॥ ବନବାସ ସାରି ଭରତେ ଆସିବି କର ସୁକଲ୍ୟାଣ । ଶୁଣି ତାହା ସୁକଲ୍ୟାଣ କଲେ ମାତା ତେଜିଣ କାରୁଣ୍ୟ ॥ ଲକ୍ଷ୍ମଣ ବହୁତ ପ୍ରତିଜ୍ଞା କରିଣ ବୋଲନ୍ତି ରାମଙ୍କୁ । ତୁମ୍ଭେ ରାଜା ହୁଅ ଭରତ ସହିତେ ମୁଁ ମାରିବି ରାଜାଙ୍କୁ ॥ ବନେ ଗଲେ ତୁମ୍ଭ ସଙ୍ଗତରେ ଯିବି ହୋଇଣ ସେବକ । ଫଳ ମୂଳ ଖୋଜି ଦେଉଥିବି ଆଣି ହେ ରଘୁନାୟକ ॥ ହେଉ ସଜ ହୋଇ ଆସ ବୋଲି ଗଲେ ଜାନକୀଙ୍କ ପାଶ । ବୋଲେ ବାଣୀ ସୀତା ଦେଖିଲେ ଶ୍ରୀରାମ ଶ୍ରୀମୁଖ ବିରସ । ୭

—×—

## ଷଷ୍ଠ ଛାନ୍ଦ

ରାଗ—ସିନ୍ଧୁକାମୋଦୀ

କାନ୍ତର ବଚନ ଜାଣି, ପଚାରନ୍ତି, ଠାକୁରାଣୀ, ଦିଶୁଛି ତ ଶ୍ରୀମୁଖ ବିରସ । ଆଜ ଦେବ ଅଭିଷେକ, ନେତେ ପଡ଼ୁଛି ଲୋତକ, ମୁଁ ଅବା କଲି କବଣ ଦୋଷ ହେ । ପ୍ରାଣନାଥ ॥ ଶୁଣ ଆଗୋ ପ୍ରାଣେଶ୍ୱରୀ ସୀତା । ବନକୁ ପେଷିଲେ ମୋତେ ପିତା ଗୋ ॥ ପୂର୍ବେ କୈକେଇଙ୍କୁ ବର ଦେଇଣ ଥିଲେ ପିଅର, ରଖିଥିଲେ ସେ ଗୁପତ ମନେ । ଆମ୍ଭ ଅଭିଷେକ ଶୁଣି, ମାଗିଲେ ସେ ଦୃଷ୍ଟବାଣୀ, ଭରତ ରାଜା ରାମ ଯିବେ ବନେ ଗୋ । ଚନ୍ଦ୍ରମୁଖି ॥ ନ ହୁଅ ମନେ ବିରସ, ନୋହିବ ଦିବ୍ୟ ସୁବେଶ, ସେବୁଥିବ ମତାଙ୍କର ପାଶ । ଧନ୍ତୁ ନୋହିବ ବାହାର ସଙ୍ଗ ନୋହିବ କାହାର, ଯେମନ୍ତେ ଭରତ ନ କରେ ରୋଷ ଗୋ । ଚନ୍ଦ୍ରମୁଖି ॥ ଶ୍ରୀରାମ ଶ୍ରୀମୁଖ ବାଣୀ; ଶୁଣି ସୀତା ଠାକୁରାଣୀ; ବୋଲନ୍ତି ଜାଣିଲି ତୁମ୍ଭ ମନ । ତୁମ୍ଭେ ଯେବେ ଯିବ ବନେ, ମୁଁ କିମ୍ପା ଥିବି ସଦନେ, ତୁମ୍ଭ ଆଗେ କରିବି ଗମନ ହେ । ପ୍ରାଣନାଥ ॥ ଯେବେ ନ ନେବ ସଙ୍ଗରେ, ନ ଥିବ ପ୍ରାଣ ଅଙ୍ଗରେ, ତୁମ୍ଭେ

ମୋ ପରାଣ ପଞ୍ଚଭୂତ । କରୁଥିବ ବନେ ସେବା, ଶତବରଷ ହେଉବା ତେବେ ମୋର ତୋଷ ହେବ ଚିତ୍ତ ହେ । ପ୍ରାଣନାଥ ॥ ଶୁଣି ରାମା ରମ୍ୟବାଣୀ, ବୋଲନ୍ତ କୋଦଣ୍ଡପାଣି, ତୁମ୍ଭେ ମୋର ପିଣ୍ଡର ଜୀବନ । ଜାଣିବାକୁ ତୁମ୍ଭ ମନ, ବୋଇଲି ସଖି ଏସନ, ଜଳବିନୁ ନ ବର୍ତ୍ତିନ୍ତ ମୀନ ଗୋ । ଚନ୍ଦ୍ରମୁଖୀ ॥ ଏହି ସମୟେ ଲକ୍ଷ୍ମଣ. ସଜ ହୋଇ ସେହିକ୍ଷଣ, ଶ୍ରୀରାମ ଛାମୁରେ ପରବେଶ । ଲକ୍ଷ୍ମଣଙ୍କୁ ଚାହିଁ ତୋଷ, ହେଲେ ବନବାସୀ ବେଶ, ବୋଲେ ବଶି ସବୁର ବରସ ହେ ସୁଜ୍ଞଜନେ । ୬ ।

— X —

## ୭ମ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

ବଶିଷ୍ଠ ପୁତ୍ର ଆଣିଣ ରାମଚନ୍ଦ୍ର ଅଙ୍ଗ ଆଭରଣ ଦେଲେ ।
ସୀତାହିଁ ତାହାଙ୍କ ପତ୍ନୀର ନିମନ୍ତେ ଅଳଙ୍କାର ସମର୍ପିଲେ ॥
ଗଜ ଅଶ୍ୱ ଗାଭ ହିରଣ୍ୟ ବସନ ବିପ୍ରେ ଦେଲେ ବହୁଦାନ ।
ପରଗ୍ରାମ ଚରଗ୍ରାମ ସହିତରେ ଲେଖିଦେଲେ ବରତନ ॥
ବାହାର ହୋଇଲେ ରାମଚନ୍ଦ୍ର ସଙ୍ଗେ ଲକ୍ଷ୍ମଣ ଜାନକୀ ଘେନ ।
ମଧ୍ୟରେ ଶୋଭା ଦିଶନ୍ତ ଚନ୍ଦ୍ରମୁଖୀ ଆଗ ପଛ ଦୁଇ ଜେନ ॥
ନଗର ନାରୀଏ ସକଳ ସବୁରି ନୟନୁ ବହଇ ନୀର ।
ବିନା ଦୋଷେ ରାଜା ବନକୁ ପେଷନ୍ତ ଶ୍ରୀରାମ ପ୍ରାୟ କୁମର ॥
କେ ବୋଲଇ ରାଜାଙ୍କର ଦୋଷ ନାହିଁ କୈକେୟୀ ଏମନ୍ତ କଲା ।
କେ ବୋଲଇ ରାଜା ତାର ବୋଲ କଲା କେବଣ ଭୂତ ଲଗିଲା ॥
କେ ବୋଲନ୍ତ ଯେଉଁ ସୀତାଙ୍କ ବଦନ ଚନ୍ଦ୍ର ସୂର୍ଯ୍ୟ ନ ଦେଖନ୍ତ ।
ସେ ଏବେ ସାନଜନଙ୍କ ପ୍ରାୟ ହୋଇ ଶ୍ରୀରାମ ପଛେ ଚାଲନ୍ତ ॥
କେ ବୋଲନ୍ତ ଯେଉଁ ରାମଚନ୍ଦ୍ର ସଙ୍ଗେ ଥାନ୍ତ ଚତୁରଙ୍ଗ ବଳ ।
ଗଜ ଅଶ୍ୱ ରଥ ତେଜିଣ ସେ ଏବେ ଚାଲନ୍ତ ପାଦକମଳ ॥
ଏମନ୍ତ ଜନେ କୁହାକୁହି ହୁଅନ୍ତେ ନବରେ ହେଲେ ପ୍ରବେଶ ।
ପିତାଙ୍କ ଚରଣ ଛୁଇଁ ନମସ୍କାର କରି ଉଭା ହେଲେ ପାଶ ॥
ରାମ ବନଯିବା ଶୁଣି ସବୁ ରାଣୀ ଅଇଲେ କୈକେୟୀ ପୁର ।
ଦେଖିଲେ ଲକ୍ଷ୍ମଣ ସୀତା ସହିତରେ ପିତା ଅଗ୍ରେ ରଘୁବୀର ॥
ତିନଶ ପଚାଶ କଉଶଲ୍ୟା ଆଦି ରାଜାଙ୍କ ପାଟମହିଷୀ ।
ଧିକ୍କାର କରନ୍ତ କୈକେୟୀକି ଚାହିଁ ରାମ ହେଲେ ତୋର ଦୋଷୀ

ବଶିଷ୍ଠ ଆଦି ସକଳ ଋଷିମାନେ କରୁଅଛନ୍ତି ଧିକ୍‌କାର ।
ଧିକ୍‌କାର କରିଣ ତାଙ୍କ ମାତା ଗୁଣ କହିଲେକ ମନ୍ତ୍ରିବର ॥
ରୋଦନ କରନ୍ତି ସର୍ବ ରାଣୀମାନେ ଶ୍ରୀରାମଙ୍କୁ କରି ଦୃଷ୍ଟି ।
ବୋଲଇ କବି ସଭୁଙ୍କର ନୟନରୁ ହେଉଅଛି ଅଶ୍ରୁ ବୃଷ୍ଟି ॥



## ୮ମ ଛାନ୍ଦ

### କୌଶଲ୍ୟା ଶୋକ

ବିକଳ ହୋଇ କୌଶଲ୍ୟା କରନ୍ତି ରୋଦନ । ତୋତେ ନ ଦେଖିଣ ରାମ କେମନ୍ତେ ଧରିବି ଜୀବନରେ । କୁମର ॥ ପଲଙ୍କ ସୁପାତି ରାମ ନ ରୁଚଇ ତୋତେ । ପତ୍ରକୁଡ଼ିଆରେ ବସିରେ କୁମର ଦିନ ବଞ୍ଚିବୁ କେମନ୍ତେ ରେ ॥ ଧିକ ଧିକ ମୋ ଜୀବନ ଧିକ ମୋର ହିୟା । ଧିକ ହେଉ ସୂର୍ଯ୍ୟବଂଶରେ କୁମର ଧିକ ନରନାହା ରେ ॥ କେତେ କଷ୍ଟ ପାଇ ଧନ ରେ ପାଇଛି କୁମର । କେଉଁ ଦୋଷ ଦେଖି ଧାତା କରୁଛି ଆଜ ମୋ ପାଶୁ ଅନ୍ତରରେ ॥ ଭଣେ ବିକ୍ରମ ଶ୍ରୀରାମ ପଦ୍ମପାଦ ଚିନ୍ତ । ମାତାଙ୍କ ବିକଳ ଶୁଣି ଶ୍ରୀରାମ ଶୋକ କରାଇଲେ ଶାନ୍ତ ହେ । ସୁଜନେ ॥



## ୯ମ ଛାନ୍ଦ

ନ ଯା ରାମ ନ ଯା ଧନ ତୁ ବନବାସ କରି ରେ । ଆରେ କୋଦଣ୍ଡ ଧନୁଧାରିରେ । ତୁ ଯେବେ ବନକୁ ଯିବୁ ମୋ ଗଳେ ଦିଅ ଛୁରୀରେ । ଘୋଷା । ସଉମିତ୍ରି କର ଧରି କାନ୍ଦେ କଉଶଲ୍ୟା । ଆହା ବାପଧନ ତୋତେ କି ଦଣ୍ଡ ପଡ଼ିଲା ରେ ॥ ଅତି ସୁକୁମାର ସେ ପାଷାଣ କଣ୍ଟାବଣେ । ଚାଲି ନ ପାରିଲେ ରାମ ରହିଯିବୁ ଦିନେ ରେ । ଉତ୍ପଳ ଚନ୍ଦନ ତୋ ଶରୀରେ ଲେପଇଁ । କେମନ୍ତେ ବଞ୍ଚିବୁ ବନେ ପାଂଶୁ ବୋଳ ହୋଇ ରେ ॥ ସୁପାତି ପଲଙ୍କେ ନିଦ୍ରା ନ ଯାଉଇ ତୋତେ । ପତ୍ର ବିଛଣାରେ ରାମ ଶୋଇବୁ କେମନ୍ତେ ରେ ॥ ଅମୃତ ଯୋଗାଡ଼ ରାମ ତୋତେ ନ ରୁଚଇ । କେମନ୍ତେ ବଞ୍ଚିବୁ ବନେ କଷାଫଳ ଖାଇ ରେ ॥ ଅତି ସୁକୁମାରୀ ମୋର ଜନକ ଦୁହିତା । ଆରେ ବାବୁ ଲକ୍ଷ୍ମଣ, ଲଭିଲ ତୋତେ ସୀତା ରେ ॥ ଶ୍ରୀରାମ ଝୁମରି କାନ୍ଦେ କଉଶଲ୍ୟା ରାଣୀ । ବୋଲେ କବି ତାଙ୍କୁ ବୋଧ ଦିଅନ୍ତି ରଘୁମଣି । ୭ ।

## ୧୦ମ ଛାନ୍ଦ

ରାଗ—ଦକ୍ଷିଣ ମୁଖାରି କାଫି

ଦଶରଥ ନୃପତି ଶୋକେ ଆକୁଳ । ଭଣ୍ଡାରୁ ଆଣି ରାଣୀ ରାମଙ୍କୁ ଯେ, ଦେଲେ ଅଜିନ ଚୀର ॥ ସୀତାଙ୍କୁ ଦେଖି ଦେଲେ ଭୂଷଣ ବାସ । ଆଜ୍ଞା ପାଇ ସାରଥି ଆଣିଲା ଯେ, ରଥ ଶ୍ରୀରାମ ପାଶ ॥ ପିତା ଚରଣେ ପଡ଼ି ତିନ ପରାଣୀ । ମାତାମାନଙ୍କୁ ମାନ୍ୟ କରିଣ ସେ, ବେଗେ ହେଲେ ମେଲାଣି ॥ ବଶିଷ୍ଠ ଆଦି ଯେତେକ ଥିଲେ ଋଷି । ସେମାନଙ୍କୁହିଁ ମାନ୍ୟ କରିଣ ଯେ, ରାମ ରଥରେ ବସି ॥ କୋଦଣ୍ଡ ବାମକରେ ଦକ୍ଷିଣେ ଶର । ପୃଷ୍ଠ ଦେଶରେ ଶୋଭା ପାଉଛି ଯେ, କାଣ୍ଡ ଭରିକୁ ଭର । ସୁମନ୍ତ୍ର ରଥ ବାହାନ୍ତି ଧୀର କରି । ରଥ ବେଢ଼ି ଗୋଡ଼ାଇ ଅଛନ୍ତି ଯେ, ଅଯୋଧ୍ୟା ନରନାରୀ । ଚାହୁଁ ଚାହୁଁ ରଥ ହୋଇଲା ଅଦୃଶ୍ୟ । ଦେଖିଣ ରାଜା ରାଣୀ ସହିତେ ଯେ, ଶୋକେ ହେଲେ ଅବଶ ॥ ରାମ ଅଦୃଶ୍ୟ ଯାଏ ଗୋଡ଼ାଇ ଥିଲେ । ହା ହା ରାମ ଲକ୍ଷ୍ମଣ ଜାନକୀ ଗୋ, ବୋଲିଣ ମୋହ ଗଲେ ॥ କୌଶଲ୍ୟା ଆଦି ଯେତେକ ନାରୀ । ରାଜାଙ୍କ ମୋହ ଦେଖି ଧରିଣ ଯେ, ଆଣିଲେ ନିଜପୁରୀ ॥ ତମସା ତଟିନୀ ତଟରେ ପ୍ରବେଶ । ସେଠାରେ ବିଜେ କରି ଦେଖିଲେ ଯେ, ଦିନ ହୋଇଲା ଶେଷ । ବୋଧି କହନ୍ତେ କେହି ବୋଧ ନୋହିଲେ । ଶ୍ରାନ୍ତ ହୋଇଣ ଜନେ ଶୁଅନ୍ତେ ଯେ ତାଙ୍କୁ ନ କହି କହିଲେ ॥ ଶୃଙ୍ଗବେର ପୁରରେ ହେଲେ ପ୍ରବେଶ । ଗୁହ ଶବର ଆସି ଦର୍ଶନ ଯେ, କଲା ଶ୍ରୀରାମ ପାଶ । କହିଲେ ରାମ ତାଙ୍କୁ ସବୁ ବୃତ୍ତାନ୍ତ । ବୋଲଇ ବଣି ଭକ୍ଷ ଦେଲାକ ଯେ, ତାଙ୍କ ପାଶେ ଅନନ୍ତ । ୧୩ ।

—×—

## ୧୧ଶ ଛାନ୍ଦ

ତୋଡ଼ି—ଏକତାଳି

ମିତ ଦେଲେ ଯାହା ନେଇ । ରାମ ଦେଲେ ବାହୁଡ଼ାଇ ।
ବଟକ୍ଷୀରେ ଜଟା ସଜ କଲେ ରାମ ସେଠାରେ ସେଦିନ ରହି ।
ପାନ କଲେ ଗଙ୍ଗାବାରି । ହୋଇଲେକ ଜଟାଧାରୀ ।
ଯୋଇ ବୃନ୍ଦ ଆ ତରୁମୂଳେ ଶୋଇଲେ କୁଶାଙ୍କୁର ଶଯ୍ୟା କରି ॥
ଜଗି ରହିଲେ ଲକ୍ଷ୍ମଣ । ଧନୁରେ ପୂରାଇ ବାଣ ।
ଗୁହ ଶବର ମିତବର ଉନ୍ନିଦ୍ର ହୋଇଲା ସୈନ୍ୟ ଘେନିଣ ॥
ସୁମନ୍ତ୍ର ମେଲାଣି ହେବେ । ରଥ ବାହୁଡ଼ାଇ ନେଲେ ।
ସେଠାରୁ ଶ୍ରୀରାମ ଲକ୍ଷ୍ମଣ ଜାନକୀ ପଦ୍ଧରେ ବିଜୟ କଲେ ॥
କେତେ ଦୂର ପଥ ଗଲେ । ଭେଳାରେ ଗଙ୍ଗା ତରିଲେ ।
ବାଛାବାଟ ନିକଟରେ ଭରଦ୍ୱାଜ ମୁନିଙ୍କ ମଠ ଦେଖିଲେ ॥

ହୋଇଅଛି ସାୟଂକାଳ । ଆହ୍ନିକ ଦେବାର ବେଳ ।
ଏହି ସମୟେ ରାମ ଲକ୍ଷ୍ମଣ ସୀତା ପଡ଼ିଲେ ଚରଣ ତଳ ॥
କଲ୍ୟାଣ କରିଣ ଋଷି । ଆସନ ଦେଇଣ ଖୁସି ।
ନାନା ଉପଚାରେ ପୂଜା କରି ରାମ ଲକ୍ଷ୍ମଣଙ୍କ ମନ ତୋଷି ॥
ମୁନିଙ୍କି କହିଲେ ସବୁ । ସେ ବୋଲନ୍ତି ରହ ବାବୁ ।
ଚଉଦ ବରଷକୁ ଯେତେ ଲାଗିବ ଲେଖି ଆମ୍ଭେ ସବୁ ଦେବୁ ॥
ରାମ କଲେ ତାହିଁ ନାହିଁ । ଶୟନ କଲେ ସେଠାଇଁ ।
ସେଠାରେ ଲକ୍ଷ୍ମଣ ଜଗିଣ ବସିଲେ ଧନୁରେ ଶର ବସାଇ ॥
ପ୍ରଭାତେ ନିଶି ଗଲା ପାହି । ମୁନି ସଙ୍ଗେ ଭେଟ ହୋଇ ।
ଚିତ୍ରକୂଟଗିରି ନିକଟ ଦିଶୁଛି ବୋଲି ମାର୍ଗ ଦେଲେ କହି ॥
ସେହି ମାର୍ଗେ ରାମ ଗଲେ । କାଳିନ୍ଦୀ ପାର ହୋଇଲେ ।
ଚିତ୍ରକୂଟ ଗିରି ପାଖେ ମନ୍ଦାକିନୀ ଦେଖି ସାନନ୍ଦ ହୋଇଲେ ॥
ଧନ୍ୟ ଧନ୍ୟ ଚିତ୍ରକୂଟ । ଗିରିମାନଙ୍କ ମୁକୁଟ ।
ବାଲ୍ମୀକି ମୁନି ତପସ୍ୟା କରନ୍ତି ଯେବଣ ଏ ଗିରିକୋଟ ॥
ବାଲ୍ମୀକି ସଙ୍ଗେ ଭେଟ । କହିଲେ ସକଳ କୂଟ ।
ବହୁବିଧ କହି ରାମଙ୍କୁ ପୂଜିଲେ ହୋଇ ମୁନିବର ହୃଷ୍ଟ ॥
ଚିତ୍ରକୂଟେ କୁଟୀ କଲେ । ମହାସୁଖରେ ରହିଲେ ।
ବୋଲେ ବଣି ମୃଗମାନ ମାରି ଆଣି କୁଟୀରେ ପ୍ରବେଶ ହେଲେ । ୧୩ ।

—×—

## ୧୨ଶ ଛାନ୍ଦ

ରାଗ—ଘଣ୍ଟାରବ । ଦୁଇତାଳ

ରାମ କର ଧରି କାମିନୀ । ବୁଲନ୍ତି ବେନି ଗୋ । ଚିତ୍ରକୂଟଗିରି ମୂର୍ଦ୍ଧନି । ବୋଲନ୍ତି ଦେଖ ସଜନୀ । କିନ୍ନର ବେନି ଗୋ । କରୁଛନ୍ତି ବିବିଧ ଧ୍ୱନି ॥ ଦେଖ ଦେଖ କୃଷ୍ଣ ଅଗୁରୁ । ଦୁର୍ଲ୍ଲଭ ତରୁ ଗୋ । ସୁବାସ କରୁଅଛି ଦୂରୁ ॥ ଦେଖ ଦେଖ କୁସୁମଲତା । ମଧୁପେମତ୍ତା ଗୋ ମକରନ୍ଦପାନେ ନିରତା ॥ ଶୋଭି ଦେଖ ବିବିଧ ତରୁ । ଗୁଳ୍ମରୁ ଚମରୁ ଗୋ ଫଳପୁଷ୍ପେ ଅଛନ୍ତି ଭରୁ ॥ ଶୀତ ଶୀତ ରଙ୍ଗ ଏ ଶିଳା । ଦେଖ ଅବଳା ଗୋ । ଜଳଶୀଳେ ମର୍କଟମେଳା ॥ ଦେଖ ଏ ମନ୍ଦାକିନୀ ନଦୀ । ପାତାଳ ଭେଦ ଗୋ । ସୁଖଦାୟୀ ମହାପ୍ରମୋଦୀ ॥ ଅଯୋଧ୍ୟାପୁରୀ ମୋର ଗିରି । ଘରଣୀ ହରି ଗୋ । ମନ୍ଦାକିନୀ ନଦୀର ବାରି ॥ ରାମ ସୀତା ବସିଣ ଶିଳା ।

କରନ୍ତ ଲୀଳା ଗୋ । ବସୁଛ ନବ ଊର୍ମିମାଳା ॥ ଲକ୍ଷ୍ମଣ ଆଣେ କନ୍ଦମୂଳ । ରାନ୍ଧନ୍ତ ଫଳ ଗୋ । ବୋଲେ ବସି ମଣୋହ୍ମ ବେଳ ॥

—X—

## ୧୩ଶ ଛାନ୍ଦ

ରାଗ—କଳହଂସ କେଦାର

ମୋହ ତେଜନ୍ତେ ଦଶରଥ ନୃପତ୍ତ । କରଯୋଡ଼ଣ ମନ୍ତ୍ରୀବର ଜଣାନ୍ତ ଯେ ॥ ବନେ ଗୁଡ଼ଲ ରାମ ଲକ୍ଷ୍ମଣ ବେନ । ତାଙ୍କ ସଙ୍ଗେ ଗଲେ ଜନକ ନନ୍ଦିନୀ ॥ ଶୁଣି ସେ ମହୀପତ୍ତ ହେଲେ ବ୍ୟାକୁଳ । ଶ୍ରୀରାମ ଚନ୍ଦ୍ର ନେତ୍ରୁ ବହଇ ଜଳ ॥ ଆଗୋ ମନ୍ଦପାମରୀ କୈକେୟୀ ରାଣୀ । କି ଦୋଷ କଲେ ତୋତେ ମୋ ରଘୁମଣି ଗୋ ॥ କି ଦୋଷ କଲେ ତୋର ସୁମିତ୍ରା ସୁତ । ନନ୍ଦୋକ୍ଷୀ ସୀତାକୁ ତୁ କଲୁ ଏମନ୍ତ ଗୋ ॥ ହା ହା ରେ ରାମ ତୋତେ ତେଜଲ ମୁହିଁ । ଚନ୍ଦ୍ରବଦନ ତୋର ଦେଖିଲ ନାହିଁ ॥ ରାମ ନ ଦେଖି ନଷ୍ଟେ ଯିବ ଜୀବନ । ତୁ ମୋତେ ହେଲୁ କାଳକୂଟ ସମାନ ଗୋ ॥ ତୁ ମୋର ଅକଳଙ୍କ କୁଳଚନ୍ଦ୍ରମା । କେହ୍ନେ ଦୁଃଖ ସହିବୁ ଜନକଜେମା ଗୋ ॥ ଫାଟି ନ ଗଲା ଏହା ଶୁଣି ହୃଦୟ । ଜାଣିଲ କୁଳୀଶୁ ମୋ ତନୁ ନିର୍ଦ୍ଦୟରେ ॥ ଲକ୍ଷେ ନୃପତ୍ତ ମଧ୍ୟେ ଭଞ୍ଜିଲୁ ଚାପ । ଗଞ୍ଜିଲୁ ପର୍ଶୁଧର ତେଜ୍ରେକ ଦର୍ପରେ । ଦଣ୍ଡିଲୁ ଯାଗ ରଖି ଅସୁରକୁଳ । ମଣ୍ଡିଲୁ ରବତଳେ ଏ ରଘୁ କୁଳରେ । ପାଦ ଲାଗି ପାଷାଣ ହେଲା ଯୁବତୀ । ବିଧାତା ଦେଲା ତୋତେ ଏତେ ବିପତ୍ତି ରେ ॥ ହା ହା ରାମ ବୋଲଣ ତେଜଲେ ପ୍ରାଣ । ତଇଳଭାଣ୍ଡେ ଭରିଦେଲେ ସେକ୍ଷଣ ଯେ ॥ ସିନ୍ଧୁ ଘୋଷ ପ୍ରାୟେକ ଶୁଭିଲ ବାଣୀ । ଅନ୍ତପୁରେ ପ୍ରବେସି ରୋଦଲେ ରାଣୀଯେ ॥ ରାଜା ନିଧନେ ଅମନାତ୍ୟ ସକଳ । ସଭିଁଙ୍କ ନୟନରୁ ବହଇ ଜଳ ଯେ ॥ ବ୍ୟାକୁଳ ହୋଇଲେ ସେ ଅଯୋଧ୍ୟା ନାରୀ । ବୋଲଇ ବାଟି ଶୋଭା ନ ଦିଶେ ପୁରୀ ଯେ ।

—X—

## ୧୪ଶ ଛାନ୍ଦ

ରାଗ—ଚଳଇ ରଥବାଣୀ

ରାଜା ନିଧନେ ପାଦ ପୁରୋହିତ ଜନ । ବସିରନ୍ତ କାହାକୁ କରିବା ରାଜନ ॥ ଶ୍ରୀରାମ ଗଲେ ରାଜା ସ୍ୱର୍ଗ ପାଇଲେ । ଭରତ ଶତ୍ରୁଘ୍ନ ଅଜା ଘରେ ରହିଲେ ॥ ବଶିଷ୍ଠ ସୁମନ୍ତ୍ର ଆଦି ଯେତେକ । ଲେଖା ଦେଇଣ ଦୂତଙ୍କୁ କହି ତରତ ॥ ଭରତଙ୍କୁ ଆମ୍ଭର ନାମ ଧରି କହିବୁ । କୁଶଳ କହିଣ ବେଗେ ଘେନି ଆସିବୁ ॥ ଅଶ୍ୱ ଚଢ଼ିକରି ଦୂତେ ତ୍ୱରିତେ ଗଲେ । ଅଳପ ଦିନରେ ଯାଇ

ପ୍ରବେଶ ହେଲେ ॥ ସେହିଦିନ ନିଶି ଭିତରେ ସ୍ୱପନ ଦେଖି । ଅମଙ୍ଗଳ ଜାଣି ମନ ଶୁଖାଇ ବସି । ଏମନ୍ତ ଦୂତେ ଦେଲେ ଲେଖା ଭରତେ । ବେଗେ ଆସ କୁଶଳ ସବୁ ପୁଚ୍ଛିବତେ ॥ ଦୂତଙ୍କର ବାଣୀ ଲେଖା ଆକଟ ଜାଣି । ଅଜାଙ୍କ ଠାମୁରୁ ବେଗେ ନେଲେ ମେଲାଣି । ଗଜ ଅଶ୍ୱ ଯାନ ପାଇ ଅନେକ ଧନ । ତେବେ ହେଁ ସ୍ୱପନ ଚିନ୍ତି ବିକଳ ମନ । ସଇନ୍ୟ ପଛେ ରଖିଣ ଗଲେ ଆଗରେ । ବୋଲେ ଋଷି ପ୍ରବେଶ ଅଯୋଧ୍ୟା ନଗରେ । ୧୦ ।

—×—

## ୧୫ଶ ଛାନ୍ଦ

ରାଗ - କଲ୍ୟାଣ

ଅଯୋଧ୍ୟାରେ ଭରତ ହୋଇ ପ୍ରବେଶ । ଦେଖିଲେ ସବୁରି ମୁଖ ବିରସ । ଅନ୍ତଃପୁରେ ମାତା ଚରଣେ ପଡ଼ି । ପଚ୍ଚାରୁଛନ୍ତି ବେନି କରଯୋଡ଼ି ଗୋ ଜନନୀ । ଆମ୍ଭ ପିଅର କାହିଁ । ଜ୍ୟେଷ୍ଠ କନିଷ୍ଠଙ୍କୁ ଦେଖୁନ୍ତ ନାହିଁ ॥ ଅଯୋଧ୍ୟାପୁର ଦିଶେ ନାରଖାର । ମଙ୍ଗଳ ଦିଶୁନାହିଁ । ଆମ୍ଭ ପୁର । ପଥେ ଦେଖିଲି ଅଶକୁନମାନ । କି ଅବା ନାଶଗଲା ଆମ୍ଭ ପୁଣ୍ୟ । ଗୋ ଜନନୀ । ଇତ୍ୟାଦି ॥ ଶୁଣି ଜନନୀ କହନ୍ତି ବଚନ । ରାମକୁ ରାଜା କରନ୍ତେ ରାଜନ । ନୃପତିଙ୍କି ମୁଁ ସତ୍ୟ କରାଇଲି । ରାମ ଲକ୍ଷ୍ମଣ ବନକୁ ପେଷିଲି । ରେ କୁମର । ଏବେ ହୁଅ ନୃପତି । ତୁ ମୋର ଭୋଗ କର ଏ ବିଭୂତି ॥ ରାମଙ୍କୁ ନଦେଖି ତୁମ୍ଭ ପିଅର । ଦେହ ତ୍ୟଜିଣ ଗଲେ ସ୍ୱର୍ଗପୁର । ମୃତ ଶବ ଏବେ ଅଛନ୍ତି ରଖି । ଦହନ ନ କଲେ ତୋତେ ନଦେଖି । ରେ କୁମର ଇତ୍ୟାଦି ॥ ଶୁଣିଣ ମୂର୍ଚ୍ଛାଗଲେ ଭରତ ବୀର । ମାତାଙ୍କୁ କଲେ ବହୁତ ଧିକ୍‌କାର । ମନ୍ଥରା କେଶ ଶତ୍ରୁଘନ ଧରି । ବନ୍ଧନ କଲେ ଅବାଧ୍ୟ ବିଚାରି । ତାଡ଼ିଣ ଦେଲେ ରାମଙ୍କୁ ଉଦ୍ଦେଶେ । କୈକେୟୀରେ ସେ ପଶିଲି ପରଶ ॥ ଶବ ଦହନ କଲେ ପ୍ରେତ କର୍ମ । ବୋଲେ ଋଷି ରାଜାଙ୍କର ଯେ ଧର୍ମ । ୬ ।

—×—

## ୧୬ଶ ଛାନ୍ଦ

ରାଗ—ଆଷାଢ଼ଶୁକ୍ଳ

ଭରତ ଶତ୍ରୁଘନ ସ୍ନାନ କରି । ସୁମନ୍ତ୍ର ମନ୍ତ୍ରୀ ଠାମୁକୁ ହକାରି । ଶ୍ରୀରାମ ଲକ୍ଷ୍ମଣଙ୍କୁ ଯିବା ଆଣି । ସୈନ୍ୟ ସଜ କରବ ଏହିକ୍ଷଣି ॥ ତା ଶୁଣିଣ ମନ୍ତ୍ରୀ ଚତୁରଙ୍ଗ ଦଳ ସାଜି ଆଣନ୍ତି ॥ ଭରତ ଶତ୍ରୁଘନ ଚଢ଼ି ରଥ । ସୁଖରେ ଚଳିଲେ ଯେ ଦୁର୍ଗମ ପଥ । ବନଗିରି ପୁରି ଗୃହଳନ୍ତି ଆଟ । ଚିତ୍ରକୂଟ ପର୍ବତରେ ଭେଟ । କହିଲେ ଯେ ସବୁ । ଚିତ୍ରକୂଟରେ

ଅଛନ୍ତି ରାଘବ ॥ ଗୁହ ବୋଲନ୍ତି ହେ ମିତ୍ର ସାନୁଜ । ଦେଖ ଏ କନ୍ଦମୂଳ କୁଶଳ ଯେ । ରାମ ସୀତା ଏଥି ପହୁଡ଼ିଥିଲେ । ଏଠାରେ ଲକ୍ଷ୍ମଣ ଜଗି ରହିଲେ । ତାଙ୍କ ସଙ୍ଗେ ମୁହିଁ । କଥା କହନ୍ତେ ନିଶୀ ଗଲା ନାହିଁ ॥ ଦେଖି ଭରତ କଲେ ବହୁ ଶୋକ । ନିଜ ମାତାଙ୍କୁ ନିନ୍ଦିଲେ ଅନେକ । ସେହି ବଟକ୍ଷୀରେ ବାନ୍ଧିଲେ ଜଟ । ବକଳମାନ କଲେ ପିନ୍ଧାପଟ । ସେଠାରୁ ଚଳିଲେ । ଭରଦ୍ୱାଜ ମୁନି ମଠେ ମିଳିଲେ ॥ ମୁନିଙ୍କି ଦେଖିଣ କୈକେୟୀସୁତ । ପଡ଼ିଲେ ଚରଣତଳେ ତ୍ୱରିତ । ମୁନି ତାଙ୍କୁ କଲ୍ପି ଭୋଜନ ଦେଲେ । ସକଳ ସୈନ୍ୟ ନୃପତ ହୋଇଲେ । ସେ ନିଶି ରହିଲେ । ପ୍ରଭାତ ହେବାରୁ ଶଯ୍ୟା ଛାଡ଼ିଲେ । ୫ । ରଜନୀ ଶେଷରେ ହେଲେ ବାହାର । ସୈନ୍ୟ ଚାଲନ୍ତେ ବନଗିରି ଚୂର । ଗୁହ ଶବରଙ୍କୁ କରିଣ ଆଗେ । ପ୍ରବେଶିଲେ ଚିତ୍ରକୂଟ ସେ ଲାଗେ । ଶୁଣି ଗରୁ ଧ୍ୱନି । ଲକ୍ଷ୍ମଣ ଉଠିଲେ ତରୁ ମୁର୍ଦ୍ଧନି ॥ ଦେଖିଲେ ଭରତ ଶତ୍ରୁଘ୍ନ ବେନି । ସଙ୍ଗତେ ଅନେକ ସଇନ ଘେନି । ତାଙ୍କୁ ଚାହିଁ ବହୁ ପ୍ରତିଜ୍ଞା କଲେ । ଭ୍ରତକୁ ଆଜ ମାରିବି ବୋଇଲେ । ରାଜା ଏବେ ହୋଇ । ଆସୁଛି ଆମ୍ଭଙ୍କୁ ମାରିବା ପାଇଁ ॥ ବୃକ୍ଷରୁ ଓହ୍ଲାଇ ସୁମିତ୍ରା ସୁତ । ଜଣାଇଲେ ରାମପାଶେ ତ୍ୱରିତ । ଭରତ ଶତ୍ରୁଘ୍ନ ଆସନ୍ତି ଦେବ । ଶୁଣିଣ ମନେ ହସନ୍ତେ ରାଘବ । ଆସୁ ଆସୁ ଭାଇ । ଦେଖିବା ତାଙ୍କୁ ନୟନ ପୁରାଇ ॥ ଭରତ ଶତ୍ରୁଘ୍ନ ସୈନ୍ୟ ରୁହାଇ । ଚିତ୍ରକୂଟ ଗିରି ନିକଟେ ଯାଇ । ଦେଖିଲେ ଅତି ମନୋରମ ଗିରି । ଯହିଁ ବିଜୟ କରିଛନ୍ତି ହରି । ସେ ଗୁହ ସଙ୍ଗତି । ରଥୁ ଓହ୍ଲାଇ ହେଲେ ପାଦଗତି ॥ ଶ୍ରୀରାମଙ୍କୁ ଦେଖି କୈକେୟୀସୁତ । ଖଣ୍ଡେ ଦୂରରୁ କଲେ ଦଣ୍ଡବତ । ଭ୍ରାତଚରଣେ ଲକ୍ଷ୍ମଣ ପଡ଼ିଲେ । ଶତ୍ରୁଘନ ହିଁ ଦୁହୁ ମାନ୍ୟ କଲେ । ଚାରି ଭାଇ ମେଳ । ବୋଲେ ବଶି ନେତ୍ରୁ ବହଇ ଜଳ । ୧୦ ।

—X—

## ୧୭ଶ ଛାନ୍ଦ

ରାଗ -- କଉଶିକ ପଡତାଳ

ଇକ୍ଷ୍ୱାକୁ କୁଳ ସିନ୍ଧୁ ଚନ୍ଦ୍ରମା ହେ ମୋର ଜନନୀ ଏହା ଅର୍ଜିଲେ । ତୁମ୍ଭଙ୍କୁ ନ ଦେଖି ପିଅର ହା ରାମ ବୋଲିଣ ପ୍ରାଣ ତେଜିଲେ ॥ ଦୁଷ୍ଟ ପାମରୀ ମନ୍ଦଭାଗୀ ହେ କ୍ଷମାଶୀଳ ଦୋଷ କର କ୍ଷମା । ଅଯୋଧ୍ୟାପୁରେ ଅଭିଷେକ ହୁଅ ହେ ଘେନିଣ ଜନକଜେମା ॥ ଭରତ ଶତ୍ରୁଘ୍ନ ଏମନ୍ତ କହି ଚରଣ ତଳେ ପଡିଲେ । ଉଠ ଉଠ ବୋଲି ଶ୍ରୀକରେ ଦୁଇ ବେନିଭାଇଙ୍କି ତୋଳି

ଧରିଲେ ॥ ପିତା ମୃତ୍ୟୁ ରାମ ଲକ୍ଷ୍ମଣ ସୀତା ଯେ ଶୁଣିଣ ବିଳାପ କଲେ । ସରଯୂ ଜଳେ ସ୍ନାନ ଯେ କରି ସେ ଇଙ୍ଗୁଦୀଫଳ ପିଣ୍ଡାନ୍ନ ଦେଲେ । ବଶିଷ୍ଠ ଆଦି ମଙ୍ଗଳଙ୍କର ବଚନରେ ନୋହିଲେ ପ୍ରସନ୍ନ । ଯେ ଯେତେ ରୂପେ ମଣାଇଲେ ହେ ରାମ ନୋହିଲେ ସଦୟ ମନ ॥ ଭରତଙ୍କୁ ରାଜନୀତି କହି ସେ ପାଦୁକା ଦେଇ କଲେକ ତୋଷ । ବୋଲେ କବି ଭରତ ନନ୍ଦିଗ୍ରାମେ ହେ ସୈନ୍ୟ ସେନା ହେଲେ ପ୍ରବେଶ । ୭ ।

—×—

## ୧୮ଶ ଛାନ୍ଦ

ରାଗ—କେଦାର ଜଳଦବାଣୀ

ଚିତ୍ରକୂଟ ବାସୀ ହେ ଠୁଳ ହେଲେ ଆସି । ବିଗୁରି ବୋଲନ୍ତି ଏଥି ହେ ଥିବା ସକଳ ତପସ୍ୱୀ ॥ ଫିଟିଗଲା ଦାଣ୍ଡ ହେ କ୍ଷତି ହେଲେ ରୁଣ୍ଡ । ରାମ ଲକ୍ଷ୍ମଣ ବନରେ ହେ ବୁଲନ୍ତି ଘେନଣ କୋଦଣ୍ଡ ॥ ହୋଇଛନ୍ତି ଯତି ହେ ସଙ୍ଗରେ ଯୁବତୀ । ପ୍ରତିଦିନ ମୃଗ ବଧ କରନ୍ତି ହେ ରଘୁକୁଳପତି ॥ ଅସୁର ଆସିବେ ହେ ଏହାଙ୍କୁ ଦେଖିବେ । ଆମ୍ଭ ପାଇଁ ଧାନୁଙ୍କା ସେ ହେ ଆଣିଛୁ ବୋଲିଣ ଖାଇବେ ॥ ଶ୍ରୀରାମ ଜାଣିଲେ ହେ ଲକ୍ଷ୍ମଣେ କହିଲେ । ଆମ୍ଭ ରହିବା ଦେଖିଣ ହେ ସାନୁଜ ମୁନିମାନେ ଗଲେ ॥ କି କଲେ କି କଲେ ହେ ନ କହି ତ ଗଲେ । ଏତେ ଭୟ କପାଇଁ ହେ ସାନୁଜ ସେମାନେ ପାଇଲେ ॥ ତେଜିଲେ ଏ ବନ ହେ ଆସନ୍ତି ଏ ସ୍ଥାନ । ବୋଲେ କବି ଏମନ୍ତ ହେ ବାଞ୍ଛିଣ ଯିବା କଲେ ମନ । ୭ ।

—°—

## ୧୯ଶ ଛାନ୍ଦ

ରାଗ—ଆହାରି, ମାନଧାତା ମଧୁପ ବୃତ୍ତେ

ଏଥୁ ଅନନ୍ତରେ କଛିଦିନ ପରେ ଚିତ୍ରକୂଟ ତେଜି ଶ୍ରୀରାମ । ଦଣ୍ଡକ ଅରଣ୍ୟେ ପ୍ରବେଶି ଦେଖିଲେ ଆତ୍ରେୟ ଋଷିଙ୍କ ଆଶ୍ରମ । ସୁଜନେ । ଅତି ରମ୍ୟ ତାଙ୍କ ଆଶ୍ରମ । ସମସ୍ତ ଋଷିମାନେ ସଙ୍ଗତରେ ଯହିଁ କରିଅଛନ୍ତି ବିଶ୍ରାମ ॥ ସଉମିତି ସୀତା ଘେନିଣ ଶ୍ରୀରାମ ମୁନିଙ୍କୁ କଲେକ ଦର୍ଶନ । ଆତ୍ରେୟ ଋଷି ଦେଖିଣ ଶ୍ରୀରାମଙ୍କୁ ବହୁତ ହୋଇଲେ ପ୍ରସନ୍ନ । ସୁଜନେ । ବହୁ ମାନରେ ପୂଜାକଲେ । ଅନୁସୂୟା ସୀତାଙ୍କର ଭୁଜ ଧରି ତାଙ୍କ ପୁରକୁ ଘେନିଗଲେ ॥ କରି ଅନୁରାଗ ଦେଲେ ଅଙ୍ଗରାଗ ଦିବ୍ୟ ଅମଳାନ ବସନ । ଦିବ୍ୟ ଆଭରଣ ଦିବ୍ୟ କୁସୁମରେ କଲେ ତାହାଙ୍କୁ ସୁମଣ୍ଡନ । ସୁଜନେ । କେବେ ହେ ନୁହେ ରସ ବିଭଙ୍ଗ । ହେମ ଉଜ୍ଜ୍ୱଳ କରିଣ

ଉସାଣିଲ ପରସ୍ପେ ଦଗିଲ ଶ୍ରୀଅଙ୍ଗ ॥ ଯେଉଁ ଅନୁସୂୟା ଜନେ କରି ଦୟା ତାପି ନଦୀକ ବଢ଼ାଇଲେ । ଅନେକ କାଳଯାଏ ବୃଷ୍ଟି ନ କଲ ଦୁର୍ଭିକ୍ଷ ବାଧା ଛଡ଼ାଇଲେ । ସୁଜନେ । ଅଟନ୍ତି ସେହି ପତିବ୍ରତା । ଅନୁସୂୟା ବ୍ରତ କରିଣ ମୁକତ ହୁଅନ୍ତି ସକଳ ବନତା ॥ ଜାନକୀ ତାଙ୍କ ଚରଣତଳେ ପଡ଼ି ଲଭିଲେ ପରମ ସନ୍ତୋଷ । ତାହା ଦେଖି ରାମ ଲକ୍ଷ୍ମଣ ସହିତ ହୋଇଲେକ ବହୁ ହରଷ ସୁଜନେ । ପୂର୍ବକଥା ମୁନି କହିଲେ । ତୁମ୍ଭେ ଏବେ ଏ ବନକୁ ବିଜେକଲ ଅଭୟ ହୋଇଲୁ ବୋଇଲେ ॥ ସକଳ ଋଷି ତଣ୍ଡୁଳ ଶିରେ ଦେଇ ରାମଙ୍କୁ କଲ୍ୟାଣ ବାଞ୍ଛିଲେ । ଏହି ମାର୍ଗରେ ଏ ବନ ଭିତରକୁ ଯିବା ହେଉ ବୋଲି ବୋଇଲେ । ସୁଜନେ । ସେଠାରୁ ରାମ ବିଜେକଲେ । ଅଯୋଧ୍ୟାକାଣ୍ଡ ସମ୍ପୂର୍ଣ୍ଣ ବୋଲେ ଧାନ ବଳି ଗୀତେ ଏହା କହିଲେ । ୭ ।

**— ଅଯୋଧ୍ୟାକାଣ୍ଡ ସମାପ୍ତ—**

---

# ଆରଣ୍ୟକ କାଣ୍ଡ

## ୧ମ ଛାନ୍ଦ—ବିରାଧ ବଧ

ରାଗ—ଆହାରୀ

ଏଥୁ ଅନନ୍ତରେ ମହାବନାନ୍ତରେ ପ୍ରବେଶ ହୋଇଲେ ଶ୍ରୀରାମ । ଦଣ୍ଡକ ଅରଣ୍ୟେ ସୀତାଙ୍କ ଦେଖାନ୍ତି ଦେଇଣ କନ୍ଧେ ଭୁଜ ବାମ । ଗୋ ସଜନ । ତରୁମାନେ ଯେ ଅଭିରାମ । ଫଳ ପୁଷ୍ପେ ଲତା ଅତି ଅପ୍ରମିତା କି ଅବା ଶଙ୍କର ଆରାମ । ଶୁକ ସାରୀ ସଙ୍ଗେ ଅଛନ୍ତି ବିହଙ୍ଗେ ଫଳଲୋଭ ଯେ ନ ଛାଡ଼ନ୍ତି । ବିହଙ୍ଗ ସଙ୍ଗରେ କ୍ରୀଡ଼ା କରିବାରେ ବିବିଧ ଧ୍ୱନିକ କହନ୍ତି । ଗୋ ସଜନ । ଦେଖାଇ ଶ୍ରୀରାମ ସନ୍ତୋଷ । ତମାଲର ମାଳ ତଳରେ ଜସ୍ତୁରୀ ଜୀବ ଚରନ୍ତି ଯେ ବିଶେଷ ॥ ସିଂହ, ଶାର୍ଦ୍ଦୂଳ, ଗଣ୍ଡା, ଗଜ, ଗୟଳ, ମର୍କଟ, ଭାଲୁଙ୍କର କୁଳ । ମୃଗ ଶୂକର, ସମ୍ବର, ହରିଣ, କୃଷ୍ଣାଜିନର ସଙ୍ଗେ ମେଳ । ସେ ଜାନକୀ । ସହିତେ ରାମ ଯେ ସନ୍ତୋଷ । ଏହି ସମୟରେ ପ୍ରବେଶ ହୋଇଲା ବିରାଧ ନାମରେ ରାକ୍ଷସ ॥ ମହାଗିରି ପ୍ରାୟ ଦିଶଇ ତା କାୟ ଧରିଛି କରେ ଦିବ୍ୟ ଶୂଳ । ରୁଧିରେ ଶରୀର କର୍ଦ୍ଦମ ହୋଇଛି ମୁଖ ଦିଶଇ ବିକରାଳ । ହେ ସୁଜନେ । ସୀତାଙ୍କୁ ଘେନିଣ ସେ ଗଲା । ରାମ ଲକ୍ଷ୍ମଣ ଶର ବୃଷ୍ଟି କରନ୍ତେ ଭୟ ତହିଁକି ଯେ ନ କଲା ॥ ଛାଡ଼ିଣ ସୀତାଙ୍କୁ ରାମ ଲକ୍ଷ୍ମଣଙ୍କୁ ନେଉଥିଲା ସେ ବାନ୍ଧିକରି । ସୀତାଙ୍କ ରୋଦନ ଦେଖି ବେନିବୀର ବାହୁକୁ ଭଗ୍ନ ତାର କରି । ହେ ସୁଜନେ । ଦଳି ଦହିଲେ ତାର ପିଣ୍ଡ । ପ୍ରାଣ ତେଜିକ

ଦୈତ୍ୟ ଗନ୍ଧର୍ବ ହୋଇଲା ପାଇଣ ରାମ ଭୁଜଦଣ୍ଡ ॥ ବିରାଧ ବିନାଶି ବନେ ବନେ ପଶି ଦେଖନ୍ତି ମୁନିଙ୍କ ଆଶ୍ରମ । ସମସ୍ତ । ସମସ୍ତ ଋଷିମାନଙ୍କ ମଠ ଦେଖି ପ୍ରଶଂସା କରନ୍ତି ଯେ ରାମ । ହେ ସୁଜନେ । ଶରଭଙ୍ଗ ଋଷିଙ୍କ ପାଶେ । ଶଚୀପତି ତାଙ୍କୁ ବିନୟ କରନ୍ତି ବ୍ରହ୍ମଲୋକକୁ ଯିବା ଆଶେ ॥ ଶ୍ରୀରାମଙ୍କୁ ଦେଖି ଅନ୍ତର୍ଦ୍ଧାନ ହୋଇଗଲେ ଯେ ଦେବ ସୁନାସୀର । ସୀତାଙ୍କ ସହିତେ ଶ୍ରୀରାମ ଲକ୍ଷ୍ମଣ ପଡ଼ିଲେ ମୁନିଙ୍କ ପୟର । ହେ ସୁଜନେ । ରାମଙ୍କୁ କରିଣ ସେ ପୂଜା । ଅଗ୍ନିରେ ପଶିଣ ଶରୀର ଧ୍ୱଂସିଣ ବ୍ରହ୍ମଲୋକକୁ ଗଲେ ଦ୍ୱିଜା ॥ ଋଷି ବ୍ରହ୍ମଲୋକ ଯିବା ଶୁଣି ଋଷିମାନେ ଯେ ହେଲେ ତହିଁ ରୁଣ୍ଡ । ଦେଖିଲେ ଅଗ୍ନିରେ ଭସ୍ମ ହୋଇଗଲେ ଋଷିଙ୍କର ପବିତ୍ର ପିଣ୍ଡ । ହେ ସୁଜନେ । ରାମଙ୍କୁ ସେହିଠାରେ ଦେଖି । ବୋଲଇ ବାଣୀ ସମସ୍ତ ଋଷିମାନେ ହୋଇଲେ ଯେ ପରମ ସୁଖୀ । ୮ ।

—×—

## ୨ୟ—ଛାନ୍ଦ

ରାଗ—ଆହାରୀ । ଭଞ୍ଜଙ୍କ ଚଉପଦୀଭୂଷଣ ବୃତ୍ତେ

ଶ୍ରୀରାମ ହେଜନ, ହୃଷ୍ଟ ସକଳ ମୁନି । ଶୁଣନ୍ତି ବିବିଧପକ୍ଷୀମାନଙ୍କ ଧ୍ୱନି ॥ ଗହଳନ୍ତି ବନେ, ରାମ ସାନନ୍ଦ ମନେ । ପ୍ରବେଶ ହୋଇଲେ ସୁତୀକ୍ଷ୍ଣଙ୍କ ସ୍ଥାନେ । ବୁଲି ଆରାମ, ମଠେ ପଶିଲେ ରାମ । ଋଷିଙ୍କୁ ପ୍ରଣମି କଲେ ତହିଁ ବିଶ୍ରାମ ॥ କଲ୍ୟାଣ କଲେ ଋଷି ଆସନ ଦେଲେ । ବହୁ ପୂଜାବିଧି କରି ଆନନ୍ଦ ହେଲେ ॥ ସମସ୍ତ ଋଷି, ବିନୟ ବାଣୀ ଭାଷି । ଅସୁରେ ଆମ୍ଭଙ୍କୁ ଗ୍ରାସ କରନ୍ତି ଆସି ॥ କିସ କରିବୁଁ, ଆମ୍ଭେ କାହିଁକି ଯିବୁଁ ତୁମ୍ଭ ଶରଣ ରଖିଲେ ନିଶ୍ଚିନ୍ତ ହେବୁ ଶୁଣି ରାଘବ ବୋଲନ୍ତି ଏ ଦୁର୍ଲ୍ଲଭ । ମାରିବି ଅସୁର ନିଶ୍ଚେ ନ ଯାଅ କ୍ଷୋଭ ॥ ମାନ୍ୟ ତ କଲେ, ତାଙ୍କୁ ମେଲାଣି ଦେଲେ । ସୁତୀକ୍ଷଣେ ରାମ ଆସିବେଟି ବୋଇଲେ । ଭୟ ନ କର; ମୁଁ ମାରିବି ଅସୁର । ଋଷିଙ୍କି ରଖିଣ ଗଲେ କେତେକ ଦୂର । ବୋଲନ୍ତି ସୀତା, ଆହେ ସତ୍ୟ-ବକତା । କିମ୍ପାଇଁ ଅସୁରେ କରିଛନ୍ତି ଅହନ୍ତା ॥ ଏ ତ ଅଧର୍ମ, ଜାଣ ସକଳ ଧର୍ମ । ବିନା ଦୋଷେ ଅସୁର କରିବ ସଂଗ୍ରାମ ॥ ଶୁଣରେ ସଖି, ଗୃହୁ ଚନ୍ଦ୍ରମାମୁଖି । ଋଷିଙ୍କି ଅସୁରେ ଆସି କି ଦୋଷେ ଭକ୍ଷି ॥ କୋଦଣ୍ଡ ବାଣ, ଦେଖି ଗଲେ ଶରଣ । ଏଥିପାଇଁ ଶଶିମୁଖୀ ଦେବ ପରାଣ । ବିଚିତ୍ର ବନ ଦିବ୍ୟ ତରୁ ଗହନ । ପୁଷ୍କରିଣୀ ଏକ ଅଛି ଏକ ଯୋଜନ ॥ କରନ୍ତି ନୃତ୍ୟ ଗୀତ ବାଣୀ ସଙ୍ଗୀତ । ଜଳର ଭିତରେ ଶୁଭୁଅଛି ଏମନ୍ତ ॥ ଶୁଣି ଚକିତ ପଚାରନ୍ତି ଭରତ । ତହିଁ ତଟେ ମୁନି କହନ୍ତି ସେ ବୃତ୍ତାନ୍ତ ॥ ଶୁଣ ହେ ରାମ;

ଋଷି ମଣ୍ଡୂକ ନାମ । ତପସ୍ୟା ଦେଖିଣ ଦେବେ ହୋଇଲେ ବାମ ॥ ଅପସରୀ ପେଷିଲେ ତାଙ୍କୁ ତପ ଭଙ୍ଗିଲେ । ସେମାନେ ଏବେ ତାଙ୍କର ମନ ରଞ୍ଜିଲେ । ଜଳ ଭିତର, କରି ଦୁର୍ଲ୍ଲଭ ପୁର । ସେମାନଙ୍କ ସଙ୍ଗତେ କରନ୍ତି ବିହାର ॥ ଶୁଣି ଶ୍ରୀରାମ, ହେଲେ ସନ୍ତୋଷ ମନ । ବୋଲେ ବସି ବୁଲନ୍ତି ଦଣ୍ଡକ ଅରଣ୍ୟ ॥



## ଗଯ୍ନଛାନ୍ଦ

ରାଗ—କାମୋଦୀ, ସରମାନ ବିପ୍ରସିଂହ ବାଣୀ

ଦଣ୍ଡକ ଅରଣ୍ୟ ରାମ ଦେଖନ୍ତି ଋଷି ଆଶ୍ରମ ଲକ୍ଷ୍ମଣ ଜାନକୀ ଘେନି ସଙ୍ଗେ । କାହିଁ ରହନ୍ତି ବରଷେ କାହିଁ ରହି ଷଡମାସେ ସମସ୍ତ ସ୍ଥାନ ରହିଲେ ରଙ୍ଗେ । ବନବାସ । ହେଲା ତେନପାଞ୍ଚ ବରଷ । ମାରନ୍ତି ହରିଣ ମୃଗ ଫଳମୂଳ କରି ଭୋଗ ସୁଖେ ବଞ୍ଚି ରଜନୀ ଦିବସ । ସୁତୀକ୍ଷଣ ମହାମୁନେ ପଡ଼ିଲେ ଶ୍ରୀରାମ ତାହାଙ୍କର ଆଶ୍ରମକୁ ଗଲେ । ଦୂରୁ ଦେଖି ମୁନିବର କଲେ ରାମ ନମସ୍କାର ମୁନି ବହୁତ କଲ୍ୟାଣ କଲେ । ଶୁଣ ଆହେ ବ୍ରହ୍ମଯତ୍ତ କାହିଁଅଛନ୍ତି ଅଗସ୍ତି ନ ଦେଖିଲି ତାହାଙ୍କର ସ୍ଥାନ । କହନ୍ତି ମୁନିବଚନ ଏଠାକୁ ଗୃହଯୋଜନ ଦକ୍ଷିଣେ କୁ କରିବ ଗମନ । ସେଠାରୁ ଶୁଣି ଏ ବାଣୀ ମୁନିଙ୍କୁ ମାଗି ମେଲାଣି ତିନିଯୋଜନ ପଥରେ ଗଲେ । ଅଗସ୍ତି ଭ୍ରାତାଙ୍କ ଭେଟ ସେଦିନ ରହି ସେ ମଠ ନିଶି ପ୍ରଭାତେ ବିଜୟେ କଲେ ॥ ଦେଖିଲେ ବିବିଧ ତରୁ ଦୁର୍ଲ୍ଲଭ ଫଳରେ ଗୁରୁ ଦିଶୁଅଛି ଅଗ୍ନିଧୂମ ଚିହ୍ନ । ନିକଟ ହୋଇଲା ମଠ ସେ ବାରେ କରିଣ ମଠ ଲକ୍ଷ୍ମଣଙ୍କୁ କହନ୍ତି ବଚନ । ଆଗ ହୋଇ ତୁମ୍ଭେ ଯାଅ ଆମ୍ଭ ଆଗମନ କହ ଆଜ୍ଞାଦେଲେ କରିବା ଦର୍ଶନ । ଶୁଣିଣ ରାମାନୁଜ ଗଲେ ଋଷିଦ୍ୱାରୀଙ୍କୁ କହିଲେ ଦ୍ୱାରୀ କହେ ମୁନି ସନ୍ନିଧାନ । ତେଜଣ ଯାଗପ୍ରବନ ଅଇଲେ ସେ ତପୋଧନ ବୋଲେ ଆସନ୍ତୁ ରଘୁନନ୍ଦନ । ଆସିଣ ରାମ ଲକ୍ଷ୍ମଣ ପଡ଼ିଲେ ମୁନି ଚରଣ ମୁନି ତାଙ୍କୁ କଲେ ଆଲିଙ୍ଗନ ॥ ବୋଲନ୍ତି ମୋ ନେତ୍ର ଧନ୍ୟ ତପସ୍ୟା ହୋଇଲା ପୂର୍ଣ୍ଣ ଆଜ ମୁଁ ଦେଖିଲି ଭାଇ ବେନି । ମଠ ଭିତରକୁ ନେଲେ ରାମଙ୍କୁ ଆତିଥ୍ୟ କଲେ ଆନନ୍ଦରେ ପୁଲକିତ ମୁନି । ବଇଷ୍ଣବୀ ଧନୁ ତୂଣୀ ଖଡ଼ଗ ହସ୍ତରେ ଘେନି ସମର୍ପିଲେ ରାମଙ୍କୁ ସେ ମୁନି । ବୋଲଇ ଯେ ଗୁଣି ବସି ଆନନ୍ଦେ ସେ ଦିନ ନିଶି ବଞ୍ଚିଲେ ଜନକସୁତା ଘେନି ॥

—×—

## ୪ର୍ଥ ଛାନ୍ଦ

ରାଗ—କୌଶିକ

ଅଗସ୍ତି କହନ୍ତି ଶୁଣ ହେ ଶ୍ରୀରାମ ସବୁଦିନେ ଏ ବସ୍ତୁ ଧନୁ । ଶଙ୍କ ତୁମ୍ଭଙ୍କୁ ଦେବାକୁ କହିଥିଲେ ରଖିଥିଲି ମୁଁ କେତେ ଦିନୁ । ଆହେ ରାଘବ । ଅସୁର ଏଥେ କ୍ଷୟ କର । କେବେ କ୍ଷୟ ନୁହନ୍ତି ଏଥୁ ଶର ଏହି ଅକ୍ଷୟ ତୂଣୀର ॥ ସନ୍ତୋଷ ହୋଇ ଶ୍ରୀରାମ କରଯୋଡ଼ି ମୁନିଙ୍କୁ କହନ୍ତି ବଚନ । କେଉଁ ସ୍ଥାନେ ପର୍ଣ୍ଣଶାଳା ରଚିବୁଁ କହିବା ହଉ ତପୋଧନ । ମୁନି ବୋଲନ୍ତି । ପଞ୍ଚବଟୀରେ ଘର କର । ଗୋଦାବରୀ ନଦୀ ତଟ ମନୋହରପବନ ମହାସୁଖକର ॥ ଏ ଯେ ଜାନକୀ ଅତ୍ୟନ୍ତ ସୁକୁମାରୀ ମହା ଦୁଃଖମାନ ସହିଲେ । ମହା ଦୁଃସହ ସାହସ ତ କଲେ କି ବନ ଭିତରକୁ ଆଇଲେ । ଆହେ ରାଘବ । ଏହାକୁ ହେଳା ନ କରିବ । ଯେତେବେଳେରେ ଏ ଯାହା ମାଗୁଥିବେ ଶରଧା କରି ଆଣିଦେବ ॥ ମୁନିଙ୍କି ମେଲାଣି ମାଗିବ ସେଠାରୁ ଯେ ଜନେ ଦକ୍ଷିଣକୁ ଗଲେ । ପଞ୍ଚବଟୀ ତଟ ନିକଟେ ପ୍ରକଟ ସଙ୍କେତ ମୁନି କରିଥିଲେ । ବାଟେ ବସିଛି । ଗିରି ସମାନ ବିଶେ କାୟ । ଦେଖିଣ ଜାନକୀ ସଭୟ ହୋଇଲେ ପୁଚ୍ଛନ୍ତି ତାକୁ ରାମରାୟ ॥ ରାମକୁ କହିଲେ କୁଳାଚୂଡ଼ାରତ୍ନ ଜଟାୟୁ ନାମଟି ଆମ୍ଭର । ଗରୁଡ଼ଙ୍କର କନିଷ୍ଠ ପୁତ୍ର ଆମ୍ଭେ ବାପାଙ୍କ ମଇତ୍ର ତୁମ୍ଭର । ଶୁଣି ଶ୍ରୀରାମ । ତାହାଙ୍କୁ ମାନ୍ୟଧର୍ମ କଲେ । କେଉଁଠାରେ କୁଟୀ କରିବା ବୋଲିଣ ସଙ୍ଗତେ ଘେନିଣ ଆଇଲେ । ମନୋରମ ପୁଷ୍ପେ ଅରଣ୍ୟ ଦେଖିଲେ ନଦୀର ପଶ୍ଚିମ ଭାଗରେ । କୁଶ କୁସୁମ ଫଳମୂଳ ସୁଲଭ କୁଟୀ କଲେ ତହିଁ ଲାଗିଲେ । ମୃତ୍ତିକା ବାଡ଼ି । କରିଣ ଇନ୍ଧନ ପାଡ଼ିଲେ । ପଲ୍ଲବମାନଙ୍କରେ ତାହା ଆଚ୍ଛାଦି ଦୂର୍ଲ୍ଲଭ କରି ସଜାଡ଼ିଲେ । ଅତି ଦୁର୍ଲ୍ଲଭ ପର୍ଣ୍ଣଶାଳା ଶ୍ରୀରାମ ଦେଖିଣ ଲକ୍ଷ୍ମଣଙ୍କୁ ପ୍ରଶଂସି । ଧନୁ ତୂଣ ଖଣ୍ଡା ସମସ୍ତ ରଖିଣ ରହିଲେ ଘେନି ସୁନ୍ଦରକେଶୀ । ଛାୟା ଆଗରେ । ଲକ୍ଷ୍ମଣ କୁଟୀର ରଚିଲେ । ବୋଲେ ବଞ୍ଚି ଯହିଁ ମହାସୁଖ ପାଇ ରଜନୀ ଦିବସ ବଞ୍ଚିଲେ ॥



## ୫ମ ଛାନ୍ଦ—ବନବିହାର

ରାଗ—ଆହାରୀ

ଶରଦ କାଳରେ । ରାମ ବୁଲନ୍ତି ବନରେ । ଜାନକୀ ସଙ୍ଗତେ ବିହାର କରନ୍ତି ଆନନ୍ଦ ମନରେ ॥ ଧନୁ କାନ୍ଧ କରି । ରାମ ବୁଲେ ଧୀରି ଧୀରି ॥ ବୋଲନ୍ତି ଦେଖରେ ସରୋଜବଦନୀ ବିବିଧ ତରୁବର ॥ ଚନ୍ଦନ ଅଗୁରୁ

ତନୁ ଅତି ମନୋହର । ଧାଡ଼ ଧାଡ଼ ହୋଇ ଶୋଭା ପାଉଛନ୍ତି ଏ ମଧ୍ୟେ ଭ୍ରମର ॥ କୁସୁମ କାନନ ॥ ମଧ୍ୟେ ପଶିଲେ ବହନ । ନାନା କୁସୁମରେ ସୁବେଶ କରନ୍ତି । ସୁବର୍ଣ୍ଣ ରତନ ॥ ମଣ୍ଡିଲେ କବରୀ । କୁଚେ ଲେପିଲେ କସ୍ତୁରୀ । ସମସ୍ତ ଆଭରଣମାନ ଖଞ୍ଜିଲେ କୁସୁମରେ କରି ॥ ହୋଇ ହସ ହସ । ରାମା ରାମେ କଲେ ବେଶ । ବିବିଧ କୁସୁମ ତଡ଼ାଉ ଖଞ୍ଜିଲେ ଶୋଭା ଜଣା ବେଶ ସୁବେଶ ଚିବୁକ ଧରି । ପୁ ରୁଷ ବିବେକ । ଜୀବନବାନ୍ଧବ ଆମ୍ଭ ସଙ୍ଗେ ଦୁଃଖ ପାଇଲୁ ଅନେକ ॥ ତୁ ମୋର ସମ୍ପଦ । କାମଦେବ ବିଷ ଗଦ । କୋଟି କୋଟି ଯୁଗ ମଣଇ ତୋହର ବିଚ୍ଛେଦ ॥ ଏହିରୂପେ ଲୀଳା । ସଙ୍ଗେ ଘେନିଣ ଅବଳା । ଅନୁଦିନେ ତନୁ ଷଣେ ନ ଛାଡ଼ନ୍ତି ରସିକମଣିମାଳା କନ୍ଦମୂଳ ଖୋଳ । ନାନା ଫଳଫଳ ତୋଳ । ବୋଲେ ବଶି ପ୍ରତିଦିନ ଆଣନ୍ତି ସାନୁଜ ମହାବଳୀ । ୧୦ ।

—×—

## ୭ମ ଛାନ୍ଦ—ସୂର୍ପଣଖା ଭେଟ

ରାଗ—କଲ୍ୟାଣି ଆହାରୀ

ଏଥୁଅନନ୍ତରେ ଶରଦ ଅନ୍ତରେ ପ୍ରବେଶ ହେଲା ହିମକାଳ ॥ ଶ୍ରୀରାମ ଲକ୍ଷ୍ମଣ ସୀତା ସହିତରେ ମିଳଲେ ଗୋଦାବରୀ କୂଳ ॥ ଶ୍ରୀରାମ । ହସି ଲକ୍ଷ୍ମଣଙ୍କୁ କହନ୍ତି । ଦେଖ ଏ ହିମ ପଡ଼ିବାରୁ ତପନକର ତେଜୋବନ୍ତ ନୁହନ୍ତି ॥ ହିମ ଅତନ୍ତୁ ଗୃହଣ ହିମାହନଳ ପ୍ରଗୃହି ହେଲେ ଦଶଦିଗ । ଚନ୍ଦ ଭାନୁ ଭାନୁ କରଣ ଏ କାଳେ କରୁଅଛି ବନ୍ଧୁ ହରଷ । ପୃଥିବୀ । ହେଉଛି ମହା ସ୍ୱର୍ଣ୍ଣବାପୀ । ଏ ମାର୍ଗଶୀର ସମସ୍ତ ମାସ ଶ୍ରେଷ୍ଠ ବୋଲଣ ମୁନିମାନେ କହି ॥ ସଲିଳ ଅନଳ ପ୍ରାପ୍ତେକ ହୋଇଲା ଅନଳ ହୋଇଲା ସଲଲ । ଏମନ୍ତ କହି ରାମ ଲକ୍ଷ୍ମଣ ସୀତା ସ୍ନାନକଲେ ନଦୀର ଜଳ । ତଦନ୍ତେ । କୁଟୀରେ ହୋଇଲେ ପ୍ରବେଶ । ଦେବ ପିତୃପୂଜା କରି ଫଳମୂଳ ମଣୋହି କଲେ ହୋଇ ତୋଷ । ଯେଉଁ ରାମ ଷଡ଼ରସ ଚତୁର୍ବିଧ ଅଶନ ହେଁ ତାଙ୍କୁ ନ ରୁଚେ । ସେ ଏବେ ଫଳମୂଳ ମାଂସ ମଣୋହି ସୀତା ପରଷିବାରୁ ରୁଚେ । ସେବଣ । ରାମଙ୍କୁ ନ ରୁଚେ ଅଞ୍ଜଳୀ । ଏବେ ସେ ତରୁମାନଙ୍କ ଛାଇତଳେ କାମିନୀ ଘେନ କରେ କେଳ । ଆଚମନ ସାରି କଷାଫଳ ମୃଗ ଗୁଳ୍ମ ପାରି ତହିଁ ବିଜୟେ । ଶ୍ରୀରାମ ବାମପାର୍ଶ୍ୱରେ ଜନକ-ନନ୍ଦିନୀ ବସି ଶୋଭାପାଏ । ଲକ୍ଷ୍ମଣ । ନିଜ କୁଟୀରେ ଛନ୍ତି ବସି । ଅଯୋଧ୍ୟା ଚରିତମାନବେନିଭାଇ କହନ୍ତି ମନ୍ଦ ମନ୍ଦ ହସି । ଏହି ସମୟରେ ଶ୍ରୀରାମ ପାଶରେ ଅସୁରୀ ପ୍ରବେଶ ହୋଇଲା । ଶ୍ରୀରାମ ଶ୍ରୀଅଙ୍ଗ ସୁନ୍ଦର ଦେଖିଣ ମଦନବାଣେ ମୋହି

ହେଲା । ଅସୁରୀ । ଦେଖିଲା ସୁନ୍ଦର ପୁରୁଷ । ଅଶନ ପାଶୋର ଛନ୍ନ ଛନ୍ନ ହୋଇ ମଦନେ ହୋଇଲା ଅବଶ । ପିଙ୍ଗଳ କେଶ ଭବିଷ୍ୟବେଶ ତାର କୁଲା ପ୍ରାୟେକ ନଖମାନ । କୋଟରାକ୍ଷୀ କୁଠାରଦଶନା ବଦନ ଦଗ୍ଧକେନ୍ଦୁ କାଠ ସମାନ । ରାମଙ୍କୁଂ । ଦେଖିଣ ମଦନେ ବିହ୍ୱଳା । ବୋଲଇ ବାଣି ସେହିକ୍ଷଣି ରାକ୍ଷସୀ ହୋଇଲାକ ଦିବ୍ୟ ଅବଳା । ୭ ।

—:○:—

## ୭ମ ଛାନ୍ଦ

ରାଗ— ମାଳଶ୍ରୀ

ସୁନ୍ଦର ରୂପ ହୋଇ ସୂର୍ପଣଖା । ଶ୍ରୀରାମ ଛାମୁରେ ଦେଲାକ ଦେଖା । ପଚାରଇ ତୁମ୍ଭେ କାହା କୁମର । ଅସୁରଙ୍କ ମଧ୍ୟେ କାଲ ତ ଘର । ରାମ ତାଙ୍କୁ ସବୁ ବୃତ୍ତାନ୍ତ କହିଲେ ସେହି କହିଲା କଥା । ମୁହିଁ ବିଶ୍ରବାସୁତା, ଭ୍ରାତ ଦଶମଥା ॥ ଆହେ ରାମ ତୁମ୍ଭେ ଆମ୍ଭେ ଏକାନ୍ତେ । ବିହାର କରିବା ନଦୀ ପର୍ବତେ । ଦଣ୍ଡକ-ବନଯାକ ବୁଲାଇବି । ପୁଣି ଯାହା ମାଗିବ ତାହା ଦେବି । ଅସୁରୀକ ଗୃହିଁ ହସ ହସ ହୋଇ ବୋଲନ୍ତି କୋଦଣ୍ଡଧର । ଦେଖ ସଙ୍ଗତେ କାମିନୀ ଅଛନ୍ତି ମୋହର ॥ ପୁଣି ବୋଲଇ ମୁଁ ହେବି କାମିନୀ । କି ଛାର ସୁନ୍ଦର ତୋର ଭାବିନୀ । ଏହାକୁ ଏହିକ୍ଷଣି ଦେବି ଗିଳି । ପୁଣି ତୁମ୍ଭେ ଆମ୍ଭେ କରିବା କେଳି । ବୋଲନ୍ତି ରାମ ତୁମ୍ଭେ ରକ୍ଷିନନ୍ଦିନୀ । ତୁମ୍ଭଙ୍କୁ କି ସପତଣୀ । ତୁମ୍ଭ ମନକୁ ଏ କଥା ଅଇଲା ପୁଣି ॥ ଭାଇ ଲକ୍ଷ୍ମଣ ଅଛନ୍ତି ଆମ୍ଭର । ଭରଯା ତାଙ୍କର ନାହିଁ ସଙ୍ଗର । ତୁମ୍ଭେ ତାଙ୍କର ହୁଅ ମନୋହାରୀ । ଶୁଣିଣ ସନ୍ତୋଷ ହେଲା ଅସୁରୀ । ପରିହାସ ନ ବୁଝି ସେ ଅସୁରୀ । ଲକ୍ଷ୍ମଣ ପାଶକୁ ଗଲା । ମୋତେ ତୁମ୍ଭର ବନିତା କର ବୋଇଲା । ବୋଲେ ଲକ୍ଷ୍ମଣ ମୁଁ ବୋଲଏ ଦାସ । ଦାସୀ ହୋଇବାରେ କି ପଉରୁଷ । ତାଙ୍କ ଭରଯାକୁ କରିବ ସେବା । ତୁମ୍ଭଙ୍କୁ ଲୋକେ କି ବୋଲିବେ ଅବା । ଲକ୍ଷ୍ମଣ ଉତ୍ତର ଶୁଣି ସେ ଅସୁରୀ, ଶ୍ରୀରାମ ପାଶକୁ ଗଲା । ତୁମ୍ଭ ଭାବିନୀକ ମୁଁ ଖାଇବି ବୋଇଲା । ଏ ଛାର କାମିନୀ ଅଳ୍ପ ତ ଯୋନ । ଯୋଜିଲୁ ନାହିଁ ମୋହର ଦଶନ । ଏମନ୍ତ ବୋଲି ତୁଣ୍ଡ ବିସ୍ତାରିଲା । ସୀତାଙ୍କୁ ଧରି ଗିଳି ଦେଉଥିଲା । ଅସୁରୀ ମୁଖରୁ ତାଙ୍କୁ ଛଡ଼ାଇ । ନେଇଣ ରାମ ରଖିଲେ । ଦୁଷ୍ଟା ଅସୁରୀ ଦୁଷ୍ଟସ୍ୱଭାବ ଦେଖିଲେ । ରାମ ଡାକିଲେ । ହେ ଆସ ଲକ୍ଷ୍ମଣ । କଷ୍ଟେ ପରିହାସ ହେଲା ଦୂଷଣ ॥ ଛେଦ ଏହାର ନାସିକା ଶ୍ରବଣ । ସୀତାଙ୍କୁ ଏ କରୁଥିଲା ଭକ୍ଷଣ । ଆଜ୍ଞା ପ୍ରମାଣେ ଲକ୍ଷ୍ମଣ ସେହିକ୍ଷଣି, କାଟିଲେ ନାସା ଶ୍ରବଣ । ଏ କି ବିରୂପ ହେଲାକ ରକତେ ଭୂଷଣ ॥ ସେହିକ୍ଷଣି ତାର ସ୍ଥାନକୁ ଗଲା । ରୋଦନ କରି

ଖରକୁ କହିଲା । ଦେଖ ମୋହର ନାସିକା ଶ୍ରବଣ । ବିନା ଦୋଷେ ପୁଣି ହେଲା କଷଣ । ଅଯୋଧ୍ୟାର ରାଜା ଦଶରଥ ସୁତ, ଶ୍ରୀରାମ ଲକ୍ଷ୍ମଣ ବେନି । ପଞ୍ଚବଟୀରେ ଅଛନ୍ତି ଯୁବତୀ ଘେନି ॥ ଦେଖି ମୁଁ ଗଲି ଭାର୍ଯ୍ୟାକୁ ତାହାର । ସାନୁଜ ତାର ବଡ଼ ବଳୀୟାର । ଦେଖି ନାସିକା ଶ୍ରବଣ କାଟିଲା । ଏମନ୍ତ କହି ଭୂମିରେ ଲୋଟିଲା । ଭଗ୍ନୀର ବିକଳ ଦେଖି ଖରବୀର ରାକ୍ଷସ ରାଇ । ବୋଲେ ମାରିବ ଏ ଯାକୁ ଦେବ ଦେଖାଇ ॥ ଚଉଦ ରାକ୍ଷସ ଘେନି ଅସୁରୀ । ଦେଖାଇ ଦେଲା ସେ ଶ୍ରୀରାମପୁରୀ । ଶୂଳ ଶଲ୍ୟ ସେହି ଅଛନ୍ତି ଧରି । ରାମକୁ ଦେଖିଣ ପ୍ରତିଜ୍ଞା କରି । ଧନୁ କରେ ଗୁଣ ଦେଇଣ ଶ୍ରୀରାମ ତାଙ୍କ ଆଗେ ହେଲା ଉଭା । ମୃଗଯୂଥେ ଶାର୍ଦ୍ଦୂଳ ପ୍ରାୟେ ହସେ ଶୋଭା ॥ ଚଉଦେ ଚଉଦ ଶୂଳ ମାଇଲେ । ଚଉଦ ବାଣେ ତା ରାମ କାଟିଲେ । ତହିଁପରେ ରାମ ବାଣ ପ୍ରହାରି । ପଡ଼ିଲେ ଦନୁଜେ ଜୀବନ ହାରି । ତାହାଙ୍କୁ ମରାଇ ପୁଣ ସୂର୍ପଣଖା, ଖରକୁ କାନ୍ଦି କହିଲା । ବୋଲେ ବଳି ସେ ପ୍ରତିଜ୍ଞା ବହୁତ କଲା ।

—×—

## ୮ମ ଛାନ୍ଦ ଖର, ଦୂଷଣ, ତ୍ରିଶିରା ବଧ

ରାଗ—ପାହାଡ଼ିଆ କେଦାର

ଭଗ୍ନୀର ମୁଖୁ ଶୁଣି ବଚନ, ଖର ହୋଇଲା କୁପିତ ମନ । ବୋଲଇ ଆଜ ଶତ୍ରୁ ହୋଇଲେ ନେବି ଜୀବନ ଯେ ॥ ଏମନ୍ତ ବୋଲି ଚଢ଼ିଲେ ଯାନ, ଚଉଦସହସ୍ର ଅସୁର ସୈନ୍ୟ । ସଙ୍ଗେ ଦୂଷଣ ତ୍ରିଶିରା ଘେନି ବେଢିଲା ବନ ହେ । ଦେଖି ଶ୍ରୀରାମ ଲକ୍ଷ୍ମଣଙ୍କୁ କହନ୍ତି ଯେ । ଦେଖ ଅସୁର ସୈନ୍ୟ ବେଢ଼ି ପଡ଼ନ୍ତି ହେ । ତୁମ୍ଭେ ଏଥିକୁ ଭୟ ନ କର । ଯିବେ ଏମାନେ ଶମନପୁର । ଦେଖ ଦକ୍ଷିଣ ଭୁଜ ଆମ୍ଭର ନୃତ୍ୟ କରଇ ହେ ॥ ସୀତାଙ୍କୁ ଗିରିଖୋଠ ଭିତରେ ରଖିଣ ତୁମ୍ଭେ ଜଗ ଦୁଆର । ଆମ୍ଭ ଚରଣ ଶପଥ ନୋହିବଟି ବାହାର ହେ । ଆଜ ମୁନିଙ୍କି ଅଭୟ ବର, ଦେବି ଦଣ୍ଡକା ବନ ଭିତର । ଦେଖନ୍ତୁ ଆଜ ମୋ ପରାକ୍ରମ ସକଳ ଶୂର ଯେ । ଶୁଣି ସାନୁଜ ସୀତାଙ୍କୁ ଘେନିଚଳି ଯେ । ଗିରି-ଗୁହାରେ ରଖି ଦ୍ୱାର ଜଗିଲେ ସେ । ଶ୍ରୀରାମ ବୀରବେଶ ହୋଇଲେ । ଶ୍ରୀଅଙ୍ଗେ ହେମସେହ୍ଲା ନାଇଲେ । କୋଦଣ୍ଡ ତୂଣ ଘେନିଣ ବେଗେ ବାହାର ହେଲେ ଯେ ॥ କୋଦଣ୍ଡେ ରାମ ଦେଇଣ ଗୁଣ, କନ୍ଧେ ଭିଡ଼ିଲେ ଅକ୍ଷୟତୂଣ, ଦେଖିଣ ଖର ସୈନ୍ୟ ସଙ୍ଗତେ ପେଷେ ଦୂଷଣ ଯେ । ଅସୁରଗଣ ଘେନି ଦୂଷଣ ଶ୍ରୀରାମ ସଙ୍ଗେ କଲାକ ରଣ । ରାମ ବାଣରେ ସୈନ୍ୟ ସହିତେ ହାରିଲା ପ୍ରାଣ ଯେ । ଘର ଛୁହାଇ ତହୁଁ ତ୍ରିଶିରା ଅସୁର ଯେ । ଦେଖି ରାମଙ୍କୁ ବୃଷ୍ଟି କଲାକ ଶର ହେ । ରାମର

ଶର ଅଗ୍ନି ପ୍ରଖର, ଦନୁଜ କ ସେ ତୃଣ ନକର, ତିନ କାଣ୍ଡରେ ରାମ କାଟିଲେ ନିଶିଚ ଶିର ଯେ ॥ ଦେଖିଣ ଖରବୀର ସତ୍ୱର ବନ୍ଧିଲା ରାମ ଅଙ୍ଗକୁ ଶର, କନକ ଧନୁ ସେହ୍ନା କଟିଲା ରଘୁବୀରର ଯେ ॥ ଅଗସ୍ତି ଦେଲା ଧନୁରେ ଗୁଣ, ଦେଇଣ ରାମ ସନ୍ଧିଲେ ବାଣ, ହୃଦରେ ପଡ଼ି ପଲକମାତ୍ରେ ହାରିଲା ପ୍ରାଣ ଯେ ॥ ରାମ ଅସୁରକୁଳ ହୋଇଲେ ଯେ । ତିନ କାଣ୍ଡର ସମସ୍ତ କ୍ଷୟକଲେ ଯେ । ଦଣ୍ଡକାରଣ୍ୟ ଋଷି ଅଇଲେ, ସମସ୍ତେ ଏକତ୍ର ହୋଇଲେ ରାମଚନ୍ଦ୍ରଙ୍କୁ ସମସ୍ତ ମୁନି କଲ୍ୟାଣ କଲେ ଯେ ॥ ଗିରିଗୁହାରୁ ହେଲେ ବାହାର, ସୀତାଙ୍କୁ ଘେନି ଲକ୍ଷ୍ମଣ ବୀର । ଦେଖିଲେ କୁଡ଼ କୁଡ଼ ହୋଇଣ ମଲେ ଅସୁର ଯେ ॥ ଅମର ଘେନିଣ ସୁନାସୀର, କୁସୁମ ବୃଷ୍ଟି କଲେକ ଶିର, ଏହି ସମୟେ ଜାନକୀ ଦେଖିଲେ ରଘୁବୀର ଯେ । ମହାଆନନ୍ଦେ କଲେକ ଆଲିଙ୍ଗନ ଯେ । ପୁଣ ପୁଣ ଦେଖନ୍ତି ଅବୟବମାନ ଯେ । ବୋଲନ୍ତି ଦେବ ହେତେ ଅସୁର, ସଂଗ୍ରାମେ ଏ ତ ଅଟନ୍ତି ଶୂର । ଏକା ହୋଇଣ କେମନ୍ତ କରି କଲେ ନିଧନ ଯେ ॥ ମୁନିମାନଙ୍କୁ ଦେଇ ମେଲାଣି, କୁଟୀରେ ବିଜେ କୋଦଣ୍ଡପାଣି, ଆନନ୍ଦ ହୋଇ ରହିଲେ ତହିଁ ତିନି ପରାଣୀ ଯେ । କମ୍ପନ କଲାକ ସେହିକ୍ଷଣି, ରାବଣ ଆଗେ ଯୋଡ଼ିଲା ପାଣି, ହେ ଦେବ ଖର ସହିତେ ମଲେ ଅସୁରଶ୍ରେଣୀ ଯେ । ରାମ ଲକ୍ଷ୍ମଣ ଦଶରଥ ନନ୍ଦନ ଯେ ସଙ୍ଗେ ବନିତା ଘେନି ଅଛନ୍ତି ବନ ଯେ । ସୂର୍ପଣଖା ନାସା ଶ୍ରବଣ, ଛେଦନ ଦେଖି ଖରଦୂଷଣ । ନିଶିଥି ଆଦି କରନ୍ତେ ରଣ ହାରିଲେ ପ୍ରାଣ ଯେ ॥ ସଂଗ୍ରାମେ ତାକୁ ନାହିଁ ନା ସମ, ସେ ରାମ ଆମ ଦନୁଜ ଯମ । ଜୟ ନୋହିବ ତା ସଙ୍ଗେ ଭୁମ୍ଭେ କଲେ ସଂଗ୍ରାମେ ହେ ॥ କାମିନୀ ତାର ରହିକ ସମ, କନ୍ଦର୍ପ ପ୍ରାୟେ କାମ ସେ ରାମ । ଜିଣିବ ନାହିଁ ତା ସଙ୍ଗ ଯେବେ କାମିନୀ ନେବ ହେ ॥ ଯେବେ ଉପାୟବଳେ ହରିବୁ ନାରୀ ହେ । ତେବେ ତାହା ଦୁଃଖରେ ସେ ଯିବ ମରି ହେ । ରାବଣ ମନେ ବିଚାରି କରି, କେମନ୍ତେ ଆଣିବି ତାର ନାରୀ । ବୋଲଇ ବସି ଭୁଞ୍ଜିଲା ଲଙ୍କପତିର ଶିରୀ ଯେ । ୬ ।

—*—

## ୯ମ ଛାନ୍ଦ

ରାଗ—ଘଣ୍ଟିଆରୀ

ମରାଇଣ ଖରବୀର ଯେ ସୁର୍ପଣଖା ଚଉଦସହ୍ର ଅସୁର । ରାବଣ ସମ୍ମୁଖରେ କାନ୍ଦିଣ କହଇ ନାସିକା ଦେଖାଇ ତାର, କି ଆହେ ଭାଇ ॥ ଦଶରଥର ନନ୍ଦନ, କି ଆହେ ଭାଇ; ରହିଅଛି ତା ଆସ୍ଥାନ । ସଙ୍ଗତେ କାମିନୀ ଅଛଇ ତାହାର ତ୍ରୈଲୋକ୍ୟ ଲକ୍ଷ୍ମୀ ସମାନ ॥ ଦେଖିବାକୁ ତାକୁ ଗଲି, କି ଆହେ ଭାଇ,

କିଛି ହିଁ ଦୋଷ ନ କଲା । ବିନାଦୋଷେ ଶ୍ରବଣ କାଟିଲା, କାଢ ଖରଙ୍କୁ କହିଲା ॥ ଶୁଣିକରି ଖର ଗଲା, କି ଆହେ ଭାଇ, ତା ସଙ୍ଗେ ସମର କଲା । ତ୍ରିଶିରା ଦୂଷଣ ସହିତେ ଚଉଦସହସ୍ର ଅସୁର ମାରିଲା ॥ କିଛିକରେ ଯେତେକ ବୀର, କି ଆହେ ଭାଇ, ଆଦର ଶୂର ଅସୁର । ସମସ୍ତେ ଏକ ହୋଇ ତାହାଙ୍କ ସଙ୍ଗରେ ହାନ୍ତିବେ କଲେ ସମର ॥ କଲା ନୁହେଁ ତାର ବିକ୍ରମ, କି ଆହେ ଭାଇ, ଯେସନେ ଜଳଧି ଜଳ । ବଜ୍ର ସମାନ ତାହାର କାଣ୍ଡମୁନ ଜିଣନ୍ତା ନାହିଁ ଭୂତଳ ॥ ସଙ୍ଗତେ କାମିନୀ ତାର, କି ଆହେ ଭାଇ, ନାହିଁ ନାଗ ସୁର ନର ବ୍ରହ୍ମାଣ୍ଡ ଭିତରେ ଖୋଜିଲେ ନ ଥିବେ ତାହାର ପ୍ରାୟ ସୁନ୍ଦର ॥ ତୋ ପୁରେ ଯେତେ ସୁନ୍ଦରୀ, କି ଆହେ ଭାଇ, ହୋଇବେ ତା ପରିଚାରୀ । ଆଣି ପାରିଲେ ଲଙ୍କା ଶୋଭା ହୋଇବ ହେବ ତୋର ମନୋହାରୀ ॥ ଏତେ ବୋଲି ମୁଣ୍ଡକୋଡ଼ି, ସେ ସୂର୍ପଣଖା, ଭୂମିରେ କାନ୍ଦଣ ଗଡ଼ି । ପ୍ରତିଜ୍ଞା କରିଣ ବାହାର ହୋଇଲା ହେମରଥବର ଚଢ଼ି ସେ ଦଶାନନ ॥ ମାରୀଚ ପାଶକୁ ଗଲା ସେ ଦଶଶିର, ସିନ୍ଧୁ କୂଳରେ ଭେଟିଲା । ଶ୍ରୀରାମ ଚରିତ କହନ୍ତେ ତାହାର ମନରେ ଭୟ ହୋଇଲା ॥ ରାମର ଚରିତ ଶୁଣ ହେ ଦଶାନନ, ବାଳୁତ କାଳର ଗୁଣ । ମୋର ଜନନୀ ତାଡ଼କାକୁ ମାରିଲା ନେଲା ସୁବାହୁର ପ୍ରାଣ ॥ ହାବୋଡ଼ା ଶରେ ମାଇଲା, ହେ ଲଙ୍କେଶ୍ୱର, ବୃକ୍ଷକୁ ବୋଲ ତଡ଼ିଲା । ଏତେ ଦୂରେ ଆସି ପଡ଼ିଣ ଜାଇଲି ସେ ଦିନୁ ଭୟ ହୋଇଲି । ଏକ ଦିନେ ମୃଗ ହୋଇ, ହେ ଲଙ୍କେଶ୍ୱର, ପଞ୍ଚବଟୀରେ ଭେଟିଲି । ସଙ୍ଗ ଅସୁରମାନଙ୍କୁ ମାରିଲାଣ, ପଳାଇ ତହୁଁ ଆଇଲି । ହରାଇବୁ ଲଙ୍କାଶିରୀ, ହେ ଲଙ୍କେଶ୍ୱର, ତା ସଙ୍ଗେ ହେଲେ ବଇରୀ । ରାକ୍ଷସ କରି ଗୋଟିଏ ନ ରଖିବ ପେଷିବ ଶମନପୁରୀ ॥ ମୋର ବୋଲ ଏବେ କର, ହେ ଦଶଶିର, ତାହାର ନାରୀ ଏ ହରି । ମୁହିଁ ନାଶଯିବ ତୁହି ନାଶ ଯିବୁ, ତା ସଙ୍ଗେ ହେଲେ ବଇର ॥ ଶୁଣି ମାରୀଚ ଉତ୍ତର, ସେ ଦଶଶିର କ୍ରୋଧେ କମ୍ପାଇ ଶରୀର । ବୋଲଇ ବଂଶୀ ଅଧରେ ଦନ୍ତ ଚାପି କହଇ ତାକୁ ଉତ୍ତର । ୧୬ ।

—X—

## ୧୦ମ ଛାନ୍ଦ

ରାଗ—କାଳିଆରୀ ପଢ଼ତାଳ

ମାରୀଚ ମୁଖରୁ ଶୁଣି ବଂଶପାଣି କ୍ରୋଧେ କହଇ ବଚନ । କହ ମୁଁ କାହାକୁ ରଣେ ଜିଣି ନାହିଁ ଏ ଚଉଦ ଭୁବନରେ । ଏବେ କର ତୁ ମୋହର ବୁଦ୍ଧି । ରତ୍ନମୃଗ ହୋଇବୁ ଅବଧି । ରାମ ଆଶ୍ରମ ନିକଟ ଚରୁଥିବୁ ଦେଖି ଲୋଭଇବେ ବଧିରେ ॥ ରାମ ତୋତେ ଲୋଭ କରି ଗୋଡ଼ାଇଲେ ବହୁଦୂର ଘେନଯିବୁ । ଲକ୍ଷ୍ମଣ ତ୍ରାହି ଜାନକୀ ତ୍ରାହି ବୋଲି ଉଚ୍ଚସ୍ୱରରେ

ଡ଼ାକବୁ ରେ । ତହିଁ ଅବା ସିନା ତୁ ମରିବୁ । ମୋର ଆଜ୍ଞା ଯେବେ ନ କରିବୁ । ଖଡ଼ଗ ଘେନି ହାଣିବି ତୋର ଶିର ଏହିକ୍ଷଣି କ କରିବୁ ରେ ॥ ମନେ ବିଚାରିଲା ମାରୀଚ ଅସୁର ନିଶ୍ଚୟ ହେବ ମରଣ । ଏହା ହାତୁଁ ରାମ ହାତେ ପ୍ରାଣ ଗଲେ ହୋଇବ ସିନା କାରଣ ଯେ । ବୋଲେ ମାରୀଚ ଶୁଣ ରାବଣ । ତୋର ନିକଟେ ହେବ ମରଣ । ତୁମ୍ଭେ ଆସୁଥାଅ ମୁଁ ଏବେ ଯାଉଛି ହୋଇବ ହେମ ହରିଣ ହେ ॥ ଶୁଣି ରାବଣ ଆଲିଙ୍ଗନ କରିଣ ରଥବରେ ବସାଇଲା । ଆକାଶମାର୍ଗରେ ଘେନି ଆସି ତାକୁ ପଞ୍ଚବଟୀରେ ଛାଡ଼ିଲା ଯେ । ଦେଖି ମାରୀଚ ରାମ ଆଶ୍ରମ । ଶୋଭା ଦିଶୁଛି ରମ୍ୟ ଉଦ୍ୟାନ । କଦମ୍ବ କର୍ଣ୍ଣିକାର ବେଢ଼ ସୁନ୍ଦର ଦିଶଇ ତା ଅନୁପମ ହେ ॥ ଏମନ୍ତ କହି ତାକୁ ଦେଖାଇ ଦେଇ ଲୁଚିଲା ବନ ଭିତର । ମାରୀଚ ଦିବ୍ୟ ହେମମୃଗ ହୋଇଲା ରାବଣେଶ୍ୱର ହିତର ଯେ । ଶୃଙ୍ଗ ମଣି ଖୁରା ବଇଡୂର୍ଯ୍ୟ । ମୁଖ ମାଣିକ୍ୟେ ହୋଇଛି ଉଜ । ନୟନ ନୀଳମଣି ପେଟ ରଜତ ମରକତ ପ୍ରାୟ ଲାଞ୍ଜ ଯେ ॥ କାନ୍ତି ପ୍ରବାଳ ଦିବ୍ୟ ହେମ ସର୍ବାଙ୍ଗ ବନକୁ କରେ ଉଦିତ । ପେଣ୍ଡି ପେଣ୍ଡି ହୋଇ ତନୁସାକ ତାର ମୁକୁତାଚୟ ବିଦିତ ଯେ । ପୁଣ କ୍ଷେପଇ ପୁଣ ଚରଇ । ପୁଣ ସେ ଅବୟବ ଦେଖାଇ । ନାନା ଗୀତରେ ନାନା ଗତି କରନ୍ତେ ଟକେ ଅବା ନୋହିବ ମୋହି ଯେ ॥ ରାମ ଆଶ୍ରମର ନିକଟେ ଚରନ୍ତେ ପଡ଼ିଲା ଜାନକୀ ଦୃଷ୍ଟି । କୁସୁମ ବନରୁ କୁସୁମକୁ ତୋଳୁଥିଲେ ଯେ । ପଦ୍ମବିମ୍ବୋଷ୍ଠୀ ଯେ । ହରିଲା ମୃଗ ତାଙ୍କର ମତି । କରୁଅଛି ସେ ବିବିଧ ଗତି । ଆହେ ଆର୍ଯ୍ୟପୁତ୍ର ଆସ ଆସ ଦେଖ ଏ କନକ ମୃଗ ଗତି ହେ ॥ ଶୁଣିଣ ରାମ ଲକ୍ଷ୍ମଣ ଧନୁଶର ଘେନିଣ ହେଲେ ବାହାର । ଦେଖିଲେ ବିଚିତ୍ର ମୃଗ ଚରୁଅଛି କୁସୁମ ବନ ଭିତର ଯେ । ଦେଖି ଲକ୍ଷ୍ମଣ ରାମଙ୍କୁ କହେ । ଦେବ ମାରୀଚ ଏମନ୍ତ ହୋଏ । ନ ଜାଣି ଅସୁର ମାନଙ୍କ କପଟ ଲାଗିଲା ତ ବଡ଼ ଭୟେ ଯେ ॥ ଶୁଣି ଜାନକୀ ବୋଲନ୍ତି ହେ ଲକ୍ଷ୍ମଣ ଏହା ବିଚାର ନ କର । ଧରି ଆଣିଲେ ସେ ଭରତଙ୍କୁ ଦେବା ନ ଧରି ପାରିଲେ ମୋର ହେ । ରାମ ଶୁଣି ସୀଉକାର କଲେ । କୋଦଣ୍ଡରେ ଗୁଣ ବସାଇଲେ । ବୋଲେ ରକ୍ଷି ସୀତା ଲକ୍ଷ୍ମଣେ ଜଗାଇ ରାମ ତାକୁ ଗୋଡ଼ାଇଲେ ଯେ । ୯ ।



## ୧୧ଶ ଛାନ୍ଦ

### ରାଗ—ମୁଖାରୀ ପଟତାଳ

ହେମ ହରିଣୀ ଧୀରେ ଧାମନ୍ତେ ସୁନ୍ଦର ଧରଣୀ । ଧରୁ ଧରୁ କରୁ ମୃଗ ପଳାଉଛି ଗୋଡ଼ାଉଛନ୍ତି ରଘୁମଣି । କେତେବେଳେ ମୃଗ ଦୃଷ୍ଟିକ

ନ ଦିଶେ କେତେବେଳେ ଦୃଷ୍ଟି ଗୋଚର । କେତେବେଳେ ଦୂରେ କେତେବେଳେ ପାଶେ ରାମଙ୍କୁ ହେଲା ଅଗୋଚର ॥ ରାମଙ୍କୁ ବହୁତ ଦୂର ନେଇ ଯାଇ ଗଲା ଅଦୃଶ୍ୟ ହୋଇ କାହିଁ । ଫୁଟିଣ ରାମ ତରୁତଳେ ବସନ୍ତେ ପୁଣି ସମ୍ମୁଖରେ ହେଲା ଯାଇଁ ॥ ମାରିବି ବୋଲି ମନରେ ବିଚାରିଣ କୋଦଣ୍ଡରେ କାଣ୍ଡ ସନ୍ଧିଲେ । ବଜ୍ରାଘାତ ପ୍ରାୟେ ଶବଦ ଶୁଭିଲା ଯେତେବେଳେ ଶର ବନ୍ଧିଲେ ॥ ଲକ୍ଷ୍ମଣ ହାହା ସୀତା ହାହା ବୋଲିଣ ରାମସ୍ୱରେ ଉଚ୍ଚେ ଡାକିଲା । ମୃଗଦେହ ଛାଡ଼ି ନିଜ ତନୁ ଧରି ପ୍ରାଣହାରି ତଳେ ପଡ଼ିଲା ॥ ଦେଖି ରାମଚନ୍ଦ୍ର ଚକିତ ହୋଇଣ ବୋଲନ୍ତି ହେଲା ପରମାଦ । ମୃଗ ଦେହ ଛାଡ଼ି ଅସୁର ଦେହରେ କିରୀଟ କୁଣ୍ଡଳ ଅଙ୍ଗଦ ॥ ଏ ବାଣୀ ଶୁଣି ଆତୁର ପ୍ରାୟେ ମଣି ଆସଇ ନ ପୁଣ ଲକ୍ଷ୍ମଣ । ଛାଡ଼ି ଅଇଲେ ସୀତାଙ୍କୁ ନ ପାଇବି କି ବୋଇଲା ଦୁଷ୍ଟ ଦାରୁଣ ॥ ଏହା ବିଚାରନ୍ତେ ବାମ ଭୁଜ ବାମ ନୟନ ତାଙ୍କର ସ୍ଫୁରିଲା । ବୋଲେ ବସି ରାମ ପଛରେ ଗୋଡ଼ାଇ ଶୃଗାଳ ଘୋର ଧ୍ୱନି କଲା । ୭ ।

—X—

## ୧୨ଶ ଛାନ୍ଦ

ରାଗ— ମଧୁକେଶୀ ପଡ଼ତାଳ

ଲକ୍ଷ୍ମଣ ହାହା ଜାନକୀ ହାହା ବାଣୀ ଶୁଣିଣ ତରୁଣୀମଣି । ହୋଇ ଠାକୁରାଣୀ ବୋଲନ୍ତି ତୁମ୍ଭ ଭ୍ରାତାଙ୍କର ବାଣୀ ହେ । ଲକ୍ଷ୍ମଣ । ବିପତ୍ତି ପଡ଼ିଲା ହେ । ଏହା ଶୁଣି ମୋର ସର୍ବ ଅବୟବୁଁ ଜୀବନ ଛାଡ଼ିଲା ହେ ॥ ଶୀଘ୍ର ହୋଇ ଚଳ ଧନୁଶର ଧର ବିଳମ୍ବ ନ କର ହେ । ଭ୍ରାତାଙ୍କୁ ତୁମ୍ଭର ସାହା ହୋଇଏବେ କର ଯାଇ ପ୍ରତିକାର ହେ । ଲକ୍ଷ୍ମଣ । ଶୁଣିଲ ନାହିଁ କି ହେ । କେଉଁ କ୍ରୋଧ ଧରି ମନେ କି ବିଚାରି ନ ଯାଅ କାହିଁକି ହେ ॥ ସାବତ୍ତ ଜନନୀସୁତ ସିନା ତୁମ୍ଭେ ଆସିଛ କପଟେ ହେ । ଭ୍ରାତାଠାରେ ଯେତେ ସେନେହ ସବୁ ସେ ପଡ଼ିଗଲାଣି ତ ବାଟେ ହେ । ଲକ୍ଷ୍ମଣ । ବିକୁଅନି ସାହା ହେ । ମାନସ ପୂରିଲା ଦଇବ ଦଶରୁ ହୋଇଲାକି ତାହା ହେ ॥ ସତ୍ତ୍ୱମିତ୍ରୀ ଭଣି ଶୁଣ ଠାକୁରାଣୀ ନୁହଁସି ବିକଳ ଗୋ । ରାମଙ୍କୁ ବିପତ୍ତି ଦେବାକୁ ନାହାନ୍ତି ବୀର କେହି ରବିତଳ ଗୋ । ସୁମୁଖି । ନକର ସେ ଚିନ୍ତା ଗୋ । ମୃଗ ଘେନିଣ ଏହିକ୍ଷଣି ଆସିବେ ବୀର ବଳବନ୍ତା ଗୋ ॥ ଏହା ଶୁଣି ପୁଣି ବୋଲେ କଟୁବାଣୀ ଏମନ୍ତ ଜାଣୁ କରେ । ରାମ ଅନ୍ତରେ ମୁହିଁ ତୋତେ ଭଜିବି ଏମନ୍ତ ମଣୁ କି ରେ । ଲକ୍ଷ୍ମଣ । ନ ଯାଉ ମୋ ପାଶୁଁ ରେ । ରାମ ଅନ୍ତେ ମୋତେ ଭରସା କରିବୁ ଏମନ୍ତ ବିଳସୁ ରେ ॥ କିବା

ମୋତେ ନେଇ ଭରତକୁ ଦେଇ ଭୁଞ୍ଜିବୁ ବଭୂତରେ । ମୁଁ ପୁଣି ଜୀବନ ଧରି ଧରଣୀରେ କରିବି କି ଅନ୍ୟ ପନ୍ତିରେ । ଲକ୍ଷ୍ମଣ । ତୁଇଁ ଭୁମି ଶ୍ରୁତ ଯେ । ଧନୁଶର ଧରି ବାହାର ହୋଇଲେ ହୋଇ କୋପମୂର୍ତ୍ତି ଯେ ॥ ରାମ ମୋର ପିତା ତୁମ୍ଭେ ମୋର ମାତା କହିଲ ଅମାତ ଗୋ । ରାଇବି ପ୍ରତିକୂଳର ସମସ୍ତରେ ହୁଅଇ ତ ଏନ୍ତେ ଗଣ୍ଡି ଗୋ । ପ୍ରଭୁଙ୍କ । ଆଜ୍ଞା ପାଳିଥିଲି ଗୋ । ଯାଉଅଛୁ ମୁହିଁ ମୋର ଦୋଷ ନାହିଁ ଆଅ ମଇଥିଲୀ ଗୋ ॥ ଏମନ୍ତ ବୋଲି ବନଦେବୀମାନଙ୍କୁ କହିଲେ ସାକ୍ଷୀ ହେ । ଆମ୍ଭ ବାହୁଡ଼ିବା ଯାଏ ନଷ୍ଟେ ତୁମ୍ଭେମାନେ ଯାଙ୍କୁ ଥିବ ରଖି ଗୋ । ଯେ ଦେବୀ । ଶ୍ରୀରାମଙ୍କ ସ୍ୱରୂପେ ଯେ ॥ ବୋଲେ ବଂଶି ସେହି ଦିଗକୁ ଲକ୍ଷ୍ମଣ ହୋଇଗଲେ ବାହାରି ଯେ । ୮ ।

—X—

## ୧୩ଶ ଛାନ୍ଦ—ସୀତାଚୋରି

ରାମଦାସଙ୍କ କୋଇଲି ବୃତ୍ତେ

କରିତବ ବେଶେ ଦଶଶିର । ଛତା କମଣ୍ଡଳୁ ବେନି କର । କଷା ବସନ ଶିଖା ପଇତା । ଅଙ୍ଗରେ ମଣ୍ଡିଛି ଦ୍ୱାଦଶ ଚିତା । ରାବଣେଶ୍ୱର ହୋଇ ନିଦଣ୍ଡୀ । ଏହି ବେଶେ ନେବ ସୀତାଙ୍କୁ ଭଣ୍ଡି ॥ ପର୍ଣ୍ଣଶାଳା ଦ୍ୱାରେ ପରବେଶ ମଇଥିଳୀଙ୍କୁ ଦେଖି ହରଷ । ପଚାରିଲେ ତୁମ୍ଭର କେ ବର । ଏମନ୍ତ ବନେ କପାଁ । କଲ ଘର । ତୁମ୍ଭର ପ୍ରାୟ ସୁନ୍ଦରୀ ନାରୀ । ଯେଉଁ କପାଁଇ ହେଲେ ବନଚାରୀ । ଶୁଣି ଜାନକୀ ସନ୍ତୋଷ ମନ । ଭିକ୍ଷୁକ ଦେଖି ଦେଲେ ଆସନ । ଜଳ ଫଳ ମୂଳ ଆଣି ଦେଲେ । ସମସ୍ତ ବୃତ୍ତାନ୍ତ ତାଙ୍କୁ କହିଲେ । ବୋଲନ୍ତି ଆସନ୍ତୁ ମୋର ପତି ପ୍ରତିଦିନ ପୂଜା କରିବେ ଯତି ॥ ଶୁଣି ବୋଲନ୍ତି ଦୁଷ୍ଟ ରାବଣ । ଜାଣିଲି ତୁମ୍ଭ ପତିର-ଗୁଣ । ଯେଉଁ ସୁବର୍ଣ୍ଣ ଜଗତେ ଶୋଭା । ଯାହା ଦେଖିଲେ ମୁନି ହେବ ଲୋଭା । ତାହାକୁ ରଖିଅଛି ବନରେ । ତିଳେହେଁ ଚିନ୍ତା ନାହିଁ ତା ମନରେ । ଅଗୋ ଆସ ଆଧ ବରାଙ୍ଗନେ । କଷ୍ଟ ନ ପାଅ ତୁମ୍ଭେ ଏ ବନେ । ପାପ ଦଶାରୁ ଥିଲ ଏ ଯୋଗ । ସୁବର୍ଣ୍ଣପୁରୀ ତୁ କରିବୁ ଭୋଗ । ମୋହର ହୋଇବୁ ତୁ ବନିତା । ରାବଣ ମୁହିଁ ବିଶ୍ରବା ମୋ ପିତା ॥ ତାର ଏ ବଚନ ଶୁଣି ସତୀ । ମନେ ପାଇଲେ ସେ ବଡ଼ ଭୀତି । କମ୍ପ ହୋଇ ବୋଲନ୍ତି ବଚନ । ଶ୍ୱାନ ଭକ୍ଷିପାରେ ସିଂହ ଅଶନ । ଅଇଲେ ରାମ ପ୍ରାଣେ ମାରିବେ । ଏତେକ ଉପରୋଧ ନ କରିବେ ॥ ଶୁଣି ଅସୁର କୁପିତ ହୋଇ । ନିଜ ରୂପ ସୀତାଙ୍କୁ ଦେଖାଇ ॥ ଭସ୍ମ କରାଇ ମୂର୍ତ୍ତି କହିଲା । ରାମଙ୍କୁ ବୃଥାନ୍ତେ ବୋଲେ ଧରିଲେ । ନେଇଣ

ରଥରେ ସେ ବସାଇ । କାନ୍ଦନ୍ତି ସଖି ବିକଳ ହୋଇ । ରାମ ରାମ ଲକ୍ଷ୍ମଣ ଲକ୍ଷ୍ମଣ । ରାମା ଉଚ୍ଚେ କରନ୍ତି କାରୁଣ୍ୟ । ଖସିପଡ଼ିଲା କୁସୁମମାଳା । ସୁବର୍ଣ୍ଣମାଳା ଥିଲା ସଖିଗଲା । ଛୁଡ଼ିଣ ବାଞ୍ଛହୋଇ ସେ ଗଲା । ଚନ୍ଦ୍ର କରୁ ଅବା ସୁଧା ପଡ଼ିଲା । ୮ ।

—※—

## ୧୪ଶ ଛାନ୍ଦ ସୀତାଙ୍କ ଶୋକ

ରାଗ—ଖେମଟା

ବନଗିରି ହେ ଲତା ଗିରି । ମୋ କାନ୍ତ ଗଲେ ମୃଗ ମାରି । ପଦ । ମାୟା କୁରଙ୍ଗୀ ଦେଖି, ଲୋଭେ ହୋଇଲି ସୁଖୀ, କାନ୍ତେ ବୋଇଲି ଶ୍ରଦ୍ଧା କରି ହେ ॥ ଶୁଣି ମୋର ଉତ୍ତର, ଧରି କୋଦଣ୍ଡ କର, ସ୍ୱାମୀ ମୋ ଗଲେ ମୃଗ ମାରି ହେ ॥ ଲକ୍ଷ୍ମଣ ଶବ୍ଦ ଶୁଣି, ତାଙ୍କୁ ପେଷିଲି ପୁଣି, ସେ ଗଲେ ମୋତେ କ୍ରୋଧକରି ହେ ॥ ମୋତେ ଏକା ଦେଖିଣ, ଭିକ୍ଷା ମାଗି ରାବଣ, ମାୟା ତପସ୍ୱୀବେଶ ଧରି ହେ ॥ ଧରି ମୋହର କର, ବସାଇ ରଥବର, ମୋତେ ନେଉଛି ଲଙ୍କାପୁରୀ ହେ ॥ କହିବ ମୋ କାନ୍ତଙ୍କୁ, ମାରିବେ ରାବଣକୁ; ମୋତେ ଆଣିବେ ବେଗ କରି ହେ ॥ ବୋଲେ ଦ୍ୱିଜ ଗୋପାଳ; ସୀତା ହୋଇ ଆକୁଳ, କାନ୍ଦନ୍ତି ଶ୍ରୀରାମ ସୁମରି ହେ । ୭ ।

—※—

## ୧୫ଶ ଛାନ୍ଦ

ରାଗ—ଖଣ୍ଡିତା

ଗୃହଧାରୀ ରଘୁନାଥ ଗଲେ ମୃଗ ମାରି । ଗୃହ୍ମାଳ ରାବଣ ମୋତେ ନେଉଅଛି ଧରି । କେ କହିବେ ଗୋ । ସ୍ୱାମୀ କେଉଁେ ବାରତା ପାଇବେ ଗୋ ॥ ଛଦ୍ମମକଥା ଯେ ନ ଜାଣନ୍ତି ରଘୁନାନ । ଛଳେ ମାୟା ମୃଗ ମାରିବାକୁ ଗଲେ ବନ । ଯୋଗ ନାହିଁ ଗୋ । କେ ଜାଣେ କି ଅବା ହେବ ତହିଁ ଗୋ ॥ ଜାଣି ତ ନ ପାରି ପ୍ରଭୁ ମୋର ବୋଲେ ଗଲେ, ଜଗତକରତା ହୋଇ ମାୟାରେ ଭୁଲିଲେ । ଜୀବମାନେ ହେ । ଶୁଣିଛ କି ଏତେ ମାୟା କେଁ ହେ । ଝୁରି ଝୁରି ମୋର ଆଉ ନ ସରିବ ଦିନ । ହୀନ ବସନଅ। ନାଥ ନାହାନ୍ତି ନୟନ । ଯିବ କାହିଁ ହେ । ବଞ୍ଚିବାକୁ ବୁଦ୍ଧି ବିଶୁ ନାହିଁ ହେ ॥ ମଳ ହେମ ତନୁ ଦେଖା ସ୍ୱପ୍ନ ହେବ ମୋର । ନବୀନ ପଙ୍କଜ ମୁଖ ହୋଇଲେ ଅନ୍ତର । ବନଗିରି ହେ । ଦେଖିଲେ କହିବ ଗୃହଧାରୀ ହେ ॥ ନିମିଷେ ଯେ ମୂର୍ଚ୍ଛି ମୋତେ ନ ପାରନ୍ତି ରାମ । ଟଳିଲି ନାହିଁ

ଯେନେହେଁ ଆଣିଲେ ସେ ବନ । ମୋର ବୋଲେ ଗୋ । ଗୋଦାବରୀ କୂଳେ ବାସ କଲେ ଗୋ ॥ ଠକପଣ କରି ମାୟା ମୃଗ ଦେଖାଇଣ । ଠକି ମୋତେ ନେଉଅଛି ଲଙ୍କାର ରାବଣ । ଗୋପୀ ଭଣି ହେ । ଦେଖିଲେ କହିବ ନୃପ ପାଣି ହେ । ୭ ।

—×—

## ୧୭ଶ ଛାନ୍ଦ

ରାଗ—ଯମକ

ଉଚ୍ଚସ୍ୱରେ ରୋଦନ କରନ୍ତି ରାମରାଣୀ । ବସନ୍ତକାଳରେ ଯେହ୍ନେ କୋକିଳର ବାଣୀ ॥ ଏ ଭୂମି ମଧ୍ୟରେ ମୁଁ ଯେ ହୋଇଲଇଁ ଜାତ । କ୍ଷତ୍ରି-ବର ହସ୍ତ ଧରି ହୋଇଲି ଅନାଥ ॥ ଅଯୋଧ୍ୟାର ରାଜା ଯେ ଅଟନ୍ତି ଦଶରଥ । ତାଙ୍କ ରାଣୀ କଉଶଲ୍ୟା ପୁତ୍ର ରଘୁନାଥ ॥ ସ୍ୱାମୀ ଯେ ଦେବର ମୋର ଗଲେ ମୃଗ ମାରି । ଶୃଗାଳ ରାବଣ ମୋତେ ନେଉଅଛି ଧରି ॥ ସୀତାଙ୍କ ରୋଦନ ପକ୍ଷୀବର ଯେ ଶୁଣିଲା । ବୋଲେ ଗୋପୀ ରଘୁବର । ଆଗରେ ମିଳିଲା । ୫ ।

—※—

## ୧୮ଶ ଛାନ୍ଦ

ପଥେ ଭେଟି ବୋଲେ ଜଟାୟୁ । ରାମ ବନିତା ତୁ କାହିଁ ନେଉ । ଅଧର୍ମିକୁ ତୋର ନାହିଁ ଡର । ରହିଲି କାହିଁ ନେଉ ଦଶଶିର । ଆଜ ମୁଁ ପଥ ଛାଡ଼ି ନ ଦେବି । ସୀତା ନ ଛାଡ଼ିଲେ ରଣ କରିବି । ଏହା ବୋଲିଣ ସଂଗ୍ରାମ କଲା । ରାବଣହିଁ ଅନେକ ଯୁଝିଲା । ରଥ ଭାଙ୍ଗିଣ ଅଶ୍ୱ ସାରଥି । ମାରିଣ ସେହ୍ନା କାଟିଲା ବକଶିଁ । ଛଡ଼ାଇ ନେଇ ଭାଙ୍ଗିଲା ଧନୁ । କ୍ରୋଧରେ କମ୍ପିଲା ରାବଣ ତନୁ ॥ ଖଣ୍ଡାଦେଇ କାଟିଲା ଚରଣ । ଡେଣା କାଟି କଲା ରଣ ଭଣ । ରଣ କରନ୍ତେ ସୀତା ଟସିଲେ । ଲତା ଭିତରେ ଯାଇଁଣ ଲୁଚିଲେ । ଜାଣିଣ ତହୁଁ ଆଣିଲା ଧରି । ମୂର୍ଖରାଣୀ ଅବା ଧରିଲା କେଶରି । ସୀତାଙ୍କୁ କୋଳରେ ସେ ନେଇଲା । ଆକାଶରେ କ୍ଷେପିଣ ସେ ଗଲା । ଗଳା ମୋତିହାର ପଡ଼େ ଛିଡ଼ି । କେତେ ଦୂରେ ପୁଣି ନୂପୁର ପଡ଼ି । ବାମାର ସର୍ବଭୂଷଣ ଗଣ । ଉତ୍ତରୀରେ ବାନ୍ଧିଲେ ଯୋହ୍ନକ୍ଷଣ । ଗିରିଶିଖେ କପି ରାଜନ ହ୍ନିଁ । ତାଙ୍କ ଆଗକୁ ଦେଲେ ପକାଇ । କମ ବୋଲି ଫିଟାଇ ଦେଖିଲେ । ଯତନ କରି ତା ରଖାଇଦେଲେ । ରାବଣ ନେଉଛି କାହା ନାରୀ । ଏମନ୍ତ ବୋଲି ବୋଲି ହେଲେ ହରି ॥ ସିନ୍ଧୁ ଡେଇଁ ରାବଣ ଗଲା । ଲଙ୍କାଗଡ଼ରେ ପ୍ରବେଶ ହେଲା । ସୀତାଙ୍କୁ ରଖି ସେ ନଜପୁରୀ । ଡାକିଲା ସର୍ବ ବିରୂପା ଅସୁରୀ । ସୀତାଙ୍କୁ ମନେ କରାଇ ଏଣ୍ଡ । ବୋଲଇ ବଣି ଦେଖାଅ ବଭୁତ । ୧୪ ।

—※—

## ୧୮ଶ ଛାନ୍ଦ

ରାମ—ମୁଖାରୀ ପଡ଼ତାଳ

ବଇଦେହୀଙ୍କି ନଜ ପୁରେ ରଖି । ଅସୁରୀମାନଙ୍କୁ ବୋଲଇ ଦେଖି ତୁମ୍ଭେ ଲେ, ରଖ ମୋ ନଜସ୍ଥାନ । ଦେଉଥିବ ମୋତେ ବାରତାମାନ ଯେ । ସୀତାଙ୍କୁ ଚାହିଁ ବୋଲଇ ବଚନ । ଦେଖ ଲଙ୍କାଗଡ଼ ସବୁ ସୁବର୍ଣ୍ଣ । ସଜନୀ, ଏବେ ହୋଇଲୁ ତୋର । ଖଟିଥିବେ ତୋତେ ଯୁବତୀ ମୋର ॥ ଦେଖ ଏ ଜଗତ ଅଟାଳମାନ । ଶୋଭା ଦଶେ କୋଟି କୋଟି ରତନ । ସଜନୀ, ଏହା କରିବୁ ଭୋଗ । ଦହ୍ଯ ଖଣ୍ଡିଲି ବନବାସ ଯୋଗ ଗୋ ॥ ମୁଁ ରାବଣ ତ୍ରିଭୁବନ ଈଶ୍ୱର । ମୋତେ ଡ଼ରନ୍ତ ଧାତା ସୁନାସୀର । ସଜନ, ମୋର ହୁଅ ଯୁବତୀ । ସୁଖେ ଭୁଞ୍ଜ ନଶ୍ଚଳା ବଭୂତ ଗୋ । ପିତା ପିତାମହ ବିଷ୍ଣୁ ଶଙ୍କର । ଏହାଙ୍କୁ ରାବଣ ନ ଯୋଡ଼େ କର ॥ ସଜନ, ତୋତେ ଯୋଡ଼ୁଛି କର । କର ଅନୁକମ୍ପା ଯୁବତୀବର ଗୋ ॥ ବନବାସେ ପାଉଥିଲୁ ବେଦନା । ତୋହର ପତି ମନୁଷ୍ୟହିଁ ସିନା । ସଜନ, ଏବେ ହୋଇବୁ ମୋର । ଦାସ ହୋଇ ରହୁଥିବ ପପୁର ଗୋ ॥ ଏହେଦନ ତେଜଣ ବୋଲନ୍ତ ସତୀ । ତୁ ଛାର ପାମର ହେବୁ ମୋ ପତି । ଶ୍ରୀରାମ ସିଂହ, ଅଟୁ ତୁ ଶ୍ୱାନ । ସିଂହ ବଳକରି ଲୋଡ଼ୁ ଅଶନ ରେ ॥ କୋଦଣ୍ଡ କାଣ୍ଡ ଧରିଥାନ୍ତେ ରାମ । ଆଣନ୍ତୁ ମୋତେ ହୋଇ ତାଙ୍କୁ ବାମ । ରାବଣ, ତେବେ ବୋଲନ୍ତୁ ବୀର । ଚୋର ନୁହେଁ ବୀରଙ୍କର ବେଭାର ॥ ଶୁଣି ରାବଣ କ୍ରୋଧରେ । ବୋଇଲୁ ବରଷେ ଆଜୁ ଅବଧି ହୋଇଲା । ରାମଙ୍କୁ, ଯେବେ ଆଣି ନ ଦେବୁ । ନଶ୍ଚୟ ମୋର ବ୍ୟଞ୍ଜନ ହୋଇବୁ ଗୋ ॥ ଏମନ୍ତ ବୋଲି ଅସୁରୀଙ୍କୁ ଚାହିଁ । ଘେନିଯାଅ ବୋଲି ଦେଲା ଦେଖାଇ । ଏହାକୁ ରଖ ଅଶୋକ ବନେ । ଭୟ କରାଉଥିବ ଅବଛନ୍ନେ ଗୋ ॥ ଶୁଣି ଦୁଷ୍ଟ ଅସୁରୀ ଘେନିଗଲେ । ମଧ୍ୟରେ ରଖିଣ ବେଢ଼ି ବସିଲେ । ଯେସନେ, ମାର୍ଜାରୀ ମଧ୍ୟେ ଶାରୀ । ବୋଲେ ବଣି ତେତ୍ତେ ଶ୍ରୀରାମ ନାରୀ । ୧୧ ।

—×—

## ୧୯ଶ ଛାନ୍ଦ

ରାଗ—କେଦାର କାମୋଦୀ

ଗୁଡ଼ିଲେ ଦେବୀ ଶୟନ ଭୋଜନ । ରାମ ପଦ୍ମପାଦେ ଦେଇଣ ମନ । ତାହା ଦେଖି ଦେବେ କଲେ ବିଚାର । ଧାତା କହିଲେ ଯାଇ ସୁନାସୀର । ବାସବ, ତୁମ୍ଭେ ବହନ ଯାଅ । ଜଗତମାତାଙ୍କୁ ଅମୃତ ଦିଅ ହେ ॥ ଶୁଣି ବାସବ ନିଦ୍ରାକୁ ରାଇଲେ । ଅଶୋକବନକୁ ଯାଅ ବୋଲିଲେ । ଅସୁରୀଯାକ

ନିଦ୍ରା କରାଇବ । ଆମ୍ଭେ ଅଇଲେ ସଙ୍ଗରେ ଆସିବ । ଆଜ୍ଞାରେ ଦେବୀ ବେଗେ ଚଳିଗଲେ । ଅସୁରମାନଙ୍କ ନେତ୍ରେ ମିଳିଲେ ।। ନିଦ୍ରାରେ ଅଜ୍ଞାନ ଅସୁର ରାଶି । ରାମନାମ ସୀତା ଘୋଷନ୍ତି ବସି । ଅମୃତଭାଣ୍ଡକୁ କରରେ ଘେନି । ସୀତାଙ୍କ କରେ ଦେଲେ ସମ୍ଯୋନି । କରିଣ ତାହାଙ୍କୁ ବହୁତ ସ୍ତବ । ବୋଇଲେ ଆମ୍ଭେ ଆସିଛୁ ବାସବ ।। ଧାତା ସହିତେ ସକଳ ଅମର । ଅମୃତ ଦେଇଛନ୍ତି ମୋର କର । ଭୋଜନ କରି କ୍ଷୁଧା ତୃଷା ହର । ମନରେ କିଛି ସଂଶୟ ନ କର ଗୋ । ଜନନି, ଆମ୍ଭମାନଙ୍କ ପାଇଁ । ବରଷେ ମାସ ଥାଅ ଦୁଃଖ ସହି ଗୋ ।। ଶ୍ରୀରାମଙ୍କୁ ଆମ୍ଭେ ଯାଇଁ କହିବୁ ।। ଯେମନ୍ତେ ଆସିବେ ତାହା କରିବୁ । ପୁନି ଭ୍ରାତା ନାଶି ଦୁଷ୍ଟ ଅସୁର । ସହିତେ ମାରିବେ ଯେ ଦଶଶିର । ଜନନି, ତେବେ ପୃଥ୍ୱୀର ଭାର । ଉଶ୍ୱାସ ହୋଇବ ସଚରାଚର ଗୋ ।। ସଙ୍କେତୁଁ ଜାନକୀ ଦେବୀ ଜାଣିଲେ । କର ଅଙ୍ଗୁଳି କରିଣ ଘେନିଲେ । ଶ୍ରୀରାମ ସୁମରି କଲେ ତ ପାନ । ଗଲେ ସୁରପୁର ପାକଶାସନ ।। ସେ ଜାନକୀ, ଦେବୀଙ୍କ ପାଦକମଳ ।। ଧ୍ୟାନ ବିଶି ଚିହ୍ନିଁ ମତି ଭ୍ରମିଲ । ୬ ।

—X—

## ୨୦ଶ ଛାନ୍ଦ

ରାଗ—କେଦାର କାମୋଦୀ

ମନେ ବିଚାରନ୍ତି ସେ କୋଦଣ୍ଡପାଣି । ଆଜ କି ବିପତ୍ତି ପଡ଼ିବ ନ ଜାଣି ଯେ । ଅସୁର ବୋଇଲା ଆମ୍ଭ ସ୍ୱରେ ବାଣୀ । ସୀତା ଲକ୍ଷ୍ମଣ କିସ ବୋଲିବେ ଶୁଣି ଯେ ।। ସତ୍ୱର ହୋଇ ହୋଇ ରାମ ଚଳନ୍ତେ ଖରେ । ଅନ୍ୟ ମୃଗ ମାରି ମାଂସ ଅଛି କରେ ଯେ । ଲକ୍ଷ୍ମଣ ପଥେ ଦେଖି ରାଜୀବନେତ୍ର । ବାର୍ତ୍ତା ରମ୍ଭା ପରାଏ କମ୍ପିଲା ଗାତ୍ର ଯେ । କିପାଁ ଅଇଲ ପ୍ରାଣପ୍ରିୟାକୁ ଛାଡ଼ି । ଛାଡ଼ି ଜୀବନ ମୋର ଗଲାଟି ଉଡ଼ି ଯେ ।। ଏମନ୍ତ ବୁଦ୍ଧି କିପାଁ କଲ ସାନୁଜ । ସୀତା ବଦନ ନିକି ଦେଖିବି ଆଜ ଯେ ।। ଦନୁଜ ହୋଇଲ ହେମହରିଣୀ କାୟା । ଦେବଙ୍କୁ ଅଗୋଚର ଅସୁର ମାୟା ଯେ ।। ମାରିବାବେଳେ ବୋଲେ ଲକ୍ଷ୍ମଣ ରଖ । ଜାଣିଲି ତେତେବେଳୁଁ ଦେବ ଏ ଦୁଃଖ ଯେ ।। ଘେନିଗଲା ଆମ୍ଭଙ୍କୁ ବହୁତ ଦୂର । ବାଣ ବାଜନ୍ତେ ମୁଣ ହୋଇଲା ଅସୁର ଯେ । ଯେବେ ଅଇଲ ସଙ୍ଗେ ଘେନି ନଇଲ । ଅସୁର ମୁଖେ ବଳି କରିଣ ଦେଲ ଯେ ।। ଆହେ ଲକ୍ଷ୍ମଣ ତୁମ୍ଭ ବୁଦ୍ଧି ଶିକ୍ଷଣ । ମୋତେ ତ ହୋଇଲା ଆଜ ଏ ଅଲକ୍ଷଣ ଯେ । ଦାନବେ ନେଲେ ତାକୁ ଜାଣି କି ତୋତେ । ଶୁଖିଛି ମୁଖ କିମ୍ପା ନ କହୁ ମୋତେ ଯେ । ବିରସ ଦିଶୁଛି ଅବୟବମାନ । କେଉଁ ଦାରୁଣ କରାଇଲା ଏସନ ଯେ ।। ସୀତା ବାରତା ମୋତେ

ବେଗେ ତୁ କହ । ସେ ଥିଲେ ମୁହିଁ ସିନା ଧରିବି ଦେହ ଯେ ॥ ଲକ୍ଷ୍ମଣ ଜଣାଇଲେ ଯୋଡ଼ଣ ପାଣି । ତୁମ୍ଭ ମହିମା ମୁଁ କି ଅଛି ନ ଜାଣି ଯେ ॥ ଅସୁର ଡାକବାର ଶ୍ରବଣେ ଶୁଣି । ଠାକୁରାଣୀ ପେଷନ୍ତେ ନଇଲ ଜାଣି ଯେ ॥ ଏଥକୁ କଟୁଭାଷା କହିଲେ ଯେତେ । ସେବକ ହେଲେ ଦେହ ସହିବ କେତେ ॥ ସୀତେ ସୀତେ ବୋଲିଣ ପଥେ ଆଇଲେ । ପର୍ଣ୍ଣଶାଳା ନିକଟେ ପ୍ରବେଶ ହେଲେ ଯେ ॥ ଦେଖିଲେ ଶୋଭା ବିଶୁନାହିଁ ସେ ପୁରୀ । ଯେସନେ ବିଶେ ଚନ୍ଦ୍ରରହିତ ଶର୍ବରୀ ॥ ଦଶଦିଗ ଚାହିଁ ଦଶରଥସୁତ । ବୋଲଇ ବିଶି କ୍ଷଣେ ହେଲେ ଚକିତ ହେ । ୧୦ ।

—×—

## ୭୧ଶ ଛାନ୍ଦ

ରାଗ—ବିପ୍ରସିଂହା ବାଣୀ

ଲକ୍ଷ୍ମଣ ସଙ୍ଗରେ ହେନ, ରଘୁକୁଳ ଚୂଡ଼ାମଣି, ପର୍ଣ୍ଣଶାଳା ଦ୍ୱାରେ ପରବେଶ । ବୋଲନ୍ତି ଆଗୋ ତରୁଣୀ, ସେ ନୁହେ ହେମହରିଣୀ, ଧଇଲା ତ ଅସୁର ସେ ବେଶ । କି ସଖି ଗୋ, ଆସ ଆହ କହ ତୁ କଥା । ନ କହିବାରୁ ଦୂଷଣ, କରୁଛୁ ତାହା ଭୂଷଣ, ମୋ ପ୍ରାଣକୁ ଲାଗୁଅଛି ବ୍ୟଥା ॥ ଏତେ ବୋଲି ରଘୁବୀର, ପଶିଲେ କୁଟୀ ଭିତର, ନ ଦେଖିଲେ ସେ ଚନ୍ଦ୍ରମାମୁଖୀ । ବାହାରକୁ କରି ଆଶ, ପର୍ଣ୍ଣଶାଳା ଚଉପାଶ ବୁଲି ବୁଲି ବୋଲେ ଆସ ସଖି । କି ସଖି ଗୋ, ଲୁଚିଅଛୁ କିପାଇଁ ମୋତେ । ତରୁ ଉହାଡ଼ରେ କମ୍ପା କଥା ନ କହୁଛୁ, ମୁଁ କି ସଖି ଦେଖି ନାହିଁ ତୋତେ । ଆସ ଆସ ସୀତେ ମୋର, ତୋ ଶୋକ-ନଦୀ ଭିତର, ବୁଡ଼ିଯାଉଅଛି ଉଦ୍ଧର ଦେଖି ଏବେ ଦୟା କର, ଦାରୁଣ କୋପ ସହାର, ଶଶୀମୁଖ ଦେଖାଅ ତୋହର । କି ସଖି ଗୋ, ଗୁଡ଼ ମୋତେ ଅଛୁ ତୁ କାହିଁ । ସହି ନ ପାରୁ କି ଦୁଃଖ; ଲୁଚିଛୁ ହୋଇ ବିମୁଖ, ସଙ୍ଗତେ ଅଇଲୁ କିସ ପାଇଁ ॥ ଜଗି ଯେ ଥିଲି ଲକ୍ଷ୍ମଣ, କେ ହେନଗଲା ମୋ ପ୍ରାଣ, ସେ ଦେଲାତ କଷଣେ କଷଣ ॥ କି ବୋଲିବେ ରାଜା ଗଣ, ଏ କଥା ମୋର ଶୁଣିଣ, ତପନର କୁଳକୁ ଦୂଷଣ । କି ସଖି ଗୋ, ମରିବାର ଏ କଥା ମନ୍ଦ । ତଳ ଉପରକୁ ଅବା କେମନ୍ତେ କରି ଚାହିଁବା, ନ ଦେଖିଲେ ତୋ ଶ୍ରୀମୁଖ ଚନ୍ଦ । ଆମ୍ଭେ ଅଯୋଧାକୁ ଗଲେ, ଜନକ ରାଜା ଅଇଲେ ପଚାରିବେ ଜାନକୀ ମୋ କାହିଁ । ଆମ୍ଭେ ତାଙ୍କୁ କି କହିବୁ, କାହା ମୁଖକୁ ଚାହିଁବୁ, ବୁଦ୍ଧି ମୋତେ ଦିଶଇତ ନାହିଁ । କି ସଖି ଗୋ, ନଷ୍ଟପ୍ରାୟ ତେଜିବି ପରାଣ । ଆମ ଆଜ୍ଞାକୁ ପାଳଣ,

ଅଯୋଧ୍ୟାକୁ ଏହିକ୍ଷଣ, ଶୀଘ୍ର ହୋଇଯାଅ ହେ ଲକ୍ଷ୍ମଣ ॥ ବୋଲପିଣ ରଘୁମଣି, ମୋହ ପଡ଼ିଲେ ଧରଣୀ, ଆଶ୍ୱାସନା କଲେକ ସାନୁଜ ॥ ପୁଣିହିଁ କେତେହେଁ ବେଳେ; ବଇଦେହୀର ବାକଳେ, ପିଂଛାଇଲେ ନୟନ-ସରୋଜ । କା ସଖି ଗୋ, ନିଶ୍ଚୟ ଖାଇଲେ ଅସୁରେ । ଏବେ ଆମ୍ଭେ କାହିଁ ଯିବା, କାହାକୁ ଏଥି ପୁଛିବା, ବଶି ବୋଲେ ଖୋଜିବା ବନରେ । ୬ ।

—×—

## ୧୨ଶ ଛାନ୍ଦ

ରାଗ—କୁସୁମ ସୌରଭ ବାଣୀ

କୋଦଣ୍ଡଧର କାମିନୀବରକୁ ହରାଇ । କାରୁଣ୍ୟ କରୁଛନ୍ତି ବନ ଗିରିଙ୍କ ଗୁହିଁ ଯେ । ହା ହା ଗୋ ସୀତେ ଗୋ ॥ ଦଶଦିଶ ନ ଦିଶଇ ଯିବଇଁ ମୁଁ କାହିଁ । କେବଣ ଅସୁର ତୋତେ ଦେଲା ଅବା ଖାଇ । ହା ହା ମୋ ସୀତେ ଗୋ ॥ ନଳିନୀଦଳ ଲୋଚନ ଲୋଚନେ ମିଶାଇ । କହୁ ଯେ ଥାଉ ବଚନ ମନକୁ ରସାଇ । ହା ହା ମୋ ସୀତେ ଗୋ ॥ ଅନ୍ତଃପୁରେ ଯେତେ ତୋ ଅଛନ୍ତି ପ୍ରିୟ ସଖୀ । କି ବୋଲିବେ ମୋତେ ତୋତେ ସଙ୍ଗରେ ନ ଦେଖି । ହା ହା ମୋ ସୀତେ ଗୋ ॥ ଅଯୋଧ୍ୟା ରାଜପଣ ତୋ ବିନୁ କଲି ଦୂର । ତୋ ବିନୁ କେମନ୍ତେ ହୋଇଥିବ ଅନ୍ତଃପୁର । ହା ହା ମୋ ସୀତେ ଗୋ ॥ ଲୁଚିଥିଲେ ଆସଆସ ମୋର ପ୍ରାଣସଖି ପଳାଇ କେଣିକି ଗଲୁ ମୋର ଦୁଃଖ ଦେଖି । ହା ହା ମୋ ସୀତେ ଗୋ ॥ ପଲକବିଚ୍ଛେଦ ଯୁଗ ପ୍ରାୟେ ମଣୁଥାଉ । ତନୁ ଅନ୍ତରକୁ ହୃଦେ ହାର ନ ପୂରାଉ । ହା ହା ମୋ ସୀତେ ଗୋ ॥ ସହସ୍ର ମୁଖେ କହିଲେ ନ ସରିବ ଗୁଣ । ସମସ୍ତ ଗୁଣମାନଙ୍କେ ଅଟୁ ତୁ ନିପୁଣ । ହା ହା ମୋ ସୀତେ ଗୋ ॥ ତରୁର ଲତା ଦେଖିଲେ ଦେଖାଇ ଯେ ଦେଉ । ବାହୁ ଲତିକାରେ ତନୁ ଭିଡ଼ି ସୁଖ ପାଉ । ହା ହା ମୋ ସୀତେ ଗୋ ॥ ତୋ ଥିଲାକୁ ପର୍ଣ୍ଣଶାଳା ଦିଶୁଥିଲା ଶୋଭା । ସେ ଶୋଭା କେଣିକି ଯାଇ ଦିଶୁଛି ଅଶୋଭା । ହା ହା ମୋ ସୀତେ ଗୋ ॥ ଏ ମୃଗଶାବକ ସଙ୍ଗେ ସଙ୍ଗେ ଖେଳୁଥାଉ । କଶିଶାବକ ଧରଣ ଦେଲେ ସୁଖ ପାଉ ହା ହା ମୋ ସୀତେ ଗୋ ॥ ଲକ୍ଷ୍ମଣ ବହୁତ ତାହିଁ ପ୍ରବୋଧ କରନ୍ତି । ବୋଲେ ରାମଚନ୍ଦ୍ର ମୋର ବୋଲ ନ ଘେନନ୍ତି । ହା ହା ମୋ ସୀତେ ଗୋ । ୧୨ ।

—×—

## ୧୩ଶ ଛାନ୍ଦ

ରାଗ—ସିନ୍ଧୁକାମୋଦୀ

ଆରେ କ୍ଷଉଣୀତନୟା ଗଲୁ କେଉଁ ରେ । ତୋ ବିନା ବଞ୍ଚି ନୁହଇ କ୍ଷଣେ ରେ ॥ ଆହା ରେ ଚନ୍ଦ୍ରବଦନା, ଡାଳିମ୍ବବୀଜଦଶନା, ବାରେ ମୋତେ

ଦେଖାଦେଉ କନା । ଦୁଷ୍ଟ ମକରକେତନା, ଯେତେ ଦେବଟି ବେଦନା ନୁହଁ ପ୍ରିୟେ ଅନୁକମ୍ପାହୀନା ॥ ଭସ୍ମାନ୍ତର ବିମ୍ବଓଷ୍ଠୀ, ପଥାନ୍ତର ମୃଗଦୃଷ୍ଟି, ତୋର ପ୍ରାୟ ଆଉ ନାହିଁ ସୃଷ୍ଟି ॥ ଶୂନ୍ୟ ଦେଖି ପର୍ଣ୍ଣକୁଟୀ, ହୃଦୟ ଯାଉଛି ଫାଟି, ପଲକୁ ମଣୁଛି ଯୁଗ କୋଟି ॥ ବ୍ରହ୍ମାଣ୍ଡେ ଯେତେ ସୁନ୍ଦରୀ; ନୁହନ୍ତି ତୋ ସମସରି, ଅଟୁ ପ୍ରିୟେ ମୋର ମନୋହାରୀ । ଦାହ-କନକ ଗଉରୀ, ଯେତେକ ଗୁଣ ତୋହରି, କହିବି ମୁଁ କେତେ ତା ବିସ୍ତାରି ॥ ଅବଳା ଗୁରୁକୁନ୍ତଳା, କୋମଳାଙ୍ଗୀ ପ୍ରେମ-ଶୀଳା, ଅଟୁ ପ୍ରିୟେ ସାକ୍ଷାତେ କମଳା । ମୋତେ ନ ଦେଖି ସେ ବାଳା, ଫାଟି ଯାଉଥାଇ ଡୋଳା ଏବେ କେମନ୍ତେ କଲୁ ଏଡ଼େ ହେଳା । ଦ୍ୱିଜରାଜ ଧରେ ଲାଜ, ଦେଖି ତୋ ମୁଖସରୋଜ, ଏବେ ସେହି ମୁଖ ଦେଖା ଆଜ । ଧନକୁ ଗୁହିଁ ଧଇର୍ଯ୍ୟ, ହୋଇଲେ ଶ୍ରୀରାମ ରାଜ, ବୋଲେ ବଶୀ ଆବର ସାନୁଜ । ୫ ।



## ୨୪ଶ ଛାନ୍ଦ

ରାଗ-- ଖେମଟା।

ଆରେ ବାବୁ ଲକ୍ଷ୍ମଣ; ମୋର ସୁଲକ୍ଷଣୀ ସୀତା କେଣିକି ଗଲା । ଅନ୍ତର କରି କେ ପତର ଘରରୁ ମନ୍ତ୍ରର ବା କରି ତାହାକୁ ନେଲା । ପଦ । ଆଠ ସାତ ଏକବୟସୀ, ସୁନାଗୋରୀ ମଞ୍ଜୁଳବେଶୀ । ଛବି ଦେଖି କବି ଗଜାନନ ବର୍ଣ୍ଣି ନ ପାରିଣ ପେଟ ପୃଥୁଳ ହେଲା ॥ କୋମଳାଙ୍ଗୀ ପିକବଚନା, ମଦାଳସୀ ଗିରୀଶସ୍ତନା । କରୀନ୍ଦ୍ରଗମନା ଶଫରୀନୟନା, ବନବାସେ ସ୍ନେହ ଲଗାଇଥିଲା ॥ ଆରେ ବାଳା କୁଟିଳ କେଶୀ, ବିମ୍ବାଧରୀ ମଧୁରହାସୀ । ତାର ନେତ୍ର ଛଟା, କିବା ବିଦ୍ୟୁଲ୍ଲତା, ଦେଖିବାକୁ ବାରେ ସ୍ୱପନ ହେଲା ॥ ଅଣିମାଦ୍ଧ ଯେ ସୁଖଦାୟୀ, ରସାଟେ କେ ତାପରି ନାହିଁ । ଯେତେ ଥିଲା ଅଶା, ତାଠାରେ ଭରସା, ଦାରୁଣ ଦଇବ ଅନ୍ତର କଲା ॥ ଏଣୀଠାରେ ବାଜନ୍ତେ ଶର, ଡାକେ ରଖ ଲକ୍ଷ୍ମଣବୀର । ଜାଣି ନ ପାରିଲି କପଟ ତାହାର, ସୂର୍ଯ୍ୟବଂଶକୁ ସେ କଳଙ୍କ ଦେଲା ॥ ଶୂନ୍ୟ ଦେଖି ଏ ପର୍ଣ୍ଣକୁଟୀ, ମୋର ନୟନ ଯାଉଛି ଫୁଟି । କାଟିଦେଇ ତଣ୍ଟି ନେଲା କେଉଁ ବଟି, କ୍ଷୀର ନୀରେ ପ୍ରୀତି ଅନ୍ତର କଲା । ଯୋଡ଼ିଣ ଯେ ସେ ବେଦକର ଜଣାଇଲେ ଲକ୍ଷ୍ମଣବୀର । ଭଣଇ ବନ୍ଦନ, ବାହି ହେଲା ବାମ କଣ୍ଟକଥା ଯୋଗେ ଏହା ଘଟିଲା । ୭ ।

## ୨୫ଶ ଛାନ୍ଦ

ରାଗ—ଖେମଟା

ରମଣୀମଣି, ଦୟା ତୋର କେଣିକି ଗଲା ଗୋ, ମାୟା ତୋର ଜଣା ନ ଗଲା । ପଦ । ମାୟାମୃଗ ହୋଇ ମାରୀଚ, ଠକିନେଲା କରିଣ ପାଞ୍ଚ । ଲକ୍ଷ୍ମଣ ଶାସ୍ତ୍ର କହୁଣ ପରପଞ୍ଚ, ମୃଗ ଦେହ ଛାଡ଼ି ଅସୁର ହେଲା ଗୋ ॥ ଆରେ ବାବୁ ବୀର ଲକ୍ଷ୍ମଣ, ସୀତା ଅଟେ ମୋ ପଞ୍ଚପ୍ରାଣ । କେବଣ ଦୁର୍ଜ୍ଜନ ଗଲା କାଟି ପୁଣ କୁଟୀରୁ ତାହାଙ୍କୁ ହରଣ ନେଲା । ସ୍ନେହ ଛାଡ଼ି ନ ପାର ସେହୁ, ସଙ୍ଗେ ଆସିଥିଲା ଗୋଡ଼ାଇ । ନଦାରୁଣ ବିଧି ଏହା ତ ନ ସହୁ; ବନବାସେ ପୁଣି ବିଚ୍ଛେଦ କଲା ॥ ବୋଲେ ଋଷି ରାମ ରାଜନ; ବେକ୍ରୁ ବେଳ ହେଉ ଉଛନ୍ନ । ଶୋକରେ ଲକ୍ଷ୍ମଣ କହନ୍ତି ବୋଧିଣ; ଖୋଜିବା କି ରୂପେ କିଏ ସେ ନେଲା । ୪ ।

---

## ୨୬ଶ ଛାନ୍ଦ

ରାଗ—କେଦାରକାମୋଦୀ । ମଥୁରା ବିଜୟ– ବୃତ୍ତେ

କାନ୍ତା ହରାଇ ଦଶରଥ ନନ୍ଦନ । ପୁଛନ୍ତି ବୃକ୍ଷେ ହୋଇ ଉଛନ୍ନ ଯେ ॥ କହନ୍ତି ବନ ଜୀବମାନଙ୍କୁ ଶୁଣି କେ ନେଲା ସୀତା । ମୋର ଦେଖିଲ ନାହିଁ ଯେ ॥ ଆଗୋ ହରିଣୀମାନେ ମୋ ହରିଣାକ୍ଷୀ । କେ ନେଲା କାହିଁଗଲା ଅଛ କି ଦେଖି ଗୋ । ଆହେ କଦମ୍ବ ମୋର କଦମ୍ବସ୍ତନା ଆହେ ତାଳ ମୋର ପକ୍ୱତାଳସ୍ତନା ହେ । ଆହେ ତମାଳ ମାଳ ତମାଳକେଶୀ ଆହେ ମୟୂର ମୋର ମୟୂରବେଣୀ ଯେ ॥ ଆହେ ଡ଼ାଳିମ୍ବ ମୋ ଡାଳିମ୍ବଦଶନା ଆହେ ଅଶୋକ ମୋ ଅଶୋକ-ବସନା ଯେ ॥ ଆହେ ବିମ୍ବ ମୋହର ପକ୍ୱ ବିମ୍ବୋଷ୍ଠୀ । ଦେଖିଲ ନାହିଁ ତାର ପ୍ରାୟେ କି ସୃଷ୍ଟି ଯେ ॥ ଆହେ ବକୁଳ ମୋର ମଧ୍ୟା ସରୁ । ଦେଖିଛ ରମ୍ଭା-ତରୁ କେ ମୋ ରମ୍ଭୋରୁ ଯେ ॥ ଆହେ କେତକୀ ମୋର କେତକୀକାନ୍ତି । ଲୁଚିଛ କି ମନେ କରିଣ ଭ୍ରାନ୍ତି ଯେ ॥ ଆହେ କୁନ୍ଦ ମୋହର ସୁକୁନ୍ଦହାସୀ । ତୁମ୍ଭଙ୍କୁ ନେବାପାଇଁ ଅଛୁ କି ଆସି ଯେ ॥ ଆହେ ପିକମାନେ ମୋ ପିକବଚନା । ତା ବିନା ହୋଇଛୁ ମୁଁ ବିକଳମନା ଯେ ॥ ଆଗୋ ଗୋ ଗୋଦାବରୀ ତୁ ପାପହାରୀ । ନେବାକୁ ସୀତା ଆସିଛନ୍ତି କି ବାରି ଗୋ ॥ ଆହେ ହେ ହଂସମାନେ ହଂସଗମନା । ଆହେ କମଳ ମୋ କମଳବଦନା ଯେ ॥ ବନେ ସମସ୍ତ ସ୍ଥାନେ

ଲୋଡ଼ି ନ ପାଇ । ଲକ୍ଷ୍ମଣଙ୍କୁ କହନ୍ତି ବିକଳ ହୋଇ ଯେ ॥ ସୀତାର କିଛି ନ ଦେଖିଲି ଶକୁନ । ବୋଲଇ ବଶି କ୍ରୋଧେ ହେଲେ ସମ୍ପୂର୍ଣ୍ଣ ଯେ ॥୮॥

—×—

## ୨୭ଶ ଛାନ୍ଦ ଜଟାୟୁର ପ୍ରାଣତ୍ୟାଗ

ରାଗ—କାଳୀ

କୋଦଣ୍ଡଧର କାନ୍ତା ହରାଇ ପୁଚ୍ଛନ୍ତି ବନ ଗିରି । କେହି ତାହାଙ୍କୁ ନ କହିବାରୁ କ୍ରୋଧ ମନରେ ଧରି । କୋଦଣ୍ଡେ କାଣ୍ଡ ବସାଇ ରାମ ଗିରିମାନଙ୍କୁ ଗୃହିଁ । ଏକାବେଳକେ କାଟିବି ଶିର କେହି କହିଲ ନାହିଁ ॥ ମେରୁକୁ ଆଜ ଚୂର୍ଣ୍ଣ କରିବି ଉଲଟାଇବି ମହୀ । ଚନ୍ଦ୍ର ତପନ କାଟି ପକାଇ ସିନ୍ଧୁ ଦେବି ଶୁଖାଇ ସକଳ ଗିରି କରିବି ଧୂଳି ଦେବି ବାସବ ଦଣ୍ଡ । ସକଳ ସୁର ନର ଅସୁର କରିବି ଖଣ୍ଡ ଖଣ୍ଡ ॥ ଯିନେ ଦସ୍ୟୁଙ୍କ ପାପେ ଦସ୍ୟୁଙ୍କୁ ହେଲୀକୁ ଏତେ ଦଶା । ଆଜ ମୁଁ କାଣ୍ଡମୁନେ କାଟିବି ସମସ୍ତ ଏ ଦିଗ ଦଶା । ଲକ୍ଷ୍ମଣ ବୋଲେ ଶୁଣ ହେ ଦେବ ଦେବ ନ କର କୋପ । ଖୋଜିବା ସବୁ ଅରଣ୍ୟେ କେହି କରି ବା ଥିବ ଗୋପ୍ୟ ॥ ଆମ୍ଭଙ୍କୁ ଗୃହିଁ ଯାଆନ୍ତି ଧାଇଁ କପାଳିଁ ମୃଗକୁଳ । ତାହାଙ୍କ ପଛେ ଆମ୍ଭେ ଗଲେ ବା କାର୍ଯ୍ୟ ହେବ ସଫଳ ॥ ଶୁଣି ରାଘବ କୋପ ସଂହରି ତାହାଙ୍କ ପଛେ ଗଲେ । ମୃଗଶାବକ ନିର୍ଭୟ ହୋଇ ପଥ କଢ଼ାଇ ନେଲେ ॥ ଦେଖିଲେ ସୀତା ଗଳାରୁ ଖସି ପଡ଼ିଛି ପୁଷ୍ପମାଳା । ବୋଲନ୍ତି ଦେଖ ଲକ୍ଷ୍ମଣ ମାଳା ଥିଲା ସୀତାଙ୍କ ଗଳା ॥ ପୁଣିହିଁ ଖଣ୍ଡଦୂରେ ଦେଖିଲେ ସୁବର୍ଣ୍ଣମାଳା ଛିଡ଼ି । ବିଷ୍ଣୁଲପ୍ରାୟୁକ ଶୋଭାପାଏ ଭୂମିରେ ଅଛି ପଡ଼ି ॥ ଦେଖିଲେ ଖଣ୍ଡେଦୂର ଅନ୍ତରେ ରଥେ ହୋଇଛି ଭଙ୍ଗ । ସାରଥି ସହିତରେ ବିନାଶ ହୋଇଅଛି ତୁରଙ୍ଗ । ଦେଖିଲେ ପୁଣି ଧନୁ ଗୋଟାଏ ହୋଇଛି ବେନିଖଣ୍ଡ । ବୋଲନ୍ତି ଏ ତ ଇତର ନୁହେଁ ଦଶେ ଶଙ୍କ କୋଦଣ୍ଡ ॥ ଆହେ ସାନୁଜ ସୀତାଙ୍କୁ ନେଲା କେଉଁ ଦେବ ଦାନବ । ଦେଖ ଏମାନ କମ୍ପା ପଡ଼ିଛି ଲାଗିଲା ଅସମ୍ଭବ ॥ ସୈନ୍ୟ ନ ଥାଇ ଏକା ରଥରେ କେ ଅବା ଆସିଥିଲା । ରୁଧିର ସୃଷ୍ଟି ହୋଇଛି ତାହା ସଙ୍ଗେ କେ ରଣ କଲା ॥ ଦେଖିଲେ ଦୂରେ ଗିରି ସମାନେ ପଡ଼ିଛି ଗୃଧ୍ର ପକ୍ଷୀ । ବାରତା କହିବାକୁ ରାମଙ୍କୁ ଜୀବନ ଅଛି ରଖି ॥ ବୋଲନ୍ତି ରାମ ଶୁଣ ଲକ୍ଷ୍ମଣ ଏ ଆମ୍ଭ ପିତା ମିତ୍ର । ସୀତାଙ୍କୁ ଖାଇ ଆନନ୍ଦ ହୋଇ ଶୁଖାଉଅଛି ଗାତ୍ର ॥ କ୍ରୋଧ କରିଣ ବିନ୍ଧନ୍ତେ ବାଣ କହଇ ସେ ଜଟାୟୁ । ଦଶରାବାସୁତ ସୀତାଙ୍କୁ ନେଲା ସମରେ କଲା ବନ୍ଧୁ । ରଥ ସାରଥି ଭାଙ୍ଗି ତାହାର ଧନୁ ଭଗ୍ନ ମୁଁ କଲା । ବିରଥୀ କରି ମେଷ୍ଠା ବିହାର ସୀତାଙ୍କୁ ରଖିଥିଲି ॥ ଖଡ୍ଗ ଘେନି ଦ୍ରମୋ ତଡ଼ିଗା

ବେନ କାଟିଲା ବେନ ପାଦ । ଏତକ କହି ପ୍ରାଣ ହାରିଲା ଦେଖି ରାମ ବିଷାଦ ॥ କାଠ କୁଢ଼ାଇ ଅଗ୍ନି ଲଗାଇ ଦହନ ତାକୁ କଲେ । ତାର କୁଟୁମ୍ବେ ଭୋଜନ ଦେଇ ପିଣ୍ଡ ଉଦକ କଲେ ॥ ପଥ ତ ପାଇ ଯୋଜନେ ତହୁଁ ଉତ୍ତରଦିଗେ ଗଲେ । ମହାବନରେ ଗିରିଗୁହାରେ ପ୍ରବେଶ ଯାଇ ହେଲେ । ବୋଲନ୍ତି ରାମ ଶୁଣ ଲକ୍ଷ୍ମଣ ଏ ବନ ଭୟଙ୍କର । ବୋଲଇ ବସି ଦିବସେ ଯହିଁ ଦିଶଇ ଅନ୍ଧକାର ॥

—※—

## ୨୮ଶ ଛାନ୍ଦ

ରାଗ—କୌଶିକ

ଗିରି ଭୟଙ୍କର / ତୁଷାରନିକର ଦେଖି ବୋଲନ୍ତି ଶ୍ରୀରାମ ହେ । ଶିଶିର ଋତୁ କି ମସ୍ତକ ମଣ୍ଡିଲି ଦେଇ ଉରେ ମୋତିଦାମ ହେ । ଆହେ ଲକ୍ଷ୍ମଣ । ବିରହ ଦହୁଛି କାମ ହେ । ଜନକ ନନ୍ଦନୀ ବାମ ହିନୁ ମୋତେ କୋଟିଯୁଗ ହୁଏ ଯାମ ହେ । କମ୍ପୁଅଛି ସର୍ବ ଜୀବଙ୍କ ହୃଦୟ ସଲିଳେ ହୋଇଲା ଭୟ ହେ । କେବଳ ମାତ୍ର ଜୀବନ ରଖିବାକୁ ସାହା ହୁଏ ଧନଞ୍ଜୟ ହେ । ଆହେ ଲକ୍ଷ୍ମଣ । ଉତ୍ତର ଅନିଳ ବହେ ହେ । ତରୁ ନିବିଡ଼ ଛାଇରେ ନ ଦିଶନ୍ତି ତପନ ଶଶୀ ଉଦୟେ ହେ ॥ ତପନ ତୁଳ ତରୁଣୀ ତୈଳତପ୍ତଜଳ ତାମ୍ବୁଳ ଆସନ ହେ । ତପୋବନ୍ତ ଜନ ଏ ଋତୁରେ ଭୋଗ କରଇ ଦିବ୍ୟ ଅଶନ ହେ । ଆହେ ଲକ୍ଷ୍ମଣ । ଶିର ଭୂଷଣ ଚନ୍ଦନ ହେ । ଜାନକୀ ସଙ୍ଗରେ ଥିବା କାଳେ ମୁହିଁ ଜାଣିଁ ନାହିଁ ଏମାନ ହେ ॥ ଏତେ ବୋଲି ବୁଲି ବୁଲି ଗିରି-ଗୁହା ନିକଟେ ପ୍ରବେଶ ହେଲେ । ମହାଭୟଙ୍କର ଦିଶୁଛି ତହିଁରେ ଏକ ଅସୁର ଦେଖିଲେ ହେ । ଆହେ ଲକ୍ଷ୍ମଣ । ବୋଲନ୍ତି ଭୋ ଦେବ ଦେଖ ହେ । ବୋଲଇ ବିଧି ବିପତ୍ତିରେ ବିପତ୍ତି ଦଇବ ହେଲେ ବିମୁଖ ହେ ॥

—※—

## ୨୯ଶ ଛାନ୍ଦ—କବନ୍ଧ ବଧ

ରାଗ—ଭୈରବ ଏକତାଳି

ଦୂରହୁଁ ଦେଖି ଅସୁର ଶ୍ରୀରାମ ଲକ୍ଷ୍ମଣ । ଗୁହାରୁ ବାହାର ହୋଇଲେକ ସେହିକ୍ଷଣେ କାହୁଁ ଅଇଲ କାହିଁକି ଯିବ ମୋତେ କହ । ଦେଖିଣ ମୋର କାନ୍ତିରେ କାତର ତୁମ୍ଭ ଦେହ ॥ କୋଳ କରିବ ବୋଲିଣ ଲକ୍ଷ୍ମଣଙ୍କୁ ଧରି । ତାହାକୁ ହିଁ ସୂର୍ପଣଖା ଭ୍ରାନ୍ତି ବାର କରି ॥ ଛେଦନ କରି ପଳାଇ ଗଲେକ ଅସୁର । ଶ୍ରୀରାମ ଲକ୍ଷ୍ମଣ ଚଳେ ପଥ ଅନୁସରି ॥ ପୁଣି ପଶ୍ଚିମେ ଯାମନ୍ତି ସେ ଗହନ ବନ । ଲକ୍ଷ୍ମଣ ଜଣାନ୍ତି ହୁଏ ଅମଙ୍ଗଳମାନ ।

ବାମବାହୁ ବାମନେତ୍ର ଯେ ଝୁଲୁଛି ମୋହର । ରାମ ବୋଲନ୍ତି ଆମ୍ଭର ଭୁମ୍ଭର ବିକାର ॥ ଏତେ ବୋଲି ବେନଭାଇ ଗଲେ ସତ୍ୱରେ । ପଶିଲେ ଯୋଜନବାହୁ ବନର ଭିତରେ ॥ ବେନକରେ ସାଉଁଟି ସେ ମୁଖପାଶେ ନେଲା ଲକ୍ଷ୍ମଣ ବୋଲନ୍ତି ଦେବ ନିଶ୍ଚୟେ ଖାଇଲା ॥ ଦେଖି ରାମ ଲକ୍ଷ୍ମଣ ଧରି ଖଡ୍ଗ ପାଣି । ବେନ ଭାଇ ବାହୁ ପକାଇଲେ ହାଣି ॥ ପଶ୍ଚରଇ ଜ୍ଞାନ ପାଇ କବନ୍ଧ ରାକ୍ଷସ । ରାମ ଲକ୍ଷ୍ମଣ କି ଭୁମ୍ଭେ ଦଶରଥ ଶିଷ ॥ ପୂର୍ବେ ଋଷିଙ୍କ ଶାପରୁ ହୋଇଲି ରାକ୍ଷସ । ବଜ୍ରଧର ବଜ୍ରମାରି କଲେ ଏ ଭବିଷ୍ୟ ॥ ଉଦରେ ବଦନ ମୋର ହୃଦରେ ନୟନ । ବାହୁବଳେ ନାନା ଜୀବ କରଇ ଅଶନ ॥ ଲକ୍ଷ୍ମଣ କହିଲେ ତାକୁ ସକଳ ବୃତ୍ତାନ୍ତ । ଶୁଣି ବୋଲେ ମୋତେ ଦାହ କର ସୀତାକାନ୍ତ ॥ ଦିବ୍ୟରୂପ ହୋଇ ମୁହିଁ କହିଦେବି ସବୁ । ଶୁଣି ରାମ ଲକ୍ଷ୍ମଣଙ୍କୁ ବୋଲେ ଦାହ କରୁ ॥ କାଠ କୁଡ଼ାଇ ଲକ୍ଷ୍ମଣ ଅନଳ ଜାଳିଲେ । ଦିବ୍ୟ ପୁରୁଷେ ବାହାର ହୋଇଲା ଦେଖିଲେ ॥ ତାର ପାଇଁ ରଥବର ଆକାଶୁ ଅଇଲା । ବୋଲେ ବାଣୀ ରାମଙ୍କୁ କହିବାକୁ ରହିଲା । ୮ ।

—❊—

## ୩୦ଶ ଛାନ୍ଦ—ଶବରପଲ୍ଲୀରେ ପ୍ରବେଶ

ରାଗ—ମୁଖାରି

ହୋଇ କବନ୍ଧ ଦିବ୍ୟ ଶରୀର । ଜଣାଇଲା ଯୋଡ଼ି ବେନ କର ॥
ଦେବ ବିଶ୍ରବାଋଷି କୁମର । କାମିନୀକି ନେଲା ଯେ ଭୁମ୍ଭର ॥
ଏହି କୁସୁମ ବନରେ ଯିବ । ଶବରୀ ସଙ୍ଗେ ଭେଟ ହୋଇବ ॥
ପମ୍ପା ସରୋବର ହିଁ ଦେଖିବ । ଦେଖି ସର୍ବ ତାପ ଉପେକ୍ଷିବ ॥
ଋଷ୍ୟମୂକେ ସୁଗ୍ରୀବରି ଥିବ । ତାଙ୍କ ସଙ୍ଗେ ମଇତ୍ର ହୋଇବ ॥
ସେହି ଜାଣଇ ସକଳ ବିଧି । ନ ବିଚାରିବ ବାନର ବୁଦ୍ଧି ॥
ଏତେ କହି ବିମାନେ ବସିଲା । ନିଜପୁରେ ପ୍ରବେଶ ହୋଇଲା ॥
ରାମ ତାହାରି ବଚନ କଲେ । ତାର କହିବା ମାର୍ଗରେ ଗଲେ ॥
ଶବରୀ ବନକାରେ ହୋଇଲେ । ତାର ଆଶ୍ରମ ବୁଲି ଦେଖିଲେ ॥
ଦ୍ୱାରେ ତାର ପ୍ରବେଶ ହୋଇଲେ । ରାମ ଶବରୀ କୃତାର୍ଥ କଲେ ॥
ଦେଖି ଶବରୀ ଶ୍ରୀରାମ ପାଦ । ଭକତିରେ ହୋଇ ଗଦଗଦ ॥
ପ୍ରଦକ୍ଷିଣ କରି ସ୍ତବ କଲା । ଦଣ୍ଡବତ ହୋଇଣ ଶୋଇଲା ॥
ଯେତେ ଫଳମୂଳ ଥୋଇଥିଲା । ରାମ ଆଗେ ଥୋଇ ପୂଜା କଲା ॥
ଦେଖି ରାମ ହୋଇଲେ ସନ୍ତୋଷ । ଶବରୀକି ଡାକି କହେ ପାଶ ॥
ରାମ ବୋଲନ୍ତି ଧନ୍ୟ ତୋ ପୁଣ୍ୟ । ସବୁ ଗୁମ୍ଫାମାନ କପିଁ ଶୂନ୍ୟ ।

ଏହି କେବଣ ଋଷିଙ୍କ ସ୍ଥାନ । ତୁମ୍ଭେ ଏକା ରହିଛ ନିର୍ଜନ ॥
ଦେବ ମାତାଙ୍କ ଋଷିଙ୍କ ବନ । ସ୍ୱର୍ଗେ ଗଲେ ସର୍ବ ତପୋଧନ ॥
ତୁମ୍ଭ ଦର୍ଶନକୁ କରି ମନ । ଧରିଅଛି ଏ ମୋର ଜୀବନ ॥
ଏତେ ବୋଲି ଅଗ୍ନିରେ ପଶିଲା । ଯାନ ଚଢି ସ୍ୱର୍ଗପୁର ଗଲା ॥
ପମ୍ପାସର ଦେଖି ରାମ ତୋଷ । ବୋଲେ ବିପ୍ର ଆରଣ୍ୟକ ଶେଷ ॥

## ଆରଣ୍ୟକ କାଣ୍ଡ ସମାପ୍ତ

# କିଷ୍କିନ୍ଧ୍ୟା କାଣ୍ଡ

—×—

## ୧ମ ଛାନ୍ଦ

ରାଗ—ମଙ୍ଗଳ ଗୁଜ୍ଜରୀ

ପ୍ରବେଶ ରାମ ଲକ୍ଷ୍ମଣ ପମ୍ପାସର ତୀର । ଦେଖନ୍ତି ନିର୍ମଳ ଜଳ ବିଶେ ମନୋହର । କମଳ କୁମୁଦ କୋକନଦ ଫୁଲୋତ୍ପଳ । ମଧୁପାନେ ମତ୍ତ ହୋଇ ଚୁମ୍ବନ୍ତି ଭ୍ରମର ॥ ଚଉପାଶେ ବେଢିଛନ୍ତି ପୁଷ୍ପତରୁଚୟ । ବିରହୀ ଜନଙ୍କୁ ସେ କରାଉଛନ୍ତି ଭୟ ॥ ଦେଖ ଦେଖ ଲକ୍ଷ୍ମଣ ଏ ସରୋବର ଶୋଭା । ଏହା ଦେଖି କେବଣ ଦେବ ନୋହିବ ଲୋଭା ॥ ବିବିଧ ହଂସମାନଙ୍କେ ଦିଶଇ ସୁନ୍ଦର । ଡାହୁକ ତିତ୍ତିର କାକ ବକେ ଶୋଭାକର ॥ ବିକାଶନ୍ତି ନବ ନବଚୂତାଙ୍କୁରମାନେ । ପ୍ରକଟି ବାସନ୍ତ ବାସ ସର୍ବ ସନ୍ନିଧାନେ । କାମତୂଣୀଶରପ୍ରାୟ ଦିଶନ୍ତି ଅଶୋକ । ସୀତାଙ୍କ ବିଚ୍ଛେଦେ କରାଉଛି ବହୁ ଶୋକ ॥ ପାଟଳୀପଟଳ କାମାନଳ ପ୍ରାୟ ଦିଶେ । କେତକୀ କଳିକା ମନସିଜ-କୁନ୍ତ କି ସେ ॥ ମଲ୍ଲିକା ସଉରଭରେ ମଧୁପନିକର । ଧ୍ୱନି କରି ଖୋଜୁଛନ୍ତି ସର୍ବ ଦିଗନ୍ତର ॥ ନବଗନ୍ଧ ସୁଶୀତଳ ପ୍ରସରେ ମରୁତ । କୋକିଳ ଧ୍ୱନି କରନ୍ତି ହୋଇ ମହା ମତ୍ତ ॥ ଲକ୍ଷ୍ମଣ ବୋଲନ୍ତି ଦେବ ଏ ଶିଶିର ଅନ୍ତ । ପ୍ରବେଶ ହୋଇଛି ଋତୁରାଜନ ବସନ୍ତ ॥ ଦେଖନ୍ତି ସେ ପମ୍ପାସରୋବରକୁ ବୁଲଣ । ସୀତାଙ୍କ ବିରହେ ପୁଣ କରନ୍ତି କାରୁଣ୍ୟ । ଲକ୍ଷ୍ମଣ ରାମଚନ୍ଦ୍ରଙ୍କୁ କରନ୍ତି ପ୍ରବୋଧ ବୋଲେ ବିପ୍ର ଶୁଣି ରାମ ଦୁଇଗଣ ହୋଏ । ୧୩ ।

—×—

## ୨ୟ ଛାନ୍ଦ

ରାଗ - ବିଚିତ୍ର ଦେଶାକ୍ଷ

ବସନ୍ତ ଅନ୍ତେ ତପତ ଋତୁ ପରବେଶ । ତପତ ଅନଳ ପ୍ରକାଶିଲା ଦଶଦିଶ ॥ ତପନ ତାପରେ ବନ ହୋଇଲା ଦହନ । ଶୁଭୁଅଛି ନିରନ୍ତରେ ଝିଙ୍କାରୀ ସ୍ୱନ ॥ ଶୁଷ୍କ ହେଲେ ସକଳ ସଲିଳ ସରୋବର । ସଲିଳ ନ ପାଇ

ଯାବେ ହୋଇଲେ ବିକଳ । ପ୍ରକଟିତ ପାଟଳୀ ପାଦପରେ କୁସୁମ । ବିରହି ଜନ ବର୍ଦ୍ଧନ କରୁଛୁ କି କାମ ॥ ମଣ୍ଡୀର ଉତ୍ପତରେ ଚାଲୁଅଛୁ ପାଦ । ଲକ୍ଷ୍ମଣଙ୍କୁ କହି ରାମ ଲଭନ୍ତି ବିଷାଦ ॥ ତରୁତଟସ୍ଥ ପବଝଡ଼ ପଡ଼ିଲେ ଧରଣୀ ॥ ମୃଗତୃଷ୍ଣା ତୃଷ୍ଣା କରି ଧାମନ୍ତି ହରିଣୀ । ରାଘବ ବୋଲନ୍ତି ଦେଖ ଦେଖ ସଜମିନି । ଏ ଋତୁରେ କେମନ୍ତେ •ବଞ୍ଚିବ ମୃଗନେତ୍ରୀ ॥ ବଜ୍ରାଘାତ ପ୍ରାୟ ଅଗ୍ନିବାତ ହେଉଥିବ । ଶିରୀଷାଙ୍ଗୀ ସୁକୁମାରୀ କେମନ୍ତେ ସହିବ ॥ ମୋର ହନୁ ଶୀତଳାନୁ ହୁଏ ତପନାନୁ । ଘନୁ କରଣେ କେମନ୍ତେ ରହିବଟି ତନୁ ॥ ଏମନ୍ତ ବୋଲଣ ରାମ ବହୁ ବିଳପିଲେ । ବୋଲେ ବୀରି ଲକ୍ଷ୍ମଣ ପ୍ରବୋଧ କରୁଥିଲେ । ୧୦ ।

—*—

## ଲକ୍ଷ୍ମଣ ଦ୍ବାରା ଚକ୍ରବାକଙ୍କୁ ଶାପ ପ୍ରଦାନ

ରାଗ—କୌଶିକ

ଜଳ ଭିତରେ ଶ୍ରୀରାମ ପଶନ୍ତେଣ ଚକ୍ରବାକ କଲା ତମ ହେ ।
ମୁଁ ଯୁବତୀ ସଙ୍ଗେ ବିହରଇ ରଙ୍ଗେ ପମ୍ପାସରର ଆରାମ ହେ ॥
ଆହେ ଶ୍ରୀରାମ । କମ୍ପା ଭଗ୍ନ କର କାମ ହେ ।
ତୁମ୍ଭ ଭାରିଯାକୁ ରାବଣ ନେଇଛୁ ପାରିଲେ କର ସଂଗ୍ରାମ ହେ ।
କେ ଜାଣଇ ସୀତା କାହାର ବନତା କି କାରଣେ ହୁଏ ଭ୍ରମ ହେ ।
ଶିରେ ଜଟା ବାନ୍ଧ କଷାବସ୍ତ୍ର ପିନ୍ଧି କି କେ ଧନୁ ଧରି ବାମ ହେ ॥
ମୋର ରତି ଭାଙ୍ଗି ତୁମ୍ଭ ମନ ରଞ୍ଜି ଯୁବତୀରେ ତୋ ଉଦ୍ଦାମ ହେ ।
ଚକ୍ରବାକ ବାଣୀ ଲକ୍ଷ୍ମଣ ଶୁଣିଣ ପାପଦେଲେ କରି ତମ ହେ ॥
ପକ୍ଷୀ ପକ୍ଷିଣୀ ଏକସଙ୍ଗ ନୋହିବ ନ କରିବୁ ତୁ ରମଣ ରେ ।
ଏହା ମେଣ୍ଟି ଯେବେ ରମଣ କରିବୁ ଅବଶ୍ୟ ତୋର ମରଣ ରେ ।
ଲକ୍ଷ୍ମଣଙ୍କ ବାଣୀ ଚକ୍ରବାକୀ ଶୁଣି ପତିକି କହଇ ପୁଣ ହେ ।
ଏବେ ଯେ ତୁମ୍ଭର ସମ୍ପଦ ସରିଲା ଶାପ ଦେଲେକ ଲକ୍ଷ୍ମଣ ହେ ॥
ଶୁଣି ପକ୍ଷୀପଣି ପକ୍ଷିଣୀକି ଘେନ ଶ୍ରୀରାମ ପାଦେ ପଡ଼ିଲା ହେ ।
ଭ୍ରମେ ଦେବ ନ ଜାଣି ଦୋଷ କଲି ପୁଣି ଅପ୍ରାଧ ଖଣ୍ଡ ବୋଇଲା ହେ ॥
ଶୁଣି ରଘୁମଣି ପକ୍ଷୀଙ୍କର ବାଣୀ ବୋଲନ୍ତି ହେବ କାରଣ ହେ ।
ଲକ୍ଷ୍ମଣ ବଚନ କେବେ ନୁହେ ଆନ ରାତ୍ରେ ନୋହିବ ରମଣ ହେ ॥
ଦିବସରେ ରଙ୍ଗ କାନ୍ତା କାନ୍ତ ସଙ୍ଗ ହୋଇବ ଏହି ପ୍ରମାଣ ହେ ॥
ରଜନୀକାଳେ ଅଙ୍ଗ ସଙ୍ଗ ନୋହିବ ହେଲେ ହରାଇବ ପ୍ରାଣ ହେ ॥
ପକ୍ଷୀଙ୍କୁ ଛୁଡ଼ାଇ ଗଲେ ରଘୁସାଇଁ ପଶିଲେ ଗିରିଗହନ ହେ ।

ବ୍ୟାଧ ବୁଲୁଥିଲା ପକ୍ଷୀଙ୍କି ଦେଖିଲା ଅଠାରେ କଲା ବନ୍ଧନ ହେ ॥
ପେଡ଼ିରେ ପୂରାଇ ଘେନିଗଲା ବ୍ୟାଧ ପ୍ରବେଶ ନିଜ ଭୁବନ ହେ ।
ପକ୍ଷୀ ପକ୍ଷିଣୀ ଆକୁଳ ହୋଇ ମନେ ଚିନ୍ତନ୍ତି ରଘୁନନ୍ଦନ ହେ ॥
ରାମ ରାମ ବାଣୀ ଚକ୍ରବାକ ପୁଣି ଫାଟିଲା ପେଡ଼ା ବନ୍ଧନ ହେ ।
ବନ୍ଧନୁ ଫିଟି ଦୁଇପକ୍ଷୀ ହରଷେ ବିହାର କଲେ କାନନ ହେ ॥
ଶ୍ରୀରାମ ଚରଣ ସଂସାର କାରଣ ସୁର ମୁନି କଲେ ଧ୍ୟାନ ହେ ।
ସେହି ଚରଣକୁ ଆଶ୍ରାକର ବଶି ବଞ୍ଚୁଅଛୁ ନିଶି ଦିନ ହେ ॥



## ୪ର୍ଥ ଛାନ୍ଦ ଗୋଗୋଷ୍ଠରେ ଗୋପାଳଙ୍କୁ ଶାପ ପ୍ରଦାନ

ରାଗ—କେଦାର

ଶ୍ରୀରାମ ଲକ୍ଷ୍ମଣ ପଶିଲେ ଗହନ ବନ ନିକଟେ ଗୋଧନ । ସଉମିତ୍ରି କହେ ଶୁଣ ରାମଚନ୍ଦ୍ରେ କ୍ଷୁଧାରେ ଅଧୀର ଜୀବନ । ରଘୁନନ୍ଦନ । ବାରେ ରକ୍ଷାକର ଆମ୍ଭ ଜୀବନ ॥ ଭାଇ ବିକଳ ଦେଖି ରଘୁନନ୍ଦନ ଆଗରେ ଦେଖି ଗୋଧନ । ବେଗେ ବେଗେ ଯାଇଁ ଗୋଗୋଷ୍ଠରେ ପାଇ ଗୋପାଳେ ଯାଚନ୍ତି ରତନ ॥ ମଣି ବଦଳା ନିଅ କିଛି ଦୁଧ ଦିଅ ଭାଇ ମୋର କରୁ ପାନ । ବୋଲନ୍ତି ଗୋପାଳେ କେଉଁ ଗଛେ ଫଳେ ତୁମ୍ଭେ ବୋଲ ମଣିରତନ ॥ କ୍ଷୁଧାର ବିକଳେ ସଉମିତ୍ରି ବୋଲେ ରକତ ଦୁହାନ୍ତୁ ଗୋଧନ । ତତକ୍ଷଣେ ଗାଈ ରକତ ଦୁହିଁଲେ ଦୁହନ୍ତେ ଦୁଗ୍ଧ ରଙ୍ଗବର୍ଣ୍ଣ ॥ ଗାଈଙ୍କର ଦୁଗ୍ଧ ରକତ ଦେଖି ହଜି ଗଲାକ ତାଙ୍କ ଜ୍ଞାନ । ଶ୍ରୀରାମଙ୍କୁ ବେଢ଼ି ପାଦତଳେ ପଡ଼ି ବୋଲନ୍ତି କିଛୁ ଦିଅ ଦାନ ॥ ତାଙ୍କର ବିକଳେ ଶ୍ରୀରାମ ବୋଲନ୍ତି ଦୁହାନ୍ତୁ ଗାଈ କ୍ଷୀର-ମାନ । ତତକ୍ଷଣେ ଗାଈ କ୍ଷୀରମାନ ଦେଇ ହରଷ ବରଜ ରାଜନ ॥ ଦୁଧଭାଣ୍ଡ ନେଇ ଶ୍ରୀରାମଙ୍କୁ ଦେଇ ତୋଷ କଲେକ ପିଣ୍ଡମାନ । ଶ୍ରୀରାମଚନ୍ଦ୍ରଙ୍କ ଚରଣ ପଙ୍କଜେ ନିଷ୍ଠଲେ ରହୁ ବଶି ମନ ॥ 

## ୫ମ ଛାନ୍ଦ ହନୁମାନ ଭେଟ

ରାଗ—ରାଜବିଜେ ଧନାଶ୍ରୀ

ସରୋବର ତଟୁଁ ବିଜେ ରାମ । ବୋଲନ୍ତି କହ ଏ ଗିରି ନାମ ।
ଲକ୍ଷ୍ମଣ ଜଣାନ୍ତି ଋଷ୍ୟମୂକ ଗିରି ସୁଗ୍ରୀବର ଏ ଆଶ୍ରମ । ହେ ଦେବ ।
ଏହି ଗିରି ତଳେ ଆମ୍ଭେ ଥିବା । ତାର ବୃତ୍ତାନ୍ତମାନ ବୁଝିବା ।
ବିଶ୍ୱାସ ଆମ୍ଭଙ୍କୁ କଲେ ସିନା ଆମ୍ଭେ ତା ସଙ୍ଗେ ମଇତ୍ର ହେବା । ହେ ଦେବ
ଏଥା ବିଚାରନ୍ତେ ସୁଗ୍ରୀବର । ଦେଖୁଥିଲେ ବସି ଗିରି ଶିଖର ।

ରାମ ଲକ୍ଷ୍ମଣଙ୍କ ରୂପକୁ ଅନାଇ ଦୂରନ୍ତ ସେ ସୁଗ୍ରୀବର । ହେ ଦେବ
ଆରୋହିଲେ ଆନ ଗିରିଶିର । ମନ୍ତ୍ରୀମାନେ ମିଳିଲେ କତର ।
ହନୁ ବୋଲଇ କାହାକୁ ଭୟକରି ପଳାଇଲ ଏତେ ଦୂର ।
ଶୁଣି ବୋଲନ୍ତି ବାନରରାଜ । ବାଳି ହତ ନୁହଇଟି ବୁଝ ।
ହରି ହରି ପ୍ରାୟ ଶୋଭା ପାଉଛନ୍ତି ଧନୁଶର ଧରି ସଜ । ହେ ହନୁ ।
ଶୁଣି ହନୁ ହେଲେ ଭିକ୍ଷୁ ସଜ । ଦେଖି ରାମ ଲକ୍ଷ୍ମଣଙ୍କ ତେଜ
ଚରଣ ତଳେ ପଡ଼ିଣ ପଚାରଇ ତୁମ୍ଭେ କେଉଁ ଦେବରାଜ ।
ସବୁ ଲକ୍ଷ୍ମଣ ତାଙ୍କୁ କହିଲେ । ରାମଚନ୍ଦ୍ରଟି ଏହୁ ବୋଇଲେ ।
ସୁଗ୍ରୀବର ସଙ୍ଗେ ମଇତ୍ର ହୋଇବେ ତାଙ୍କର ଦୟା ହୋଇଲେ । ହେ ଭିକ୍ଷୁ ।
ସେହୁ ବୋଲନ୍ତି ମୁଁ ବୀର ହନୁ । ମୁହିଁ ଅଟଇ ପବନ ସୂନୁ ।
ମୋର କନ୍ଧେ ବସ ସୁଗ୍ରୀ ଭେଟାଇବି ବୋଲି ବିସ୍ତାରିଲ ତନୁ । ସେ ହନୁ ।
ହନୁ ଚହ୍ନିଲ ନିଜ ଗୋସାଇଁ । ବେନି ଭାଇଙ୍କୁ କନ୍ଧେ ବସାଇ ।
ଋଷ୍ୟମୂକ ଗିରି ଶିଖରେ ମିଳିଣ ଗଲି ତାହାଙ୍କୁ ବସାଇ ।
ଯାଇଁ କହିଲି ସୁଗ୍ରୀବ ପାଶ । ଆଜ ଭୟ ଗଲି ତୋର ନାଶ ।
ବୋଲେ ବଣି ତୁମ୍ଭ ପାପ ନାଶଯିବ ଦର୍ଶନ କରିବ ଆସ । ୪ ।

—:—

## ୭ମ ଛାନ୍ଦ—ସୁଗ୍ରୀବସହ ମିତ୍ରତା ସ୍ଥାପନ

### ରାଗ—ସିନ୍ଧୁଡ଼ା

ଶ୍ରୀରାମ ଲକ୍ଷ୍ମଣ ଋଷ୍ୟମୂକେ ରଖି ହନୁ ସୁଗ୍ରୀ ପାଖେ ଗଲେ ।
ରାମଙ୍କ ଉଦନ୍ତ ସକଳ ସୁଗ୍ରୀବେ ବୁଝାଇ କରି କହିଲେ ।
ସେ ଦଶରଥ ନନ୍ଦନ । ବୁଲୁଅଛନ୍ତି ସକଳ ବନ ।
ତୁମ୍ଭ ମିତ୍ର ହୋଇବାକୁ ମନ । ଭୟ ନ କର କପିରାଜନ ॥
ଆସ ଆସ ତାଙ୍କ ସଙ୍ଗତରେ ଋଷ୍ୟମୂକେ ଯାଇ କର ଭେଟ ।
ଶୁଣି ସୁଗ୍ରୀବ ନଳ ନୀଳ ସୁଷେଣ ଅଇଲେ ହୋଇଣ ହୃଷ୍ଟ ।
ଦେଖି ରାମ ଉଠିଲେ । ସୁଗ୍ରୀ ଆସି ଆଲିଙ୍ଗନ କଲେ ।
ମନ୍ତ୍ରୀମାନେ ଚରଣେ ପଡ଼ିଲେ । ହେନକ୍ଷଣି ଅଗ୍ନି ଲଗାଇଲେ ॥
ଅଗ୍ନି ସାକ୍ଷୀକରି ମଇତ୍ର ହୋଇବେ ଶ୍ରୀରାମ କପିରାଜନ ।
ପୁଣ ପୁଣ କରି ଅଗ୍ନି ପ୍ରଦକ୍ଷିଣେ କହନ୍ତି ସତ୍ୟବଚନ ।
ଆହେ କପି ଇଶ୍ୱର । ଆଜୁ ଆମ୍ଭର ଦୁଃଖ ତୁମ୍ଭର ।
ତୁମ୍ଭ ଦୁଃଖ ସହଜେ ଆମ୍ଭର । ସୁଗ୍ରୀ ବୋଲେ କରୁଣା ତୁମ୍ଭର ॥

ଏମନ୍ତ କହିଣ ଡାଳ ଭାଙ୍ଗି ଦେଇ ରାମ ଲକ୍ଷ୍ମଣେ ବସାଇ ।
ସୁଗ୍ରୀବ ବସିଲେ ଆଉମାନେ ଉଭା ହୋଇଲେ ମଣ୍ଡଳୀ ହୋଇ ।
ଚେତ କହେ ଲକ୍ଷ୍ମଣ । ବନବାସ ଯେବଣ କାରଣ ।
ଖର ଦୂଷଣଙ୍କର ମରଣ । ଏବେ ସୀତାଙ୍କୁ ନେଲା ରାବଣ ॥
ହୋଇ ଦେବ ଆମ୍ଭେ ଦେଖିଲୁଁ, ଦେଖିଲୁଁ ସୁଗ୍ରୀ ରାମଙ୍କୁ କହିଲେ ।
ରାବଣ ନେବାକାଳେ ଦେଖି ଆମ୍ଭଙ୍କୁ ଭୂଷଣ ପକାଇ ଦେଲେ ।
ରାମ ବୋଲନ୍ତି ଆଣ । ବିଳମ୍ବର କେବଣ କାରଣ ।
ଗୁହାରୁ ଆଣିଦେଲେ ସୁଷେଣ । ରାମଙ୍କୁ ବୋଇଲେ ଏହା ଘେନ ॥
ଦେଖି ଶ୍ରୀରାମ ଲକ୍ଷ୍ମଣଙ୍କୁ ବୋଲନ୍ତି ସୀତାର ଠିକ ଭୂଷଣ ।
ଲକ୍ଷ୍ମଣ ବୋଇଲେ ନୂପୁର ଚିହ୍ନାଇ ନ ଚିହ୍ନାଇ ମୁଁ ଏମାନ ।
ରାମ ଅଶ୍ରୁ ଲୋଚନ । ସୁଗ୍ରୀ ସହିତେ କଲେ ରୋଦନ ।
ପୁଣି ହୋଇଲେ ଧଇର୍ଯ୍ୟ ମନ । ଦେଖି ରଖାଇଲେ ଆପୂମାନ ॥
ବୋଲନ୍ତି ରାମ ଶୁଣ ସଖେ ସୁଗ୍ରୀବ, ମିତ୍ରର ଯେତେକ ଗୁଣ ।
ତୁମ୍ଭେ ଆମ୍ଭେ ସେହି କାଳରେ ଜାଣିବା ମାରିବା ଯେବେ ରାବଣ ।
ଆହେ କପି ଈଶ୍ୱର । ଆମ୍ଭ ତୂଣୀରେ ଯେତେକ ଶର ।
ସର୍ପ ପ୍ରାୟକ ତେଜ ପ୍ରଖର । ବାଣି ବୋଲେ କାଳ ମୃତ୍ୟୁକର । ୭ ।



## ୭ମ ଛାନ୍ଦ—ଶ୍ରୀରାମଚନ୍ଦ୍ର ଙ୍କ ଶୋକ

ରାଗ—ଚୋଖି ଖେମଟା

ମିତ ହେ ଗଲା ମୋ ବଇଦେହୀ । ଦୁଷ୍ଟାଳ ରାବଣ ନେଲା ଚୋରାଇ । ଘୋଷା । ସୀତା ଶାଢ଼ୀ ଚଡ଼ ହୃଦରେ ଲଦ୍ଧ । ବକଳେ ରାମ ଗଦ୍ ଗଦେ କାନ୍ଦ ॥ ଆହା ସେ ଜାନକୀ ମୋ ପ୍ରାଣ ସମ । ନହିଁଜ ଜୀବନ ନ ନେଲା ଯମ ॥ ତା ଭ୍ରୂଲତା କାମଧନୁ ଆକାର । ନୟନେ ରଖିଛି କୁସୁମଶର । ଚନ୍ଦ୍ରମା ବଦନ ଅତି ସୁନ୍ଦର । କାହିଁ ଲୁଚାଇଲା ସଜନୀ ମୋର ॥ ଶିରୀଷଅଙ୍ଗୀ କୁରଙ୍ଗୀ ନୟନା । ଗିରିଶସ୍ତନୀ ସେ ପକ୍ୱବଚନା ॥ ବୃତ୍ତ ସୁକୁମାରୀ ନବ ବୟସୀ । କ୍ଷୀଣତନୁ ପୁଣି ସେ ମୀନଦୃଶୀ । ଆହା ଦଇବ ଏହା ପୁଣି କଲା । ପିଣ୍ଡ ରଖି ପ୍ରାଣ କେ ଘେନି ଗଲା ॥ ଏ ରସେ ରସିଣ ନାରଣ କହି । ଜାଣିଲ ଏ ଦେହ ସବୁ ସହଇ । ୮ ।



## ୮ମ ଛାନ୍ଦ—ଦୁନ୍ଦୁଭି ଅସ୍ଥି ଫିଙ୍ଗିବା

ରାଗ—କାଫି

ଲକ୍ଷ୍ମଣ କହେ କପିରାଜନ ଶୁଣ । ଶ୍ରୀରାମ ଶ୍ରୀଚରଣେ ସକଳ ହେ ଲୋକଙ୍କର ଶରଣ । ଏବେ ସେ ରାମ ହେଲେ ତୁମ୍ଭର ଶରଣ । ଯେମନ୍ତେ ଏ ବନିତା ପାଇବେ ହେ କହ ତହିଁ କାରଣ ॥ ସୁଗ୍ରୀ ବୋଲେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ । ଖୋଜ ପାରଇ ତ୍ରିଭୁବନ ହେ ନାହିଁ ବାନର ବଳ ॥ ଲୁଚଣ ଅଛୁ ଏଥି ବାଳୀ ଭୟରେ । ହୋଇଲ ତୁମ୍ଭ ସଙ୍ଗରେ ହେ ଏଡ଼େ ଅସମୟରେ ॥ ରାମ ଆଜ୍ଞା ଦେଲେ ଆମ୍ଭ କାର୍ଯ୍ୟ ଥାଉ । ତୁମ୍ଭର କାର୍ଯ୍ୟ ଆଗେ କରିବା ହେ ତୁମ୍ଭର ଭୟ ଯାଉ । ଶୁଣି ସୁଗ୍ରୀବ ରାମ ଶ୍ରୀଭୁଜ ଧରି । ଏକାନ୍ତେ ବେନିମିତ୍ର ବସିଣ ଯେ ବନ୍ଧୁ ବିଗ୍ରହ କରି ॥ ସୁଗ୍ରୀ କହେ ଭରସା ନହଇ ଚିତ୍ତେ । ଦୁନ୍ଦୁଭି ଶବ ଫିଙ୍ଗି ଦେଲେଟି ହେ ତେବେ ଯିବ ମୁଁ ପ୍ରତେ ॥ ବାଳୀ ଶତେକ ବେଳ ଫିଙ୍ଗି ଦେଇଛି । ସେକାଳୁଁ ଗିରି ସମ ହୋଇଣ ହେ ଅସ୍ଥି ପଡ଼ି ରହିଛି ॥ ଏମନ୍ତ କହି ପାଶକୁ ନେଲା । ଏହି ସେ ଅସ୍ଥି ବୋଲି ରାମଙ୍କୁ ଯେ ସୁଗ୍ରୀ ଦେଖାଇ ଦେଲା । ରାମ ଚିପିଲେ ବାମ ଅଙ୍ଗୁଷ୍ଠି ମୁନ । ବୋଲଇ ବସି ଫିଙ୍ଗି ଦେଲେ ସେ ଯେ ଗଲା ଦଶ ଯୋଜନ । ୧୦ ।



## ୯ମ ଛାନ୍ଦ—ସପ୍ତଶାଳା ଛେଦନ

ରାଗ—କନଡ଼ା

ଅସ୍ଥି ଫିଙ୍ଗିଦେବା ଦେଖିଣ ସୁଗ୍ରୀବ ଲକ୍ଷ୍ମଣ କର୍ଣ୍ଣରେ କହିଲା । ମିତ୍ର ନ ଜାଣିବେଟି ସେ ବୋଇଲା । ଶୁଷ୍କ ହୋଇଣ ଅଛାରକାଳୁ ଥିଲା ମୋର ମନକୁ ନଇଲା ହେ ସାନୁଜ ॥ ଯେବେ ସାତଶାଳୁଁ ଶରେ ଛେଦିବେ । ମିତ୍ର ତେବେ ମିନା ଶାଢ଼ୀ ବାନ୍ଧିବେ । ବାଳୀ ସମ ବଳ ତେବେ ସେ ଜାଣିବ ଲକ୍ଷ ମର୍କଟ ବନ୍ଧିବେ ହେ ॥ ଲକ୍ଷ୍ମଣ କହନ୍ତେ ଶ୍ରୀରାମ ଜାଣି ତା କୋଦଣ୍ଡେ ଗୁଣ ଚଢ଼ାଇଲେ । କାଣ୍ଡ ବାଛିଣ ଗୁଣେ ବସାଇଲେ । ବିନ୍ଧନ୍ତେ ସପତଶାଳା ଫାଟି ଗରି ପାଷାଣେ ଉଲ୍ଲସାଇଣେ ସେ । ଶ୍ରୀରାମ । ତାହା ଦେଖିଣ ସୁଗ୍ରୀବ ହରଷ । ପାଦେ ପଡ଼ି ବୋଲଇ ମୋର ଦୋଷ । କ୍ଷମାକର ଆହେ ଅଯୋଧ୍ୟା ଠାକୁର ସଂଶୟ କଲି ବିନାଶ ହେ ॥ ଆଲିଙ୍ଗନ କରି ଶ୍ରୀରାମ ପୁଚ୍ଛନ୍ତି ସୋଦରେ କପାଇଁ ବୈରିରା । ସୁଗ୍ରୀ ବୋଲେ ଦୋଷ ନାହିଁ ମୋହରି । ଜ୍ୟେଷ୍ଠ ଭାଇ ହୋଇ ମୋ ବନିତା ନେଇ ଦେଇଛି ବାହାର କରି ହେ । ହେ ଦେବ । ମବେ ମାୟାବୀ ଦୈତ୍ୟ ଯେ ଅଇଲା । ରାବେ ବାଳୀକି ସମର ମାଗିଲା । ବେନିଭାଇ ଆମ୍ଭେ ବାହାର ହୁଅନ୍ତେ

ଦେଖି ସେହି ବାହୁଡ଼ିଲି ହେ । ବେନିଭାଇ ଆମ୍ଭେ ଗୋଡ଼ାନ୍ତେ ଡ଼ରି ସେ ବିବର ଭିତରେ ପଶିଲା । ତାହାଦେଖି ବାଳୀ ମୋତେ ବୋଇଲା । ମୋର ଆସିବାଯାଏ ତୁ ଦ୍ୱାରେଥିବୁ ବୋଲି ବିବରେ ପଶିଲା ହେ । ଭୋ ଦେବ । ସମ୍ବତ୍ସରେ ମୁଁ ଜଗିଣ ରହିଲି । ତହୁଁ ସଙ୍କେତ କିଛି ନ ପାଇଲି । ଯେତେବେଳେ ହେଲା ରୁଧିର ବାହାର ବାଳୀ ମଲ ଭୟ କଲି ହେ । ବିବର ଦ୍ୱାରେ ପଥର ଦେଇ ମୁହିଁ ନଗ୍ରରେ ହୁଅନ୍ତେ ପ୍ରବେଶ । ମନ୍ତ୍ରୀମାନେ ମିଳିଲେ ମୋର ପାଶ । ଅଭିଷେକ ହୋଇ ସିଂହାସନେ ଥିଲି ବାଳୀ ହୋଇଲା ପ୍ରବେଶ ହେ । ଭୋ ଦେବ ॥ ମୋତେ କ୍ରୋଧରେ ବିଧାଏ ମାଇଲା । କାହା ବଳେ ଶିଳ ଦେଲୁ ବୋଇଲା । ରାଜା ହେବା ଦେଖି ସୁମନ୍ତ ସ୍ୱହସ୍ତେ ବାହାର କରଣ ଦେଲା ହେ । ଶ୍ରୀରାମ ବୋଲନ୍ତି ଏବେ ଯାଇଁ ତୁମ୍ଭେ ବାଳୀ ସଙ୍ଗରେ ଯୁଦ୍ଧକର । ଆମ୍ଭେ ପଛେ ପଛେ ଥିବୁ ତୁମ୍ଭର । ଶୁଣି ସୁଗ୍ରୀବ ବାଳୀ ସଙ୍ଗେ ସମର କରିବାପାଇଁ ବାହାର ହେ । ସୁଜନେ । ଯାଇଁ ବାଳୀ ସିଂହଦ୍ୱାରେ ଡ଼ାକିଲା । ଶୁଣି ବାଳୀବୀର ଧାଇଁ ଆଇଲା । ବେନି ଭାଇଙ୍କର ବିବିଧ ପ୍ରକାରେ ବହୁ ସମର ହୋଇଲା ହେ ॥ ଶ୍ରୀରାମ ତରୁ ଉହାଡ଼େ ଥାଇ ବେନି ଭାଇଙ୍କି ଚିହ୍ନି ନ ପାରିଲେ । ଏଣୁକରି ସେ ଶର ସଂହରିଲେ । ସୁଗ୍ରୀବ ସମରେ ବାଳୀକି ହାରିଣ ବହୁ ଅଶକତ ହେଲେ ହେ । ସୁଜନେ । ବାଳୀ ମାଡ଼ିବସିଣ ମାରୁଥିଲା । ପ୍ରାଣେ ଥାଉ ବୋଲିଣ ଦୟା କଲା । ବୋଲେ ବଶି ଗୁଡ଼ ଦିଅନ୍ତେ ପଳାଇ ଋଷ୍ୟମୂକରେ ପଶିଲା ରେ । ୭ ।

---

## ୧୦ମ ଛାନ୍ଦ—ବାଳିବଧ

ରାଗ—ଧନାଶ୍ରୀ ଦୋହରି ଚଢ଼ତାଳ

ପଳାଇଣ ସୁଗ୍ରୀ ଋଷ୍ୟମୁକରେ ପ୍ରବେଶ । ରାମଚନ୍ଦ୍ର ସହିତେ ଆଇଲେ ତାର ପାଶ । ନ କହଇ କଥା ଆଉ ନ ଟେକଇ ମୁଖ । ଭୂମିକି ଚାହିଁଣ ରାମଚନ୍ଦ୍ର କହେ ଦୁଃଖ ମାନ ଲାଜ ମିଶି ମନେ କରଇ ବିଚାର । ଚାହିଁ ତାଙ୍କୁ କହୁଛନ୍ତି ଦଶରଥ ବାଳ ॥ ଆସ ଆସ ମିତ ଆଉ ଥରେ ଏବେ ଯୁଝ । ଏକ ବାଣକେ ମାରିବି ଆଜଠାରୁ ବୁଝ ॥ ନ ପାରିଲୁ ଚିହ୍ନି ବେନି ଭାଇ ଏକରୂପ । ତୁମ୍ଭ ବଧରେ ଲାଗନ୍ତା ମିତ୍ରଦ୍ରୋହ ପାପ । ଏବେ ଆମ୍ଭ ଚିହ୍ନ ଏହି ନାଗେଶ୍ୱର ମାଳା । ଏତେ ବୋଲି ଲମ୍ବାଇଲେ ସୁଗ୍ରୀବଙ୍କ ଗଳା ॥ ଶୁଣି କପିରାଜ ସଂଗ୍ରାମକୁ ହେଲେ ସଜ । ସଙ୍ଗେ ସଙ୍ଗେ ଯେନ ଅଛନ୍ତି ଶ୍ରୀରାମରାଜ । [illegible] ହେଲେ କିଷ୍କିନ୍ଧ୍ୟାର ପୁରଦ୍ୱାରେ । କୋପେ

ସୁଗ୍ରୀବ ଡ଼ାକଇ ଆରେ ବାଳୀ ଆ'ରେ ॥ ସୁଗ୍ରୀବାଣୀ ଶୁଣି ବାଳୀ ଦୁଅନ୍ତେ ବାହାର । ତାର ଆଗେ ଓଗାଳଣ କହଇ ବଗୁର ॥ ସୋଦର ତୁମ୍ଭର ତାଙ୍କୁ ନୁହ ତୁମ୍ଭେ ବାମ । ଶୁଣିଛୁ ଅଙ୍ଗଦ ମୁଖ୍ ସାହା ତାଙ୍କୁ ରାମ ॥ ହାରଗଲା ପୁଣି କମ୍ପା ଲେଉଟି ଅଇଲା । ତୁମ୍ଭେ ଯେବେ ଯିବ ତେବେ ପ୍ରମାଦ ହୋଇଲା ॥ ଶୁଣ ପ୍ରିୟେ ଏବେ ମୋତେ ଡ଼ାକୁଛି ରଣକୁ । ଏତେବେଳେ ପ୍ରୀତି କଲେ ଲଜ ଆପଣାକୁ ବୋଲଇ ଯେ ରାମ ତାକୁ ହୋଇଛନ୍ତି ସାହା । ଅଧର୍ମୀ ନୁହନ୍ତି ସେହି ଶୁଣିଛୁ ମୁଁ ଯାହା । ଏତେ ବୋଲି ଆସି ସୁଗ୍ରୀ ସଙ୍ଗେ ରଣ କଲା । ବେନି ଭାଇଙ୍କର ମାଲବନ୍ଧେ ଯୁଦ୍ଧ ହେଲା । ଦେଖିଲେ ସୁଗ୍ରୀବ ରଣେ ହୋଇଲା ନସତ । ଶ୍ରୀରାମଙ୍କୁ ଗୁହାଁ କରେ ପଳାଇବା ଶତ । ରାମ ତରୁ ଉହାଡରୁ ପ୍ରହାରନ୍ତେ କାଣ୍ଡ । ବଜ୍ରସମ ହୋଇଣ ପଡ଼ିଲା ବାଳୀ ପିଣ୍ଡ ॥ ସୁଗ୍ରୀବକୁ ଛାଡ଼ିଦେଇ କପିନ୍ଦ୍ର ପଡ଼ିଲେ । ବେନି ଭାଇ ତାହାର ସମ୍ମୁଖେ ଉଭା ହେଲେ । ବାମ କରେ କୋଦଣ୍ଡ ଦକ୍ଷିଣେ ତୀକ୍ଷ୍ଣ ଶର । ବୋଲେ ହସି ଲକ୍ଷ୍ମଣଙ୍କୁ ଦେଇ ଭୁଜଭର । ୯ ।

—*—

## ୧୧ଶ ଛାନ୍ଦ

ରାଗ—ଭାଟିଆରୀ ପଡ଼ତାଳ

ହୃଦରେ ବାଜଣ ଶର, ପଡ଼ିଲା ସେ କପିବର, ଦେଖିଲା ରାମ ଲକ୍ଷ୍ମଣ ରୂପ । ତ୍ରିଭୁବନ ନାଥ ହୋଇ ଅନୀତି କଲ କିମ୍ପାଇ ମୋତେ ବିନାଦୋଷେ କଲ ଏଡ଼େ କୋପ ହେ । ରଘୁନାୟକ । ଲଚ ବନ୍ଧିଲ କିମ୍ପାଇଁ ଏଡ଼େ ଶାୟକ । ମୁଁ ଯେ ଶୁଣିଥିଲି ତୁମ୍ଭେ ବଡ ବିବେକ । ଇକ୍ଷ୍ୱାକୁକୁଳେ ଲଗାଇଲ କଳଙ୍କ ॥ ଗଜଙ୍କୁ ବନ୍ଧିଲେ ଦନ୍ତ, ଗଜମୋତି ପାଇଥାନ୍ତ, ସିଂହକୁ ବନ୍ଧି ହିଶନ୍ତା ବଳ । ମୃଗକୁ ବନ୍ଧିଲେ ମୃଗମାଂସ ହୋଇଥାନ୍ତା ଭୋଗ, ବୃଦ୍ଧ କପି ବନ୍ଧି କି ଲଭିଲ ଫଳ ହେ ॥ ତେତେ କୁଳେ ଜାତ ହୋଇ, ଏଡ଼େ ଅନୀତି କିମ୍ପାଇଁ କ୍ଷତ୍ରିଙ୍କର ନୀତି ଏ ବେଭାର । ମାତା ଭ୍ରାତା ସଙ୍ଗେ ମୁହିଁ, ସମର କରୁଥିଲଇଁ, ତୁମ୍ଭେ କିମ୍ପାଇଁ ମୋତେ କଲ ପ୍ରହାର ହେ ॥ ଆସିବା ବେଳରେ ତାରା, ଲେଉଟାଇ ନେଉଥିଲା, ଜାଣି ତୁମ୍ଭ ଅବିବେକ ପଣ । ମୁଁ ବୋଇଲି ରାମଚନ୍ଦ୍ର, ଧର୍ମକୁଳେ ଜାତ ହୋଇ, ମୋତେ ଅଧର୍ମ କରିବେ କି କାରଣ ହେ ॥ ଶ୍ରୀରାମ ବୋଲନ୍ତି ତାଙ୍କୁ, ନୃପ ପେଷିଲେ ଆମ୍ଭଙ୍କୁ, ଅଧର୍ମୀକୁ ଦଣ୍ଡ ଦେବା ପାଇଁ । ଜ୍ୟେଷ୍ଠ ଭାଇ ହୋଇ କନିଷ୍ଠ ଭାଇ ଭାରିଯା ହର ଏ ପାପ ମନେ ବିଗୁର କର

ନାହିଁ ହେ । କପିରାଜନ । ଏହି ଦଣ୍ଡକୁ ଅଛି ତୁମ୍ଭେ ଭାଜନ । ଆଉ ଦଣ୍ଡ ତୁମ୍ଭଙ୍କୁ ନ ଦେବ ଶମନ ବୋଲେ ବଶୀ ହୋଇଲା ସେ ମଣ୍ଡନ ହେ । ୫ ।



## ୧୨ଶ ଛାନ୍ଦ—ତାରାଶୋକ

ରାଗ—କଳସାବାଣୀ

ଅନ୍ତଃପୁରେ ତାରାରାଣୀ ବାରତା ପାଇ । ରୋଦନ କରି ଅଇଲା ବିହ୍ୱଳ ହୋଇ । ଦେଖିଲା ସେ ବାଳି ହୋଇଲାଣି ଅବଶ । ରାମକାଣ୍ଡ ଲାଗିଅଛି ହୃଦୟ ଦେଶ ॥ ଚରଣ ଧରିଣ ଉଚ୍ଚେ ରୋଦନ କଲା । ଆହା ପ୍ରାଣନାଥ ଗୁଡ଼ିଗଲ ବୋଇଲା ॥ ତୁମ୍ଭ ଅନୁରାଗ ଜାଣିଲି ଏତେକାଳେ । ମୋ କୋଳ ତେଜି ଶୋଇଣ ଧରଣୀ କୋଳେ ॥ ଅନାଥ ସୁଗ୍ରୀବ ରାମ ହୋଇଲେ ନାଥ । ଆମ୍ଭେ ଏବେ ଅନାଥ ହେଲୁ କପିନାଥ ॥ ଅତିସୁକୁମାର ତ ଅଙ୍ଗଦ କୁମର । ଏହାକୁ କାହାକୁ ଦେଲ ହେ କପିବର ॥ ମୋ ବୋଲ ନ କଲ ଫଳ ଲଭିଲ ଏବେ । ସୋଦରେ ଅମାତ୍ୟ କମ୍ପା ହୋଇଲ ତେବେ । ରାମ ଲକ୍ଷ୍ମଣ ସହିତେ ବାନର ବଳ । ପଛୋଆରି ସମସ୍ତେ ଦେଖିଣ ବିକଳ ॥ ବାଳି ବୋଲଇ ଶ୍ରୀରାମ ମୁଖକୁ ଚାହିଁ । ଅପରାଧ କ୍ଷମା ମୋର କର ଗୋସାଇଁ ॥ ଏକଇ ନନ୍ଦନ ମୋ ଅଙ୍ଗଦ କୁମର । ଏବେ ଏହାଠାରେ ରାମ କରୁଣା କର ॥ ଏତେ ବୋଲି ଅଙ୍ଗଦ ମୁଖକୁ ଚାହିଁଲା । ସୁଗ୍ରୀବ ତୁ ସେବୁଥିବୁ ବୋଲିଣ ବୋଇଲା । ସୁଗ୍ରୀବ କହିଲା ରାମ କାର୍ଯ୍ୟ କରିବ । ହେଳା କଲେ ଏ ମୋର ପ୍ରାୟେକ ହୋଇବ ॥ ହେମମାଳା ଦେଇଥିଲେ ବାସବ । ତାହା ବାଳି ଦତ୍ତ କଲା ସୁଗ୍ରୀବ ଗ୍ରୀବ ॥ ମାଳା ଦେଇ ପିଣ୍ଡରୁ ଜୀବନ ତେଜିଲା । ବହୁ ଯୁବତୀଙ୍କର କାରୁଣ୍ୟ ଶୁଭିଲା ॥ ପତି ମୃତ୍ୟୁ ଦେଖି ତାରା ବିକଳ ଚିତ୍ତ । ବୋଲଇ ସ୍ୱାମୀ ସଙ୍ଗତେ ଯିବି ନିଶ୍ଚିତ । ଏବେ ବୋଲି ସ୍ୱାମୀ ମୁଖେ ମୁଖ ଲଗାଇ । ଶବ ଆଲିଙ୍ଗନ କରି ଶୋଇଲା ଭୂଇଁ ॥ ଚରଣ ଧରିଣ ସେ ଅଙ୍ଗଦ କୁମର । ବିକଳେ ନୟନୁ ବହେ ନୀରନିକର ॥ ଏମନ୍ତ ବିକଳ ଦେଖି ସର୍ବ ମର୍କଟ । ସୁଗ୍ରୀବ ହୃଦୟେ ହେଲା ଶୋକ ପ୍ରକଟ ॥ ତାରା ଯେବେ ମରିବେଟି ସ୍ୱାମୀଙ୍କ ସଙ୍ଗର । ଆଉ କାକ ଜୀଇଁବେ ଅଙ୍ଗଦ କୁମର ॥ ମୁହିଁ ଯେବେ ଭ୍ରାତା ସଙ୍ଗରେ ନ ମରିବ । ଅକୀର୍ତ୍ତି ପାଇଣ ମହୀ ଭୋଗ କରିବ ॥ ଏତେ ବୋଲି ବହୁତ କରନ୍ତେ ରୋଦନ । ତାହା ଦେଖି ବିଚାରନ୍ତି ରଘୁନନ୍ଦନ ॥ ସୁଗ୍ରୀ ଯେବେ ଭ୍ରାତ ସଙ୍ଗତରେ ମରିବ । ଆମ୍ଭ କେମନ୍ତ ପ୍ରକାରେ ହୋଇବ ॥ ଏମନ୍ତ ବିଚାରି ତାଙ୍କୁ କହନ୍ତି ରୁଠ । ବିବିଧ ପ୍ରକାରେ କହି

ପ୍ରବୋଧ ପଢ଼ୁ ॥ ତେତେବେଳେ ମିତ ତା ନ କଲ ବିଗୃର । ବୋଲେ ବଳି ଏବେ କମ୍ପା ଶୋକ ପ୍ରଗୃର । ୧୨ ।

—୦—

## ୧୩ଶ ଛାନ୍ଦ

ରାଗ—କାମୋଦୀ

ତାର କହଇ ବାଣୀ ଶୁଣ ହେ ରଘୁମଣି, ଏଡ଼େ ଅଧର୍ମ କମ୍ପା କଲ । ବନବାସକୁ ଆସି, ମୋର ପତିଙ୍କୁ ନାଶି, ଏଥିରେ କି ଯଶ ପାଇଲ ହେ । ରଘୁନାଥ । ଆଜ ମୁଁ ହୋଇଲ ଅନାଥ । ଧିକ ଧିକ ହେ ପଣ, ଧିକ ହେ ରଘୁଗଣ, ଧିକ ଏ କୋଦଣ୍ଡ ଭରତ ହେ ॥ ତୁମ୍ଭ ଅଧର୍ମୀ ପଣ, ଦେଖି ହେ ରଘୁଗଣ, ଦଶରଥଙ୍କୁ ତହୁଁ ଦେଲେ । କୈକେୟୀ ସୁତ ଭରତ, ଅଯୋଧ୍ୟାରେ ରାଜତ୍ୱ, ରାଜେନ୍ଦ୍ର ପଣ ତାଙ୍କୁ ଦେଲେ ଯେ ॥ ତୁମ୍ଭ ଉପର ବଂଶ, ଭଗୀରଥ ନରେଶ, ଗଙ୍ଗାଙ୍କୁ ସ୍ୱର୍ଗରୁ ଆଣିଲେ । କପିଳ କୋପାନଳେ, ଦଗ୍ଧ ହୁଅନ୍ତେ କାଳେ, ତାଳ ଶୀତଳ ତାଙ୍କୁ କଲେ ହେ ॥ ପୂର୍ବେ ମୁଁ ଶୁଣିଥିଲି, ବଡ଼ ଧାର୍ମିକ ବୋଲି, ଏବେ ଦେଖିଲି ବଡ଼ ମନ୍ଦ । ଏଡ଼େ ପ୍ରାକର୍ମ ଯେବେ, ବହୁଛ ଭୁଜ-ଦଣ୍ଡେ, କମ୍ପା ହରିଲ ଦଶକନ୍ଧ ହେ ॥ ରାମ ବୋଲନ୍ତି ସଖି, ମୋର ଦୋଷ ନାହିଁଟି, ତାଙ୍କ ଅଧର୍ମେ ସେହୁ ମଲେ । ଜ୍ୟେଷ୍ଠଭାଇ ହୋଇଣ, କନିଷ୍ଠ ଭାରଯାକୁ ବଳତ୍କାର ପଣେ ହରିଲେ ଗୋ । ମହାସଖି, ଆଜ ମୁଁ ଫେଡ଼ିବି ଦୁର୍ଗତି । ଅଉଷଧି ଦେଇଣ, ରଖିବି ତାର ପ୍ରାଣ, ସଚେତ ହୋଇ ଉଠି ବସି । ରାମ ମୁଖକୁ ଗୃହିଁ, କହଇ ବକଳାଇ, ଶୁଣ ଧାର୍ମିକ ରଘୁବଂଶୀ । ହେ ରଘୁନାଥ । ଆଜ ମୁଁ ହୋଇଲି କୃତାର୍ଥ । ତୁମ୍ଭ ହସ୍ତେ ମରଣ, ପାଇ ହେ ରଘୁବୀର, ଯାଉଛୁ ବଇକୁଣ୍ଠ ପଥ ॥ ଏତେ ବୋଲିଣ ବାଳି, ଗଢ଼ିଲ ମସ୍ତକ ସ୍ଥଳୀ; ଅନ୍ତରୀକ୍ଷରେ ପ୍ରାଣ ଗଲ । ବୋଲଇ ବଳି ଶୁଣ, ଦେଖ ବାଳୀ ମରଣ, ବୈକୁଣ୍ଠପୁରରେ ମିଳିଲ ॥ ହେ ରଘୁନାଥ । ଆଜ ମୁଁ ହୋଇଲି କୃତାର୍ଥ । ଧିକ ଧିକ ଇତ୍ୟାଦି । ୭ ।

—❀—

## ୧୪ଶ ଛାନ୍ଦ

ରାଗ—ଭୈରବ ମଙ୍ଗଳ

ସଖେ ସୁଗ୍ରୀବ ଶୋକ ସଂହର ଏବେ ମନ କମ୍ପା କରୁଅଛ ବିକଳ । ଆମ୍ଭ ତୂଣୀରର ଶର ଅନିବାର କାଳଦେବର ଅଟନ୍ତି ଏହି କାଳ । କି ସଖେ ହେ । ଶୀଘ୍ରେ ବାଳିକ କର ଦହନ । ଆମ୍ଭେ ଆଜ୍ଞା ଦେଉଅଛୁଁ

ଆଗୋ ତାରା ଏବେ ମୁଞ୍ଚ ତୁମ୍ଭର ରୋଦନ ॥ ଅଙ୍ଗଦକୁ ଘେନ ଏବେ ମିତ୍ର ସଙ୍ଗେ ରଙ୍ଗେ ଭେଟକର କିଷ୍କିନ୍ଧ୍ୟାକଟକ । ଶ୍ରୀରାମ ଆଜ୍ଞାରେ ତାରାକୋକୁଁ ଆଣି ବାଳି ବସାଇଲେ ରତ୍ନବିମାନେକ ॥ ବିବିଧ ବାଦ୍ୟ ବଜାଇ ବାଳିପିଣ୍ଡ କଲେ ନେଇ ଶୀଘ୍ରେ ଅନଳେ ଦହନ ॥ ଅଙ୍ଗଦ ମୁଖାଗ୍ନି ଦେଇ ବାଳି ମୁଖେ ସ୍ନାନକର ପୂତ ହୋଇ ଅଇଲେ ବହନ ॥ ବାଳି ସାହ ସାରି ସର୍ବ କପି ମିଳି ସୁଗ୍ରୀ ସଙ୍ଗେ କଲେ ରାମଙ୍କୁ ଦର୍ଶନ । ହନୁକୁ ଚାହିଁ ଶ୍ରୀରାମ ଆଜ୍ଞାଦେଲେ ଅଭିଷେକ କରାଅ ସୁଗ୍ରୀବ ରାଜନ । ବାଳିକୁମରକୁ କର ଯୁବରାଜା ସମସ୍ତ ବାନରମାନେ କର ପୂଜା । ରାମଚନ୍ଦ୍ର ଆଜ୍ଞାପାଇ ସର୍ବବଳ ଆନନ୍ଦରେ ବଜାଇଲେ ଖିରବାଜା ॥ ଶ୍ରୀରାମ ବୋଲନ୍ତି ଆହେ କପିରାଜ ଏବେ ବରଷା ଋତୁ ହେଲ ପ୍ରବେଶ । ତୁମ୍ଭେ ହେଳା ନ କରିବ ଆମ୍ଭ କାର୍ଯ୍ୟେ ମାଲ୍ୟବନ୍ତେ ବଞ୍ଚୁ ବେନିମାସ ॥ ହେଉ ଦେବ ବୋଲି ସୁଗ୍ରୀବ ସହିତେ ସର୍ବସେନାମାନେ ଶିରେ କର ଦେଲେ । ବୋଲେ ବଶି ଲକ୍ଷ୍ମଣ ସଙ୍ଗରେ ଘେନ ରାମଚନ୍ଦ୍ର ମାଲ୍ୟବନ୍ତେ ବିଜେ କଲେ । ୭ ।



## ୧୫ଶ ଛାନ୍ଦ - ସୁଗ୍ରୀ ଅଭିଷେକ

ରାଗ– କେଦାର ଗୋପଜୀବନ ବୃତ୍ତେ

ଶ୍ରୀରାମ ଶ୍ରୀମୁଖ୍ ଶୁଣି, କପିକୁଳ ଚୂଡ଼ାମଣି, କିଷ୍କିନ୍ଧ୍ୟା କଟକେ ପରବେଶ । ସକଳ ତୀର୍ଥର ଜଳ ଆଣିଲେ ବାନରବଳ କଲେ ହେମକୁମ୍ଭେ ଅଧିବାସ ସେ । କପିରାଜନ । ଅଙ୍ଗଦକୁ ଘେନ ଅଧିବାସ, ନୃତ୍ୟ ଗୀତ କରିବାରେ ନଶି ଶେଷ ॥ ବିଜେ ହେମ ସିଂହାସନ, କପିକୁଳ ରାଜନ, ଅଙ୍ଗଦକୁ ବସାଇ କୋଳରେ । କରେ ଜଳ ଅଭିଷେକ, କଲେ ବ୍ରାହ୍ମଣ ଅନେକ, ଶ୍ୱେତଛତ୍ର ଧରାଇ ଶିରରେ ସେ । କପିରାଜନ । ବେନି ପାଶରେ ବେନି ଚାମର, ଖଟିଛନ୍ତି କପିବର ନିରନ୍ତର ॥ ବାଜଇ ବିବିଧ ବାଦ୍ୟ, ଶୁଭଇ ସ୍ୱର୍ଗକୁ ନାଦ, ନୃତ୍ୟ କରୁଛନ୍ତି ବାରନାରୀ । ତାରା ରୋମା ବେନି ପାଶେ, ଆବର ନାରୀ ବିଶେଷେ ସମ୍ପଦରେ ପୁନାସୀର ସରି ସେ । କପିରାଜନ । ବନ୍ଧାଇଣ ଜଳ ଅଭିଷେକ, ଅଙ୍ଗ ପୋଛି ମଣ୍ଡି ହୋଇଲେ କନକ ॥ ମୁକୁଟ କୁଣ୍ଡଳ ଚନ୍ଦ୍ରଳ, ବାହୁଟି ଅଙ୍ଗଦ ମାଳ, ନୃପସର ଦୋସର ପଦକ । ନୂପୁର ବେନି ଚରଣ, ଦିବ୍ୟମଣି ରତ୍ନଗଣ, ଅଙ୍ଗରେ ମଣ୍ଡିଲେ ସେ ଅନେକ । କପିରାଜନ । ନବତନ କନକ ବସନ ପିନ୍ଧି ବିଜେକଲେ କପିଙ୍କ ରାଜନ ॥ ଅଙ୍ଗଦ ଯେ ଦକ୍ଷିଣ ଦେଶେ, ବିଜେ ସୁଗ୍ରୀ ଅଗ୍ରଦେଶେ,

ସର୍ବସେନା ବିଜେ ଏକେ ଏକେ । ଅମୂଲ୍ୟ ଭୂଷଣଗଣ ସମସ୍ତ କପି ଭୂଷଣ, ଶୋଭା ଦିଶନ୍ତ ଇତରଲୋକେ । କପି ରାଜନ । ବିଜୟ ଯେ ଶ୍ୱେତଛତ୍ର ଛଳେ । ବେନିପୁଚ୍ଛ ବେନି ପାରୁଶରେ ଲୁଚେ ॥ ତାରା ରୋମା ବେନି ପାଶ, ହୋଇଣ ଦିବ୍ୟ ସୁବେଶ, ସୁଗ୍ରୀବ ବେନି ପାରୁଶେ ଦିଶେ । ଶୁକ୍ଳ ଅଶ୍ୱିନ ରୋହିଣୀ, ପୂର୍ଣ୍ଣିମୀତିଥି ରଜନୀ, ଉଦୟ ଶୁକଳଶଶୀ ଦିଶେ । କପିରାଜନ । ପୁଷ୍ପବୃଷ୍ଟି କରନ୍ତ ତରୁଣୀ । ବନ୍ଦାପନାକଲେ କପିଚୂଡ଼ାମଣି ॥ ଦର୍ଶନ କରନ୍ତ ଆସି, ରକ୍ଷକପିମାନେ ମିଶି, ନଉଛାଳ କରଣ ଚରଣେ । ଦ୍ୱିଜେ ଦେଲେ ବହୁ ଦାନ, ବସ୍ତ୍ର ଅଲଙ୍କାର ଧନ, ସନ୍ତୋଷ କରାଇ ଜଣେ ଜଣେ । କପିରାଜନ । ବଢ଼ାଇଣ କଲ ଅଭିଷେକ ସୁଖେ ଭୋଗ କଲେ କିଷ୍କିନ୍ଧ୍ୟା କଟକ ॥ ତାରା ଘେନି ଅନ୍ତଃପୁର ସୁଖେ କରଇ ବିହାର, ପାଶୋରିଲେ ମନୁ ସର୍ବ ଦୁଃଖ । ମଧୁପାନେ ହୋଇ ମତ୍ତ, କରାଇଣ ନୃତ୍ୟ ଗୀତ, ଭୋଗ କରଇ ବିପୁଳ ସୁଖ । କପିରାଜନ । ମନୋବାଞ୍ଛା ହୋଇଲା ସମ୍ପୂର୍ଣ୍ଣ । ବୋଲେ ବିଶି ସମ୍ପଦ ପାଇ ଅର୍ଜ୍ଜୁନ । ୮ ।

—×—

## ୧୭ଶ ଛାନ୍ଦ—ମାଲ୍ୟବନ୍ତ ଆରୋହଣ

ରାଗ—ଆଶାବରୀ

ମାଲ୍ୟବନ୍ତ ଗିରି ଶିଖରେ ଉଠିଣ ବୁଲିଣ ରାମ ପ୍ରଶଂସା କଲେ । ଦେଖ ଲକ୍ଷ୍ମଣ ଏ ଗିରି ସ୍ତିଗ୍ଧପ୍ରାୟ ମନକୁ ମୋର ଅବଶ କରେ । ହେ ଲକ୍ଷ୍ମଣ । ଦେଖ ଦେଖ ତମାଳ । ଗିରିନାରୀଙ୍କର କି କୁଚକୁଳ ॥ ପ୍ରଫୁଲ୍ଲ ପୁଷ୍ପ ବାନ୍ଧୁଲିତିକା ଶୃଙ୍ଗ ଉଚ୍ଚକୁଚ ଶୋଭା ଦିଶେ । ନବୀନ ପଲ୍ଲବ, କି କରପଲ୍ଲବ, ରଙ୍ଗଣୀଲତା ଅଧର କି ସେ । ହେ ଲକ୍ଷ୍ମଣ । ହେମ ପ୍ରାୟେକ କାନ୍ତି । ସ୍ଥୂଳଶିଳରେ ଏ ନିତମ୍ବ ବନ୍ତି ॥ ମୃଗଲୋଚନୀ କେଶରୀ କଟିଦେଶ, କୋକିଳଭାଷୀ ଏ ବରାଙ୍ଗନେ । ଗଜଗାମିନୀ ସୁକୁନ୍ତଳକାମିନୀ, ବିବିଧ ରଙ୍ଗରେ ଶିଳମାନେ । ହେ ଲକ୍ଷ୍ମଣ । କୁନ୍ଦପୁଷ୍ପଦଶନା । ରମ୍ଭୋରୁ ବିପୁଳ ସ୍ଥୂଳଜଘନା ॥ ରଙ୍ଗ ଶୁକଳ ଧାରବାରେ ଏ ଗିରି ବସନ ପିନ୍ଧିବା ପ୍ରାୟ ଦିଶେ । ଦେଖ ଗିରିକୋଟ ନିକଟ ହୋଇଛୁ ପାଷାଣ ସଉଧ ପ୍ରାୟ କି ସେ । ହେ ଲକ୍ଷ୍ମଣ । ସେହି କୋଟରେ ବାସ । ବଞ୍ଚିବା ଏ ବରଷା ବେନି ମାସ ॥ କୋଟେ ରହି ଧନୁ ତୂଣୀରଙ୍କୁ ଥୋଇ ବିବିଧ ଫଳ ନିର୍ଦ୍ଦେଶ କଲେ । ଘନମାଳା ଦେଖି ରଘୁକୁଳକ ସ୍ୱାମୀ ମନରେ ବହୁ ଆରତ ହେଲେ । ହେ ଲକ୍ଷ୍ମଣ । କାନ୍ଦୁଥିବେ ଜାନକୀ । କେଉଁଥିବେ ଆଉ ପାଇବା ଦେଖି । ଅଧୂରେ ତାହାଙ୍କୁ ନ ଖାଇଣ ଭୋଗ ନ କରିଣ କି ସେ ରଖିଥିବେ ।

କେଉଁବନ ଆମ୍ଭ କାଣ୍ତ ହୁତାଶରେ ସେ ଭସ୍ମରାଶି ହୋଇଯିବେ । ତାଙ୍କୁ ଲକ୍ଷ୍ମଣ କହେ ପ୍ରବୋଧିତା । ବୋଲେ ବଶି ସୀତା ପତିବରତା । ୭ ।

—×—

## ୧୭ଶ ଛାନ୍ଦ

ରାଗ—କଳଶା

ଦେଖ ହେ ଲକ୍ଷ୍ମଣ ଆସିଣ ଏ ଘନ ଗଗନ ଘୋଡ଼ାଇ ଦେଲା । ଜଳଧାରାଚୟ ଧନଞ୍ଜୟ ଜୟ କରଣ ମହୀ ପୂରିଲା । ଆହେ ଲକ୍ଷ୍ମଣ । ପ୍ରଖର ଚଣ୍ଡପବନ । ବାଶଦକାଳରେ ବାରନୁହେଁ ଏବେ ନଶା ଦିବସର ଭିନ୍ନ ॥ ସଉଦାମିନୀ କାମିନୀକୋଳେ ଯେହ୍ନ ଆରୋହିଛି ନୀଳଗଜ । ସୈନ୍ୟ ଯେହ୍ନ ମହାସମ୍ଭାରେ ବିଜୟ କରଛି ଜଳଦରାଜ । ଆହେ ଲକ୍ଷ୍ମଣ ॥ ଗିଳି ଦେଉଅଛି ଗିରି । ଏଗିରି ସହିତେ ଗିଳିଲେ ଆମ୍ଭଙ୍କୁ ବୀଡାରୁ ହୁଅନ୍ତପାରି ॥ ବକକୁଳ ମୋତି-ମାଳ ପ୍ରାୟ ଦେଖ ସବାଙ୍ଗେ ହୋଇଛି ମଣ୍ଡି । ଦର୍ଶନେ ମହାଭୟଦ କରାଉଛି ଆସେ କି ବିରହୀ ଦଣ୍ଡି । ଆହେ ଲକ୍ଷ୍ମଣ । ଫଣୀଙ୍କ ମଣି ଉଜ୍ଜ୍ୱଳେ । ମହାରାଜ ହିଗବିଜୟ ସମୟେ ମର୍କତ ହିହୁଡ଼ି କି ଜଳେ ॥ ଧରାଉଛି ପୁଣ୍ଡରୀକ ଛତ୍ରଚୟ ମୟୂରପୁଚ୍ଛ ଚରାସ । ମାକଣ୍ଡି କୁସୁମନକର ଭ୍ରମର ଡାକୁଛନ୍ତି ଚଉପାଶ । ଆହେ ଲକ୍ଷ୍ମଣ । ଧର ଶଙ୍ଖଶରାସନ । ବୃଷ୍ଟି କରୁଅଛି ଜଳଧାରା ଶର କରାଇଣ ତୀକ୍ଷଣ ମୁନ ॥ କେତକୀକେତନ ପ୍ରାୟ ଶୋଭିବନ ବୀରବାଦ୍ୟ ଘଡ଼ଘଡ଼ି । ବଜ୍ରାଘାତ ଗିରି ଶିଖରେ କରନ୍ତେ ପଡ଼ୁଛନ୍ତି ଶିଳେ ଝଡ଼ି । ଆହେ ଲକ୍ଷ୍ମଣ । କାହାଳୀ ଫଣିକ ବାଣୀ । ଜଳଜନ୍ତୁଚୟ ପ୍ରବଳ ଶବଦ ମଉନ କୋକିଳ ଶୁଣି । ଶିଖୀ ବାରାଙ୍ଗନା କରୁଛନ୍ତି ନୃତ୍ୟ ସଙ୍ଗୀତ କରେ ଡାହୁକ । ଘଟ ପରାୟକ ଏବାର କରନ୍ତି ସକଳ ହିଗରେ ଭେକ । ଆହେ ଲକ୍ଷ୍ମଣ । ଚାତକ ଦୁଃଖକୁ ଖଣ୍ଡେ । କଦମ୍ବ କାଦମ୍ବ ପୁଷ୍ପବନ୍ତି ହୋଇ ଚନ୍ଦ୍ରାତପ କି ଟେକେ ମଣ୍ଡେ ॥ ଏ ଘନକାଳରେ ଥାଇଃ ମୋ କୋଳରେ ଡ଼ରୁ ଥିବେ ଆଉ ଜାନକୀ । ଏ ଘନ ସ୍ୱନ ଶୁଣିଣ ଅବଚ୍ଛିନ୍ନ ଜୀବନରେ ଥିବ କିକ । ଆହେ ଲକ୍ଷ୍ମଣ । ବିଦ୍ୟୁତକୁ କରଇ ହସ୍ତ । ଚମକ ମୋ ଅଙ୍ଗରେ ଲୀନ ହୁଅଇ ପ୍ରେମଶୀଳା ରସବନ୍ତି ॥ ମୁଁ ଥିଲା ବୋଲିବେ ମୋର ନନ୍ଦନୀକ ରକ୍ଷି ନ ପାରିଲେ ରାମ । ତପନ ବୋଲିବେ ଶଶଧର ପ୍ରାୟ ଲଗାଇବେ ମୋତେ ଶ୍ୟାମ । ଆହେ ଲକ୍ଷ୍ମଣ । ଋଷିନନ୍ଦନୀକ ସଙ୍ଗତେ ନ ଦେଖି ରୋଦନକ ନ କରିବେ ॥ ଆମ୍ଭଙ୍କୁ ମୁରୁଛି ନ ପାରି ଜାନକୀ ଅଇଲେ ଘୋର ବନକୁ ॥ କାଳବେଳ ଜାଣି ସେବା କରଥାନ୍ତି ଚାକଣ ମୋର ମନକୁ ॥

ଆହେ ଲକ୍ଷ୍ମଣ । ମୃଗୟାକୁ ଯାଇଥିଲେ । ଯିବା ପଥକୁ ଅନୁସରି ଶରୀରେ ଜୀବନ ନଥାଇ ଭଲେ ॥ କାନ୍ତା ଗୁଣ ଗୁଣି ପୁଣି ରଘୂମଣି ନୟନୁ ବହଇ ନୀର ॥ ଚରଣ ଚୁପିଣ ପ୍ରବୋଧି ବଚନ କହନ୍ତି ଲକ୍ଷ୍ମଣବୀର । ଶୁଣି ଶ୍ରୀରାମ । କଥନେ ତେଜିଲେ ମୋହ । ବୋଲଇ ବଳି କେତେ ଦିନ ଅନ୍ତରେ ଶେଷ ହୁଏ ଜଳବାହ । ୧୦ ।



## ୧୮ଶ ଛାନ୍ଦ—ରାମଂକ ଶୋକ

ରାଗ—ଗୁଜ୍ଜରୀ ଖେମଟା

ମାଲ୍ୟବନ୍ତ ଶିଖେ ରଘୁମଣି । ବକନେ ଜାନକୀ ଗୁଣ ଗୁଣି । ଗୋରାଇ ନେଲା ମୋ ପ୍ରାଣବଲ୍ଲଭୀକି ସେ ଦୁଷ୍ଟ ସଂପତିସିନ୍ଧୁ ଜଣି । ଗୋ ବଇଦେହୀ । ତୁ ତ ରହିଲୁ ଦରିଆ ପାରିହୋଇ ଗୋ ॥ ତୋର ମୁଖକୁ ଚନ୍ଦ୍ରମା ସରି ନୋହି ଗୋ ॥ ମେଘମାଳମାନେ ମେଘେ ଯାଅ । ଯେ ଯାହା ଦେଶରେ ରହିଥାଅ । ସୀତାଙ୍କ ରୂପକୁ କେତେ ବାହୁନିବି, ଝୁରି ଝୁରି କ୍ଷୀଣ ହେଲା ଦେହ ଗୋ ॥ ଅନେକ ଦେଶର ଦଣ୍ଡଧାରୀ । ଆସିଥିଲେ ତୋତେ ଆଶ୍ରେ କରି । ତୋହର ମନକୁ କେହି ନ ଅଇଲେ, ବରମାଳା ଦେଇ ମୋତେ ବରି ଗୋ । କେତେ ଦିନ ବସି ବିଶ୍ୱକର୍ମା, ଗଢ଼ିଥିଲେ ତୋର ରୂପସୀମା । ଚରଣଠାରୁ ଅଙ୍ଗୁଳି ପରିଯନ୍ତେ ବର୍ଣ୍ଣି ନ ପାରିବେ ହର ବ୍ରହ୍ମା ଗୋ ॥ ଶ୍ରୀରାମଚନ୍ଦ୍ର ବ୍ୟାକୁଳ ଶୁଣି, ଆକୁଳ ଲକ୍ଷ୍ମଣ ବୋଲେ ବାଣୀ । କାହିଁ ପାଇଁ ଦେବ କରୁଅଛ ଚିନ୍ତା, ନିଶ୍ଚୟ ପାଇବ ଠାକୁରାଣୀ ହେ । ସୀତାକାନ୍ତ । ଛାର ଅସୁର କି ଏଡ଼େ ବଳବନ୍ତ ହେ । ବୋଲେ ବଳି ଶୁଣି ରାମ ତୋଷ ଚିତ୍ତ ହେ । ୫ ।



## ୧୯ଶ ଛାନ୍ଦ

ରାଗ—ରାମକେରୀ

ସୁଗ୍ରୀ ରାଜସମ୍ପଦ ପାଇ କରଇ ବଇଭୋଗ । ତାରାରାଣୀରେ ବଢ଼ାଇଲା ସେ ମହା ଅନୁରାଗ ॥ ନ ଜାଣଇ ଖରା ବରଷା ଅନ୍ତଃପୁରରେ ପଶି । କରେ ବିବିଧ କେଳିରଙ୍ଗ ଘେନିଣ ରୁଚିକେଶୀ ॥ ଏକଦିନେ ଆସ୍ଥାନ କରି ବିଜେ ସୁଗ୍ରୀବ ରାଜ । ଦେଖିଲେ ମନ୍ତ୍ରୀମାନେ ତାଙ୍କୁ ବଳ ବଳରୁ ତେଜ । ଦର୍ଶନ କରି କପିସେନାମାନେ ଜୟ ଉଚ୍ଚାରିଲେ । ଯାର ଯେତକ କଥା ଥିଲା ସକଳ ଜଣାଇଲେ ॥ ସାବଧାନ ହୋଇଣ କପି ସମସ୍ତ କଥା ଶୁଣି । ଯାହା ଯେମନ୍ତେ ଉଚିତ ତେମନ୍ତେ କହଇ ବାଣୀ । ସମ୍ପଦରେ ମତ୍ତ ହୋଇଲା ସେ ସବୁ

ପାସୋରଣ । ରାମ ସକାଶୁଁ ହୋଇଅଛୁ ସୁଗ୍ରୀବ ପୂର୍ଣ୍ଣକାମ ॥ ମନ୍ତ୍ରୀବର ହନୁମନ୍ତ ଯେ ଏହି ସମୟେ କହେ । ଏକଇ କଥାକୁ ଶୋଦେବ ମତେ ହୁଅଇ ଭୟେ । ବରଷା ଋତୁ ଶେଷ ହୋଇ ହୁଏ ଶରଦକାଳ । ଶ୍ରୀରାମଙ୍କୁ କଷ୍ଟ କରଣ ଦେବ ହୋଇଲ ଭୋଳ ॥ ପରୋପକାର ମହାପୁଣ୍ୟ କରିଲେ ସ୍ୱର୍ଗପାଇ । ପ୍ରତି ଉପକାର ନ କଲେ ବହୁତ ପାପ ହୋଇ । ରାମ ତୁମ୍ଭ ସଙ୍ଗେ ମଇତ୍ର ହୋଇ ଏ ସୁଖ ଦେଲେ । ତୁମ୍ଭେ ତାଙ୍କୁ ମନା ନ କଲ ମାଲ୍ୟବନ୍ତକୁ ଗଲେ ॥ ଯେଉଁ କଷ୍ଟକର ଥିଲଇଁ ସେଇ ହେଲଣି ପାର । ଶୁଣି ତା ଚକିତ ହୋଇଲେ ସୁଗ୍ରୀବ ଦଣ୍ଡଧାରୀ । ଆହେ ହନୁ ଭଲ କହିଲ ମୋହର ନାହିଁ ମନେ । ଆମ୍ଭର ଉଲଘି ଲଗାନ୍ତୁ ଏବେ ଯେ କପିମାନେ ॥ ଏତେ ବୋଲି କପିରାଜନ କପିସେନାକୁ ଚାହିଁ । ଚାରି-ଦିଗକୁ ଯାଅ ଏବେ ଆମ୍ଭର ଆଜ୍ଞାପାଇ ॥ ମହୀରେ ଯେତେ ଋକ୍ଷକପି ସବୁଙ୍କୁ ଆସ ଘେନ । ପଞ୍ଚଦଶ ଦିନେ ନଇଲେ ଛେଦିବଇଁ ମୂର୍ଦ୍ଧନ । ଆଜ୍ଞାପାଇଁ ବାନରଦୂତେ ଚଉଦିଗକୁ ଗଲେ । ଯାହାକୁ ଯେଉଁରୂପେ ଆଜ୍ଞା ସନମତ ସେ କଲେ । ଆସ୍ଥାନ ଭାଙ୍ଗିଣ ସୁଗ୍ରୀବ ଅନ୍ତଃପୁରରେ ପଶେ । ବୋଲେ ଋଷି ତାରା ଆସିଣ ଖଟେ ସୁଗ୍ରୀବ ପାଶେ ॥

## ୨୦ଶ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

ବରଷା ଅନ୍ତେ ମାଲ୍ୟବନ୍ତେ ସ୍ଫଟିକଶିଳାରେ ବିଜୟ ହରି । ଲକ୍ଷ୍ମଣ ମୃଗୟା ବିଜୟ କରନ୍ତେ ପ୍ରବେଶ ହୁଏ ଶର୍ବରୀ ॥ ପୂର୍ଣ୍ଣ ଶରଦ ସୁଧାକର ଦେଖିଣ ଦଶରଥଙ୍କ ନନ୍ଦନ । ନେନଲୋଚନୁ ଅଶ୍ରୁଧାରା ବହଇ ଚିନ୍ତି ପ୍ରିୟାର ବଦନ ॥ ଆହାରେ ଜନକନନ୍ଦିନୀ ଜାନକୀ ତୋ ପ୍ରାୟ ସୁନ୍ଦରୀ ନାହିଁ । ଯୁବତୀ ଅମୂଲ୍ୟରତନ ହରାଇ ଲୋଡ଼ିଲେ ପାଇବ କାହିଁ । ଯୋଷାମଣିଆରେ ଯାମିନୀ ଶେଷରେ ବସୁ ଯେ ଉନ୍ନିଦ୍ର ହୋଇ । ଅପହ୍ନୁତକାଳେ ମୋହର ଶ୍ରୀମୁଖ ଦର୍ଶନ କରିବାପାଇଁ ॥ ଏବେ କାହା ମୁଖ ପ୍ରଭାତେ ଚାହିଁବୁ କହିବୁ କାହାକୁ ହସି । ଶରଦଶଶୀ ଦେଖାଇ ଦେଉଥିବୁ କାହାର ଅଙ୍କରେ ବସି ॥ କେ ତୋତେ ଶରଧା ପାଇଣ ସୁବେଶ କରିବାରେ ଚନ୍ଦ୍ରମୁଖୀ ॥ ଆରେ ବରାଙ୍ଗନେ କାହା ଆଲିଙ୍ଗନେ ହୋଇବୁ ପରମସୁଖୀ ॥ କେ ମୋତେ ସପ୍ରେମ କରିଣ କହିବ ଭୁଜବଳେ ଛନ୍ଦି ଗଲେ । କେ ମୋତେ ଜଳଧର ଏବେ ଜଗିବ ମୃଗୟା ବାହୁଡ଼ା ବେଳେ । ମନଦୁଃଖ ଦେଖି କେ ରୁଷ୍ଟି କହିବ ବସିଣ ମୋହର କୋଳେ ॥ କେ ମୋର ଚରଣ ପଖାଳି ପାଦୁକ ପାଇଣ ଶିରେ

ସିଞ୍ଚିବ । କେ ମୋର ଅଙ୍ଗରେ ସ୍ୱେଦବିନ୍ଦୁ ଦେଖି ବସନାଞ୍ଚଳେ ବିଞ୍ଚିବ ॥ କେ ମୋର ଶୟନେ ଚରଣ ଚାପିଣ ବସି ଉନ୍ନିଦ୍ର ହୋଇବ । ସଜନନ୍ଦିନୀ ହୋଇଣ କେ ତୋହର ପ୍ରାୟେକ ଦୁଃଖ ସହିବ । ଶ୍ରୀରାମ କାରୁଣ୍ୟ କରୁ କରୁ ମୃଗ ଯେନ ଲକ୍ଷ୍ମଣ ଅଇଲେ । ଲକ୍ଷ୍ମଣଙ୍କୁ ଶୋକେ ଆତଙ୍କ ହୋଇଣ ପ୍ରବୋଧ କରି କହିଲେ ॥ ସାନୁଜ କହନ୍ତେ ଶୋକ ମନୁ ତେଜ କହନ୍ତି ଜାନକୀପତି । ଦେଖ ଲକ୍ଷ୍ମଣ ହୃଦୟ ଦହୁଅଛି ଶରଦ ରଜନୀପତି ॥ ଶରଦଋତୁ ପ୍ରବେଶ ଗୃହେଁ ଦେଖ ନିର୍ମଳ ହୁଏ ଆକାଶ । ସରିତ ସରୋବର ଜଳ ନିର୍ମଳ ବହୁ ବିକଶିତ କାଶ ॥ ମରାଳମାନେ ଯେ ହୋଇ ମହାମତ୍ତ ଉଚେ କରୁଛନ୍ତି ଧ୍ୱନି । ଶୋଭା ଦେଖାଇ ସେ ସକଳ ବିଗରେ ଶରଦଋତୁ କାମିନୀ ॥ ତନୁ ନିର୍ମଳ ମୁଖ ଚନ୍ଦ୍ରମଣ୍ଡଳ ନୀଳ ଉତ୍ପଳ-ନୟନା । ବିମ୍ବ-ଅଧରୀ ସେଫାଳିକା କଳିକା-ଦଶନୀ କାଶ-ବସନ ॥ କଇରବ-ହାସୀ ମନୋହରକେଶୀ ବର୍ତ୍ତୁଳ-ଭୃଙ୍ଗ ସୁସ୍ତନା । ମଧୁକର-କେଶୀ ଖଣାଝଣାଭାଷୀ ମତ୍ତମରାଳ ଗମନା ॥ ଏ ଋତୁ ଯାମିନୀ ଦେଖି ମୋ କାମିନୀ କା ସଙ୍ଗେ ବଞ୍ଚିବ ଦିନ । କାହା ସଙ୍ଗତରେ ଲୀଳା କରିବ ସେ ହୋଇଣ ମୋ ସଙ୍ଗ ଭିନ୍ନ ॥ ଲକ୍ଷ୍ମଣ ଜଣାନ୍ତି ଶୁଣ ଆହେ ଦେବ ତୁମ୍ଭ ରମା ଅଗ୍ନିବାଶି । ଅସୁରଚୟ ମଧୂମାଚ୍ଛି ପରାୟ ତାହାଙ୍କୁ କି ପାରିବେ ପଶି ॥ ଜାନକୀ ତୁମ୍ଭର ସାକ୍ଷାତ କମଳା ତୁମ୍ଭେ ସ୍ୱୟଂ ନାରାୟଣ । ଏକଥାମାନ ମନରେ ନ ବିଚାରି କପାଇଁ କର କାରୁଣ୍ୟ ॥ ଭଲା ଏ ବରଷା ହୋଇଲା ଭରସା ମାରିବା ଅସୁରକୁଳ । ବୋଲଇ ବିଶି ସଉମିତ୍ରି କହନ୍ତେ ତେଜିଲେ ରାମ ବିକଳ । ୧୦ ।

---

## ୨୧ଶ ଛାନ୍ଦ

ରାଗ—ଧନାଶ୍ରୀ ପଡ଼ତାଳ

ଶୁଣ ହେ ସାନୁଜ ସୁଗ୍ରୀବର ଜ୍ଞାନ ହାରିଲା । ସମ୍ପଦ ମଦିରା ପାନେ ଆମ୍ଭଙ୍କୁ ପାସୋରିଲା ॥ ବରଷା ଶେଷ ଶରତଋତୁ ଏବେ ହୋଇଲା । କିଷ୍କିନ୍ଧ ପୂରିଗଲା ଆମ୍ଭପାଶକୁ ସେ ନଇଲା ॥ ଆମ୍ଭେ ତାକୁ ଯେତେ ଉପକାର କରି ହୋଇଲା । ପ୍ରତ୍ୟୁପକାର କରିବା କଥା ନ ଚିନ୍ତେଇଲା ॥ ସୁଗ୍ରୀବ ଯେବେ ଆମ୍ଭର କାର୍ଯ୍ୟ ହେଳା କରିବ । ବାଳି ପ୍ରାୟେ ହୋଇ ଆମ୍ଭ କାଣ୍ଡମୁନେ ମରିବ ॥ ତୁମ୍ଭେ ଯାଇଁ ତାଙ୍କୁ ଭୟ ଦେଖାଇଣ କହିବ । ଆମ୍ଭରେ ମଇତ୍ର ବୋଲି ଉପ୍ରୋଧ ନ କରିବ ॥ ଟିବୋଲିବ ଯେବଣ ବାଣେ ବାଳୀବୀର ମଲାଟି । ସେ କାଣ୍ଡେ ଲେଉଟି ରାମ ତୂଣେ ପଶାଇଲାଟି ॥ ବାଳିଯିବା ମାର୍ଗକୁ

ଶରଧା ଯେବେ ନାହିଁଟି । ତେବେ ରାମଚରଣ ଦର୍ଶନ କରି ଯାଇଁଟି ॥ ଲକ୍ଷ୍ମଣ ବୋଲନ୍ତି ଦେବ ସୁଗ୍ରୀ ବଡ଼ ଦୁଷ୍ଟ ହେ । ତାଙ୍କୁ ମାରି ଅଙ୍ଗଦକୁ ଦେବା ଏହି ରାଷ୍ଟ୍ର ହେ ॥ ଶୁଣିଣ ଶ୍ରୀରାମ କରେ ଛୁଇଁ ଭୂମିଶ୍ରୁତି ଯେ ॥ ଏହାକଲେ ନାଶ ଯିବ ସକଳ ସୁକୃତି ଯେ ॥ ଜାଣିଅଛ ଯେଉଁ ରୂପେ ହୋଇଥାଇ ମିତ୍ର ହେ । ମିତ୍ରଦ୍ରୋହ କଲେ କି ବୋଲିବେ ଏ ଜଗତେ ହେ ॥ ତୁମ୍ଭେ ତାଙ୍କୁ ଉଚିତ ବେଶରେ ବାଣୀ କହିବ । ତାର ଅପରାଧ କଲେ ମନରେ ନ ଧରିବ ॥ ଶ୍ରୀରାମଙ୍କ ଆଜ୍ଞାରେ ଲକ୍ଷ୍ମଣ ହେଲେ ବାହାର ॥ ବୋଲେ ବଶି ଧନୁ ତୁଣୀ ଘେନି ଗମେ ପ୍ରଖର । ୧୨ ।

---

## ୨୨ଶ ଛାନ୍ଦ

ରାଗ—ମଙ୍ଗଳ ଗୁଜ୍ଜରୀ

କିଷ୍କିନ୍ଧ୍ୟା ଗୁହାର ଦ୍ୱାରେ ଲକ୍ଷ୍ମଣ ପ୍ରବେଶ । ଦେଖିଣ ବାନର ଦ୍ୱାରୀ କରି ବହୁ ରୋଷ ॥ ଶାଳଶିଳ କରେ ଧରି ଓଗାଳିଲେ ଦ୍ୱାର । ଦିଶନ୍ତି ବାନରେ ମତ୍ତଗଜର ଆକାର ଯେ ॥ କେ ବୋଲଇ ରାମ ଭାଇ ହୋଇଛନ୍ତି କ୍ରୋଧ । କେ ବୋଲେ ବାଳିକି ପରା ଏହୁ କଲେ ବଧ କେ ବୋଲଇ ଏବେ ଆସିଛନ୍ତି କି ବିଗ୍ରହରେ । କେ ବୋଲଇ ଜଣାଇବା ରାଜାଙ୍କ ଛାମୁରେ ॥ ଏତେ ବୋଲି ଜଣାଇଲେ ରାଜାଙ୍କ ଛାମୁରେ । ହେ ଦେବ ରାମସାନୁଜ ଆସିଛି କୋପରେ ॥ ଶିଳାମାନ ଧରିଣ ଓଗାଳିଛନ୍ତି କପି । ଉଭା ହୋଇଛନ୍ତି ଦ୍ୱାରେ ହୋଇ ମହାକୋପୀ ॥ କନକଗିରି ପରାୟେ ପାଉଛନ୍ତି ଶୋଭା । ନିର୍ଧୂମ ଅନଳ ପ୍ରାୟେ ନୟନର ପ୍ରଭା ॥ ଧନୁରେ ଦେଇଣ ଗୁଣ ଧରିଛନ୍ତି ଶର । ଶୁଣିଣ ସୁଗ୍ରୀବ ଭୟେ ହୋଇଲେ କାତର ॥ ଆଜ୍ଞା ଦେଲେ ଅଙ୍ଗଦ ହେ ଘେନିଆସ ଯାଇଁ । ରାମଭ୍ରାତ କୋପ କରିଛନ୍ତି କାହିଁପାଇଁ ॥ ଅଙ୍ଗଦ ଦର୍ଶନ କରି ଘେନିଣ ଅଇଲେ । କିଷ୍କିନ୍ଧ୍ୟା କଟକ ଦେଖି ବହୁ ପ୍ରଶଂସିଲେ ॥ ଧବଳ ମେଘମାନଙ୍କ ପ୍ରାୟେ ପୁର ଶୋଭା । ରାଜାଙ୍କ ନବର ସ୍ୱର୍ଗ ରାଜାପୁର କିବା ॥ ବେନିପାଶେ ସେନାପତିମାନଙ୍କର ପୁର । ଉଚ୍ଚ ପ୍ରାଙ୍ଗଣେ ଦାଣ୍ଡକୁ ଦିଶଇ ସୁନ୍ଦର ଘସରାମାନଙ୍କେ ପାଉଅଛି ଦିବ୍ୟ ଶୋଭା । ବୋଲେ ବଶି ଲକ୍ଷ୍ମଣ ମନରେ କଲେ ଲୋଭା । ୧୩ ।

---

## ୨୩ଶ ଛାନ୍ଦ

ରାଗ — ଦକ୍ଷିଣ କାମୋଦୀ

କଟକ ଭିତରେ ପଶି ଦେଖି ଦେଖି ଗଲେ । ନବରର ସିଂହଦ୍ୱାରେ ପରବେଶ ହେଲେ ॥ ପାଞ୍ଚଦ୍ୱାର ପାର ହୋଇ ଯାଇ ଉଭା ହେଲେ । ଅନ୍ତଃପୁର ସ୍ଥଉଣ ସେ ଅପସର ଗଲେ ॥ ହେମମୟ ସ୍ତମ୍ଭେ ଅଛି ହେମଖଟ ଦୋଳ । ହେମ ଶିକୁଳରେ ଖଞ୍ଜା ଶୋହେ ହେମଝୁଲୀ ॥ ତାର ରୋମା ସ୍କନ୍ଧେ ଦେଇଅଛି ବେନ-ଭୁଜ । ମଧ୍ୟରେ କରଛି ବିଜେ କପିକୁଳରାଜ ॥ ଚବୁକ ଧରଣ ସେ ଚୁମ୍ବଇ ବିମ୍ବ ଓଷ୍ଠୀ । ସେକାଳେ ପଡ଼ିଲା ଯାଇ ଲକ୍ଷ୍ମଣଙ୍କ ଦୃଷ୍ଟି ॥ ଧନୁର୍ଗୁଣ ଆମଞ୍ଚଣ ଟଙ୍କାର ସେ କଲେ । ଘୁଞ୍ଚି ଆସନ୍ତେ ସୁଗ୍ରୀବ କାତର ହୋଇଲେ ॥ ତାରଙ୍କୁ ବୋଇଲେ ତୁମ୍ଭେ ଯାଇ କର ଭେଟ । ଯେମନ୍ତ ତାଙ୍କର ମନ ହୁଏ ମହାହୃଷ୍ଟ । ଦୋଳରୁ ଓହ୍ଲାଇଣ ଆସଇ ବରନାରୀ । ନତମ୍ବବକ୍ଷର ଦୁଇ ଉଚ୍ଚ କୁଚ ଭାରି ॥ ଚଳନ୍ତେଣ ନୂପୁର ଯେ ରୁଣଝୁଣ ବାଜେ । ଡିଣ୍ଡିମ ବାଜଇ କି ମଦନ କଲେ ବିଜେ । କୁସୁମ ସହିତେ ତାର ଫିଟିଅଛି ବେଣୀ । ତୁଟି ପଡ଼ୁଅଛି ତାର ଉରହାର ଶ୍ରେଣୀ ॥ ନିତମ୍ବରୁ କାଞ୍ଚିଦାମ ପଡ଼ୁଅଛି ଖସି । ତାମ୍ବୁଳ ପିକ ପାକଇ ମନ୍ଦ ମନ୍ଦ ହସି ॥ ଓଢ଼ଣା ବସନ ମହୀ ଚରଣରେ ଲେଟି । ନୀବିବନ୍ଧ ଛନ୍ଦ ଅଛି ମନ୍ଦ ମନ୍ଦ ଫିଟି ॥ ମଧୁପାନେ ରଙ୍ଗିମା ଦିଶେ ନୟନ ବେନି । ରଙ୍ଗାଧରୀ ରଙ୍ଗଚନ୍ଦ୍ର ଭାଲେ ଅଛି ଘେନି ॥ ଲକ୍ଷ୍ମଣଙ୍କୁ ଦେଖିଣ ସେ ଶିରେ କର ଦେଲେ । ସମ୍ମୁଖେ ଚନ୍ଦ୍ରବଦନୀ ଉଭା ଯେ ହୋଇଲେ ॥ ଦେଖିଣ ଲକ୍ଷ୍ମଣ ଲଜେ ହେଲେହେଟମୁଖ । ବୋଲେ ବଶି କହିଲେ ଶ୍ରୀରାମଚନ୍ଦ୍ର ଦୁଃଖ । ୧୫ ।

—×—

## ୨୪ଶ ଛାନ୍ଦ

ରାଗ—ଆହାରୀ

ସେ ତାର ରାଣୀ, କହେ ମଧୁର ବାଣୀ, ସୁଗ୍ରୀବ କି ତୁମ୍ଭ କାର୍ଯ୍ୟ ଅଛି ନ ଜାଣି ॥ ପେଷିଛି ଦୂତ, ସେ ଆସିବେ ତ୍ୱରିତ, ବାନର ବଳତ ଘେନି ଭେଟିବ ମିତ ॥ ଚିନ୍ତା ରାଘବ, ମନେ ପ୍ରିୟାର ଭାବ, ରଜନୀ ଦିବସ ତାଙ୍କୁ ସରୁ ନ ଥିବ ॥ ତୁମ୍ଭେ ତ ଜାଣ; ସର୍ବ ଶାସ୍ତ୍ର ପୁରାଣ, ସଜ୍ଜନ ଜନରେ କୋପ କେଉଁ କାରଣ ॥ ଶୁଣି ସୁମନ, ଦଶରଥ ନନ୍ଦନ, ସୁଗ୍ରୀବ ଏବେ ସେ ଆସି କରୁ ଦର୍ଶନ ॥ ଶୁଣିଣ ତାର, ଯୁବତୀଙ୍କର ଉତ୍ତର, ବାହୁଡ଼ିଣ ଯାଇଁ ସୁଗ୍ରୀବ କଲା ଧୀର ॥ ସୁଗ୍ରୀବ ଆଣି, ଭେଟାଇଲା ତରୁଣୀ, ଲକ୍ଷ୍ମଣଙ୍କୁ ଆଲିଙ୍ଗନ କଲା ସେ ପୁଣି । କଲାକ ପୂଜା, ତାଙ୍କୁ ମର୍କଟ ରାଜା,

ବୋଲଇ ଖୋଜାଇ ଦେବ ମିତ୍ର ଭରସା ॥ ବାନରସାଇଁ, ରାମ ଦର୍ଶନ ପାଇଁ, ଲକ୍ଷ୍ମଣଙ୍କୁ ହେମ ସୁଖାସନେ ବସାଇ ॥ କିଷ୍କିନ୍ଧ୍ୟାରାଜ୍ୟେ, ସୁଖାସନରେ ବିଜେ, ବିବିଧ ବାଦ୍ୟମାନ ତ ଗୁମୁରେ ବାଜେ । ବାନର ବଳ, ଚଳେ ମହାଗହଳ, ଯାନ ଚଢ଼ି ଆରୋହଣ କଲେ ଅଚଳ ॥ ସୁମିତ୍ରାସୁତ, ପେଷି ବିକଳ ଚିତ୍ତ, ବୋଲେ ବଶି ରାମ ହୋଇଥିଲେ ଦୁଃଖିତ । ୧୨ ।

—×—

## ୨୫ଶ ଛାନ୍ଦ  ସୈନ୍ୟ ପ୍ରବେଶ

ରାଗ—କାଫି

ଲକ୍ଷ୍ମଣ ସଙ୍ଗେ ସୁଗ୍ରୀବ କଲେ ଦର୍ଶନ । ଦେଖିଣ ଉଠି ତାଙ୍କୁ ଶ୍ରୀରାମ ଯେ କଲେକ ଆଲିଙ୍ଗନ ॥ ରାମ ବୋଲନ୍ତି ହେଲ କିଲ କି ମିତ । ସୁଗ୍ରୀବ କର ଯୋଡ଼ି ଜଣାଇ ହେ ଦେବ ପେଷିଛୁ ଦୂତ ॥ ଆଜି କାଲି ଭିତରେ ଆସିବେ ବଳ । ଏ କଥାକୁ ମୋ ଦେବ ସନ୍ଦେହ ହେ ତୁମ୍ଭେ ମନେ ନ ଘେନ ॥ ସୁଗ୍ରୀ ରାମ କଥା ହୋଇବା ଭିତରେ । ଦିନକର ଅଦୃଶ୍ୟ ହୋଇଲେ ସେ ସୈନ୍ୟ ପାଦଧୂଳିରେ ॥ ମୁଖରାବ ଶବଦେ ଉଚ୍ଛୁଳେ ମହୀ । କୂଳ ଲଙ୍ଘିଣ ହବା ସାଗର ହେ ଆସୁଅଛଇ ବହି ॥ ରାମ ବୋଲନ୍ତି ଶୁଭଇ ତ ଚହଳ । ସୁଗ୍ରୀ ବୋଲନ୍ତି ଦେବ ଅଇଲେ ହେ ଆମ୍ଭ ବାନର ବଳ ॥ ପ୍ରଥମେ ଶତବଳି ଦର୍ଶନ କଲା । ଦଶକୋଟି ସହସ୍ର ବାନର ହେ ସଙ୍ଗେ ଘେନି ଅଇଲା ॥ ସୁଷେଣ ସଙ୍ଗେ ଦଶସହସ୍ର କୋଟି । ଦଶସହସ୍ର କୋଟି ବାନର ହେ ଘେନି କେଶରୀ ଭେଟି ॥ ଦ୍ୱାଦଶସହସ୍ର କୋଟି ଘେନିଣ ନୀଳ । ପନ୍ଦର ସହସ୍ର ଗବାକ୍ଷର ହେ ସଙ୍ଗେ ବାନର ବଳ ॥ ଗବୟ ସଙ୍ଗେ ସପ୍ତ କୋଟି ପନ୍ଦର । ଦଧିମୁଖ ଘେନିଣ ଭେଟିଲା ଯେ ଶତକୋଟି ବାନର ॥ ମହେନ୍ଦ୍ର ସଙ୍ଗେ ପାଞ୍ଚ ସହସ୍ର କୋଟି । ଦ୍ୱିବିଦ ସଙ୍ଗେ କୋଟି ସହସ୍ର ଯେ କପି ଘେନିଣ ଭେଟି ॥ ରାମଯାନ ସଙ୍ଗତରେ ପଚାଶ କୋଟି । ବୋଲଇ ବଶି ମହୀ ପୂରିଣ ହେ ଆସନ୍ତି କପି ଘୋଟି । ୧୩ ।

—※—

## ୨୬ଶ ଛାନ୍ଦ

ରାଗ—ନଳିନୀଗୌଡ଼ା

ରାଜ ସେନାପତି ଭେଟି । ସଙ୍ଗେ ପାଞ୍ଚସହସ୍ର କୋଟି । ଜାମ୍ବବ କଲା ଦର୍ଶନ । ଯତସହସ୍ର କୋଟି ସୈନ୍ୟ ॥ ଗନ୍ଧମାଦନ ଭେଟେ । ସହସ୍ର କୋଟି ମର୍କଟେ । ଅଙ୍ଗଦ କଲା ଦର୍ଶନ । କିଷ୍କିନ୍ଧ୍ୟାର ଘେନି ସୈନ୍ୟ । ଶତ ଶତ ସହସ୍ର କୋଟି । ଘେନି ସୈନ୍ୟ ସଙ୍ଗେ ଭେଟି । ତାର କଲା ଦରଶନ । ଅଯୁତ

କୋଟି ତା ସୈନ୍ୟ ॥ ଇନ୍ଦ୍ରଯାନ ହୁଏ ଭେଟ । ସହସ୍ର କୋଟି ମର୍କଟ । ରମ୍ଭା କଲ ଦରଶନ । ପଞ୍ଚସସ୍ର କୋଟି ସୈନ୍ୟ ॥ ଦୁର୍ମୁଖ ଦର୍ଶନ କରି । ଷଟସସ୍ର କୋଟି ହରି । ହନୁ କଲ ଦରଶନ । ଷାଠିଏ କୋଟି ତା ସୈନ୍ୟ ॥ ନୀଳ ସଙ୍ଗରେ ମର୍କଟ । ଶତକୋଟି ଯେନ ଭେଟ । ଦଧିମୁଖ ଭେଟକଲ । ଆଠ ସସ୍ର କୋଟି ଥିଲ ॥ ଶରଭ ଦର୍ଶନ କରି । ପଞ୍ଚଦଶ କୋଟି ହରି । କୁମୁଦ ଦର୍ଶନ କଲ । କପି କୋଟିଦଶ ଥିଲ ॥ ବହ୍ନି କଲ ଦରଶନ । ଦ୍ୱାଦଶ କୋଟି ତା ସୈନ୍ୟ । ଦର୍ଶନ କଲ ଦ୍ୱିବନ୍ଧ । ସଙ୍ଗରେ କପି ଅର୍ବୁଦ । ବନଗିରି ଭୂମି ପୂରି । ରହିଲେକ ଋକ୍ଷ ହରି । ଦେଖିଣ ରାଘବ ତୋଷ । ସୁଗ୍ରୀବକୁ ଗଇ ପାଶ ॥ କଲେ ତାଙ୍କୁ ଆଲିଙ୍ଗନ । ଆନନ୍ଦ ହୋଇଣ ମନ ବୋଲନ୍ତି ଶ୍ରୀରଘୁନାଥ । ହୋଇଣ ଥିଲୁ ଅନାଥ ॥ ତୁମ୍ଭଙ୍କୁ ପାଇଣ ନାଥ ଯୁଝିବୁଁ ଅସୁର ସାଥ । ସୁଗ୍ରୀବ ଯୋଡ଼ିଣ କର । ବୋଲଇ ହେ ରଘୁବୀର ॥ ଅଇଲେ ବାନର ବଳ । କା ସଙ୍ଗେ କରିବ ଗୋଳ । ହୋଇ ରାମ ହସ ହସ । ବୋଲନ୍ତି ସୀତା ସନ୍ଦେଶ ॥ ପାଇଲେ ସିନା ଯୁଝିବା । ଜୀବନେ ଥିବା ବୁଝିବା ॥ ଯେ ଆଜ୍ଞା ହେବ ତୁମ୍ଭର । ଖୋଜାଇବ ମଞ୍ଚପୁର ॥ ଶ୍ରୀରାମଙ୍କ ଆଜ୍ଞା ପାଇ । ସେନାପତିଗଣ ଗଇ । ରାମ ଆଗେ କଲି ଉଭା । ଋଷି ବୋଲେ ଦଣେ ଶୋଭା ॥



## ୨୭ଶ ଛାନ୍ଦ — ଦୂତ ବରଗା

ଗଡ଼ମାଳିଆ—ବୃତ୍ତେ

ଉଭା ଯୂଥପତିଗଣ । ନାମ ଧରି ଧରି ଚିହ୍ନାଇ ଦିଅନ୍ତି ଯେ । ରାମଙ୍କୁ ତାରାରମଣ । ଦେଖ ଦେବ ହେ ॥ ଅଙ୍ଗଦ ହନୁ ସୁଷେଣ । ଗଜ ଜାମ୍ବୁବନ୍ତ କେଶରୀ ବୀର ହେ । ଖ୍ରମଯାନର ରମଣ । ଦେଖ ଦେବ ହେ ॥ ପଞ୍ଚବିଂଶ ସେନା ଏହି । ଏହାଙ୍କ ସଙ୍ଗେ କୋଟି କୋଟି କପି ହେ । କଳନା ହେବାକୁ ନାହିଁ । ଦେଖ ଦେବ ହେ ॥ ବିନୋଦ ସେନାକୁ ରାଇ । ଆଜ୍ଞା ଦେଲେ କପିକୁଳର ସାଇଁ ଯେ । ପୂର୍ବଦିଗେ ଖୋଜ ଯାଇଁ ଟି ମୋ ବନ୍ଧୁ ହେ ॥ ଉଦେଗିରି ଯାଏ ଯିବ । ବନ ଗିରି ଗ୍ରାମ ପୁର କଟକ ଯେ । ସମସ୍ତ ବୁଲି ଖୋଜିବ । କି ମୋ ବନ୍ଧୁ ହେ ॥ ଜନକ ରାଜା ଦୁଲଣୀ । ବାରତା ମାସକେ ନ ଦେଲେ ଆଣି ଯେ । ପକାଇବି ଶିର ହାଣି । କି ମୋ ବନ୍ଧୁ ହେ ॥ ଗବୟ, ଗବାକ୍ଷ, ଗଜ । ଦୁର୍ବନ୍ଧ ତାର, ନଳ, ନୀଳ ସୁଷେଣ ଯେ । ହନୁମନ୍ତ ଯୁବରାଜ । କି ମୋ ବନ୍ଧୁ ହେ ॥ ଜାମ୍ବବ ଗନ୍ଧମାର୍ଦନ । ବୋଲେ କପିରାଜ ତୁମ୍ଭେ ଯେ ବେଗେ ହେ । ଦକ୍ଷିଣେ ଯାଅ ବହନ । କି ମୋ ବନ୍ଧୁ ହେ ॥ ମାସେ ନ ପୂରୁ ଆସିବ । ଦକ୍ଷିଣ ସିନ୍ଧୁ

ମଧ୍ୟେ ଯେତେ ଗିରି ହେ । ସବୁ ବୁଲିଣ ଖୋଜିବ । କି ମୋ ବନ୍ଧୁ ହେ ॥ କେଶରୀ ବୀରକୁ ରହିଁ । କହନ୍ତି ତାହାକୁ ପାଶକୁ ରାଇ ଯେ । ଖୋଜିବ ପଶ୍ଚିମେ ଯାଇ । କି ମୋ ବନ୍ଧୁ ହେ ॥ ଶ୍ରୀରାମଚନ୍ଦ୍ର ଘରଣୀ । ବାରତା ମାସକେ ନ ଆଣି ଯେ । ଦଣ୍ଡ ଦେବ ସତ୍ୟବାଣୀ । କି ମୋ ବନ୍ଧୁ ହେ ॥ ଶତବଳ ସେନାପତି । ତାହାଙ୍କୁ ରାଇଣ କହନ୍ତି କତି ଯେ । ଉତ୍ତରେ ଯାଅ ତକତ ! କି ମୋ ବନ୍ଧୁ ହେ ॥ ପୃଥିବୀର ସ୍ଥାନ ଯେତେ । ସୁଗ୍ରୀବ ତାହାଙ୍କୁ କହିଲେ କେତେ ଯେ । ବଶି କି କହିବ ଗୀତେ । କି ମୋ ବନ୍ଧୁ ହେ । ୧୩ ।

— — —

## ୧୮ଶ ଛାନ୍ଦ

ରାମ—କୌଶିକ

ରାମ ପଚାରନ୍ତି ସଖେ ସୁଗ୍ରୀ ମିତ ଆମ୍ଭଙ୍କୁ କହିବ ତ ସତ ।। ପୃଥିବୀରେ ଯେତେ ଯେତେ ସ୍ଥାନମାନ କହିଲ ସେ କେବଣ ଦୂତ । କର ଯୋଡ଼ିଣ ସୁଗ୍ରୀବ ଜାଣନ୍ତି ଭେଦେବ । ବାଳି ଭୟରେ ପୃଥିବୀ ବୁଲିଣ ଲୁଚିବାକୁ ମୁଁ ଖୋଜିଲି ଠାବ । ଯହିଁ ତହିଁ ଗଲେ ବାଳି ମୋତେ ମାରେ ରହି ତ ଠାବ ନ ପାଇଲି । ହନୁ କହିଲେ ଋଷ୍ୟମୁକେ ଲୁଚିବା ତାଙ୍କର ବୋଲରୁ ଅଇଲି । ପୂର୍ବେ ବାଳି ଦୁନ୍ଦୁଭିକି ମାରି ତାର ଅସ୍ଥି ବୁଲାଇ ଫିଙ୍ଗିଦେଲା । ତାର ରୁଧିର ମାତଙ୍ଗ ମହାଋଷି କାନନ ମଧ୍ୟରେ ପଡ଼ିଲା । ଋଷି କ୍ରୋଧରେ ଶାପଦେଲେ ବାଳିକି ମୋର ସୀମାରେ ନ ପଶିବୁ । ଯେବେ ତୁ ମୋ ଗିରି ବନରେ ପଶିବୁ ରୁଧିର ଉଦ୍‌ଗାରି ମରିବୁ । ତେଣୁକରି ଦେବ ଋଷ୍ୟମୁକେ ଗିରି ଯିବାକୁ ବାଳି ଭୟ କଲା । ତେଣୁକରି ଦେବ ମୋହର ଲୁଚିବା ସ୍ଥାନ ଏହି ଗିରି ହୋଇଲା ।। ଏହା ଶୁଣି ରାମ ହନୁକୁ ରାଇଣ ଦେଲେ ଅନାମିକା ମୁଦ୍ରିକା । ବୋଲେ ବଶି ହନୁ ଶିରରେ ଲଗାଇ ବାନ୍ଧେ କଟିଦେଶେ ପଟୁକା ।

—※—

## ୨୯ଶ ଛାନ୍ଦ—ସୀତାଂକ ଅନୁସନ୍ଧାନ

ଶ୍ରୀଭାଗବତ—ଦୁତେ

ଶ୍ରୀରାମ ଆଜ୍ଞା ପାଇ ଦୂତେ । ଗମିଲେ ପବନ୍ନ ଭରତେ ॥ ସଙ୍ଗରେ ନେଲେ କପିବଳ । ଖୋଜିଲେ ପୃଥିବୀ ମଣ୍ଡଳ ।। କାହିଁ ସୀତାଙ୍କୁ ନ ଦେଖିଲେ । ବାହୁଡ଼ି ବାରତା କହିଲେ ।। ଦକ୍ଷିଣେ ଗଲେ ଯେତେ ଦୂତେ । ଖୋଜିଲେ କାନନ ପର୍ବତେ ।। ନ ଦେଖି ମନେ କ୍ଷୋଭ କଲେ । ବହୁଏ

ଗିରିକି ବୋଲି ଗଲେ ॥ କ୍ଷୁଧା ତୃଷାରେ ପୀଡ଼ା ପାଇ । ଦେଖିଲେ ବିବର ଅଛଇ ॥ ଜଳ ଲୋଭରେ ତହିଁ ପଶେ । ଅନ୍ଧାରେ କିଛିହିଁ ନ ଦିଶେ ॥ ସିଂହ ଶାର୍ଦ୍ଦୂଳ ଯେତେ ଜୀବ । ମାରି ମାରିଣ ଗଲେ ସର୍ବ ॥ ଆଗେ ଦେଖିଲେ ତେଜୋମୟେ । ଅଛି ଦିବ୍ୟପୁର ଗୋଟିଏ ॥ ଅଷ୍ଟରତନେ ପୁର ଶୋଭା ॥ ପୁଷ୍କରିଣୀରେ ମନ ଲୋଭା ॥ ବିବିଧ ଫଳେ ପୂରି ତରୁ ॥ ସୁନ୍ଦର ଦିଶୁଅଛି ଦୂରୁ ॥ ଦେଖିଲେ ହୋଇଅଛି ଶୂନ୍ୟ । ଏକ ଯୁବତୀ ପୁଣ୍ୟଜନ ॥ ତାହାକୁ ଯାଇ ପଚାରିଲେ । ସେ ସର୍ବ ବୃତ୍ତାନ୍ତ କହିଲେ ॥ ଏହି କହିଲେକ ବୃତ୍ତାନ୍ତ । ଆମ୍ଭେମାନେ ଶ୍ରୀରାମ ଦୂତ ॥ ପୁଣି ସେ ଫଳ ମୂଳ ଦେଲା । ଅତିଥିମତେ ପୂଜା କଲା ॥ ବୋଇଲା ନ ପାରିବ ଯାଇ । ଏଥି ପଶିଲ କାହିଁପାଇଁ । ସମସ୍ତେ ନେତ୍ର ମାନ ବୁଜ । ବାହାର କରିବି ମୁଁ ଆଜ ॥ ଏମନ୍ତ ସ୍ୱୀକାର କଲେ । ନେତ୍ର ବୁଜି ବାହାର ହେଲେ । ଦକ୍ଷିଣ ଜଳଧିର କୂଳେ । ମହେନ୍ଦ୍ର ଅଚଳର ତଳେ ॥ ଅଙ୍ଗଦ ବୋଲନ୍ତି ବଚନ । ଅବଧି ପୂରିଗଲା ଦିନ ॥ ମାସକୁ କଣ୍ଠ ହୋଇଥିଲା । ଦ୍ୱିତୀୟମାସ ଆସି ହେଲା ॥ ସୁଗ୍ରୀବ ବିନାଶିବ ମୋତେ । ମୁଁ ଆଉ ଯିବଇଁ କେମନ୍ତେ ॥ ନ ଦେଲେ ସୀତାଙ୍କ ସନ୍ଦେଶ । ନ ଯିବ ସେ ସୁଗ୍ରୀବ ପାଶ ॥ ଅଧର୍ମୀ ଅଟଇ ସୁଗ୍ରୀବ । ମୋତେ ସେ ଜୀବନେ ମାରିବ ॥ ଜ୍ୟେଷ୍ଠ ଭାଇର ଭାର୍ଯ୍ୟା ହରେ । ପାତକ ମନେ ନ ବିଚାରେ ॥ ଭାଇ ମରାଇ ହେଲା ରାଜା । ରାମ ଦୟାରୁ ମୋତେ ପୂଜା ॥ ଅଙ୍ଗଦ ମୁଖରୁ ଏହା ଶୁଣି । ସମସ୍ତେ ବୋଲନ୍ତି ବାଣୀ ॥ ରାଜନନ୍ଦନ ଅଟ ତୁମ୍ଭେ । ତୁମ୍ଭଙ୍କୁ ଛାଡ଼ିବୁ କି ଆମ୍ଭେ । ମିଳି ବୋଇଲା ଚାଲି ଯିବା ॥ ସେହି ବିବରେ ସୁଖେ ଥିବା ॥ ହନୁ ବୋଲେ ବିସ୍ତାରି ଶତ୍ରେ । ଏମନ୍ତ ନ ଯୋଗାଇ ମୋତେ ॥ କୁଟୁମ୍ବ ଛନ୍ତି ରାଜାପାଶ । କେମନ୍ତେ ହେବ ଅବିଶ୍ୱାସ ॥ ଅଙ୍ଗଦ କ୍ଷମା କର ତାପ । ସୁଗ୍ରୀବ ତୁମ୍ଭ ଧର୍ମବାପ ॥ କ୍ଷମା ତୁମ୍ଭଙ୍କୁ ଦେବା ଦଣ୍ଡ । ଏ କଥାମାନ ମନୁ ଖଣ୍ଡ ॥ ଅଙ୍ଗଦ ନାସ୍ତି ତାହା କଲେ । ମରିବା ବୋଲିଣ ବସିଲେ । ସମସ୍ତେ ହୋଇ ଏକମନ । ଆରମ୍ଭ କଲେକ ଆସନ ॥ କୁଶଶଯ୍ୟା କରି ବସିଲେ । ଶ୍ରୀରାମ ଚରିତ ଘୋଷିଲେ ॥ ଅଙ୍ଗଦ କହେ ସର୍ବ ଶୁଣି । ଏ ରସେ ଧାନ ବିଶି ଭଣି । ୩୭ ।

—×—

## ୩୮ଶ ଛାନ୍ଦ—ସମ୍ପାତି ସମ୍ବାଦ

ରାଗ – ତୋଡ଼ି

ସର୍ବଙ୍କାରେ ବସି କୁଶାସନେ । ଅଙ୍ଗଦ କହନ୍ତି ସାବଧାନେ । ଶ୍ରୀରାମଙ୍କ କିଛି କାର୍ଯ୍ୟ ନ କରିଣ ବିଅର୍ଥେ ମରିବା ଆମ୍ଭେମାନେ ॥ ଧନ୍ୟ ସେ ଜଟାୟୁ ପକ୍ଷୀ ଥିଲା । ରାବଣ ସଙ୍ଗରେ ମୃତ୍ୟୁ କଲା । ରାବଣର ରଥସେହ୍ନା ଧନୁ କାଟି

ଶ୍ରୀରାମ ନିମିତ୍ତ ପ୍ରାଣ ଦେଲା ॥ ଶ୍ରୀରାମ ତାହାଙ୍କୁ ଦାହ କଲେ । ପିତାମିତ୍ର ବୋଲି ପିଣ୍ଡ ଦେଲେ । ଗୃଧ୍ରପକ୍ଷୀ କେଉଁ ଠାରେ କେତେ ତପ ପୁଣ୍ୟ ବସିଣ ସେ କରିଥିଲେ ॥ ତାଙ୍କ ପ୍ରାୟ ଯେବେ ଯାନ୍ତା ପ୍ରାଣ । ରାବଣ ସଙ୍ଗତେ କରି ରଣ । ସୁଗ୍ରୀବ ଭୟରେ ସୀତା ଖୋଜିବାରେ ମରୁଥାଉଁ ଆମ୍ଭେ ଅକାରଣ ॥ ଗିରିଶିଖେ ବସି ଶୁଣୁଥିଲା ସମ୍ପାତି ମନେ ବିଚାର କଲା । ଏତେ ଦିନେ ଆସି ମର୍କଟଗୁଡ଼ାଏ ବିଧାତା ଆଣି ଆହାର ଦେଲା ॥ ଭାଇର ମରଣ କର୍ଣ୍ଣେ ଶୁଣି । ପଚାରଇ ତାଙ୍କୁ ପୁଣ ପୁଣି । କହ କହ ମୋର ଭାଇର ବାରତା ବିକଳ ହେଲି ମରଣ ଶୁଣି ॥ ଅଙ୍ଗଦ କହଇ ସବୁକଥା । ମାଇଲା ତାହାଙ୍କୁ ଦଶମଥା । ରାମଦୂତ ଆମ୍ଭେ ସୀତାଙ୍କୁ ଖୋଜୁଛୁଁ ନ ପାଇ ମରୁଛୁଁ ଏବେ ବୃଥା । ଶୁଣି ସମ୍ପାତି କହଇ ବାଣୀ ॥ ସ୍ନାନ କରାଅ ହେ ସିନ୍ଧୁ ପାଣି । କମ୍ପାଇଁ ମରିବ ସମସ୍ତ କହିବି ମୋହର ମୁଖରୁ ଶୁଣି ବାଣୀ । ଗିରିଶିଖୁ ସମୁଦ୍ରକୁ ନେଲେ । ସ୍ନାନ କରାଇ ସେ ପଚାରିଲେ ॥ ସେ ତାଙ୍କୁ ସମସ୍ତ ସନ୍ଦେଶ କହନ୍ତେ ଶୁଣି ପରମ ଆନନ୍ଦ ହେଲେ ॥ ଶତ ଯୋଜନ ତା ଲଙ୍କାଗଡ଼ । ଚଉପାଶରେ ଜଳଧି ବାଡ଼ । ରବି ସକାଶୁଁ ମୋ ପକ୍ଷ ପୋଡ଼ିଗଲା ମୋତେ ସେ କେବେହେଁ ନୁହେଁ ବଡ଼ ॥ ଆକାଶମାର୍ଗ ରଥରେ ଥିଲା । ଏହି ବାଟେ ସୀତା ନେଇଗଲା ॥ ମୋହର କନିଷ୍ଠ ଭାଇ ଜଟାୟୁକୁ ଅଦୋଷେ ଚଣ୍ଡାଳ ମାରିଗଲା । ଦିଶୁଅଛି ମୋତେ ଲଙ୍କାପୁର । ଆବର ଦିଶୁଛି ସୀତାଶରୀର । ଦିଶୁଅଛି ମୋତେ ଜାନକୀ ଅଶୋକ ବନରେ ରଖିଛି ଦଶଶିର ॥ ଶ୍ରୀରାମଦୂତ ଦର୍ଶନ ପାଇ । ସମ୍ପାତି ପକ୍ଷ ପାଇଲା ତହିଁ । ବୋଲଇ ବଣି କପିମାନେ ବିଚାର କରନ୍ତୁ ସିନ୍ଧୁ ଡେଇଁବା ପାଇଁ ॥



## ୩୧ଶ ଛାନ୍ଦ—ସିନ୍ଧୁ ଡେଇଁବା ପରାମର୍ଶ

ରାଗ—ଚକ୍ରକେଳି

ଅଙ୍ଗଦବୀର କପିଙ୍କି ଅନାଇ । ବୋଲଇ ସିନ୍ଧୁକେ ପାରିବ ଡେଇଁ । କାହା ଅଙ୍ଗରେ ଅଛି କେତେ ବଳ । ଆମ୍ଭ ତୁମ୍ଭରେ ଦହ କପିକୁଳ ॥ ଗଜ ବୋଲନ୍ତି ମୁଁ ଦଶ ଯୋଜନ । ଡେଇଁ ଯେ ପାରଇ ବାଳିନନ୍ଦନ । ଗବୟ ବୋଲନ୍ତି ଯୋଜନ ବିଂଶ । ଡେଇଁ ଯାଇ ଆସିବି ତୁମ୍ଭ ପାଶ ॥ ଗବାକ୍ଷ ବୋଲେ ତିରିଶ ଯୋଜନ । ଡେଇଁ ମୁଁ ପାରଇ ସତ୍ୟ ବଚନ । ଦ୍ୱିବିଦ ବୋଲେ ଯୋଜନ ଚାଳିଶ । ଏତେ ଡେଇଁଲେ ହେବ ଅବା କିସ ॥ ନଳ ବୋଲଇ ଯୋଜନ ପଞ୍ଚାଶ । ଡେଇଁ ପାରିବି ମୁଁ ଏତେ

ଅବଶ୍ୟ । ନୀଳ ବୋଲନ୍ତ ଯୋଜନ ଷାଠିଏ । ମୁଁ ଡେଇଁବ ଏଥି ନାହିଁ ସଂଶୟେ ॥ ତାର ବୋଲନ୍ତ ଯୋଜନ ସତୁରି । ଡେଇଁ ମୁଁ ପାରିବ ଜଳଧିବାରି । ସୁଷେଣ ବୋଲନ୍ତ ଅଶୀ ଯୋଜନ । ମୁଁ ଡେଇଁବ ଏଥିରେ ନାହିଁ ଆନ ॥ ଜାମ୍ବବ ବୋଲନ୍ତ ନଉ ଯୋଜନ । ତା ଶୁଣି ଅଙ୍ଗଦ ବୋଲେ ବଚନ । ଡେଇଁ ମୁଁ ପାରିବ ଯୋଜନ ଶତ । ଲେଉଟିବାରେ ହେବ ଅଶକତ ॥ ଖଣ୍ଡେଦୂରେ ବସି ଶୁଣନ୍ତି ହନୁ । ଜାମ୍ବବ ବୋଲନ୍ତି ପବନସୂନୁ । ମଉନ ହୋଇ ରହିଛ କପାଇଁ । ତୁମ୍ଭ ପରାକ୍ରମ ସବୁ ଜାଣଇ ॥ ପବନଦେବ ତୁମ୍ଭ ନିଜ ତାତ । କେଶରୀଙ୍କ ଭାରିଯା ତୁମ୍ଭ ମାତ । ଜନ୍ମରୁ କଲଟି ଏଡ଼େ ସାହାସ । ଲକ୍ଷେ ଯୋଜନ ଡେଇଁଲ ଆକାଶ ॥ ସୂରଙ୍ଗ ଦେଖି ଗିଳୁଥିଲ ଭାନୁ । ଇନ୍ଦ୍ର ବଜ୍ର ମାଇଲା ତୁମ୍ଭ ତନୁ । ଜଗତ ନରେ ଧିଲେଟି ପିଅର । ଧାତାସହ ବର ଦେଲେ ଅମର ॥ ଆମ୍ଭମାନଙ୍କୁ କର ପ୍ରତିକାର । ଶ୍ରୀରାମକାର୍ଯ୍ୟେ ହୁଅ ତତପର । କପିକୁଳ ସିଂହ ପାଅ ହେ ଯଶ । ତୁମ୍ଭ ଯିବା ଶତଯୋଜନ କସ ॥ ବୟସ ଥିଲେ ମୁଁ ପାରନ୍ତି ଯାଇ । ବୃଦ୍ଧ ହୋଇଲି ଅଙ୍ଗେ ବଳନାହିଁ ॥ ତ୍ରିବିକ୍ରମକାଳେ ହରି ଚରଣ । ସାତବାର କଲି ମୁଁ ପ୍ରଦକ୍ଷିଣ ॥ ମହେନ୍ଦ୍ର ଗିରି ଆରୋହିଲେ ହନୁ । କାୟା ବିସ୍ତାରିଲେ ପବନସୂନୁ । ଆକାଶମାର୍ଗକୁ ଲାଗିଲା ଶିର । ଉଡ଼ନ୍ତେ ଲସିଗଲେ ଗିରିବର ॥ ଯେତେ ଜୀବ ଗିରି କୋଟରେ ଥିଲେ । ଗିରି ଲସିବାରେ ଦଳି ହୋଇଲେ । ମହୀ ଭିତରେ ପଶିଲା ସେ ଗିରି । ବୋଲେ ବଳି କିଷ୍କିନ୍ଧ୍ୟା କାଣ୍ଡ ପୂରି । ୧୪ ।

**କିଷ୍କିନ୍ଧ୍ୟାକାଣ୍ଡ ସମାପ୍ତ**

---

# ସୁନ୍ଦର କାଣ୍ଡ

## ୧ମ ଛାନ୍ଦ

ରାଗ—ପାହାଡ଼ିଆ କେଦାର

ଅଞ୍ଜନାସୁତ ବଢ଼ାଇ କାୟେ, ବିକ୍ରମି ଉଡ଼ି ଗଗନେ ଯାଏ, ଦେଖିଣ ଦେବେ ତାର ନିର୍ଭୟେ କଲେ ଉପାୟେ ଯେ । ହନୁ ପ୍ରାକର୍ମ ବୁଝିବା ପାଇଁ, ସୁରସା ଆଗେ କହିଲେ ଯାଇଁ, ତୁମ୍ଭେ ତା ମିବା ପଥରେ ରହି ଗଳିବ ମାୟେ ଗୋ । ଶୁଣି ସୁରସାଦେବୀ ପଥ ଓଗାଳି ଯେ । ହନୁକୁ ବୋଲେ ଆଜ ଦେବ ମୁଁ ଗିଳି ଯେ ॥ ମନ୍ଦର ସମ ବଦନ ତୋଳି, ଦେଖାଇ ବଙ୍କ ଦଶନାବଳୀ, ବୋଲେ ଅପାର ହିନ କ୍ଷୁଧାରେ ହୋଇଲୁ ବଳରେ ॥ ହନୁ ବୋଲନ୍ତି ଶୁଣ ଗୋ ମାତ, ଶ୍ରୀରାମଚନ୍ଦ୍ରଙ୍କର ମୁଁ ଦୂତ ସୀତାଙ୍କୁ ଖୋଜିବାକୁ ନିଯୁକ୍ତ କରିଛନ୍ତି ଯେତ ଗୋ । ତୁ

ଯେବେ କ୍ଷୁଧାଭୁରେ ପୀଡ଼ିତ, ଆସିବ ତୋ ପାଶେ କପୁତ, କେବଳ ରାମଚନ୍ଦ୍ର ଅଗ୍ରତ; ଦେବି ବାରତ ଗୋ ଶୁଣି ସେ ନାଗମାତା ପାଟି ବିସ୍ତାରି ଯେ । ଦଶ-ଯୋଜନ କାୟା ବିସ୍ତାର କରି ଯେ । ଦେଖିଣ ହନୁମନ୍ତ ବୀର, କେମନ୍ତେ ଏଥୁ ଯିବି ଉବୁରି, ଷଷ୍ଟି ଯୋଜନ ବିସ୍ତାର କରି ଶରୀର ଧରି ଯେ ॥ ଦେଖିଣ ହନୁ-ମନ୍ତର ପିଣ୍ଡ, ଦ୍ୱିଗୁଣ କରି ବିସ୍ତାରେ ତୁଣ୍ଡ, ବୋଲଇ ହନୁ ଏ ଅନ୍ତ ଦଣ୍ଡ ଏତ ଅଦଣ୍ଡ୍ୟ ଯେ ॥ ଏମନ୍ତ ବୋଲି ମେଲିଲା ତୁଣ୍ଡ, ଯବ ପ୍ରମାଣେ କରିଣ ପିଣ୍ଡ, ବାହାର ହେଲା ହୋଇ ପ୍ରଚଣ୍ଡ, କଣ୍ଠର ଖଣ୍ଡ ଯେ । ଦେଖି ସୁରସା ତାକୁ କହେ ବଚନ ଯେ । କାର୍ଯ୍ୟ ସିଦ୍ଧି କି ତୁ କର ହନୁମାନ ରେ । ସୀତାଙ୍କୁ ଖୋଜି ଆସ ନନ୍ଦନ, ବାରତା କହ ରଘୁନନ୍ଦନ, ନୋହିବ ପଥେ ବିଗ୍ରହମାନ, ସତ୍ୟବଚନ ଯେ ॥ ସେଠାରୁ ହନୁ ଗମେ ଭୁରିତେ, ବରୁଣ ଦେଖି ବିଚାରେ ଚିତ୍ତେ; ରାମଦୂତଙ୍କୁ ସ୍ଥାନ କେମନ୍ତ, ଦେବି ରୁପତେ ଯେ । ହିରଣ୍ୟ ନାଭ ଗିରିକି ରହି, ବରୁଣ ତାଙ୍କୁ ବିନୟି ହୋଇ ହନୁକୁ ପୂଜାକର ମୋ ପାଇଁ ମାଗୁଛି ଏତେ କହେ ॥ ଶୁଣି ସେ ପ୍ଲକ୍ଷ-ଗିରି ଜବେ ବଢ଼ିଲେ ଯେ । ହନୁମନ୍ତଙ୍କୁ ରହି ସ୍ତବ ପଢ଼ିଲେ ଯେ । ପବନସୁତ ଭୟ ନ କର, ଏ ମୋର ଶିରେ ବିଶ୍ରାମ କର, ସୁପକ୍ୱ ଫଳରେ ଶାନ୍ତ ହର, ବରୁଣ ଦେଲେ ହେ ॥ ଶୁଣିଣ ହନୁ ଗୃହ୍ଣୁ ଉତ୍ତର, ଅଙ୍ଗୁଷ୍ଠି ଅଗ୍ରେ ଛୁଇଁ ତା ଶିର, ପଡ଼ିଲା ଗଡ଼ି ମ ତା ମୁଖର, ଉଡ଼ିପ୍ରଖର ଯେ । ସିଂହିକା ବଧକରିଣ ହର, ତହୁଁ ସଧୀରେ ବିଜୟି କରି, ଡେଇଁଣ ସିନ୍ଧୁ ବିକ୍ରମ କରି ସୁବଳଗିରି ଯେ ॥ ଲଙ୍କାଗଡ଼ରେ ହନୁ ଦେଲାକ ଦୃଷ୍ଟି ଯେ । ମେରୁଗିରି କି ପଡ଼ିଅଛି ଏ ସୃଷ୍ଟି ଯେ । କନକମୟ ପ୍ରାଚୀର ପାଚେରି, ବିଶ୍ୱକର୍ମା ଯା ନିର୍ମାଣ କରି, ବୋଲଇ ବୀର ଯେ ପୁରି ସେବଇ ପରମେଷ୍ଠୀ ଯେ । ୧୯ ।

---

## ୨ୟ ଛାନ୍ଦ—ହନୁମାନର ଲଙ୍କା ପ୍ରବେଶ

ରସକୋଇଲି ବାଣୀ

ରବିଅସ୍ତେ ସନ୍ଧ୍ୟା ହେଲା ପ୍ରକଟ । ହନୁ ମାର୍ଜାରି ସମାନେ ମର୍କଟ । ଧେନୁ ମାନଙ୍କ ସଙ୍ଗରେ ମିଶିଲା । ଲଙ୍କାଗଡ଼ର ଭିତରେ ପଶିଲା ସେ । ଦେଖିତାକୁ ଲଙ୍କାଦେବୀ ଯେ । ପଥ ଓଗାଳିଣ ବୋଲନ୍ତି ବାନର ଆଜ ମୁଁ ତୋତେ ଖାଇବି ଯେ ॥ ହନୁ ତାହାଙ୍କୁ ବିଘୋଡେ ମାଇଲେ । ଭୟରେ ଦେବୀ ତାଙ୍କୁ ବରଦେଲେ । ଯହିଁକି ଅସିଛୁ କର ତା ସିଦ୍ଧି । ପୂର୍ବରୁ ମୋତେ କହିଛନ୍ତି ବିଧି ଯେ । ଅସୁର କୁଳ ନିପାତ ଯେ । ଆଜହୁଁ ଜାଣିଲି ରାବଣ ସଗୋତ୍ର ସହିତେ ହୋଇବେ ହତ ଯେ ॥ ବୁଲଇ ଲଙ୍କା ନହୋଇଣ ନିଶଙ୍କା । ସୀତାଙ୍କୁ ଖୋଜଇ କରି ଆଶଙ୍କା ।

ଧୂମ୍ରାକ୍ଷ ବିରୂପାକ୍ଷ ମହୋଦର । ପ୍ରଶସ୍ତ ମହାପାରଶ୍ୱର ପୁର ଯେ । ଚାହିଁଲେ ସର୍ବ ଯୁବତୀ ଯେ । ସୀତାର କିଛିହିଁ ଲକ୍ଷଣ ନ ଦେଖି ବିକଳ ହୁଅଇ ମନ ଯେ ॥ ଅକ୍ଷୟ ମେଘନାଦ ଅକମ୍ପନ । କୁମ୍ଭକର୍ଣ୍ଣ ବିଭୀଷଣ ସଦନ । ମହାରାବଣ ଅତିକାୟ ପୁର । ଖୋଜଇ ସର୍ବ ମରୁତକୁମର ଯେ । କୁମ୍ଭ ନିକୁମ୍ଭ ଦୁର୍ମୁଖ ଯେ । ଦୁର୍ଜୟ ଦୁରାନ୍ତକ ପୁର ଖୋଜଣ ହନୁ ହୁଅଇ ବିମୁଖ ଯେ ॥ ଉନ୍ମତ୍ତ ମକରାକ୍ଷସର ପୁର । ମିଶ୍ରଘନ ଶୁକ ଶାରଣ ଘର । ନିଶିର ରାକ୍ଷସ ପୁର ଦେଖିଲା । ଲଙ୍କାପୁରେ ଘରେ ଘରେ ପଶିଲା ଯେ । ନ ଦେଖିଲା ରାମନାରୀ ଯେ ॥ ଖୋଜି ଖୋଜି ଯାଇ ପ୍ରବେଶ ହୋଇଲା ରାବଣର ନିଜପୁରୀରେ ॥ ଦେଖିଲା ସର୍ବ ରତ୍ନମୟ ପୁର । ଶୋଇଛି ପୁଷ୍ପବିମାନ ଉପର । ଅନେକ ନାରୀ ନିଦ୍ରଣ ସୁରତି । ପଡ଼ିଅଛଇ ହୋଇ ଅଶକତ ଯେ । ବିବିଧ ମଦିରା ପାନେ ଯେ । କେହି କେହି ନାରୀ ଦିବ୍ୟ ସୁକୁମାରୀ ଶୋଇଛନ୍ତି ବିବସନେ ଯେ ॥ ନାଗ ନର ସୁର ଗନ୍ଧର୍ବ ନାରୀ । କିନ୍ନର ଯକ୍ଷ ରାକ୍ଷସ କୁମାରୀ । ଅପସରୀ ବିଦ୍ୟାଧରୀ ଯୁବତୀ । ବେଢ଼ି ଶୋଇଛନ୍ତି ରାବଣ କତି ଯେ । କା ହାତୁଁ ପଡ଼ିଛି ବୀଣା ଯେ ॥ କାହା କରୁଁ ତାଳ କା କରୁଁ ମର୍ଦ୍ଦଳ କା ହସ୍ତୁ ହଡ଼ପମୁଣା ଯେ ॥ ଚାମର ଖଟ ଆଲଟ ପକାଇ । ଶୋଇଛନ୍ତି ବାଳୀ ଜ୍ଞାନ ହରାଇ । ପାନପାତ୍ରମାନ ପଡ଼ିଛି ଖସି । କନକ କୁମ୍ଭେ ସୁରା ଅଛି ପଶି ଯେ । ଜଳଇ ପ୍ରଦୀପମାନ ଯେ । ଉଜ୍ଜ୍ୱଳ କନକଫରୁଆ ପରାୟେ ଦିଶୁଛନ୍ତି ସ୍ତନଘନ ଯେ ॥ ମଧ୍ୟରେ ଶୋଇଅଛି ଦଶଶିର । କରି କର ପ୍ରାୟକ ବଂଶକର । ବେଢି ଶୋଇଛନ୍ତି ସକଳ ବାଳୀ । କଜ୍ଜ୍ୱଳ ମେଘେ ବେଢ଼ିକି ବିଜୁଳି ଯେ । ନନ୍ଦନମାଳାରେ ଶୋଭା ଯେ । ଚନ୍ଦ୍ର ରଜନୀରେ ତମାଳ ତରୁରେ କନକଲତା ବେଢ଼ିବା ଯେ ॥ କୋଳରେ ଶୋଇଅଛି ଏକ ନାରୀ । କୃଶଉଦରୀ ଯଉବନେ ଭାରୀ । ଦିବ୍ୟାଙ୍ଗ ହେମ ନିନ୍ଦଇ ତା ତନୁ । ତା ଦେଖି ବିସ୍ମୟରେ ପବନସୂନୁ ଯେ । ଏ ପରା ରାମ ଘରଣୀ ଯେ । ମୁଖ ତାର ମଦ୍ୟବାସ୍ନାରେ ପ୍ରକଟ ନୁହଇ ବୋଲି ତା ଜାଣି ଯେ ॥ ମନେ ବିଚାରେ ଅପରାଧ କଲି । ରାମ ଘରଣୀ ଏହାକୁ ବୋଇଲି । ମର୍କତ କଲି ଗୁଞ୍ଜପକ୍ଷୀ ମୁଣ୍ଡ । ସ୍ଫଟିକ କଲି ମୁଁ ରଜତଖଣ୍ଡ ଯେ । ପିତ୍ତଳ କଲି କାଞ୍ଚନ ଯେ । ଇନ୍ଦ୍ରନୀଳମଣି ରତନ ମୁଁ କଲି କାଚର ସଙ୍ଗେ ସମାନ ଯେ ॥ ନ ଦେଖି ହନୁ ସୀତାଙ୍କ ଶ୍ରୀମୁଖ । ମନେ ଲଭିଲେକ ବହୁତ ଦୁଃଖ । ବୋଲଇ ଅସୁରେ କଲେ ବା ଗ୍ରାସ । କ କହିବ ଯାଇଁ ଶ୍ରୀରାମ ପାଶ ମୁଁ । ନ ପାଇ ସୀତା ସନ୍ଦେଶ ଯେ । ଶ୍ରୀରାମ ଲକ୍ଷ୍ମଣ ସୁଗ୍ରୀବ ସହିତେ ନିଶ୍ଚୟ ହୋଇବେ ନାଶ ଯେ ॥ ଏଥିରୁ ଭଲ ମୋହର ବିନାଶ । ଖୋଜିଲି ବୋଲି କରିଥିବେ ଆଶ । ସମାଚ

କହିବା ଚିତୋଇ ମନେ । ପଶିଲା ଯାଇ ଅଶୋକ କାନନେ ସେ । ଦିଶୁଥାଏ ଖାଣ୍ଡବ ବନ ଯେ । ବୋଲଇ କ୍ରିଶି ଯେ ଦେଖିଣ ପ୍ରଶଂସା କରୁଛନ୍ତି ହନୁମାନ ଯେ । ୧୩ ।

---

## ୩ୟ ଛାନ୍ଦ

ବଚନିକା

ଅଶୋକ ବୃକ୍ଷଡାଳରେ ହନୁମନ୍ତ ବସି । ମଧୁବନ ଶୋଭା ଦେଖି ବହୁତ ପ୍ରଶଂସି ॥ ଧନ୍ୟରେ ରାବଣ ଧନ୍ୟ ତୋର ଭୁବନ । ଜଗଣ୍ଡ ଅଟ୍ଟାଳୀ ସବୁ ସୁବର୍ଣ୍ଣେ ନିର୍ମାଣ ॥ ଅଳକା ଭୁବନ ପରି ଦିଶଇ ଶୋଭିତ । ମଧୁବନ ଶୋଭା ଫଳ ପୁଷ୍ପରେ ପୂରିତ ॥ ସୁଗନ୍ଧ କୁସୁମ ଶୋଭେ ଚଉପାଶେ ଘେରି । ଧନ୍ୟ ଧନ୍ୟ ବୋଲି ହନୁ ପରଶଂସା କରି ॥ ଏଡ଼େ ଶିରିଗୋଷ୍ଠୀ ତୁଚ୍ଛା କାର୍ଯ୍ୟେ ନାଶ ଯିବ । ସୀତାଙ୍କୁ ନ ଦେଲେ ନଷ୍ଟେ ରାବଣ ମରିବ ॥ ଏହା ଭାବି ହନୁମନ୍ତ କ୍ଷୁଦ୍ରରୂପ ହେଲା । ବିକ୍ରମ ନରେନ୍ଦ୍ର କହେ ବୃକ୍ଷରେ ବସିଲା ।

---

## ୪ର୍ଥ ଛାନ୍ଦ- ସୀତାଠାବ

ରାଗ – ସିନ୍ଧୁଡ଼ା

ଫଳ କୁସୁମେ ମଣ୍ଡିଲା ପ୍ରାୟେ ଦିଶେ ମଧୁବନ ତରୁକୁଳ । ସୁବର୍ଣ୍ଣ ଚଉରା ଧାଡ଼ି ଧାଡ଼ି ଶୋଭା ଦିଶୁଅଛି ତହିଁ ତଳ ଯେ । ପାରିଜାତକ ଆଦି ॥ ସ୍ୱର୍ଗୁ ଆଣିଛି ଅମରବାଗ ଯେ । ରୋପିଅଛି ନାନା ମଉଷଧି ଯେ । ଶୋଭା ଦିଶୁଛି ତଡ଼ାଗ ନଦୀ ଯେ ॥ ଦେଖିଲା ହନୁ ଦିବ୍ୟପୁର ପ୍ରାଙ୍ଗଣେ ଶିଂଶୁପା ବୃକ୍ଷର ତଳେ । ଜନକସୁତା ବିଜୟେ କରିଛନ୍ତି ଅସୁରୀମାନଙ୍କ ମେଳେ ଯେ । ଗଣ୍ଡେ ଦେଇଣ ପାଣି । ମୁଖ କରିଛନ୍ତି ଧରଣୀ ଯେ । ସୁମରନ୍ତି ରାମନାମ ବାଣୀ ଯେ । ହନୁ ସେ ବୃକ୍ଷେ ବସିଲେ ଜାଣି ଯେ ॥ ଶରଦ ପୂର୍ଣ୍ଣଚନ୍ଦ୍ରମା ପ୍ରାୟେ ଦିଶୁଅଛି ସୀତାଙ୍କ ଶ୍ରୀମୁଖ । ମାର୍ଜାର ଯୁଥେ କି ଲବଣୀ ପିଣ୍ଡୁଳା ବେଢ଼ିଛନ୍ତି ଚଉପାଖ ଯେ । ନାନା ବିରୂପା ମୁଖୀ । ମୁଖ ଶୂକର ପ୍ରାୟେ କାହାରି ଯେ । ଏକନୟନ ଅଛି କେ ଧରି ଯେ । କୁଲ ପ୍ରାୟେ ଶ୍ରବଣ କାହାରି ଯେ ॥ ପ୍ରକଟ ବିକଟ ବଦନ କାହାର ଏକପାଦ ବେନିମୁଣ୍ଡ । କାହାର ଉଦର ବିସ୍ତାର କାହାର ଲୋଲଜିହ୍ୱା ଘାର୍ଘଭୁଣ୍ଡ ଯେ । କାରି ବଙ୍କା ନୟନ । କେହି ଶାର୍ଦ୍ଦୂଳ ଅଶ୍ୱବଦନ ଯେ । ତର୍ଜି ଗର୍ଜୁଛନ୍ତି ଅନୁକ୍ଷଣ ଯେ । କରୁଥାନ୍ତି ଖାଇବାକୁ ମନ ଯେ ॥ ଏମନ୍ତେ ରାବଣ ଶୟନ ସ୍ୱପନେ କହିଲେକ ଲଙ୍କେଶ୍ୱରୀ । ସୀତା ଖୋଜିବାକୁ ମର୍କଟେ ଅଇଲା ପଶିଲା ତୋହର ଶିରୀ ରେ । ତାହା ଦେଖି

ରାବଣ । ଖଡ୍‌ଗ ଧରିଲାକ ସେହିକ୍ଷଣ ଯେ । ସଙ୍ଗେ ଘେନିଣ ଯୁବତୀଗଣ ଯେ । ଅଶୋକବନ ଗଲା ଆପଣ ଯେ ॥ କେ ଘେନିଛନ୍ତି ବିହୁଡ଼ି ଚନ୍ଦ୍ରଧୂପ କେ ଖଟେ ଖଦିରଗୃମର । କାହାରିକରେ ହୁଡିପ ଧୂପକାଠି ଦର୍ପଣ ଧରି କା କରି ଯେ । ବାଜେ ବୀଣା ମର୍ଦ୍ଦଳ । କେହି ଭୁଞ୍ଜାଉଅଛି ତାମ୍ବୂଳ ଯେ । ଚଉପାଶରେ ଅସୁରିବଳ ଯେ । ପଛୁଆରି ଚଳେ ମହୀପାଳ ଯେ ॥ ରାଜା ବିଜେ ଦେଖି ସମସ୍ତ ଅସୁରୀ ଚରଣତଳେ ପଡ଼ିଲେ । ସୀତାଙ୍କୁ ଜାନୁଯୁଗଳ ଯୋଡ଼ି ବସନରେ ତନୁ ଘୋଡ଼ାଇଲେ ଯେ । ଭୟେ କମ୍ପେ ଶରୀର । କ୍ରୋଧେ କହୁଅଛି ଲଙ୍କେଶ୍ୱର ଯେ ॥ କି କେ ଜାନକୀ ନୋହୁ ମୋହର ରେ । ରାମ ମାନବ ସିନା ତୋହର ଗୋ ॥ ଆସି ଆସ ବସ ବସ ମୋର ଅଙ୍କେ ଜନକ ରାଜନନ୍ଦିନୀ । ସମାନ୍ୟ ମଣୁ କି ସମ ମୋତେ ନାହିଁ ସ୍ୱର୍ଗ ପାତାଳ ମେଦିନୀ ଯେ । ଆରେ ନାରୀରତନ । ମୋତେ ଦୃଢ଼େ କର ଆଲିଙ୍ଗନ ରେ । ଚୁମ୍ବନ ଦାନ ଦିଅ ବଦନ ଯେ । ମୋତେ ବିନ୍ଧୁଛି ମୀନକେତନ ଯେ । ବିପୁଳ ବର୍ତ୍ତୁଳ ଉଚ୍ଚକୁଚ ବେନି ମୋର ହୃଦରେ ଲଗାଅ । ଶୀଘ୍ର ବେନି ଭୁଜ ଛନ୍ଦିଣ ଚମ୍ପକମାଳା ପ୍ରାୟେ ଶୋଭାପାଅ ଗୋ । ଆଗୋ ନବନାଗରୀ । ତୋତେ ଖଟିଥିବ ମନ୍ଦୋଦରୀ ଗୋ । ସବୁନାରୀ ହେବେ ପରିବାରୀ ଗୋ । ଭୋଗ କରିବୁ ଏ ଲଙ୍କାଶିରୀ ଗୋ ॥ ମୁଁ ଋଷିକୁମର ତୁ ଋଷିକୁମାରୀ ନୋହିଲୁ କି ସମସରି । ଶରଣ ପଶୁଛି ଶରଣବତ୍ସଳା ଚରଣତଳେ ତୋହରି ରେ । ଆରେ କୋମଳଅଙ୍ଗି । ବଂଶନେବେ ନେନି କର ସଙ୍ଗିରେ । ନୟନଲୋଚନ ରଞ୍ଜିତ ଭଙ୍ଗିରେ । କି କେ ଝୁରୁଛୁ ରମ୍ୟ ଅପାଙ୍ଗିରେ ॥ ଏମନ୍ତ ମଣୁ କି ସିନ୍ଧୁ ପାରିହୋଇ ଆସିବେ ସେ ବେନି ଯତି । ତୋତେ ଏଥୁ ନେବେ ତୁ ପୁଣ ତାଙ୍କର ହୋଇବୁ ପ୍ରିୟ ଯୁବତୀ ରେ । ତେଜ ମନୁ ସେ କଥା । ଦିନ ଯାମିନୀ ହେଉଛୁ ବୃଥା ରେ । ଏବେ ଭୂମିକି ନ ପୋତ ମଥା ରେ ॥ ଭଣେ ବିଶି ରାମ ରସକଥା ଯେ । ୧୧ ।

—※—

## ୭ମ ଛାନ୍ଦ

ରାଗ—ସିନ୍ଧୁଡ଼ା

ରାବଣର ବାଣୀ ଶୁଣି ଠାକୁରାଣୀ ବୋଲନ୍ତି ଆରେ ପାମର । ରାମ ଜାଣିଥିଲେ ଜୀବନେ ନ ଥାନ୍ତୁ ନ ଥାନ୍ତା ଏ ଲଙ୍କାପୁର ରେ । ନାଶ ଯିବ ସମ୍ପଦ । ରାମ ସଙ୍ଗେ ଯେ କଲୁ ବିବାଦ ରେ । ଶୁଣି ନାହୁଁ ଧନୁର୍ଗୁଣ ନାଦ ରେ । ନିକଟରେ ଅଛି ତୋ ବିପଦ ରେ ॥ ତୁ ଘୋର ପାପିଷ୍ଠ

ଦୁରାତ୍ମାର ନଷ୍ଟ ଛୁଇଁବୁ ମୋର ଶରୀର । ନଷ୍ଟେଁ ଜାଣିଥାଅ ତୋତେ ମାର ମୋତେ ନେବେ ଏଥୁ ରଘୁବୀର ରେ । ପୋଡ଼ିଯିବ ଏ ଲଙ୍କା । ପର ଯୁବତୀଙ୍କ ନାହିଁ ଶଙ୍କା ରେ । ମରିବାକୁ ନାହିଁ ତୋର ଦକାରେ । ରାମ ପାଇ ନାହାନ୍ତି ଆଶଙ୍କା ଯେ ॥ ଯାହା ତୁ କହୁଛୁ ଅପ୍ରାଧ ପାଉଛୁ ଛିଡ଼ି ନ ପଡ଼େ ରସନା । ଛିଡ଼ନ୍ତ ଏକାବେଳକେ ଦଶଶିର ରାମ ହେଲେ କୋପମନା ଯେ । ରଘୁକୁଳନ୍ଦ କରତା । ପାଇ ନାହାନ୍ତି ମୋର ବାରତା ଯେ । ଖୋଜୁଥିବେ ବନଗିରି ଲତା ଯେ । ଝୁରୁଥିବେ ହୋଇଣ କୃଶତା ଯେ ॥ ଜାନକୀ ବଚନ ଶୁଣି ଦଶାନନ କୋପେ ବୋଲଇ ବଚନ । ବେନିମାସେ ମୋତେ ରାମ ଦେଖାଇବୁ ବ୍ୟଞ୍ଜନ ଯେ । ଏହି ସମୟ ଜାଣି । ମିଳିଗଲା ମନ୍ଦୋଦରୀ ରାଣୀ ଯେ । କୋପ କ୍ଷମା କର ବଂଶପାଣି ହେ । ମୋର ସଙ୍ଗତେ ବଞ୍ଚ ରଜନୀ ହେ ॥ ରୁଷିକୁମାରୀ ମାନୁଷୀ ଅଭକ୍ଷ୍ୟଶା କେଶ ବସନ ମଳିନ । ତୋ ପୁରେ କେତେ ସୁନ୍ଦରୀମାନେ ଛନ୍ତି ଏହାକୁ ବହୁ ଦଳଣ ଯେ ଆସ ହେ ପ୍ରାଣପତି । ମୋର ସଙ୍ଗତେ କର ସୁରତି ହେ । ଘେନ ନାଥ ମୋହର ବିନତି । ମୁହିଁ ହରିବି ତୁମ୍ଭର ମତି ଯେ ॥ ମୋର ଯୁବତୀ-ସମ୍ପତ୍ତି ଦେଖି ଅବା ଜାନକୀ ହୋଇବ ବଶ । ଏମନ୍ତ ବିଗ୍ରହ କରି ନାରୀ ଘେନ ହୋଇଥିଲା ପରବେଶ ଯେ । ତାଙ୍କ ମୁଖୁ ନଗଣ । ଶୁଣି ଛେଜିଲା ଖର ନିଃଶ୍ୱାସ ଯେ । କହେ ନିଜଟା ହୋଇଣ ବଶ ଯେ । ଦେବ ମନ ନ କର ବିରସ ଯେ ॥ ରକ୍ଷି ଅସୁରୀଙ୍କୁ ଶିଖାଇ ରାବଣ ମନ୍ଦିରକୁ ବାହୁଡ଼ିଲା । ମନ୍ଦୋଦରୀଙ୍କ ଘେନ ପୁଣି ପୁଷ୍ପକ ଯାନୋପରେ ପହୁଡ଼ିଲା ଯେ । ବେଢ଼ି ରକ୍ଷା ଦନୁଜୀ । ଭୟ କରାନ୍ତି ବହୁ ଗରଜି ଯେ । କି କାରଣେ ରାବଣେ ନ ଭଜ ଗୋ । ତୋର ମାସଂକୁ ଖାଇବୁ ଭାଜି ଯେ ॥ ସମସ୍ତେ ରାକ୍ଷସୀ ତୋହର ମାଂସକୁ ବାଣ୍ଟି ଖାଇବୁ ଗୋ ସୀତେ । କପି ରାବଣର ଭାରଯା ତୁ ନୋହୁ ବିଭୂତି ଭୁଞ୍ଜନ୍ତୁ କେତେ ଯେ । ମନେ ଚିନ୍ତା କଲେ ରଘୁବୀର ଯେ । ବସି ଭଜଇ ସୀତା ପୟର ଯେ । ୮ ।

—×—

## ୭ମ ଛାନ୍ଦ

ରାଗ—କୁମ୍ଭକାମୋଦୀ

ଅସୁରୀ ଭର୍ତ୍ସନା ଶୁଣି ଠାକୁରାଣୀ କରନ୍ତି କାରୁଣ୍ୟ । ଆହା ସ୍ୱାମୀ ହରି-ପ୍ରାଣ ଅନୁଜ ଆହା ହେ ଲକ୍ଷ୍ମଣ ॥ ଅନାଥ ତରୁଣୀ ପ୍ରାୟେ ମୋତେ ଆଣି କଲୁ ରେ ଦଇବ । କେଉଁ ବେଳୁ କଣ୍ଠ ବାଣୀ ଶୁଣିଣି ଚନ୍ଦ୍ରକ

ରହିବ ॥ ରାବଣପୁରେ ଅଛୁ ବୋଲି କେମନ୍ତେ ଜାଣିବେ ମୋ ପତି । ଦାରୁଣ ଦଇବ ବିପତ୍ତି ଉପରେ ଦେଉଛୁ ବିପତ୍ତି ॥ବହୁ ଯେ ଥିବ ନିରନ୍ତରେ ନୟନ-କମଳୁ ଲୋତକ । ଦହୁ ଯେ ଥିବ ମୋ ବିହ୍ନେ ହୃଦୟ କୁସୁମ-ଶାୟକ ॥ କହୁ ଯେ ଥିବେ ବନଜୀବମାନଙ୍କୁ ହୋଇଣ ବିନତି । ରହୁଣ ଥିବେ ଯେ କହୁଥିବେ ପୁଣ ମୋହର ବାରତା ॥ ପ୍ରାଣନାଥ ମୋର କୁଚର ଚନ୍ଦନ ମଣ ଯେ ଅନ୍ତର । ଏବେ ଅନ୍ତର ହୋଇ ମୋତେ ରହିଲ ପର୍ବତ ସାଗର ॥ କେମନ୍ତେ କର ପ୍ରାଣନାଥ ବିହ୍ନେ ଧରିବି ଜୀବନ । ଆଉ କି ମୋତେ ବାରେ ଦେଖାଇବେ ସୁନ୍ଦର ବଦନ ॥ନିଶ୍ଚୟ ମରିବି କଷ୍ଟରୁ ତରିବି ଖାଅ ମୋର ଅଙ୍ଗ । ବୋଲେ ବିଶି ଶୁଣ ତ୍ରିଜଟା କହଇ ସ୍ୱପନ ପ୍ରସଙ୍ଗ । ୮ ।



## ୭ମ ଛାନ୍ଦ—ତ୍ରିଜଟାର ପ୍ରବୋଧ

କାନ୍ଦକଉଶଲ୍ୟା—ବୃତ୍ତେ

ତ୍ରିଜଟା କହଇ ଶୁଣ ପ୍ରିୟସଖି ବୃଥାରେ ବିକଳ ହୁଅ । ଇତର ଜନଙ୍କ ପରାଏ କାତର ନୟନୁ ବୁହାଅ ଲୁହ ଗୋ । ତୁମ୍ଭେ ଜଗତମାତା । ତୁମ୍ଭ ଯୋଗୁ ପୃଥୀ ଆତଯାତ ଗୋ ॥ ସ୍ୱୟଂ ନାରାୟଣୀ ବିଷ୍ଣୁ ପାଟରାଣୀ ଲକ୍ଷ୍ମୀନାମରେ ବିଦିତ । ଅସୁରେ ନାଶନେ ମର୍ତ୍ତ୍ୟେ ଜାତ ହୋଇ ଦେବଙ୍କ କାମନା ବ୍ରତଗୋ । ତୁମ୍ଭେ ମିଥିଳାପୁରେ । ଜନ୍ମ ଗ୍ରହଣ କଲ ସେଠାରେ ଗୋ ॥ ଶିବଶରାସନ ଭଙ୍ଗି ନାରାୟଣ ତୁମ୍ଭଙ୍କୁ ତହୁଁ ଆଣିଲେ । ରାଜ୍ୟେ ଅଭିଷେକ ହେବା ଜାଣି ସର୍ବ ଦିଗପାଳେ ବିଚାରିଲେ ଗୋ । ଯେବେ ରାମ ରାଜନ । ହେବେ ନ ମରେ ଦୁଷ୍ଟ ରାବଣ ଗୋ ॥ ଦେବତା ଏ କୁଟ ପାଞ୍ଚନ୍ତେ କପଟ କଲେ କୈକେୟୀ ଜନନୀ । ଦେବ ସଙ୍ଗେ ଭାଇ ଆବର ବୈଦେହୀ ବନେ ବିଜେ ରଘୁମଣି ଗୋ । ପଞ୍ଚବଟୀରେ ବାସ । ହୋନ୍ତେ ସୂର୍ପଣଖା ମିଳେ ପାଶ ଗୋ ॥ ତା ନାସା ଶ୍ରବଣ କରନ୍ତେ ଛେଦନ ଲଙ୍କାରେ ପ୍ରବେଶ ହେଲା । କହନ୍ତେ ତୋ ଗୁଣ ଲଙ୍କାର ରାବଣ ତହୁଁ ଚୋରାଇ ଆଣିଲା ଗୋ । ଏବେ ଅଶୋକ ବନେ । ରଖି ଅଛୁ ଅସୁରୀଗଣହସ୍ତେ ଗୋ ॥ ନଷ୍ଟେ ଲଙ୍କାପୁର ହେବ ଛାରଖାର ମରିବ ଦୁଷ୍ଟ ରାବଣ । କାଲି ରାତ୍ରେ ଯାହା ସ୍ୱପନେ ଦେଖିଛୁ ତାହା କହୁଅଛୁ ଶୁଣ ଗୋ ॥ ପଦ୍ମନାଭ କହଇ । ଚିତ୍ତେ ଚିନ୍ତିଣ ଜାନକୀପାଇଁ ଯେ । ୭ ।



## ୮ମ ଛାନ୍ଦ

ରାଗ—ସିନ୍ଧୁ କାମୋଦୀ

ଆଗୋ ସଖି ଦେଖିଲି ସ୍ୱପନ ଗୋ । ଆଗୋ, ରାବଣ ଚଢ଼ିଅଛି ବିମାନ । ପଦ । ଯୋଚିଅଛି ବହୁ ଖର ଗମେ ଦକ୍ଷିଣ ଦିଗର । ତୈଳ ହୋଇଅଛି ରଜର ଗୋ ॥ ପିନ୍ଧିଛି ରଙ୍ଗ ବସନ ରଙ୍ଗ କୁସୁମ ଚନ୍ଦନ । ନେଉଛନ୍ତି କୃତାନ୍ତକଗଣ ଗୋ ॥ ରାମ ଚଢ଼ି ଶ୍ୱେତଗଜ ହୋଇଛନ୍ତି ମୋତି ସଜ । ଶ୍ୱେତବସନ ଶ୍ୱେତ-ଚନ୍ଦନ ଗୋ ॥ ଶ୍ୱେତପୁଷ୍ପ ମାଳ ଚୂଳ ବଜେ ଶ୍ୱେତ ଚାମର ଖଟନ୍ତି ଜନ ଗୋ ॥ ଯେବେ ଅଛି ପ୍ରାଣେ ଆଶ ସେବିଥାଅ ଏହା ପାଶ ନଷ୍ଟେ ନାଶ । ହୋଇବ ରାବଣ ଗୋ ॥ ଶୁଣି ତ୍ରିଜଟା ବଚନ ଆନନ୍ଦ ଜାନକୀ ମନ । ଶାନ୍ତ ହୋଇଲେ ଅସୁରୀଗଣ ଗୋ ॥ ସ୍ୱପନ କହି ଶୋଇଲେ ହନୁ ସବୁ ଶୁଣୁଥିଲେ । ବିଚାରିଲେ ଏହି ସେ ଜାନକୀ ଯେ ॥ ଭେଟ ନୋହିଗଲେ ପାଶ । ରାମ ନ ଯିବେ ବିଶ୍ୱାସ ॥ ବୋଲିବେ ସେ ଦେଖିଲୁ ତୁ ଆନ ରେ ॥ ଉଭା ହେଉଁ ଠାକୁରାଣୀ । ହନୁ ସେ ସମସ୍ତ ଜାଣି । ଦଶରଥଙ୍କର କୀର୍ତ୍ତି କହିଲା ଯେ ॥ ପଛେ ପଛେ ଗୁଣ ଗୁଣି ବୋଲଇ ସେ ପୁଣ ପୁଣି । କହଇ ସେ ହନୁମାନ ବୀର ଯେ । ବୋଲେ ବାଣି ଏହା ଶୁଣି । ରାବଣ ପ୍ରାୟେକ ମଣି । ଆଶଙ୍କା ହୋଇଲା ସୀତା ମନେ ହେ ।୧୧।

—❋—

## ୯ମ ଛାନ୍ଦ

ରାଗ- ତୋଡ଼ି ଏକତାଳୀ

ଶିଂଶପା ବୃକ୍ଷର ଡ଼ାଳେ, ହନୁ ମନେ ମନେ ଭାଳେ, ନିଶ୍ଚୟ ଜାନକୀ ଜନକନନ୍ଦିନୀ ଦେଖିଲିଁ ବେନି ତୋଳେ । କି ଭାଗ୍ୟବଳେ ॥ ଶୁଖିଛି ଚନ୍ଦ୍ର-ବଦନ, ନିରତେ ନୀରଲୋଚନ, ତେବେହେଁ ଶୋଭାକୁ ଉପମା ଦେବାକୁ ନାହିଁନା ତ୍ରୟଭୁବନ । ନାରୀରତନ । କିହି କି ନ କରେ ପୁଣି । ଶ୍ରୀରାମଚନ୍ଦ୍ର ଘରଣୀ, ଅସୁରପୁରରେ ଅସୁରୀ ଜଗିଛନ୍ତି, ଜଗତର ଠାକୁରାଣୀ । ରମଣୀମଣି । କହନ୍ତେ ବଂଶାନୁକ୍ରମ, ଶୁଭନ୍ତେ ସୀତା ଶ୍ରବଣ, ତରୁକୁ ଚାହିଁନ୍ତେ ମର୍କଟ ଗୋଟିଏ କହେ ରାମଙ୍କ କୀର୍ତ୍ତି ଗୁଣ । ସେ ପୁଣ ପୁଣ ॥ କେଉଁ ତୁ କାହୁଁ ଅଇଲୁ, ଶ୍ରୀରାମ ନାମ ଧଇଲୁ, ହୃଦୟ ମୋହର ଦହନ କାଳରେ ଚନ୍ଦନ ଲେପନ କଲୁ । ଯାହା ବୋଇଲୁ ॥ ହନୁ ବୋଇଲେ ଗୋ ମାତ, ଶ୍ରୀରାମଚନ୍ଦ୍ରଙ୍କ ଦୂତ, ଏମନ୍ତ କହିଣ ଚରଣ ତଳରେ ପଡ଼ିଲା ଧାଇଁ ତୁରିତ । ସେ ରାମଦୂତ । ଶ୍ରୀରାମ ମୁଦ୍ରିକା ଦେଲେ, ସଙ୍କେତମାନ କହିଲେ, ତୁମ୍ଭଙ୍କୁ ଦୁଃଖୀ ଯାକ

ଖୋଜ ଅଛୁଁ ଅଞ୍ଜନାସୁତ କହିଲେ । ପ୍ରଶାନ୍ତି ଗଲେ । ରାମ କଲେ ବାଲୀ ହତ, ସୁଗ୍ରୀ ସଙ୍ଗେ ହେଲେ ମିତ, କୋଟି କୋଟି କପି ମୋହର ସମାନେ ହୋଇଛୁଁ ପ୍ରଭୁଙ୍କ ଭୃତ୍ୟ । କହିଲ ସତ୍ୟ ॥ ସମୁଦ୍ର ଡେଇଁ ଅଇଲ, ଲଙ୍କାଗଡ଼ରେ ପଶିଲ, ତୁମ୍ଭ ଶ୍ରୀଚରଣ ଦର୍ଶନ ନ ପାଇ ପ୍ରାଣ ମୁଁ ହରଉଥିଲ । ଭଲ ଦେଖିଲ ॥ ରାମ ମାଲ୍ୟବନ୍ତ ଗିରି, ଶିଖେଛନ୍ତି ବଜେ କରି, ସୁଗ୍ରୀବ ସହିତେ ଅନେକ ମର୍କଟ ବନ ଗିରି ଛନ୍ତି ପୂରି । ସେ ରକ୍ଷ ହରି ॥ ଆସ ମୋର କନ୍ଧେ ବସ, ଘେନଯିବି ରାମ ପାଶ, ରାବଣ ସହିତେ ମାରନ୍ତି ପ୍ରଭୁଙ୍କ ପ୍ରତିଜ୍ଞା ହୋଇବ ନାଶ । ଦେଖ ସାହସ ॥ ଶୁଣିଣ ଦେବୀ ହରଷ, ହନୁକୁ ବସାଇ ପାଶ, ବୋଲଇ ଋଷି ବିଶ୍ୱାସ କଥା ଶୁଣି ସଂଶୟ ହେଲା ବିନାଶ । ଏ ରାମରସ । ୧୨ ।

—※—

## ୧୦ମ ଛାନ୍ଦ

ରାଗ--ତୋଡ଼ି

ରାମଆଜ୍ଞା ହନୁ ଶିରେ ଘେନ । ଅଞ୍ଜନାସୁନୁ ସାଗର ଜିଣି । ସୀତାଙ୍କ ଅଗ୍ରତେ ମୁଦ୍ରିକା ଦଅନ୍ତେ ଦେଖି ରୋଦନ୍ତି କ୍ଷିତିନନ୍ଦନୀ । ହେ ରତ୍ନମୁଦ୍ର । ଜାଣୁ ଜାଣୁ ହରାଇଲ ମୋର ବୁଦ୍ଧି । ଶୂନ୍ୟ ଅଙ୍ଗେ ବସିଥିବେ ଦୟାନିଧି ॥ ଶିବ କୋଦଣ୍ଡ ଭଙ୍ଗିବାବେଳେ । ତୋତେ ମୋତେ ପିତା ଘେନକୋଳେ । ଗଦଗଦ ହୋଇ ଲୋତକ ବୁହାଇ ତୋତେ ମୋତେ ଦେଲେ ରାମ କୋଳେ ॥ ସର୍ବ ଅଳଙ୍କାର କଲେ ଦୂର । ଆଜ୍ଞା ନ ଭଙ୍ଗିଲେ ପିତାଙ୍କର । ନିରଞ୍ଜନ ବେଶ ହୋଇ ଦାଶରଥି ତୋତେ ମାତ୍ରକ ଧଇଲେ କର ॥ କି କେ ଅଇଲ ସାଗର ଜିଣି । ଏକା ହୋଇଥିବେ ରଘୁମଣି । ନ ସହି ଦଇବ ଏ ଦଣ୍ଡ ବହିଲି ଯାବ ଯାଉ ରାମନାମ ପୁଣି ॥ ପରିହମା କରି ମୋର ଅଙ୍ଗ । ଯୁବାକାଳେ ବହି କଲ ଭଙ୍ଗ । କେବଳ ରାଘବ କରୁଣା କୋଦଣ୍ଡ ରାଗ୍ୟଥିଲେ ହେବ କାନ୍ତସଙ୍ଗ ॥ ଆହେ ମାରୁତି ବହନ ଯିବ । ରାମ ଅଗ୍ରତେ ପ୍ରବେଶ ହେବ । ବୋଲେ ଋଷି ମହାସତୀ ଆଜ୍ଞା ଦେଲେ ମଥାମଣି ପଦ୍ମପାଦେ ଦେବ । ୭ ।

—×—

## ୧୧ଶ ଛାନ୍ଦ

ରାଗ—ଶ୍ରୀମଣ୍ଟା

ମୁଦ ସନ୍ତକ ପାଇ କନକ ତନୟା । ବସ୍ତୁରନ୍ତି ଅସୁର ବା କରନ୍ତୁ ମାୟା । ବନସ୍ତ୍ରସ୍ତ ହୋଇ ବନେ ଏ ବୁଲୁଥାନ୍ତା । ଦେବତାଙ୍କ ଅଲଙ୍କାର

କାହୁଁ ପାହାନ୍ତା ॥ ବନପଶୁ ହୋଇ ପୁଣି ଏଡେ ସୁନ୍ଦର । କାହିଁକି ଦେଖିନି ନାହିଁ ନେତ୍ର ମୋହର । କପି ଜାତିର ଏଡ଼େକ ସାହସ କାହିଁ । କେମନ୍ତ ଆଇଲୁ ଏହୁ ସାଗର ଡ଼େଇଁ ॥ ଏତେ ବୋଲି ବିଚାରନ୍ତି ଜନକସୁତା ॥ ନଷ୍ଟପୁ ରାବଣ ଏ ଇନ୍ଦ୍ରଜିତ ପିତା ॥ ଏତେ ଭାଳି ପଚାରନ୍ତି ହନୁକୁ ତହିଁ । ପୂର୍ବେ ତୋହର ମୋହର ଦେଖିନି ନାହିଁ । ଯେମନ୍ତ ପ୍ରତେ ଯିବଇଁ ସେ କଥା କହ । ମୋର ମନକୁ ତ ତୋତେ ଲାଗେ ସନ୍ଦେହ ॥ ଏହା ଶୁଣି ହନୁମନ୍ତ ଯୋଡ଼ଇ କର । ମୁହିଁ ଅଟଇ କେଶରୀ କପିକୁମର । ବାଳୀ ସୁଗ୍ରୀବଙ୍କ ମୁଁ ଭଣଜା ଅଟଇ । ଏବେ ରଘୁନାଥର ଚରଣେ ଖଟଇ ॥ ଜାନକୀ ବୋଲନ୍ତି ଜାଣେ କେ ସୁଗ୍ରୀବର । କେ ଜାଣଇ ବଳୀରାଜା କାହା କୁମର ॥ ଜାଣିଥିଲେ କହ ତୁ ଗୁପତ ସନ୍ଦେଶ । ନ କହିଲେ ନଷ୍ଟେ ତୋତେ କରିବି ନାଶ ॥ ହନୁମନ୍ତ ବୋଲଇ ଶୁଣ ବଇଦେହୀ । ଚିତ୍ରକୂଟେ ବରଷେକ ଥିଲ ଯେ ରହି । ତହିଁରେ ଯେତେ କଲ ତୁମ୍ଭେ କ୍ରୀଡ଼ା ରସ । ଗୁପତେ କହିଲେ ରାମ ସେହି ସନ୍ଦେଶ ॥ ଦିନେ ଗଲ ଲକ୍ଷ୍ମଣଙ୍କୁ ବସା ଜଗାଇ । ବନରେ ବିହାର କଲ ଏକାନ୍ତ ହୋଇ ॥ ବନମଧ୍ୟେ ତୁମ୍ଭଙ୍କୁ ଲୁଚି ରଘୁପତି । ଖୋଜି ଖୋଜି ଠାବକଲ ଗୋ ମହାସତୀ ॥ ତହୁଁ ନାଗେଶ୍ୱର ବନେ ଯାଇ ପଶିଲ । ନାନା ପୁଷ୍ପତୋଳି କ୍ରୀଡ଼ାରସେ ମାତିଲ ॥ ପୁଣି ମନ୍ଦାକିନୀ ଜଳେ ପଶିଲ ଯାଇ । ଜଳକ୍ରୀଡ଼ା ସାରି କୂଳେମିଳିଲ ଦୁଇ ॥ ଧାତୁ ଶିଳାରେ ବସାଇ ଜଗତଜନନୀ । ଗେରୁ ଘୋରି ତୁମ୍ଭ ମୁଣ୍ଡେ ଦେଲେକ ଟିକା ॥ ତହୁଁ ହସ୍ତ ଧରା ଧରି ହୋଇଣ ଗଲ । ବନରେ ବୁଲି ଦେଖିଲ ମର୍କଟପଲ ॥ ତାହା ଦେଖି ଭୟ ପାଇ ଗଲ ପଳାଇ । ଲେଉଟିଣ ରାମଙ୍କୁ ଧଇଲ କୁଣ୍ଢାଇ । କୋଳ କରନ୍ତେଣ ଗେରୁ ଟିକା ଲାଗିଲା । ତହୁଁ ଦୁଇଜଣଙ୍କର ଲୀଳା ବଢ଼ିଲା ॥ ଗୁପତ କରିଣ ରାମ ଏହା କହିଲେ । ଏ କଥା କହିବୁ ସୀତା ପ୍ରତେ ନ ଗଲେ ॥ ଏହା ଶୁଣି ଜାନକୀ ହୋଇଲେ ହରଷ । ବୋଇଲେ ତୁ ପ୍ରଭୁଙ୍କର ବଡ଼ ବିଶ୍ୱାସ ॥ କହ କହ ହନୁମନ୍ତ କୁଶଳ ବାଣୀ । କୁଶଳେ ଲକ୍ଷ୍ମଣ ସେବା କରନ୍ତି ଜାଣି । ମୋହଠାରେ ତାହାଙ୍କର ଅଛି କି ମନ । ବୋଲଇ ବିକ୍ରମ କହ ହେ ହନୁମାନ । ୨୫ ।

—●—

## ୧୨ଶ ଛାନ୍ଦ

ରାଗ—ଆହାରୀ । ଆଦ୍ୟମାର୍ଗଶୀର ବାଣୀ

କହ ହନୁ ମୋର କାନ୍ତର କୁଶଳ ଲକ୍ଷ୍ମଣର ସର୍ବ କୁଶଳ । ମରକତ ହେମ ବେନି କଳେବର ହୋଇ ନାହାନ୍ତି ନା ଦୁର୍ବଳ । ହନୁ ହେ, ବେନି

ଭାଇଙ୍କର କୁଶଳ । କୁଶଳ କରି ଲକ୍ଷ୍ମଣ ସେବା କରି ଥାଆନ୍ତି କି ପାଦକମଳ ॥ ମୋର ବିଚ୍ଛେଦ ହୋଇଲା ହନୁ ତନୁ ଦୁର୍ବଳ ହୋଇଥିବେ ପରା । ଅଧୈର୍ଯ୍ୟ ହୋଇଲେ ଲକ୍ଷ୍ମଣ ତାହାଙ୍କୁ କରାଉଥାନ୍ତି କି ଧୀର । ହନୁ ହେ, ମୋତେ ଏଥୁ ନିସ୍ତେଁ ନେବେକି । ବାନରବଳଙ୍କୁ ଘେନି ସିନ୍ଧୁପାର ହୋଇ ଏଥିକୁ ଆସିବେ କି ॥ ମୋତେଟିକି ହନୁ ଚିନ୍ତା କରୁଥାନ୍ତି ଚିତ୍ତରେ ଚିନ୍ତେଇ ମୋ ଭାବ । ସ୍ନେହ ଅଛନ୍ତି କି ମୋର ବିଷୟରେ ଯଥାର୍ଥ କରିଣ କହିବ । ହନୁ ହେ, ସତ୍ତ କି ଶ୍ରୀମୁଖ ଦେଖିବ । ସତ କହ ହନୁ କେତେ ଦିନଯାଏ ତନୁରେ ଜୀବନ ରହିବ ॥ ବୋଲଇ ଯେ ହନୁ କନ୍ଧରେ ବସାଇ ଶ୍ରୀରାମ ପାଶେ ଘେନିଯିବ । ସ୍ୱଇଚ୍ଛାରେ ମୁହିଁ କେମନ୍ତ ପ୍ରକାରେ ପୁରୁଷ ଅଙ୍ଗକୁ ଛୁଇଁବି । ହନୁହେ, ଚୋରାଇ ରାବଣ ଆଣିଲା । ତୁମ୍ଭେ ଚୋରାଇ ଘେନିଗଲେ ପ୍ରଭୁଙ୍କ ଯଶ ଆଉ କାହିଁ ରହିଲା ॥ ବିଶ୍ରବାନନ୍ଦନ ଆସିଣ ଏଠାକୁ କହି ଯେ ବେନିମାସ କଲା । ବେନିମାସେ ମୋତେ ଶ୍ରୀରାମ ଲକ୍ଷ୍ମଣ ଦେଖାଇବୁ ବୋଲି ବୋଇଲା । ହନୁ ହେ, ଏକମାସ ଥିବ ପ୍ରାଣ ହେ । ପ୍ରାଣ ଥାଉଁ ଥାଉଁ ଶ୍ରୀରାମ ଲକ୍ଷ୍ମଣ ଶୀଘ୍ର କରି ତୁମ୍ଭେ ଆଣ ହେ ॥ କପି । ହନୁ ମୋର ପାଇଁ ରାମ ଦେଲେ କରପଲ୍ଲବର ମୁଦ୍ରିକା । ଶୂନ୍ୟେ ଯେ ହୋଇଥିବ ମୋ ପ୍ରଭୁଙ୍କର କର କମଳ ଅନାମିକା । ହନୁ ହେ, ଏ ମୁଦ୍ରିକା ନୋହେ ଅନ୍ତର । ପ୍ରଭୁଙ୍କ କରେ ଥାଇଣ ମୋର ତନୁଭ୍ରମୁ ଯେ ଥାଇ ନିରନ୍ତର ॥ ମୁଦ୍ରିକା ମସ୍ତକେ ଲଗାଇ ଆପଣା ପଣତରେ ବାନ୍ଧି ରଖିଲେ । ମସ୍ତକୁଁ ମଣି ବାହାର କରି ପୁଣି ହନୁ କରରେ ସମର୍ପିଲେ ॥ ହନୁ ହେ, ମୋତାରେ କରୁଣା କରିବେ । ଦୀନଜନଠାରେ କରୁଣା କଲେଟି କରୁଣାସିନ୍ଧୁ ବୋଲାଇବେ ॥ କହିବ ହନୁ ହେ, ଏତେକ ମାତ୍ରକ ମୋହର ବିନୟ ଉଦନ୍ତ । କେବଳ ମୋହର କଲା ଅପରାଧ କ୍ଷମା କରିବେ ମୋର କାନ୍ତ । ହନୁ ହେ, ପ୍ରବୋଧ କରିଣ କହଇ । ବୋଲେ ବୀରି ରାମ ଶ୍ରୀମୁଖରେ ଜଣାଇ ନିକଟେ ଆଣିବ ବୋଲଇ ।୮।

—※—

## ୧୯ଶ ଛାନ୍ଦ

ରାଗ—କାଫି

କହେ ଅଞ୍ଜନାସୁତ ଯୋଡ଼ିଣ ପାଣି । କମଳ ପତ୍ର ନେତ୍ର ସନ୍ତାପ ଗୋ ଶୁଣିମା ଠାକୁରାଣୀ ॥ ତୁମ୍ଭ ବିହୁନେ ଦଶରଥନନ୍ଦ । ନିଶି ଦିବସେ ମୁଁ ନ ଦେଖିଲି ଗୋ ତାଙ୍କ ନିଦ୍ରା ଭୋଜନ ॥ ତୁମ୍ଭର ଗୁଣ ଗୁଣନ୍ତି ଅହ-ନିଶି । ଯେସନେ ଅନୁଦିନେ ଛୁଟଇ ଗୋ କୃଷ୍ଣପକ୍ଷର ଶଶୀ ॥ ଖସି ପଡ଼ଇ ଅଙ୍ଗୁଳିରୁ ମୁଦ୍ରିକା । ନୟନ ନୀର ସ୍ଥିର ନୁହଇ ଗୋ ସେ ତ ଝୁରନ୍ତି ଏକା ॥

କେତେବେଳେ ବେଳେ ଧନୁଶର ଘେନନ୍ତି । କେତେବେଳେ ବେଳେ ତୁମ୍ଭ ବାହୁନେ ଗୋ ଧରଣୀରେ ପଡ଼ନ୍ତି ॥ କେତେବେଳେ ଚନ୍ଦ୍ର ମଣ୍ଡନ୍ତି ତପନ । କେତେବେଳେ ବେଳେ ମନ୍ଦ ମରୁତ ଗୋ କୁଳଶର ସମାନ ॥ ଫେରଯ୍ୟ ଫିଟାଇ କହ ଠାକୁରାଣୀ । କେମନ୍ତେ ପ୍ରତେ ମୋତେ କରିବେ ଗୋ ପ୍ରଭୁ କୋଦଣ୍ଡପାଣି । ସନ୍ତକ କର ଦେଲ ମସ୍ତକମଣି । ପଚାରିଲେ ମୁଁ କିସ କହିବି ଗୋ କହ ଗୁପତ ବାଣୀ ॥ ଆଉ କେତେକ ଦିନେ ରାମ ରାଜନ ॥ ରାବଣକୁ ମାରିଣ ତୁମ୍ଭଙ୍କୁ ଗୋ ଏଥୁ ନେବେ ବହନ ॥ ନୁହ ବିକଳ ଚିନ୍ତା ଛାଡ଼ି ସକଳ । ବୋଲଇ ବିଶି କହ ବିଶ୍ୱାସ ଗୋ ଶ୍ରୁତି ହେଉ ସଫଳ । ୧୦ ।

---

## ୧୪ଶ ଛାନ୍ଦ

### ରାଗ—ବଙ୍ଗଳାଶ୍ରୀ

କହଇ ହନୁ ଚିତ୍ରକୂଟ ବୃତ୍ତାନ୍ତ ଗୁପତ ବାରତା ତୋତେ । ସେ କଥା ପ୍ରଭୁ ଛାମୁରେ ଜଣାଇଲେ ଦୟା ବା କରିବେ ମୋତେ ॥ ଦିନେ ହେ ଶକ୍ରକୁମର ଦେଖି ମୋତେ ମଦନେ ହୋଇଲା ବଶ । ମାଂସ ଶୁଖାଇବା ସମୟରେ ହେଲା ମୋର ପାଶରେ ପ୍ରବେଶ ॥ ସ୍ତନେ ମୋହର ନଖାନ୍ତରେ ମାରନ୍ତେ ରୁଧିର ହୋଇଲା ଜାତ । ତାହା ଦେଖି ରଘୁକୁଳର ଚନ୍ଦ୍ରମା କଲେ ତାକୁ କୋପଚିତ୍ତ । କୁଶ ଗୋଟିଏ ଆସନୁ କାଢି ବ୍ରହ୍ମ-ମନ୍ତ୍ରରେ ପ୍ରୟୋଗ କଲେ । କାକର ଜୀବନ ନେଇ ତୁ ଆସିବୁ ବୋଲି ତାକୁ ଆଜ୍ଞାଦେଲେ ॥ କାକ ପଳାଇ ତ୍ରିଭୁବନେ ବୁଲିଲା ଶରଣ କେହି ନ ଦେଲା । ପୁଣି ଶ୍ରୀରାମ ଚରଣତଳେ ପଡ଼ି ଶରଣ ଆସି ପଶିଲା ॥ ଯାହାର ଶର ତ୍ରିଭୁବନେ ଗୋଡ଼ାଇ ଶତ୍ରୁ କରଇ ବିନାଶ । ସେ ଶରମାନ ତୂଣୀରୁ କ ପେଷିଲେ ରାବଣକୁହନ୍ତା ନାଶ ॥ ଏଣୁ ବିଚାରଇ ମୋହଠାରେ ଆଉ ନାହିଁ ପୂର୍ବ ଅନୁରାଗ । ଆହୁରି ଗୁପତ କଥାଏ କହିବି ପବନସୁତ ତୋ ଆଗ ॥ ଦିନେ ମୋତେ ବେଶ କରିଣ ଜାନୁରେ ବସାଇଲେ ଚିତ୍ରକୂଟେ । ମନଶିଳେ ଗେରୁ ଘୋରିଣ ତିଳକ ରଚିଲେ ମୋର ଲଲାଟେ ॥ ଏହି ସମୟରେ ଚିବୁକ ଧରିଣ ବୋଲିଣ ଅଛନ୍ତି ଯାହା । ସେ କଥା ଚିନ୍ତେଇ ଦୟା ବା କରିବେ ଚିହ୍ନିଆଇବୁ ତୁ ତାହା ॥ ଯାହା ଦେଖୁଛୁ ଏ ବେଦନା ମୋହର ବାରେ ମାଷ ଜଣାଇବ । ଲକ୍ଷ୍ମଣ ସହିତେ ପ୍ରଭୁଙ୍କୁ ତୁମ୍ଭର ବାରେ ହେଲେ ଅଣାଇବ ॥ ଜାଣିଲି ପ୍ରଭୁଙ୍କ ବିଶ୍ୱାସୀ ସେବକ ଅଟ ହେ ଅଞ୍ଜନାସୁତ । କେବଳ ଜୀବନ ମାସେ ମୋର ଥିବ ଆସିବ ତୁମ୍ଭେ ତୁରିତ । ଠାକୁରାଣୀ ବାଣୀ ଶୁଣି କପିମଣି ମନରେ ବିଚାର କଲେ । କାର୍ଯ୍ୟ ସିଦ୍ଧ ହେବ ଅସୁର ଥୋକାଏ ମାରି

ଏଥୁ ମୁହିଁ ଗଲେ । ପୁଣି ବିଗୁରିଲେ ପୁତ୍ରହିଁ ଅଧିକ କରିଛି ଏ ମଧୁବନ । ଏହା ମୁଁ ଭାଙ୍ଗିଲେ ଅସୁର ଆଇଲେ ତେବେ ହୋଇବେ ନିଧନ ॥ ଏତେ ବିଗ୍ଭରିଣ ମେଲାଣି ହୋଇଣ ମଧୁବନେ ପରବେଶ । ସମସ୍ତ ତରୁ ଭାଙ୍ଗିବାରେ ଲାଗିଲେ ଭଣେ ବଶି ରାମ ରସ । ୧୪ ।

—×—

## ୧୫ଶ ଛାନ୍ଦ—ଅକ୍ଷୟକୁମାର ବଧ

ରାଗ—କାଫି

ଶ୍ରୀରାମଦୂତ କରିଣ କାର୍ଯ୍ୟ ସିଦ୍ଧ । ହରିହାର । ଅସୁର ମାରିବାକୁ ସେ କରେ ସଧ ॥ ରାବଣର ସ୍ନେହ ଅତି ମଧୁବନ । ହରିହାର । ଭାଙ୍ଗିବାକୁ ବିଗ୍ଭରି କରଇ ମନ ॥ ଏତେ ଭାଳି ବନକୁ ଭିତରେ ପଶି । ହରିହାର । ତରୁ ଉପାଡ଼ିଣ ଫଳ ଭୁଞ୍ଜେ ହସି ॥ ସ୍ୱର୍ଗସାର ତରୁ କରେ ନାରଖାର । ହରିହାର । ଉପାଇଣ ଦେଲା ସେହି ଜଳଧିର ॥ ପ୍ରଳୟକାଳରେ କି ପ୍ରଖର ବାତ । ହରିହାର । ହାତେ ମଧୁବନକୁ ହେଲା ହତ ॥ ରକ୍ଷାସୁରମାନଙ୍କୁ ଜୀବନେମାରି । ହରିହାର । ନାମରେ ଗୁହାରି କଲେ ଅମରାରି ॥ ସୀତାପାଶେ ଦେବ କି କି କହିଥିଲା । ହରିହାର । କି ଶୁଣି ତାହାର ମୁଖୁ ଏହା କଲା ॥ ଶୁଣି ରାବଣ ପେଷୁ କଙ୍କରଗଣ । ହରିହାର । ଶିଳା ତରୁରେ ସବୁର ନେଲା ପ୍ରାଣ ॥ ଶୁଣି ରାଜା ମନ୍ତ୍ରୀପୁତ୍ର ପେଷିଦେଲା । ହରିହାର । ହାତେ ସାତହାରଙ୍କର ପ୍ରାଣଗଲା ॥ ଶୁଣି ପୁଣି ପେଷିଲା ଅକ୍ଷୟକୁମାର । ହରିହାର । ତା ସଙ୍ଗେ ସମର କଲା ଆକାଶର ॥ ବହୁ ରଣ କରି କଲା ତାକୁ ହତ । ହରିହାର । ସୈନ୍ୟ ସଙ୍ଗେ ମାଇଲା ରାବଣସୁତ ॥ ଜାମ୍ବୁମାଳି ସହିତରେ ସେନା ପାଞ୍ଚ । ହରିହାର । ପଞ୍ଚତ୍ୱ କଇଲେ ରଢ଼ି କଲେ ଉଚ ॥ ପୁତ୍ରବଧ ଶୁଣି ରାଜା ଶୋକ କଲା । ହରିହାର । ଏତେକାଳେ ମୋତେ ପୁତ୍ରଶୋକ ହେଲା ॥ ବାଲୀ ସୁଗ୍ରୀବ ଅବା ଦୁର୍ବହ ହନୁ । ହରିହାର । ଏତେ ସୈନ୍ୟ ମାଇଲା ପବନସୂନୁ ॥ କହି ବିଳାପ କରନ୍ତେ ଦଶାନନ । ହରିହାର । ବୋଲେ ଋଷି ଶଙ୍କାଜିତ କୋପମନ । ୧୫ ।

—×—

## ୧୬ଶ ଛାନ୍ଦ—ନାଗପାଶ ବନ୍ଧନ

ରାଗ—କଳଶାବାଣୀ

ରାବଣ ବିଳାପ ଶୁଣି ଶଙ୍କାଜିତ ବୀର । କର ଯୋଡ଼ି ବୋଲଇ ଶୁଣିମା ଦଶଶିର ॥ ସନ୍ତାପ ତେଜଇ ଏବେ ଆଜ୍ଞା ଦିଅ ମୋତେ । ଏହିକ୍ଷଣି ବାନ୍ଧି ଆଣିବଇଁ ମୁଁ ତ୍ୱରିତେ ॥ ପୁତ୍ରର ମୁଖରୁ ଶୁଣି ବୋଲଇ ଦଶଶିର । ସାଅ

ବାପୁ ବେଗ ହୋଇ ବାନରକୁ ଧର ॥ ସାମାନ୍ୟ ନୁହଇ କପି ନ ଯିବ ଭରସି । ସିନ୍ଧୁ ଡେଇଁ କରଣ୍ଟି ଲଙ୍କାକୁ ଅଛୁ ଆସି ॥ ସାବଧାନ ହୋଇ ତାର ସଙ୍ଗେ କର ରଣ । ଏସନ କହି ପୁତ୍ରକୁ ପେଷିଲା ରାବଣ ॥ ରଥ ଚଢ଼ି ଇନ୍ଦ୍ରଜିତ ଧନୁଶର ଧରି । ବାହାର ହୁଅନ୍ତେ ସୈନ୍ୟ ଲଙ୍କାଦାଣ୍ଡ ପୂରି । ଦେଖିଲା ଅଶୋକ ବନ ହୋଇଅଛୁ ପଦା । ପଡ଼ିଅଛୁ ସବୁଠାରେ ଶବ ଗଦା ଗଦା ॥ ବସିଅଛୁ ତୋରଣସ୍ତମ୍ଭେ କପି ମହାବଳୀ । ଦେଖି ରାବଣକୁମର ସମ୍ମୁଖରେ ମିଳି ॥ ସସ୍ତ୍ର ସସ୍ତ୍ର ନାରାଚ କରନ୍ତେ ତାକୁ ବୃଷ୍ଟି । ମହାମୁନାଶର ତାର ଅଙ୍ଗରେ ନ ଫୁଟି ॥ ଅନେକ ସଇନ ହନୁମନ୍ତ କ୍ଷୟ କଲା । ରାବଣକୁମର ତାକୁ ସମରେ ହାରିଲା ॥ ଲଜ୍ଜା ପାଇ ଅସୁର କଲା ମାୟା ରଣ । ବ୍ରହ୍ମପାଶ ମନ୍ତ୍ରିଣ ପେଷିଲା ତେହିକ୍ଷଣ ॥ ଶୀଘ୍ରେ ପାଶ ବାନ୍ଧିଲାକ ହନୁମନ୍ତ ଗାତ୍ର । ଦେଖିଣ ସାନନ୍ଦ ହେଲା ରାବଣର ପୁତ୍ର ॥ ହନୁ ବିଚାରିଲା ମନେ ଏ ତ ବ୍ରହ୍ମପାଶ । ଏହା ଯଶ କପାଁ ମୁହିଁ କରିବିବିନାଶ ॥ ରାବଣକୁ ଦେଖିବି ବନ୍ଧନ ହେଲେ ସିନା । ଏମନ୍ତବିଚାରି ହନୁ ହୋଇଲାବନ୍ଧନ ॥ ଅସୁରଙ୍କ ହାତରେ ଘେନାଇ ଗଲା ହନୁ । ରାବଣ ଛାମୁରେ କଲା ରାବଣର ସୂନୁ ॥ ଦେଖିଣ ଆନନ୍ଦ ହୋଏ ବିଶ୍ରବାକୁମର । ହନୁକୁ ଚାହିଁଣ ସେ ବୋଲଇ ଉତ୍ତର ॥ କେବଣ ଦେଶରୁ କପି ଅଇଲୁ ତୁ କେଣେ । ଲଙ୍କାରେ ପଶିଲୁ ମୋର କେବଣ କାରଣେ ॥ ଏ ମୋହର ମଧୁବନ କପାଁ କଲୁ ନଷ୍ଟ । ଅକ୍ଷୟକୁମର କ୍ଷୟ କଲୁରେ ପାପିଷ୍ଠ ॥ ହନୁମନ୍ତ ବୋଲନ୍ତି ଶୁଣରେ ଦଶଶିର । ନାମ ମୋର ହନୁମନ୍ତ ପବନକୁମର ॥ ବାଳୀ ସୁଗ୍ରୀବଙ୍କର ମୁହିଁ ଭଣଜା ଅଟଇ ଏବେ ରଘୁନାଥଙ୍କର ଚରଣେ ଖଟଇ ॥ ସୁଗ୍ରୀବ ସଙ୍ଗେ ମିତ୍ର ହେଲେ ଦଶରଥ ସୁତ । ଏକା କାଣ୍ଡକେ ବାଳୀର ପ୍ରାଣ କଲେ ହତ ॥ କିଷ୍କିନ୍ଧ୍ୟା କଟକେ କଲେ ସୁଗ୍ରୀବ ନୃପତି । ଶ୍ରୀରାମଙ୍କୁ ସେବାକଲା ଘେନଣ ବିଭୂତି ॥ ଋକ୍ଷ ବାନର ହୋଇଲେ ଶ୍ରୀରାମଙ୍କ ଦାସ । ସୀତା ଖୋଜିବାକୁ ପେଷିଛନ୍ତି ଦଶଦଶ ॥ ସମୁଦ୍ର ଡେଇଁ ମୁହିଁ ଲଙ୍କାକୁ ଅଇଲି । ଅଶୋକ ବନରେ ତୋର ସୀତାଙ୍କୁ ଦେଖିଲି ॥ ଯୁବତୀ ଚୋରିକରି ଆଣି ବୋଲାଉ ତୁ ବୀର । ଆଜ୍ଞା ନାହିଁ ନୋହିଲେ ମୋଡନ୍ତି ଦଶଶିର ॥ ବିଚାରୁଛୁ ପାଶେ ମୋତେ କରିଛୁ ବନ୍ଧନ । ଉପାଡ଼ି ନେଇ ପାରଇ ତୋ ଲଙ୍କା ଭୁବନ ॥ କୋପରେ ରାବଣ ପ୍ରହସ୍ତକୁ ଆଜ୍ଞା ଦେଲା । ବାନରକୁ ଆଣି ମୂଳ ଦଅରେ ବୋଇଲା ॥ ଆଜ୍ଞା ପାଇଣ ଅସୁରେ ଚଉପାଶେ ବେଢ଼ି । ବୋଳେ ବାଟି ନାନା ଶସ୍ତ୍ରମାନ ତ ପହୁଡ଼ି । ୧୪ ।

—x—

## ୧୭ଶ ଛାନ୍ଦ—ଲଙ୍କାପୋଡ଼ି

ରାଗ—ଚୋଖି

କରଯୋଡ଼ି କହେ ବିଭୀଷଣ । ଶ୍ରୀ ଦେବ ମୋର ବିନୟ ଶୁଣ ।
ଦୂତ ଅବଧ ବଧ ନୋହେ ଉଚିତ ଲାଙ୍ଗୁଡ଼ି ଏହାର କର ଖଣ୍ଡ ॥
ଏହାଙ୍କୁ ବନ୍ଧନୁ କର ମୋକ୍ଷ । ଅନଳ ଲଗାଅ ଏହା ପୁଚ୍ଛ ।
ଚଉଗଙ୍ଗୁରି ବଜାଇ ଲଙ୍କାରେ ବୁଲାଇ ଗୃହ ନ ଦିଅ ପବନବତ୍ସ ॥
ହସିଣ ବୋଲଇ ଲଙ୍କେଶ୍ବର । ବିଶେଷେ କପି ଲାଙ୍ଗୁଳ ସାର ।
ଲାଙ୍ଗୁଳେ ବସନ ଗୁଡ଼ାଇ ଏବେ ଢାଳ ତହିଁରେ ତଇଲଧାର ॥
ଆଜ୍ଞା ପାଇ ପରିଚାରମାନେ । ବସନ ଆଣିଲେ ତୋଷମନେ ।
ହନୁ ଲାଙ୍ଗୁଡ଼େ ଗୁଡ଼ାଆନ୍ତେ ବଢ଼ଇ କଳ ନ ପାରନ୍ତି ଅନୁମାନେ ॥
ଯେତେ ବସ୍ତ୍ର ଲଙ୍କାଗଡ଼େ ଥିଲା । ହନୁ ଲାଙ୍ଗୁଡ଼କୁ ନ ଅଣ୍ଟିଲା ।
ଲଜ୍ଜା ପାଇ ପୁଣି ରାବଣ ଭଣ୍ଡାରୁ ବହୁତ ବସନ ଅଣାଇଲା ॥
ଲାଙ୍ଗୁଡ଼େ ବସନ ବେଢ଼ାଇଲେ । ଅନେକ ତଇଲ ଢାଳିଲେ ।
ବ୍ରହ୍ମାବରୁ ବ୍ରହ୍ମଶାପୁ ମୁକ୍ତ ହେଲା ଅନଳେ ତ ପୁଚ୍ଛ ପୋଡ଼ାଇଲେ ॥
ଲଙ୍କା ରାକ୍ଷସ ରାକ୍ଷସୀମାନେ । ଦେଖନ୍ତି ବନ୍ଧନ ହନୁମାନେ ।
ବିଚାରି ବୋଲନ୍ତି ଶଙ୍କାଜନିତ କର୍ମ୍ମ ଆଗୁ ନ ପେଷିଲେ ଦଶାନନେ ॥
ରଜ୍ଜୁରେ ଯେଣୁ ବନ୍ଧନ କଲେ । ବ୍ରହ୍ମପାଶ ହତମାନ୍ୟ ହେଲେ ।
ଅସୁରେ ସେ କଥା ଜାଣି ନ ପାରିଲେ ହନୁ ପାଶରୁ ଅନ୍ତର ହେଲେ ॥
ଲଙ୍କାଗଡ଼ଯାକ ବୁଲାଇଲେ । ଦ୍ୱାରେ ଦ୍ୱାରେ ମାଡ଼ ମାରିଲେ ।
ମିଛେହେଁ ହନୁ ଅଶକତ ହୁଅନ୍ତେ ରାବଣ ଶ୍ରୀମୁଖରେ ଜଣାଇଲେ ॥
ପୁଚ୍ଛରେ ଅନଳ ଜଳୁଥିଲା । ଶ୍ରୀମୁଖକୁ ହନୁକୁ ଅଣାଇଲା ।
ବୋଲଇ ପାମର ଅକ୍ଷୟ ନିହତ କରିଛି ଏବେ ଆସେ ମଲା ॥
ହନୁ ଶୁଣିଣ ଫେଡ଼ିଲେ ଆଖି । ବୋଲନ୍ତି ଶୁଣରେ ବଂଶ ଆଖି ।
ଏହିକ୍ଷଣି ତୋର ଭୁବନ ଦହିବ ପାରିବୁଟି କି ଆପଣେ ରଖି ॥
ଏତେ ବୋଲି ଜଗତିରେ ବସି । ପୁରେ ପୁରେ କଲା ଭସ୍ମରାଶି ।
ଲାଙ୍ଗୁଳ ଅନଳେ ସମସ୍ତେ ଦହିଲା ଅନାଥ ହୋଇଲେ ଲଙ୍କାବାସୀ ॥
ଦୋଷୀ ଅଦୋଷୀ ସବୁରି ପୁର । ଘରେ ନ ଲଢ଼ଇ କପିବୀର ।
କେବଳ ଅଶୋକ କାନନ ଛାଡ଼ିଣ ଅଙ୍ଗାର କରୁଛି ରତ୍ନପୁର ॥
ପୁଷ୍ପକ ବିମାନେ ଲଙ୍କାପତି । ବସାଇ କୁଟୁମ୍ବ ପୁତ୍ର ନାତି ।
ବୋଲଇ ବିଗି ଲଙ୍କାଦାହ ଦେଖାଇ ଆକାଶେ ରଥ ବକଳ ମତି ॥

—❋—

## ୧୮ଶ ଛାନ୍ଦ

ରାଗ—ବସନ୍ତ

ଏକ ଅସୁର ଅଶୋକ ବନେ ଯାଇ କହିଲା ଜାନକୀ ପାଶେ । ଯେଉଁ ମର୍କଟ ମଧୁବନ ଭାଙ୍ଗିଲା ତାକୁ ନେଲେ ନାଗପାଶେ ॥ ଲାଙ୍ଗୁଡ଼େ ତାର ବସନ ଗୁଡ଼ାଇ ତଇଳମାନ ତ ଇଡ଼ । ଅନେକ ପ୍ରକାରେ ମାଡ ମରାଇଣ ଦେଲେ ତାର ପୁଚ୍ଛ ପୋଡ଼ ॥ ବଞ୍ଚିଲା ପ୍ରକାରେ ଦଶୁନାହିଁ ମୋତେ ଯାହା ମୁଁ ଅଇଲି ଦେଖି । ନିଷ୍ଠୁରେ ଅନଳେ ପୋଡ଼ ମାରୁଛନ୍ତି କେ ତାକୁ ପାରିବ ରଖି ॥ ବାନର ହୋଇ ଅସୁରଙ୍କୁ ମାଇଲା ଅକ୍ଷୟ କଲା ବିନାଶ । ଏବେ ଅସୁରଙ୍କ ହାତରେ ପଡ଼ିଛି ଆଉ କି ଜୀବନେ ଆଶ ॥ ଶୁଣିଣ ଜନକନନ୍ଦିନୀ ଆତଙ୍କ ହୋଇଣ ବିଳାପ କଲେ । ଅଗ୍ନି ଦେବତାଙ୍କୁ କୃତାଞ୍ଜଳି ହୋଇ ବହୁତ ସ୍ତବ ପଢ଼ିଲେ ॥ ସଲିଳ ପ୍ରାୟ ହୋଇବ ହନୁ ତନୁ ପୁଚ୍ଛ ନୋହିବ ବିନାଶ । ଯେବେ ମୁଁ ନିଷ୍ଠେ ପତିବ୍ରତା ଅଟଇ ହନୁ ଯିବ ସ୍ୱାମୀ ପାଶ ॥ ମହାସତୀ ଆଜ୍ଞା ପାଇଣ ଅନଳ ଚନ୍ଦନରୁ ଶୀତଳ ହେଲେ । ହନୁମନ୍ତ ଏହା ଦେଖିଣ ହରଷ ବିସ୍ମୟ ହୋଇ ରହିଲେ ॥ ମନେ ବିଚାରିଲେ ଶ୍ରୀରାମ କରୁଣା କି ଅବା ଜାନକୀ ଦୟା । କି ଅବା ଅନଳ ଦୟା କରି ମୋତେ ଦହନ ନ କଲେ କାୟା ॥ ଅନାଇ ଅଛନ୍ତି ମହା ମହା ବୀରେ ମୁଖରୁଁ ନ ସ୍ଫୁରଇ ବାଣୀ । ବୋଲେ ବିଶି ହନୁ ଅସୁରଙ୍କୁ ଦିଶେ ପ୍ରଳୟ ଅନଳ ଜାଣି । ୯ ।

———

## ୧୯ଶ ଛାନ୍ଦ

ରାଗ—ମୁଖାରି

ପ୍ରଳୟକାଳର ହୁତାଶନ । ଯେସନ୍ତେ ଦହଇ ନିଯୁ ଭୁବନ । ସେହି ରୂପେ ରାବଣ ଭୁବନ । ଦହୁଅଛି ପବନନନ୍ଦନ ॥ ଶଙ୍କା ପାଇଲେ ଲଙ୍କା ରାକ୍ଷସ । ଜୀବନକୁ କରି ପ୍ରତିଆଶ । ରତ୍ନକୋଷ୍ଠ ଛଡ଼ାଇଣ ଆଶ । ବାସ କଲେ ସରୋବର ପାଶ ॥ ସବୁ ଅସୁରେ କରନ୍ତି ହା ହା । ଦେଖୁଅଛୁ ଦେଖ ବଂଶବାହା । ବାନର ଲଙ୍କା କରୁଛି ଦାହା । ବାବୁ ଦଇବ ନ କରେ କାହା ॥ ରାବଣକୁ କରନ୍ତି ଧିକ୍କାର । କେହି ବିଜୟୀ ଭୁ ନିଯୁପୁର । ପୁର ଦହୁଅଛି ବଣଚର । ଦେଖି ହସନ୍ତି ସକଳ ସୁର ॥ ଗୁଡ଼ କୁଟୁମ୍ବର ପ୍ରତିଆଶ । ସେହି ଜଳଧିରେ ଦେଲେ ଝାସ । କେହି କରିଣ ଅତି ସାହସ । କୂପ ଭିତରେ କଲେ ନିବାସ ॥ କେତେ ଦହନ ଯୋଗେ ମଲେ । କେତେ କାହିଁ ପଳାଇଣ ଗଲେ । କେହି

ପୁରକୁ ପିଠିରେ କଲେ । କେହ୍ନ ଦନ୍ତେ ତୃଣ ଧଇଲେ ॥ ସୁରପୁରେ ଯେବଣ ଦୁର୍ଲ୍ଲଭ । ରଖିଥିଲେ ତା ଅସୁର ସର୍ବ । ହନୁରେ କର ପାଇ ଆହବ । ହବ୍ୟ-ବାହନ ତା କଲେ ଗର୍ଭ ॥ ଲଙ୍କାପୋଡ଼ ମରୁତନନ୍ଦନ । ଲଞ୍ଜ କରଇ ସାଗରେ ସ୍ନାନ । ବଇଦେହୀଙ୍କି କଲେ ଦର୍ଶନ । କର ଯୋଡ଼ଣ କହେ ବଚନ ॥ ଶୁଣିମା ଜଗତ ଠାକୁରାଣୀ । ହେନ ଆସଇ କୋଦଣ୍ଡ ପାଣି । ନାଶିବେ ସେ ରାଘବ ରାବଣୀ । ହେଉଅଛୁ ରାମୁରୁ ମେଲାଣି ॥ ଶୁଣି ହୃଷ୍ଟ ଜନକକୁମାରୀ । ବାବୁ ନ ରହ ଅସୁରପୁରୀ । ଅବଲମ୍ବେ ଆଣ ରୂପଧାରୀ । ହନୁ ଶୁଣେ ପ୍ରଣମିତ କରି ॥ ହନୁ ଲଙ୍କାରୁ ବାହାର ହେଲେ । ସୁବଳଗିରି ଶିଖେ ଉଠିଲେ । ଫଳ ଜଳେ ତନୁ ଶାନ୍ତ କଲେ । ସେଠାବରୁ ସିନ୍ଧୁ ଡେଇଁଗଲେ ॥ ବସିଥିଲେ ଯୂଥପତିମାନେ । ଆକାଶେ କରି ଅବଲୋକନେ । ହନୁ ଖସି ପଡ଼ିଲେ ସେ ସ୍ଥାନେ । ବଶି ବୋଲେ ଗିରି କମ୍ପମାନେ । ୭ ।

—*—

## ୨୦ଶ ଛାନ୍ଦ

ରାଗ—କଲ୍ୟାଣ ଆହାରୀ

ଧାତା ସହିତେ ସକଳ ଅସୁରେ । ପ୍ରବେଶ ହେଲେ ରାବଣ ରାମୁରେ ॥ ଦେଖିଲେ ରାବଣ କୁପିତ ମନ । ସ୍ତୁତି କରଣ କହନ୍ତି ବଚନ ॥ ଆହେ ରାବଣ ତ୍ରିଭୁବନ ଦମନ । ଗଢ଼ୁ ଶତଗୁଣେ ହେବ ଭୁବନ ॥ ବିଶ୍ୱକର୍ମା ସୃଷ୍ଟି କମଳାସନ । ବୋଲନ୍ତି ଦେଖ ଏ ଲଙ୍କାଭୁବନ ॥ ଦହନ କରିଗଲା ହନୁମାନ । ଏଥକୁ କ୍ରୋଧ କଲେ ଦଶାନନ ॥ ତୁମ୍ଭେ ଏବେ ଲଙ୍କା କର ନିର୍ମାଣ । ଯେମନ୍ତ ତୋଷ ହୋଇବ ରାବଣ ॥ ଜଗତ ପିତାଙ୍କ ଆଜ୍ଞା ପ୍ରମାଣେ । ଲଙ୍କା ନିର୍ମାଣ କଲେ ସେହିକ୍ଷଣେ ॥ ନଗ୍ର ଦେଖି ତୋଷ ବିଶ୍ରବାସୁତ । ଧାତାଙ୍କୁ ପ୍ରଶଂସା କଲା ବହୁତ ॥ ଗତରୁଁ ସୁନ୍ଦର ହେଲା ନିର୍ମିତ । ବୋଲେ ବଶି ଲଙ୍କା ହେଲା ନିଶ୍ଚିନ୍ତ । ୪ ।

—:—

## ୨୧ଶ ଛାନ୍ଦ

ରାଗ—ଗୁଜ୍ଜରୀ

ଅଙ୍ଗଦ ସହିତେ ଯେତେ ମର୍କଟମାନେ । ପୁଚ୍ଛନ୍ତି ହନୁକୁ କରଣ ଆଲି-ଙ୍ଗନେ ॥ ଦେଖିଲଟି କି ଲଙ୍କାରେ ଜନକସୁତା । କହ କହ କପିବୀର ଶୁଭ ବାରତା ॥ ଦେଖିଲି ଦେଖିଲି ଲଙ୍କାଗଡ଼ରେ ସୀତା । ଅଶୋକବନେ ଅଛନ୍ତି ଲଭି କୁଶଳତା ॥ ହନୁ ମୁଖରୁ ଶୁଣିଣ ସକଳ ଦୂତେ । କାର୍ଯ୍ୟ ଲଭି ବାହୁଡ଼ି ଆଇଲେ ତ୍ୱରିତେ ॥ କିଷ୍କିନ୍ଧ୍ୟା ମଧୁବନରେ ହେଲେ ପ୍ରବେଶ ଦଧିମୁଖ ଦଣ୍ଡୀ

ଚୋଟା କଲେକ ଧ୍ୱଂସ ॥ ବାରତା ପାଇ ସୁଗ୍ରୀବ ହୋଇଲା ତୋଷ ॥ କର-ଯୋଡ଼ ଜଣାଇଲା ଶ୍ରୀରାମ ପାଶ ॥ ଏହି ସମୟେ ପ୍ରବେଶ ମର୍କଟବୀର । ସୁଗ୍ରୀବ ଦେଖିଣ କର ଦେଲେକ ଶିର ॥ ସୁଗ୍ରୀ ଶ୍ରୀରାମଙ୍କୁ କରାଇଲେ ଯେ ଭେଟ । ଦେଖିଣ ଶ୍ରୀରଘୁନାଥ ହୋଇଲେ ହୃଷ୍ଟ ॥ ଆସ ହେ ଅଙ୍ଗଦ ହନୁ ସକଳ ବୀର । ଦେଖିଲ ଦେଖିଲ ଠିକ ଜାନକୀ ମୋର ॥ ହନୁକୁ ଆଗ କରିଣ ସକଳ ବୀରେ । ଦୂରୁଁ ଦେଖି ସାଷ୍ଟାଙ୍ଗେ ପଡ଼ିଲେ ଭୂମିରେ ॥ ବେନିକର ଯୋଡ଼ିଣ କହଇ ମାରୁତି । ଦେଖିଲ ଲଙ୍କାରେ ଦେବ ତୁମ୍ଭ ଯୁବତୀ ॥ ସମୁଦ୍ର ତରନ୍ତେ ବିଘ୍ନ ହେଲା ବହୁତ । ତୁମ୍ଭ ପାଦ ଚିନ୍ତି ତହୁଁ ହେଲି ମୁକତ ॥ ଦେବତା ନିର୍ମାଣ ଦେବ ଲଙ୍କା କଟକ । ପ୍ରାଚୀର ସହିତେ ତାର ପୁର କନକ ॥ ଛଟକ ନବର ତାର ସ୍ୱର୍ଗକୁ ନିନ୍ଦେ । ସୁନାସିର ଧାତା ଆଦି ଯାହାକୁ ବନ୍ଦେ ॥ ବହୁ ପୁତ୍ର ନାତି ତାର ଅସଂଖ୍ୟ ବଳ । ଦଶଶିର ବଂଶକର ବିଶ୍ରବାବାଳ ॥ କୁମ୍ଭକ ବିଭୀଷଣ ସୋଦର ତାର । ବିଷମ ସୁନ୍ଦର ଦୁର୍ଗ ସିନ୍ଧୁ ଉଦର ॥ ସୂକ୍ଷ୍ମ ରୂପ ଧରି ତାର ପୁର ଚଖୋଜିଲି । ନ ଦେଖି ଅଶୋକ ବନେ ପ୍ରବେଶ ହେଲି ॥ ଦେଖିଲି ଯୁବତୀଶଶୀ ଅଛନ୍ତି ବସି । ବେଢ଼ିଛନ୍ତି ତାହାକୁ ସହସ୍ରେ ରାକ୍ଷସୀ ॥ ତବ ନାମ ଧରି କରୁଥିଲେ ରୋଦନ । ଏମନ୍ତ ସମୟେ ଦେବ କଲି ଦର୍ଶନ ॥ ପ୍ରସନ୍ନ ହୋଇଣ ସେ ନକହିଲେ କଥା । ଅବିଶ୍ୱାସ କରି ମୋତେ ପୋଡ଼ିଲେ ମଥା ॥ ତୁମ୍ଭ କୀର୍ତ୍ତି ଗୁଣ ଦେବ ସବୁ କହିଲି । ପ୍ରତେ ନ ଗଲାରୁ ପଛେ ମୁଦ୍ରିକା ଦେଲି ॥ ମୁଦ୍ରିକା ଦେଖିଣ ବହୁ କ୍ରନ୍ଦନ କଲେ । କୁଶଳ ବାରତା ଶୁଣି ଆନନ୍ଦ ହେଲେ ॥ ବୋଇଲେ ପ୍ରଭୁଙ୍କ ମୋର ଆଣ ବହନ । ଦର୍ଶନ ଆଶାରେ ରଖିଅଛୁ ଜୀବନ ॥ ଦେଖିଲି ମୁଁ ଦେବ କୃଶ ହୋଇଛୁ ତନୁ । ଶ୍ରୀମୁଖ ଦିଶଇ କିବା ତୁହିନ ଭାନୁ ॥ ଆଜ୍ଞା ଦେଲେ ହନୁ ତୋତେ ବାଧଇ ନାହିଁ । ପ୍ରାଣ ଧଅଛି ରଖିଛୁ ଦର୍ଶନ ପାଇଁ ॥ ମୁଁ ବୋଇଲି ଦିଅ ମୋତେ ଅଶୋକବନ । ଶୁଣି ଆନନ୍ଦ ହୋଇଣ ହେଲେ ମଉନ । ସନ୍ତକ କରିଣ ମଣି ମସ୍ତକୁ ଦେଲେ । ଫଳମୂଳ ଖାଅ ମଧୂଚନ୍ତୁଁ ବୋଇଲେ ॥ ମଧୁବନ ଭାଙ୍ଗି ପକ୍ୱ ଫଳ ଖାଇଲି । ପୁତ୍ର ସହିତେ ରକ୍ଷ ଅସୁର ମାଇଲି ॥ ଇନ୍ଦ୍ରଜିତ ବ୍ରହ୍ମପାଶେ ବାନ୍ଧିଣ ନେଲା । ବହୁ ଦଣ୍ଡ ଦେଇ ମୋର ପୁଚ୍ଛ ପୋଡ଼ିଲା ॥ ପୋଡ଼ିଲି ଲାଙ୍ଗୁଡ଼େ ତାର ଲଙ୍କାଭୁବନ । ବୋଲେ ବିଶି ଏବେ ଆସି କଲି ଦର୍ଶନ । ୧୦ ।

—※—

## ୨୨ଶ ଛାନ୍ଦ

ରାଗ—ଆହାରୀ

ଜାନକୀ କାନ୍ତ, ହନୁ ସଙ୍ଗେ ଏକାନ୍ତ ଆଲିଙ୍ଗନ କରିଣ ପୁଚ୍ଛନ୍ତି ଉଦନ୍ତ ॥ କିସ ବାରତା, ଦେଇଅଛୁ ବନିତା । କହ କହ ହନୁ ପ୍ରତେ ସିବଇଁ ମୁଁ ତା ॥ ଶ୍ରୀରାମ ବାଣୀ, ମରୁତସୁତ ଶୁଣି । ବସନ ଫେଡ଼ିଣ ଦେଲେ ମସ୍ତକମଣି ॥ ଦେଖିଣ ରାମ, ହୋଇଲେ ପୂର୍ଣ୍ଣକାମ । ଗଳାରେ ତାହା ଗୁନ୍ଥିଣ କଲେକ ଦାମ ॥ ଆହା ସେ ରମା, ମୋ ନୟନ ପ୍ରତିମା । ବିମ୍ବାଧରୀ ଗଜଗୀ ସର୍ବସୁଖଧାମା ॥ ଅସୁରଚୟ ତାଙ୍କୁ କରାନ୍ତି ଭୟ । ଭୟୀଙ୍କୁ ସେ ମୋତେ ମନେ ରଖି ନଭୟ ॥ ଜନକଜେମା, ସେ ମୋର ପ୍ରିୟତମା । ହୋଇଛୁ କୃଷ୍ଣପକ୍ଷ ଚତୁର୍ଥୀ ଚନ୍ଦ୍ରମା ॥ ଯେତେ ଅସୁର, ଥିବେ ସେ ଲଙ୍କାପୁର । ମାରିଣ ଆଣିବି ନଷ୍ଟେ ଜାନକୀ ମୋର ॥ ଶ୍ରୀରାମରାଜ, ହନୁ କନ୍ଧେ ଶ୍ରୀଭୁଜ । ଦେଇଣ ହରାଇଲେ କପିଙ୍କ ରାଜ ॥ ସୁଖେ ସୁଗ୍ରୀବ, ଆମ୍ଭ କାର୍ଯ୍ୟ କରିବ । ଲଙ୍କା ବିଜୟ କରିବା ସୈନ୍ୟ ସାଜିବ ॥ ଶୁଣିଣ ମିତ, ସୈନ୍ୟ ସାଜେ ତ୍ୱରିତ । ବୋଲେ ଋଷି ସୁନ୍ଦରକାଣ୍ଡ ସମାପତ । ୧୧ ।

## ସୁନ୍ଦରକାଣ୍ଡ ସମାପ୍ତ

—×—

# ଲଙ୍କାକାଣ୍ଡ

## ୧ମ ଛାନ୍ଦ

ରାଗ—ପଞ୍ଚମବରାଡ଼ି

ପ୍ରାଣପ୍ରିୟା କଷ୍ଟ ଶୁଣି ହନୁମୁଖୁଁ ରଘୁମଣି, ରୋଦନ କରନ୍ତି ଗୁଣେଗୁଣି । ଆହା ରେ ତରୁଣୀମଣି, ଶ୍ରବଣ ତୋ କଷ୍ଟ ଶୁଣି, ଫାଟି ନ ଗଲା ହୃଦୟ ପୁଣି ରେ । ବିମ୍ବଓଷ୍ଠି । ମୋ କର ଧରି ହୋଇଲୁ କଷ୍ଟି । ଏତେ ଦୁଃଖ ସହିବାକୁ ବିଧାତା ତୁମ୍ଭ ଆମ୍ଭଙ୍କୁ, ଜାତ ନାକ କରିଅଛୁ ସୃଷ୍ଟି ॥ ସହସେ ହବ୍ୟ ତରୁଣୀ, ଖଟିଥାନ୍ତି ମନ ଜାଣି, ତେଜିଲ୍ ସେ ସୁଖ ଗୁରୁଶ୍ରେଣୀ । ଏତେ ଦୁଃଖକୁ କାରେଣୀ, ହୋଇଲେ କୈକେୟୀରାଣୀ, ହୁଅନ୍ତୁ ଅଯୋଧ୍ୟା ଠାକୁରାଣୀ ॥ ବିଜୟପୁରେ ଶବ ନେଖି, ଅହ୍ରିରାମାନଙ୍କୁ ଦେଖି, ଭୟେ ବୁଜୁଥାଉ ବେନି ଆଖି । ବିବିଧ ବିରୂପାସୁରୀ, ଯାହା ଦେଖି ଭୟ କରି, ସେମାନେ ଏବେ ଅଛନ୍ତି ରଖି ॥ ଆରେ ବାଳେ ପ୍ରେମଶୀଳେ, କୁଞ୍ଚିଳ ଗୁରୁକୁନ୍ତଳେ, ଭାସି ଯାଉଅଛୁ ଶୋକଜଳେ । କେତେକାଳେ ପୁଣ୍ୟବଳେ, ହିବ ଲଗାଇବ କୋଳେ, ଦେଖା ଦେଖି ହେବା ତେତେବେଳେ ॥ ଶ୍ରୀରାମ ବିଳାପ ଦେଖି, ସବୁର ଲୋତକ ଆଖି, ପ୍ରବୋଧନ୍ତି ଲକ୍ଷ୍ମଣ ସୁଗ୍ରୀବ । ଧୈର୍ଯ୍ୟ

ହୁଅ ହେ ଦେବ, ତୁମ୍ଭ ହୃଦୟ କମଳ, ବୋଲେ ବିଶି ଶତ୍ରୁ ଦଶଗ୍ରୀବ ହେ ରାମଚନ୍ଦ୍ର । ୪ ।



## ୨ୟ ଛାନ୍ଦ

ରାଗ ଗୁଣ୍ଡକିରୀ

ହନୁ ଦେଖିଣ ରାମ ବିକଳ, ଜଣାଇ ଯୋଡ଼ି କରଯୁଗଳ, ଆଜ୍ଞା ଦେଇଥିଲେ ହେ ମୋତେ ରାଜାଧିରାଜେ । ରାବଣ ଦଶମୁଣ୍ଡକୁ ମୋଡ଼ି, ଲଙ୍କାଗଡ଼କୁ ତାର ଉପାଡ଼ି, ଆଣନ୍ତି ତବ ପ୍ରସାଦେ କପିଁ ହୁଅନ୍ତା ବଜେ ॥ ଏଥିକୁ ଦେବ କୃପା କାରୁଣ୍ୟ, ପୁଣ୍ଡରୀକନେତ୍ର ଯେ ଅରୁଣ, ବରୁଣନନ୍ଦନୀ କେବଳ ଜନକସୁତେ । ଦେବ ତୁମ୍ଭେ ବଇକୁଣ୍ଠପତି, ଦେବଙ୍କର ହିତେ ଜନ୍ମ କ୍ଷିତି, ଭସ୍ମ କରିପାର ବ୍ରାହ୍ମଣଙ୍କୁ କୋପଚିତ୍ତେ ॥ ସିନ୍ଧୁ ହେଲେ ଡେଇଁଣ ମୁଁ ଗଲି, ଜନକସୁତାଙ୍କୁ ଠାବ କଲି, ପୁଚ୍ଛ ମାରିଣ ଲଙ୍କାକୁ କଲି ଭସ୍ମରାଶି । ଦହିଲି ତାର ଅସୁରବଳ, କଲଲି ତାର ବଳ ସକଳ, ତବ ପ୍ରସାଦେ ଦେବ ଦର୍ଶନ କଲି ଆସି ॥ ହନୁ ମୁଖରୁ ଏମନ୍ତ ଶୁଣି, ହରଷରେ ରଘୁକୁଳମଣି, ଲଙ୍କା କଟକାଇ କି ଯେ କପିକୁଳ ସାଜେ । ବାହାର ହେଲେ ବାନରବଳ, କୁରୁମ ହେଲା ଟଳମଳ, ଭଜେ ବିଶି କେବଳ ରାମଚରଣାମ୍ବୁଜେ । ୪ ।



## ୩ୟ ଛାନ୍ଦ

ରାଗ—ମଙ୍ଗଳଗୁର୍ଜରୀ

ରାମ ଆଜ୍ଞା ଦେଲେ ବେଗେ ସୁଗ୍ରୀବ ରାଜନ । ନଳକୁ ହକରା କରି ଅଣାଅ ବହନ ॥ ଥାଟେ ସେନାପତି କରି ତାକୁ ଦେବା ଶାଢ଼ୀ । ଆଗୁଆ ହୋଇଣ ଯାଉ ବନଗିରି ମାଡ଼ି ॥ ଆଜ୍ଞା ପ୍ରମାଣେ ରୁମୁକୁ ନଳକୁ ଆଣିଲେ । ଥାଟେ ସେନାପତି କରି ଶାଢ଼ୀ ତାଙ୍କୁ ଦେଲେ ॥ ଏଥୁଅନନ୍ତରେ ନିଶା ହୁଏ ଅବସାନ । ନିତ୍ୟକର୍ମ ବଢ଼ାଇଲେ ଶ୍ରୀରାମ ରାଜନ ॥ ନଳ କପିସୈନ୍ୟ ଘେନି ହେଲେ ଆଗୁଆଣି । ସୁଗ୍ରୀ ହନୁ ଦକ୍ଷିଣେ ବାମେ ରହିଲେ ଜାଣି ॥ ପୃଷ୍ଠଦେଶ ରହିଲେ ଅଙ୍ଗଦ ଶତବଳ । ଚାରିପାଶେ ବେଢ଼ିଛନ୍ତି ସେନାପତି କୁଳ ॥ ଏଥୁଅନନ୍ତରେ ବରବେଶ ହେଲେ ରାମ । ଛବି ଦେଖି ନିନ୍ଦା କରୁଅଛି କୋଟି କାମ ॥ ବାମକରେ କୋଦଣ୍ଡ ଦକ୍ଷିଣେ ତୀକ୍ଷ୍ଣ ଶର । ବେନି କନ୍ଧେ ସୁନ୍ଦର ଅକ୍ଷୟ ତୂଣୀର ॥ ବିବିଧ କୁସୁମରେ ମଣ୍ଡିଲେ ଜଟାକୁଳ । ଦିବ୍ୟରତ୍ନମୟ କର୍ଣ୍ଣେ ମର୍କତ କୁଣ୍ଡଳ ॥ କୃଷ୍ଣାଜିନ ପରିଧାନ ଅଙ୍ଗେ ହେମ

ସେହ୍ଲା । ଶୋଭା ପାଉଅଛି ଭୁଜେ ବୀରବର ବାନା ॥ ଦିବ୍ୟ ଉଜ୍ଜ୍ୱଳ ମର୍କତ ନିନ୍ଦାକରେ କାନ୍ତି । ନବଘନ ନିଶଦାଢ଼ି ସୁନ୍ଦର ଦଶନ୍ତ ॥ ମଙ୍ଗଳ ଅର୍ପଣ କରେ ସୁଗ୍ରୀବ ସୁଷେଣ । ତଦନ୍ତରେ ହନୁ ବନ୍ଧେ କଲେ ଆରୋହଣ ॥ ଲକ୍ଷ୍ମଣଙ୍କି ଏହି ବେଶେ ଅଙ୍ଗଦ କନ୍ଧରେ । ସୁଗ୍ରୀ ସୁଖାସନେ ବିଜେ ରହିଲେ ବାନରେ ॥ ଆଗପଛ ପାଶ୍ୱେଁ ଚାଲନ୍ତି କପିଥାଟ । ବନଗିରି ଚୂର୍ଣ୍ଣ କରି ସର୍ବ କଲେ ବାଟ ଦକ୍ଷିଣ ସିନ୍ଧୁ ଉତ୍ତର କୂଳେ ପରବେଶ । ମୁଖରବ ଶୁଭୁଛି ଦିଗନ୍ତରୁ ସିନ୍ଧୁ ଘୋଷ । ସିନ୍ଧୂଳଙ୍ଘି ଯିବା ପ୍ରାୟେ ଦଶେ କପିବଳ । କି ଅବା ସାଗର ଯୋଡ଼ି କରିବେ ଏ ସ୍ଥଳ ॥ ତେବେ ସିନ୍ଧୁ ସଙ୍ଗମ କରିବା ପ୍ରାୟେ ଶୋଭା । ହନୁକନ୍ଧୁ ଉତ୍ତୁରି ହୋଇଲେ ରାମ ଉଭା ॥ ରହିଲେ ସମୁଦ୍ର ତଟେ ଶ୍ରୀରାମ ଲକ୍ଷ୍ମଣ ଧ୍ୟାନ ବଂଶୀ ରାମପାଦ କମଳେ ଶରଣ ॥

—×—

## ୪ର୍ଥ ଛାନ୍ଦ

ରାଗ—ଉଦ୍ଧବଚଉତିଶା ବାଣୀ

ଦେଖିଣ ଶ୍ରୀରାମଚନ୍ଦ୍ର ଜଳଧି ତରଙ୍ଗ । ମନରେ ପଡ଼ିଲା ନିଜ ପ୍ରିୟାର ଆତଙ୍ଗ । ସୁଗ୍ରୀବ । ଶରଦଶଶୀ ସମାନ ସେ ସକଳ । ନୋହିବ ସୀତା ଶ୍ରୀମୁଖ ମଣ୍ଡଳ । କୁଟିଳକୁନ୍ତଳ ନୀଳମଣି ନିନ୍ଦାକରେ । ମୋତି ଦନ୍ତ ଅଧର ମାଣିକ୍ୟ ଛବି ଧରେ । ସୁଗ୍ରୀବ । ଜମ୍ବୁନଦ ଜ୍ୟୋତି କାନ୍ତି ଯେ । ତ୍ରିଗୁଣନେତ୍ରୀର ନେତ୍ର କାମ ଜୟପାତ୍ରୀ । ଖଣ୍ଡନ୍ତି ଭ୍ରୂଚାରୁ କୃଶଉଦରୀ ରମ୍ଭୋରୁ । ମତ୍ତଗଜ ହଂସ ଗତିରୁ ସୁଗଭ ପୟୋଧର ଗରୁ । ସୁଗ୍ରୀବ । ଚମ୍ପାକଳି ଅଙ୍ଗୁଳି ଯେ । କୋକନଦ ଛବି ନିନ୍ଦାକରେ ପାଦତଳ ॥ ସମୁଦ୍ର ପାରହୋଇ କେମନ୍ତେ ଆମ୍ଭେ ଯିବା । ସତେ କି ଲଙ୍କାଗଡ଼େ ଜାନକୀ ଦେଖିବା । ସୁଗ୍ରୀବ । ସତେ ରାବଣ ମରିବ ହେ । ଭୂମିସୁତା ଭେଟ ନିଜେ ଦଇବ କରିକ ॥ ଶୁଣି ସୁଗ୍ରୀ ଜଣାଇଲେ ଯୋଡ଼ି ବେନିକର । ଅଗସ୍ତିଙ୍କ ପ୍ରାୟେ ସିନ୍ଧୁ ଶୋଷିବେ ବାନର । ହେ ଦେବ । ତୁମ୍ଭେ କି କରି ନ ପାର ହେ । ଆଜ୍ଞାରେ ଲଙ୍କା ଉପାଡ଼ି ଆଣିବେ ବାନର ॥ ଯେଉଁ ବାଳି ରାବଣକୁ କାଖେ ଯାକିଥିଲା । ସେ ବାଳି ବୀରଟି ତୁମ୍ଭ କାଣ୍ଡମୁନେ ମଲା । ହେ ଦେବ । ରାବଣ ପ୍ରାକର୍ମୀ କେତେ ହେ । ବୋଲଇ ବଂଶୀ ରାବଣ ମାରିପାରି ଶତେ ହେ । ୭ ।

———

## ୫ମ ଛାନ୍ଦ

ରାଗ—ସରସ ବସନ୍ତ

ରାବଣ ଶ୍ରୀମୁଖରେ ଜଣାଇଲେ ଚରଗର । ହେ ଦେବ ତ୍ରିଭୁବନ ବିଜୟୀ ଲଙ୍କେଶ୍ୱର ॥ ଶ୍ରୀରାମ ଲକ୍ଷ୍ମଣ କପିରାଜ ସଙ୍ଗେ ଘେନି । ବିଜୟେ କଲେଣି

ମହେନ୍ଦ୍ର ଗିରିର ମୂର୍ଦ୍ଧନ ॥ ଲଙ୍କାପୋଡ଼ା କପିଦେବ ବାରତା କହିଲି ସେହି ଦିନ କପିସୈନ୍ୟ ଘେନିଣ ଅଇଲା ॥ ଗଜସମ କୋଟି କୋଟି ଅଛନ୍ତି ମର୍କଟ । ବାରିଧି ବର୍ତ୍ତରେ ହୋଇଛନ୍ତି ସେ ପ୍ରକଟ ॥ ବଳ କଳିବାକୁ ନ ଦିଶିଲାକ ଉପାୟେ କଷ୍ଟିକ୍ରିୟାରୁ ଲାଗିଛନ୍ତି ସିନ୍ଧୁକୂଳ ଯାଏ ॥ ଶୁଣି ଚରର ମୁଖରୁ ବାରତା ଲଙ୍କେଶ୍ୱର ବୋଲେ ବିଶି ଶୁଖାଇଲା ତା ଦଶ ଅଧର । ୫ ।

---

## ଷଷ୍ଠ ଛାନ୍ଦ

ରାଗ—କେଦାର ଗୌଡ଼ା । କୋଟାଇ ଗୁଣ୍ଡିଚି ବୃତ୍ତେ

ରାବଣ ସମସ୍ତ ଅସୁରଙ୍କୁ ଚାହିଁ କ୍ରୋଧ ହୋଇଣ କହିଲେ । ଏକା ବାନର ଗୋଟାଏ ଆସି ମୋତେ ଏତେ ପରାଭବ ଦେଲା । ହେ ବୀରେ, ଏବେ ଜଗିଥାଅ ପୁରଦ୍ୱାରେ । ନ ଆସିବେ ଯେମନ୍ତେ ବାନରେ । ନବର୍ତ୍ତିବେ ସେ କି ଉପାୟରେ, ପୁତ୍ର ଭ୍ରାତୃ ମନ୍ତ୍ରୀଗଣ ଡାକରାଇ ସଭାରେ ବିଜୟ କଲା । ଷଡ଼ମାସ ପୂରି ଯାଇ ସେହି ଦିନ କୁମ୍ଭକର୍ଣ୍ଣ ଉଠିଥିଲା । ସେ ସଭା । ରତ୍ନ ଆସନମାନଙ୍କେ ଶୋଭା । ଯେଉଁ ସଭାରେ ବସେ ମଘବା । ଦେଖି ନିଦଶ ହୋଇବେ ଲୋଭା । ଯାନ ଚଢ଼ିଣ ଅଇଲେ କୁମ୍ଭକର୍ଣ୍ଣ ବିଭୀଷଣ ସହୋଦର । ମହାପାର୍ଶ୍ୱ ପ୍ରହସ୍ତ ଶକ୍ରାଜିତ ଆଉ ମହା ମହା ବୀର । ସେମାନେ । ମାନ୍ୟକରି ବସିଲେ ଆସ୍ଥାନେ । ରାବଣକୁ ଉଚ୍ଚ ସାବଧାନେ କହିବାକୁ କ୍ଷମ ନାହିଁ ଆନେ ॥ ଅସୁରେଶ୍ୱର ରାବଣେଶ୍ୱର କହେ ଅସୁରମାନଙ୍କୁ ଚାହିଁ । ଦଇବ ବଶରେ ସୀତାଙ୍କୁ ଆଣିଲି ଭୋଗକରି ପାରୁ ନାହିଁ । ହେ ଶୁଣ । ଏବେ ବରଷେ ହୋଇଲା ପୂଣ । ମୋତେ ନ ଭଜିଲା କି କାରଣ । ତାର ବିନୁ ଦହେ ପଞ୍ଚବାଣ ॥ ଚନ୍ଦ୍ରବଦନା ଚମ୍ପାଦଳବରନା ଚଞ୍ଚଳ ବିପୁଳସ୍ତନା । ଚମକି ନୟନା ସଘନ ଜଘନା ରମ୍ଭୋରୁ ସୁନତମ୍ବନା । ସେ ନାରୀ ନାହିଁ ନ ଦେଖିବା ତ୍ରିଭୁବନପୁରୀ । ରମ୍ଭା ରତି ଶଚୀ ନୁହେ ସରି । ଦେଖି ମୂର୍ଚ୍ଛିତ ହେବେ ଗଉରୀ ॥ ଏବେ ମୁଁ ଶୁଣିଲି ସୁଗ୍ରୀବ ସହିତେ ଦଶରଥ ବେନସୁତ । ମହେନ୍ଦ୍ର ଗିରିରେ ରହିଲେ ସଙ୍ଗରେ କପିବଳ ଅପ୍ରମିତ । ହେ ଦୈତ୍ୟେ । ଏବେ କି ବିଚାର କର ଚିତ୍ତେ । ସିନ୍ଧୁ ପାର ନୋହିବେ ଯେମନ୍ତେ । ଏକା ବାନର କଲାଟି ଏତେ ॥ କୁମ୍ଭକର୍ଣ୍ଣ ବୋଲେ ଶୁଣିମା ଭୋ ଦେବ କଲ ଅତ୍ୟନ୍ତ ଅନୀତି । ଏତେ ଦିନେ ଅନୀତିକି ବିଚାରିବା ହେଉଅଛୁ ଲଙ୍କପତି । ହେ ଦେବ । ତୁମ୍ଭ ଆଜ୍ଞା କେ ଆନ [illegible]ବ । ନିଇ ବାନର ମାରିବ ସବ ॥ ସୀତା ସବଦା ଭୋଗ

କରିବ ॥ ମହୋଦର କରଯୋଡ଼ି ଜଣାଇଲା ହେଉ ଦେବ ସାବଧାନ । ସୀତାଙ୍କୁ ଭୋଗ ନ କରିଣ କମ୍ପାଇଁ ରଖିଅଛ ଏତେ ଦିନ । ହେ ଦେବ । ରାମ ରାଜକୁମାର ମାନବ । ତାହା ପରାକ୍ରମେ କି କରିବ । ଲକ୍ଷଅଂଶ ହୋଇଣ ଉରିବ ॥ ଏହା ଶୁଣି ହସି କହେ ଲଙ୍କପତି ଶୁଣ ହେ ଆମ୍ଭ ଉତ୍ତର । ବ୍ରହ୍ମଲୋକେ ଯାଉଁ ଯାଉଁ ଅପସରୀ ପଡ଼ିଲା ଆମ୍ଭ ଛାମୁର । ସେ ନାରୀ । ବଳେ ଧରିଲୁ ତାହାଙ୍କୁ ଧରି । ପିତା ଆଗେ ସେ କଲା ଗୁହାରି ତେଣୁ କୋପକଲେ କୁଶଧାରୀ । ଆଉ ବଳେ ବଳେ ଯୁବତି ହରିଲେ ଫାଟିଯିବ ତୋ ମୁର୍ଦ୍ଧମା । ଏମନ୍ତ ଶାପ କ୍ରୋଧରେ ପୂର୍ବେ ମୋତେ ଦେଇଛନ୍ତି କମଳଯୋନି । ହେ ଶୁଣ । ତାକୁ ହରିଥାନ୍ତି ସେହିକ୍ଷଣ । କମ୍ପା ହୁଅନ୍ତି ତାକୁ କାର୍ପୂର୍ଣ୍ୟେ । ଏତେ ଝୁରିବାକୁ କି କାରଣ ॥ ଏମନ୍ତ ଶୁଣି ବିଭୀଷଣ ରାବଣ ଛାମୁରେ କହେ ବଚନ । ମୋର ବୋଲକର ସୀତା ବାହୁଡ଼ାଇ ଦେବା ଅସୁରରାଜନ । ହେ ଦେବ । ରାମ କାଣ୍ଡେ ସର୍ବ ମରାଇବ । ସୀତା ଦେଲେ ନିଶ୍ଚିନ୍ତ ହୋଇବ । ଆଉ ଭୟ କାହାକୁ ନୋହିବ ॥ ଏମାନେ ନୁହନ୍ତି ସେ ରାମ ଆଗେ ଧନୁ ଧରିବାକୁ ସାମରଥ । ପାପୀ ଜନ ନୁହନ୍ତି ସ୍ୱର୍ଗଭୋଗ ପାଏ କରୁଥିଲେ ମନୋରଥ । ହେ ଦେବ । ଏତେ ସମ୍ପଦ ବ୍ୟର୍ଥ ହେବ । ତୁମ୍ଭ ହିତ କେହି ନ କହିବ । ମାରି ନିଶ୍ଚେ ରାମ ସୀତା ନେବ ॥ ଏହା ଶୁଣି ଶକ୍ରଜିତ ଯେ କହଇ ତୁମ୍ଭେ ଖାଇଥାଅ ଏକା । ଆମ୍ଭମାନଙ୍କ ଉତ୍ସାହ ଭଙ୍ଗ କରି ସଭାରେ କହଇ ଦକା । ହେ ପିତାତ । ଯାହା କହିଲା ଏ ନୁହେଁ ହିତ । ଅସୁରୀ କି କରିନାହିଁ ଜାତ । ତୁମ୍ଭେ ରାମର ହେଲ କି ମିତ ॥ ରାବଣ କୋପେ ବୋଲଇ କ୍ଷାନ୍ତ ଯେବେ ଶତ୍ରୁ ଆଗମ ଦେଖନ୍ତି । ନାସାରେ ଅଙ୍ଗୁଳି ଦେଇଣ ହସନ୍ତି ବିବିଧ ବାଣୀ ଭାଷନ୍ତି । ରେ କହୁ । ନିଶ୍ଚେ ଜାଣିଲି ରାମର ହେଉ । ମୋର ବାରତା ତାକୁ ତୁ ଦେଉ । ଆଜ୍ଞୁ ମୋହର ଭ୍ରାତା ତୁ ନୋହୁ ॥ ରାବଣର କୋପ ଦେଖି ବିଭୀଷଣ ସଭାରୁ ଉଠିଣ ଗଲା । ସେହିକ୍ଷଣି ଚାରି ମନ୍ତ୍ରିଙ୍କି ଘେନିଣ ଆକାଶମାର୍ଗେ ରହିଲା । ସେ ଗଲା । ଯହୁଁ ରାବଣି ବୋଲ ନ କଲା । ଶୂନ୍ୟେ ଥାଇ ବହୁତ କହିଲା । ବଳି ବୋଲେ ସିନ୍ଧୁ ପାରି ହେଲା । ୧୮ ।

—❋—

## ୭ମ ଛାନ୍ଦ—ବିଭୀଷଣ ଶରଣ ପଶିବା

ରାଗ—ବିରାଡ଼ି

ଅଞ୍ଜନାନନ୍ଦନ ପ୍ରାୟ ଗଗନେ ରହି ବିସ୍ମରନ୍ତେ ବିଭୀଷଣ । ଆକାଶେ ଅସୁର ଦେଖିଣ କ୍ଷେପିଲେ ବେଢ଼ିଲେ ବାନରଗଣ ହେ । ସେମାନେ । ଛନ୍ତୁ

ଶିଳା ତ ଘେନିଲେ । ଯୁଦ୍ଧ କରିବା ଆରମ୍ଭ କଲେ । ବିଭୀଷଣ ମନ୍ତ୍ରୀମାନେ ସେ କପିଙ୍କି ପ୍ରବୋଧ କରି କହିଲେ ॥ ରାବଣ ସୋଦର କହଇ ଉତ୍ତର କପିସମୂହଙ୍କୁ ଚାହିଁ । ସୁଗ୍ରୀବଙ୍କୁ କହ ରାବଣ ଅନୁଜ ଆସିଛି ଶରଣ ପାଇଁ ହେ । ବାନରେ । ମୋ ବୋଲି ଭ୍ରାତା ନ କଲେ । ପ୍ରତିକୂଳ ଦଇବ ହୋଇଲେ । ହିତ ବଚନକୁ ଅହିତ ବୁଝିଣ ବାହାର କରିଣ ଦେଲେ ॥ ଶୁଣିଣ ସୁଗ୍ରୀବ ଶ୍ରୀରାମଗ୍ରାମଂରେ ଜଣାଇଲେ ସେହିକ୍ଷଣ । ଆଜ୍ଞାଦେଲେ ଦେବ ଦର୍ଶନ କରିବ ଆସିଅଛି ବିଭୀଷଣ ହେ । ଶ୍ରୀ ଦେବ । ରାବଣ କନିଷ୍ଠ ଭାଇ ସେମାନଙ୍କର କପଟ ଥାଇ । ଅସୁରଙ୍କ ମାୟା ଦେବେ ନ ଜାଣନ୍ତି ଦିବ୍ୟ ଚିତ୍ତେ କି ଆସଇ ॥ ଶୁଣି ଦାଶରଥି ମନ୍ଦ ମନ୍ଦ ହସି ସୁଗ୍ରୀବ ଦେଲେ ଉତ୍ତର । ମନ୍ତ୍ରୀମାନଙ୍କୁ ତୁମ୍ଭକୁ ହକରାଇ କର ଏଥିର ବିଚାର ହେ । ସୁଗ୍ରୀବ । ରାବଣର ସେ ସୋଦର । ଏଣୁ ଅଟଇ ଆମ୍ଭର ପର । ଶରଣ ପଶିବା ନିମିତ୍ତ ଆସିଛି ଏଥିକୁ କିସ ବିଚାର ॥ ଆଜ୍ଞା ପାଇଣ ବାନର ରାୟେ ସବୁ ମନ୍ତ୍ରୀମାନଙ୍କୁ ରାଇଲେ । ରାବଣ ଭାଇ ଶରଣ ପଶିବାକୁ ଆସିଛି ବୋଲି କହିଲେ ହେ । ସଚିବ । ମନେ ବିଚାରିଣ କହ । ଏଥି ଜୟ କି ହେବ ଅଜୟ । ବୋଲେ ବଶି ଭୟ ନୁହଇ ତାହାଙ୍କୁ ରଖିଲେ ହୋଇବ ଜୟ ହେ ।୮।



## ୮ମ ଛାନ୍ଦ

ରାଗ—ସିନ୍ଧୁଡ଼ା

ଆହେ ସୁଗ୍ରୀବ ଆହେ ହନୁ ଅଙ୍ଗଦ ନଳ ନୀଳ ଜାମ୍ବବନ୍ତ । ଆହେ ସୁଷେଣ ଦୁର୍ବିନ୍ଧ ଶତବଳ ମନକୁ ଆସେ କେମନ୍ତ । କଇତବ ନ କର । ତୁମ୍ଭ ମାନଙ୍କର କି ବିଚାର । କହ କହ ଆମ୍ଭର ଗ୍ରାମ୍ଭର । ଭୟ ହେଉଅଛି କି ତୁମ୍ଭର ॥ ସୁଗ୍ରୀବ ବୋଲେ ଅସୁରଙ୍କ ମାୟା ଜାଣି ତ ନୁହଇ ଦେବ । ଅଙ୍ଗଦ ବୋଲନ୍ତି ଆସିବ ଯେବେ ସେ ପରୀକ୍ଷା ଆମ୍ଭଙ୍କୁ ଦେବ । ନଳ ମୁଖରେ କହେ । ଦେବ ଅସୁର ବିଶ୍ୱାସୀ ନୋହେ । ନୀଳ ବୋଲନ୍ତି ଲଗାଇ ଭୟେ । କିବା କରାଇବ ଅପଜୟେ । ଜାମ୍ବବ ସୁଷେଣ ବୋଲନ୍ତି ଶ୍ରୀଦେବ ଜାଣିବା ତାହାର ମନ । ତେବେ ସିନା ତାକୁ ବିଶ୍ୱାସ କରିଣ କରିବ ତାର ବଚନ । ଆମ୍ଭ ଶତ୍ରୁର ଭାଇ । ତାକୁ ବିଶ୍ୱାସ କେମନ୍ତେ ଯାଇ । ଦୈତ୍ୟ ବୁଦ୍ଧି ଜାଣି ତ ନୁହଇ । ଦିବ୍ୟଚିତ୍ତେ କେମନ୍ତେ ଆସଇ ॥ ହନୁ ଜାଣନ୍ତି ମୋର ପାଇଁ ରାବଣ ଆଗୋ ବହୁତ କହିଲା । ସେ ହନୁ ଜାଣିଛି ଏହିମାନ ଦେବ ଆମ୍ଭର ପକ୍ଷ ହୋଇଲା । ଏବେ ଜାଣିବା ମନ । ଆଉ ବୁଝିବାକୁ ନାହିଁ ଧନ । କହିଥିବ ଯଥାର୍ଥ ବଚନ । ତେଣୁ କୋପିଥିବ ଦଶାନନ ।

ଶତବଳ ବୋଲେ ଅସୁର ବୁଦ୍ଧିରେ ଦେବତାଙ୍କୁ କଲେ ଦାସ । ନ ଶୁଣି ଶରବ ପଶି ବିଭୀଷଣ ଆମ୍ଭଙ୍କୁ କରଇ ନାଶ । ଶୁଣି କୋଦଣ୍ଡପାଣି । ହସ ହସ ହୋଇ କହେ ବାଣୀ । ତାର ମନ ଅଛୁଁ ଆମ୍ଭେ ଜାଣି । ତାଙ୍କୁ ଦର୍ଶନ କରାଅ ଆଣି ॥ ଶରଣ ବୋଇଲେ ଅଭୟ ଦିଅଇ ଏମନ୍ତ ମୋର ମହିମା । ଶତ ଅପରାଧ କରିଣ ପଶିଲେ କରଇ କ୍ଷମା । କି କରିବ ସେ ମୋତେ । ତାର ଅଙ୍ଗେ ବଳ ଅବା କେତେ । ଆସୁଥିବ ସେ ଯେବେ ଗୁପତେ । ତାର ପ୍ରାଣକୁ ମାରିବ ଶରେ ॥ ମୋର . ବାମଭୁଜ କନିଷ୍ଠ କନିଷ୍ଠ ଅଙ୍ଗୁଳି ଅଗ୍ରେ ଅଛି ଯେତେ ବଳ । ଏତେ ବଳବନ୍ତ ବ୍ରହ୍ମାଣ୍ଡରେ ନାହିଁ ଏ ଛାର ଅସୁରକୁଳ । ଆସୁ ସେ ବିଭୀଷଣ । ଆମ୍ଭ ଚରଣେ ପଶୁ ଶରଣ । ତାର ଆଉ ନୋହିବ ମରଣ । କବି ବୋଲେ ହୋଇବ କାରଣ । ୭ ।

—×—

## ୯ମ ଛାନ୍ଦ

ରାଗ—କନଡ଼ା

ସୁଗ୍ରୀବସଙ୍ଗେ ବିଭୀଷଣ ଭେଟ ହୋଇ ଶ୍ରୀରାମ ଛାମୁକୁ ଆଣିଲେ । ବିଭୀଷଣ ରାମ ବୋଲି ଜାଣିଲେ । ଚରଣେ ଶରଣ ପଶିଲି ବୋଲି ମୁଁ ସେ ବିଭୀଷଣ ଭାଷିଲେ ଯେ । ଦନୁଜ । ଦୟାନିଧି ନାମ ଶୁଣି ଶ୍ରବଣେ । ତେଣୁ ଶରଣ ଅଭୟ ଚରଣେ । ମନ ବଚନ କର୍ତ୍ତବ୍ୟ ଆନେ ଥିଲେ ବିଅର୍ଥ ସୁକୃତମାନେ ॥ ରାବଣକୁ ମୁହିଁ ବହୁତ ପ୍ରକାରେ ହିତକଥାମାନ କହିଲି । ସୀତା ସମର୍ପିବା ବୋଲି ବୋଇଲି । କ୍ରୋଧକରି ମୋତେ କୁଭାଷା ବୋଇଲେ ବାହାର ହୋଇ ଅଇଲି ହେ । ଶ୍ରୀ ଦେବ । ତାକୁ ଦଇବ ନିଷ୍ଠୁର ଛାଡ଼ିଲା । ଅଧର୍ମରେ ବେଳୁ ବେଳ ବଢ଼ିଲା । ଏବେ ଆସି ଦେବ ତୁମ୍ଭ କାଣ୍ଡମୁନେ ମୃତ୍ୟୁମୁଖରେ ପଡ଼ିଲା ॥ ଏତେ ଜଣାଇ ଚରଣ ତଳେ ପୁଣି ସାଷ୍ଟାଙ୍ଗ ହୋଇଣ ପଡ଼ିଲା । ତ୍ରାହି ତ୍ରାହି କରବୋଲି ବୋଇଲା । ଶ୍ରୀରାମ କରୁଣା ଅବଲୋକନରେ ଜନମ ମୃତ୍ୟୁ ଏଡ଼ିଲା ସେ । ଦନୁଜ । ପ୍ରେମ ପୁଲକ ହୋଏ ଘନ ଘନ । ଅଶ୍ରୁ ଆନନ୍ଦେ ହେଉଛି ପତନ । କରୁଣାସିନ୍ଧୁ ଅଭୟ ପଦ୍ମପାଦେ ମଗ୍ନ ହେଲା ତାର ମନ ସେ ॥ ରାମ ପଚାରନ୍ତି ଆହେ ବିଭୀଷଣ କହ ଲଙ୍କାର ସମାଚାର । କସ ବିଚାର ଅଛି ଦଶଶିର । କେତେ ଭ୍ୟାର ସୈନ୍ୟ କେତେ ପରାକ୍ରମ କହ ତା ଆମ୍ଭ ଛାମୁର ହେ । ରାଜନ । କହେ କର ଯୋଡ଼ିଣ ବିଭୀଷଣ । ଦେବ ତ୍ରୈଲୋକ୍ୟ ବିଜୟୀ ରାବଣ । ଭ୍ରାତା କୁମ୍ଭକର୍ଣ୍ଣ ସ୍ୱର୍ଗ ଜୟ କରେ ପୁତ୍ର ପରାକ୍ରମ ଶୁଣ ହେ । ସାତବାର ପୁତ୍ର ଶକ୍ରକୁ ଜିଣିଲା ସଂଗ୍ରାମେ

ଅଦୃଶ୍ୟ ହୁଅଇ । କେହ୍ନ ଜାଣିବାର ତାକୁ ନୁହଇ । ମହାପାରୁଶ୍ୱ ମହୋଦର ପ୍ରଶସ୍ତ ନାମରେ ମନ୍ତ୍ରୀ କର୍ମଇ ହେ । ଶ୍ରେ ଦେବ । ଦଶସହସ୍ର କୋଟି ସେ ଅସୁର ପ୍ରତିଦିନ କ୍ଷୁଁ ପିବନ୍ତି ରୁଧିର । ଆଉମାନେ ଦେବ ଦିଗପାଳ ସମ ଦେଖିଣ ଡ଼ରନ୍ତି ସୁର ହେ । ରାମ ଆଜ୍ଞା ଦେଲେ ସ୍ୱର୍ଗେ ବା ପାତାଳେ ଲୁଚିଲେ ମାରିବ ରାବଣ । ସତ୍ୟ କରୁଛି ଚିନଭ୍ରାତ ରାଣ । ପୁତ୍ର ଭ୍ରାତା ନାତି ସମସ୍ତ ମାରଣ ଲଙ୍କା ଦେବ ବିଭୀଷଣ ହେ । ସୁଗ୍ରୀବ । ଏତେ ବୋଲିଣ ପାଶକୁ ଗଲେ । ତାଙ୍କୁ ଆଲିଙ୍ଗନ କରି ବୋଇଲେ । ଆଜହୁଁ ତୁମ୍ଭଙ୍କୁ ଲଙ୍କା ଦେଲୁ ଲଙ୍କେଶ ଆଜହୁଁ ମଲେ ହେ ॥ କୋଦଣ୍ଡପାଣି ତାହାଙ୍କୁ ମନ ଜାଣି ଆଜ୍ଞାଦେଲେ ଆହେ ଲକ୍ଷ୍ମଣ । ତୀର୍ଥଜଳ ଅଣାଅ ଏହିକ୍ଷଣ । ଲଙ୍କାଗଡେ ରାଜଅଭିଷେକ ଆଜ କରାଇବା ବିଭୀଷଣ ହେ । ଲକ୍ଷ୍ମଣ । ଆଜୁଁ ବୋଲାଇବେ ଏ ଲଙ୍କପତି । ଆଜ ଦେଲି ମୁଁ ଲଙ୍କାର ବିଭୂତି । ଯେତେ ଦିନ ଥିବ ମୋର ରାମନାମ ଚନ୍ଦ୍ରତପନ ଧରଣୀ ହେ ॥ ଆଜ୍ଞା ପ୍ରମାଣେ ଲକ୍ଷ୍ମଣ ତୀର୍ଥଜଳ ଅଣାଇ ଅଭିଷେକ କଲେ । ବିଭୀଷଣ ଲଙ୍କେଶ ବୋଲାଇଲେ । ରାମଆଜ୍ଞା ପାଇ ସର୍ବ ଋଷ କପି ଲଙ୍କେଶ ବୋଲି ବୋଇଲେ ହେ । ସୁଜନେ । ସୁଗ୍ରୀ ଜଣାନ୍ତି ଶୁଣିମା ହେ ଦେବ । ଯେବେ ରାବଣ ଶରଣ ପଶିବ । ବିଭୀଷଣକୁ ତ ଲଙ୍କା ଆଜ୍ଞା ହେଲା ସେ ପୁଣ କସ କରିବ ହେ ॥ ଶୁଣି ଦାଶରଥି ବୋଲନ୍ତି ହେ ମିତ୍ର ରାବଣ ପଶିଲେ ଶରଣ । ତାକୁ ଅଯୋଧ୍ୟା ଦେବୁଁ ଏ ପ୍ରମାଣ । ଦୁଷ୍ଟ ରାଜାଙ୍କୁ ମାରଣ ଅଭିଷେକ ହୋଇବୁ କ୍ଷିତିପରେଣ ହେ । ସୁଗ୍ରୀବ । ଶୁଣି ସମସ୍ତେ ଆନନ୍ଦ ହୋଇଲେ । ରାମ ଶ୍ରୀମୁଖରେ ଏହା ବୋଇଲେ । ବୋଲେ ବଣି ବିଭୀଷଣ ଏହି ଦିନୁ ଶ୍ରୀରାମ ସେବକ ହେଲେ ହେ । ୯ ।

—×—

## ୧୦ମ ଛାନ୍ଦ

ରାଗ—ଆନନ୍ଦ ଭୈରବୀ

ଶାର୍ଦ୍ଦୂଳକୁ ପେଷିଥିଲା ରାବଣ । ଯେଉଁଦିନ କଲା ସୀତା ହରଣ । ସେହି ଦେଖି ଅଇଲା । ମହା ବିସ୍ମୟ ହେଲା । ଆଜହୁଁ ଲଙ୍କା ଗଲା । ରାବଣଙ୍କୁ କହିଲା ॥ କୋଟି କୋଟି ଦେବ ବାନର ବଳ ॥ ପୂରି ରହିଛନ୍ତି ବନ ଶଇଳ ! ସମସ୍ତେ ବଳବନ୍ତ । ଲଙ୍କା ପୋଡା ଯେମନ୍ତ । କଲ ନୁହଇ ଭ୍ରାନ୍ତ । ନଷ୍ଟେ କରିବେ ଅନ୍ତ ॥ ରାମ ଲକ୍ଷ୍ମଣ ସୁଗ୍ରୀ ବିଭୀଷଣ । ନିଷ୍ଟୟ ଦେବ ଏ କରିବେ ରଣ । ପାରିଲେ ପ୍ରୀତି ହୁଅ । ଦେଇ ଜନକଝିଅ । ଭେଦ ପ୍ରୀତି ଏ ହିସ୍ୟ । ରଣେ ନୋହିବ ଜୟ ॥ ନିଷ୍ଟୟ ନାଶଗଲା

ତୋର ଲଙ୍କା । ଶୁଣିଣ ରାବଣ ପାଇଲା ଶଙ୍କା । ଶୁକକୁ ଅଣାଇଲା । ବହୁ ବୁଝାଇ କଲା । ସୁଗ୍ରୀ ପାଶେ ପେଷିଣ । ଏହା କହ ବୋଇଲା ॥ ବୋଲଇବୁ ରାବଣ ପେଷିଲା ମୋତେ । ତୁମ୍ଭେ କମ୍ପା କୋପ କରଛ ଏତେ । ତୁମ୍ଭେ ଆମ୍ଭର ଭ୍ରାତ । ଆମ୍ଭ ସଙ୍ଗେ ଅନର୍ଥ । କରିବାର ବ୍ୟର୍ଥ । କ ନେଲୁ ତୁମ୍ଭ ଅର୍ଥ ॥ ବା ସଙ୍ଗେ ମୋହର ମିତ୍ରପଣ । ଜାଣିଣ କମ୍ପା ଆସିଛ ଆପଣ । ଯେବେ ଆମ୍ଭର ପ୍ରୀ । ବାହୁଡ଼ କପିପତି । ଯେବେ ହେବ ଅପ୍ରୀତି । ଆମ୍ଭେ ଅସୁର ଜାତି ॥ ଯେବେ ସେ ନେଲେବେ ହରିଲ ସୀତା । ତୁ ବୋଲିବୁ ନୁହେଁ ତୁମ୍ଭ ବନତା । ଆମ୍ଭେ ଅଟୁ ଭୂପାଳ । ହରିପାରୁ ସକଳ । ଦଶରଥର ବାଳ । ଏକ କରୁ ସେ ଗୋଳ ॥ ଯେବେ ସେ ତୋତେ ନୋହିବେ ପ୍ରସନ୍ନ । କହିବୁ ତାଙ୍କୁ ଯଥାର୍ଥ ବଚନ । ଆହେ ନର ବାନର । ତୁମ୍ଭେ ଭକ୍ଷ ଆମ୍ଭର । ଜଣି ଲୋଡ଼ ଅସୁର । ଏତେ ଗର୍ବ ତୁମ୍ଭର ॥ ଏମନ୍ତ ଆଜ୍ଞା ଘେନି ଶୁକ ଗଲା । ବିଶାଳ ବିହଙ୍ଗ ଗୋଟିଏ ହେଲା । ସୈନ୍ୟ ମଧ୍ୟେ ପଶିଲା । ସୁଗ୍ରୀ ସଙ୍ଗେ ଭେଟିଲା । ରାଜା ବାଣୀ କହିଲା । ପାନ ବସି ଭଣିଲା । ୯ ।

—×—

## ୧୧ଶ ଛାନ୍ଦ

### ରାଗ ଘଣ୍ଟାରବ

ସୁଗ୍ରୀବ କହଇ ଶୁକ । ଦେବ ମୁଁ ରାବଣ ଲୋକ । ତୁମ ସ୍ୱାମୀକୁ ପେଷିଛି ରାବଣ କରିଣ ସ୍ତୁତି ଅନେକ ॥ ରାବଣ କହିଛି ଯେତେ । ମୁଁ ତାହା କହିବି କେତେ । ସବୁଦିନେ ତୁମ୍ଭ ତାଙ୍କର ପୀରତି ଏଣୁ ସେ ପେଷିଲେ ମୋତେ ॥ ରାବଣ ଯା କହିଥିଲା । ସବୁ ସୁଗ୍ରୀବ କହିଲା । ଶୁଣିକରି କପିରାଜନ ମନରେ ବଡ଼ କ୍ରୋଧ ଜାତ ହେଲା ॥ ବୋଲଇ ଏହାକୁ ଧର ଯେତେ ଇଚ୍ଛା ତେତେ ମାର । ଶ୍ରୀରାମ ସ୍ୱାମୀରେ ଜଣାଇ ଏହାର ଛେଦନ କରିବା ଶିର ॥ ଆଜ୍ଞା ପାଇ କପିନେଲେ । ବନ୍ଧନ ତାହାକୁ କଲେ । ସକଳ ସୈନ୍ୟରେ ବୁଲାଇ ତାହାକୁ ଅନେକ ମାଡ଼ ମାରିଲେ ॥ କାହିଁଣ ଶୁକ କହଇ । ଦୂତକୁ ମାର କମ୍ପାଇଁ । ତାଙ୍କର ସେବକ ତୁମ୍ଭର ସେବକ ମୋର ଦୋଷ ଅଛି କାହିଁ ॥ ଶ୍ରୀରାମ ସ୍ୱାମୀକୁ ନେଲେ । ସବୁ ବୃତ୍ତାନ୍ତ କହିଲେ । ଦୟାନିଧି ତାର ବିକଳ ଦେଖିଣ ଛଡ଼ାଇ ତାହାକୁ ଦେଲେ ॥ ପଳାଇଣ ଉଡ଼ିଁ ଗଲା । ପୁଣି ସୁଗ୍ରୀ ଆଗେ ହେଲା । ରାବଣ ସ୍ୱାମୀରେ କ ବୋଲ କହିବି ବୋଲି ଶୂନ୍ୟରେ ରହିଲା ॥ ଶୁଣି ତା ସୁଗ୍ରୀ ରାଜନ । ବୋଲନ୍ତି କୋପେ ବଚନ । ସୀତା ଦେଇ ଯେବେ ଶରଣ ପଶିବ ତେବେ ସେ ହେବ ସନ୍ଧାନ ।

ଯେଣୁ ସୀତା କଲି ଚୋର । ତେଣୁ ସେ ଆମ୍ଭ ବଇରୀ । ରାମ ଶତ୍ରୁ ଯେଣୁ ଆମ୍ଭ ଶତ୍ରୁ ତେଣୁ ମୋତେ ସେ ବାଳିର ସରି ॥ ଅଙ୍ଗଦ ବୋଲେ ତାହାଙ୍କୁ । କି କହି ଦେବ ଏହାକୁ । ଦୂତ ହୋଇ ଚୋରପଣେ ଆସିଅଛୁ ଆମ୍ଭ ସୈନ୍ୟ କଳିବାକୁ ॥ ଯିବଟି ଏହାକୁ ଧର । ବନ୍ଧନ ତ୍ୱରିତ କର । ନଙ୍ଗଦ ବଚନ ଶୁଣିଣ ସୁଗ୍ରୀବ ଆଜ୍ଞା ଦେଲେ ହେଉ ଧର ॥ ବାନର ଧରି ଆଣିଲେ । ତୁରିତେ ବନ୍ଧନ କଲେ । ବଶି ରାମ ଛାମୁରେ ଜଣାଇ ବନ୍ଧନ କରି ରଖିଲେ ॥ ୧୩ ।

---

## ୧୨୬ ଛାନ୍ଦ—ସିନ୍ଧୁପ୍ରତି ଶ୍ରୀରାମଙ୍କର ପ୍ରାର୍ଥନା

### ରାଗ—ମାଳଶ୍ରୀ

ସିନ୍ଧୁ କୂଳରେ ବିଜେ ରଘୁପତି । ସୁଗ୍ରୀ ବିଭୀଷଣ ଅଛନ୍ତି କତି । ଶ୍ରୀରାମ ବୋଲନ୍ତି କପି ଈଶ୍ୱର । କେମନ୍ତେ ଜଳଧି ହୋଇବା ପାର । ଶୁଣି ସୁଗ୍ରୀବ କରଯୋଡ଼ି ଜଣାନ୍ତି ଶୁଣିମା ହେଉ ଦେବ । ବନ୍ଧ ବାନ୍ଧିଲେ ସିନ୍ଧୁପାର ହେବ ॥ ଆଜ୍ଞା ଦେଲି କପି ଆଣନ୍ତେ ଶିଳ । ବନ୍ଧନ କରିବା ଜଳଧିଜଳ । ଆଜ୍ଞାପାଇଣ କପିମାନେ ଗଲେ । ଗିରି ଆଣି ସମୁଦ୍ରେ ପକାଇଲେ । ବୁଡ଼ି ଗଲେ କେହି କାହିଁରେ ପଡ଼ିଲେ ଅଗାଧ ଜଳଧିଜଳ ॥ ଥୋକେ ଶିଳାମାନ କଲେ କବଳ ॥ ରାମ ଛାମୁରେ ଥିଲେ ଲଙ୍କେଶ୍ୱର । ସୁଗ୍ରୀହନୁ ଧରି ତା ବେନିକର । ବୋଲନ୍ତି କହ ଆମ୍ଭଙ୍କୁ ବିଚାର । କି ରୂପେ ଜଳଧି ହୋଇବା ପାର । ବିଭୀଷଣ ବୋଲେ ସାଗର କାରତି ଅଟଇ ସୂର୍ଯ୍ୟବଂଶର । ପ୍ରାର୍ଥନା କରନ୍ତୁ କୋଦଣ୍ଡଧର ॥ ଏମନ୍ତ ଶୁଣି ଶ୍ରୀରାମ ଛାମୁରେ । କରଯୋଡ଼ି ଜଣାଇଲେ ସତ୍ୱରେ । ଶୁଣି ରାଘବ ସନ୍ତୋଷ ହୋଇଲେ । ସମସ୍ତ ମନ୍ତ୍ରୀ ରାଇ ପଚାରିଲେ । ଆଜ୍ଞା ପାଇ ସମସ୍ତ ମନ୍ତ୍ରୀ ବୋଲନ୍ତି ଏହି ରୂପେ କର ଦେବ । ବିଭୀଷଣ ବିଚାର ଯେ ଦୁର୍ଲ୍ଲଭ ॥ ଶୁଣି ରାମ ସିନ୍ଧୁରେ ସ୍ନାନ କଲେ । ସନ୍ଧ୍ୟାତର୍ପଣ ତ୍ୱରିତେ ସାରିଲେ । ସିନ୍ଧୁକୁ ବହୁରୂପେ କରି ସ୍ତବ । କୁଶଶଯ୍ୟା କଲେ ଜାନକୀଧବ । ତିନି ଦିନ ତିନି ରଜନୀ ତହିଁରେ ଜଳହିଁ ନ କଲେ ପାନ । ପ୍ରସନ୍ନ ନୋହିଲେ ଜଳରାଜନ । କ୍ରୋଧରେ ରାମ ନୟନ ଅରୁଣ । ବୋଲନ୍ତି ଦେଖ ଦେଖ ହେ ଲକ୍ଷ୍ମଣ । ସିନ୍ଧୁ ଦେଖାଇଲି ଲଘୁତାପଣ ଶୀଘ୍ର କରିଣ ଧନୁବାଣ । ମୂର୍ଖଜାତି ଭୟ ପାଇଲେ ଗୀରତି ଦେବଇଁ ଏହାକୁ ଦଣ୍ଡ । ଭଣେ ବଶି ଯୋଧଇଲେ କୋଦଣ୍ଡ । ୬ ।

—※—

## ୧୩ଶ ଛାନ୍ଦ—ସେତୁବନ୍ଧ ପ୍ରସ୍ତାବ

ରାଗ—ପାହାଡ଼ିଆ କେଦାର

କରୁଣାସିନ୍ଧୁ ସିନ୍ଧୁକୁ ଚାହିଁ, ଧନୁ ଟଙ୍କାର କୁପିତ ହୋଇ, ବୋଲନ୍ତି ତ୍ରିଭୁବନରେ ତୋତେ ରଖନ୍ତା ନାହିଁ ଯେ । ଯେବେ ତୁ ପଥ ଛାଡ଼ିବୁ ନାହିଁ, ଶରେ ସାଗର ଦେବ ଶୁଖାଇ, ମହୀରେ ଆଉ ସମୁଦ୍ର କରି ରଖିବି ନାହିଁ ଯେ । ଏତେ ବୋଲି କୋଦଣ୍ଡେ କାଣ୍ଡ ସନ୍ଧିଲେ । ଜଳନିଧି ଗର୍ଭକୁ ଶର ବିନ୍ଧିଲେ । ଉଚ୍ଛୁଳି ସିନ୍ଧୁ ଲଙ୍ଘିଲା କୂଳ, ବଡ଼ ଆକୁଳ ହେଲେ ସକଳ । ଅନଳ ଦେବ ଦାନବ କୁଳ କ୍ଷୁବ୍ଧ ହୋଇଲେ ଯେ ॥ ସହୁଁ ସିନ୍ଧୁର ନୋହିଲା ଡ଼ର, ବସାନ୍ତେ ବ୍ରହ୍ମଅସ୍ତ୍ର ଗୁଣରେ, ଦେଖିଲେ କମ୍ପିଲେ ନାଗ ନର ସୁର ଅସୁର ଯେ । ଆକାଶୁଁ ବୃଷ୍ଟି ହେଲା ରୁଧିର, ଜଳୁଁ ଅନଳ ହେଲା ବାହାର, ମହୀରେ ଉତପାତ ନିକର ହେଲା ପ୍ରଚୁର ଯେ । ଏହା ଦେଖି ବରୁଣ ଭୟେ କାତର । ମନେ ବିଚାରକଲେ ଏତେ ମାତର । ନଷ୍ଟେ ମୁଁ ଦରଶନ କରିବି, ନ କଲେ ବ୍ରହ୍ମଅସ୍ତ୍ରେ ମରିବି, ଏତେ ବିଚାରି ବାହାର ହେଲେ ଅତି ସତ୍ୱର ଯେ ॥ ସଭୟ ହୋଇ ଜଳରାଜନ, ପରିଧାନ ସୁରଙ୍ଗ ବସନ, କୃତ ଅଞ୍ଜଳି ହୋଇ ବଦନ କହେ ବଚନ ଯେ । ହେ ଦେବ ଦଶରଥନନ୍ଦନ, ବିନାଶିପାରି ସସ୍ତଭୁବନ, ମୁଁ ଛାର ପାନ ପାଇଁ କମ୍ପାଇ କୁପିତ ମନ ଯେ ॥ ଆଜ କୃତାର୍ଥ କଲ ମୋର ଜୀବନ । ନେତ୍ରପଥେ ଦେଖିଲି ତୁମ୍ଭ ବଦନ । ଏବେ ମୋ ଅପରାଧ ନ ଘେନ, ସଦୟ ହୋଇ ହୁଅ ପ୍ରସନ୍ନ, ପୂର୍ବକାଳରୁ ତୁମ୍ଭ କୁଳର ସଞ୍ଚିଲା ଜନ ଯେ ॥ ମୁଁ ଯେବେ ଡ଼ର ଦେବିଁ ବାଟ, ମହୀରେ ଛନ୍ତି ଅନେକ ଦୁଷ୍ଟ, ତୁମ୍ଭରି ପ୍ରାୟ ହୋଇବେ ରୁଷ୍ଟ ପାଇବି କଷ୍ଟ ଯେ ॥ ହେ ଦେବ ରଘୁକୁଳର ଶ୍ରେଷ୍ଠ, ଘେନ ମୋହର କହିବା ବାଟ, ପାରି ହୋଇବେ ଋକ୍ଷ ମର୍କଟ ନାହିଁ କପଟ ଯେ । ବିଶ୍ୱକର୍ମା କୁମର ଅଟଇ ନଳ ହେ । ତାର ଛୁଇଁଲେ ଜଳେ ଭାସିବ ଶିଳ । ବନ୍ଧାଅ ସେତୁ ବାନ୍ଧ ଅଚଳ ମୁଁ ପୁଣି କଚ୍ଛ ହୋଇବି ସ୍ଥଳ, ପାରି ହୋଇବେ ସକଳ ବଳ କମ୍ପାଇ ଭଲ ଯେ ॥ ଶ୍ରୀରାମ ସିନ୍ଧୁରାଜଙ୍କୁ ଚାହିଁ, ବୋଲନ୍ତି ଅସ୍ତ୍ର ପେଷିବି କାହିଁ, ତୁମ୍ଭ ନିମନ୍ତେ କ୍ରୋଧରେ ଅଛୁ ଗୁଣେ ବସାଇ ହେ । ଶୁଣି ବୋଲନ୍ତି ସଚିତସାଇଁ, କ୍ଷୀରସାଗର ପ୍ରାନ୍ତରେ ଯାଇ, ଅନେକ ଦୁଷ୍ଟ ଅଛନ୍ତି ରହି, ପେଷ ଗୋସାଇଁ ହେ । ଶୁଣି ଶ୍ରୀରାମ ବ୍ରହ୍ମଅସ୍ତ୍ର ପେଷିଲେ । ସେ ଦିଗରୁ ସମସ୍ତ ଦୁଷ୍ଟ ନାଶିଲେ ଯେ । ସେ ଦିନୁ ଭୂମି ହୋଇଲା ଯୋଗ୍ୟ, ଦେବ ଗନ୍ଧର୍ବେ ପାଇଲେ ଭୋଗ, ରାମ ପ୍ରସାଦେ ତହିଁରେ ପୁଷ୍ପ ଫଳ ଫଳିଲେ ହେ ॥ ମେଲାଣି ପାଇ ନଦୀପତି, ବାହୁଡି ନିଜ

ପୁରେ ଚଢ଼ନ୍ତି, ବନ୍ଧୁ ନୃପତି ହୋଇଲେ ମତି ଜାନକୀପତି ଯେ । ସେ ବେନି ରାଜାଙ୍କୁ ରାଇ କହି, ବେଳାନ୍ତ ଦେଖିଲ ସିନ୍ଧୁପ୍ରତି, କହିଲ ଯେତେ ରୂପେ ଭକତି କର ଝଟତି ଯେ । ଶୁଣି ସୁଗ୍ରୀବ ରାଇ ବାନରବଳ ଯେ । ଆଜ୍ଞାଦେଲେ ସମସ୍ତେ ଆଣ ଅଚଳ ଯେ । ସମସ୍ତ ଶିଳ ଛୁଇଁବେ ନଳ, ସେତୁ ହୋଇବ ନ ବୁଡ଼ି ଜଳ । ବୋଇଲେ ବଶି ଶୁଣି ଧାଇଁଲେ ବାନର ବଳ ଯେ । ୬ ।

—*—

## ୧୪ଶ ଛାନ୍ଦ—ସେତୁବନ୍ଧ ପ୍ରସ୍ତାବ

ରାଗ—ଚକ୍ରକେଳି

ରାଜା ଆଜ୍ଞା ପାଇ ବାନର ବଳ । ସମସ୍ତଠାରୁ ଆଣି ତରୁ ଶିଳ ॥
ରାମ ନାମ ଧରି ଛୁଅନ୍ତେ ନଳ । ଭାସିଲା ନଉକା ପ୍ରାୟେ ଅଚଳ ॥
ପାଞ୍ଚଦିନେ ସେତୁ କଲେ ଶ୍ରୀରାମ । ଶତଯୋଜନ ହୋଇ ପରମାଣ ॥
ଦଶଯୋଜନ ସେ ବନ୍ଧର ପ୍ରତି । ଜନ୍ତୁଙ୍କ ବାହାର ହୋଇଲା କ୍ଷିତି ॥
ମୃତ୍ତିକା ପକାଇଣ ଭୂଇଁ କଲେ । ବୃକ୍ଷ କପିବଳ ସୁଖେ ଚଳିଲେ ॥
ହସିଣ ଆଜ୍ଞା ଦେଲେ ରଘୁମଣି । ହେଲାଟିକି ସେତୁ ହେ ଲଙ୍କପତି ॥
ହେଲା ଦେବ ବୋଲି ଯୋଡ଼ିଲେ କର । ବିଜେ ହେଉ ଦେବ ସେତୁ ଉପର ॥
ହନୁ କାନ୍ଧରେ କଲେ ଆରୋହଣ । ଗରୁଡ଼ ପିଠିରେ କି ନାରାୟଣ ॥
ଲକ୍ଷ୍ମଣ ଅଙ୍ଗଦ କାନ୍ଧେ ବିଜୟେ । ଆଗୁଆ ସୁଗ୍ରୀ ବିଭୀଷଣ ରାୟେ ॥
ବେଢ଼ି ଚଳନ୍ତି ସେନାପତିବୃନ୍ଦ । ମଧ୍ୟରେ ବିଜୟେ ଶ୍ରୀରାମଚନ୍ଦ୍ର ॥
ଶତଯୋଜନ ସିନ୍ଧୁପାରି ହେଲେ । ସୁବଳଗିରି ଉପରେ ଉଠିଲେ ॥
ଗୃହିଁଲେ ଦିଶଇ ଲଙ୍କା କଟକ । ପ୍ରକାର ସର୍ବତେ ସର୍ବ ହାଟକ ॥
ସୁବଳଗିରି ଅଙ୍କ ଦିବ୍ୟସ୍ଥାନ । ବୋଲେ ବଶି ତହିଁ କଲେ ଆସ୍ଥାନ ॥

×—

## ୧୫ଶ ଛାନ୍ଦ

ରାଗ—ଭୈରବ । ତାଳ ସରିମାନ

ସୁବଳଗିରି ଅଙ୍କରେ ବିଜେ କରି ରାମ ଲକ୍ଷ୍ମଣଙ୍କୁ କହନ୍ତି ବଚନ । ସିନ୍ଧୁପାରି ହୋଇ ଆମ୍ଭେ ଆସି ହେଲଇ ଦେଖ ଦିଶୁଅଛି ଶତ୍ରୁଭୁବନ । କି ବତ୍ସ ହେ । ହୋଇଥିବ ତୁମ୍ଭେ ସାବଧାନ । ଉତପାତମାନ ଜାତ ହେଉଅଛି ନିଶ୍ଚେ, ନାଶ ଯିବେଟି ଉଭୟ ସୈନ୍ୟ ॥ ଜଳରୁ ଅନଳ ଜାତ ହେଉଅଛି ସୂର୍ଯ୍ୟମଣ୍ଡଳ ଦିଶଇ ନାନାପ୍ରକାର । ଆକାଶୁଁ ରୁଧିର ବୃଷ୍ଟି ହେଉଅଛି ଦିଗ ଦିଶୁଅଛି ମହା ଭୟଙ୍କର ॥ ଜଳ ଆହାର ସଂଗ୍ରହ କରୁଥିବ ଧରିଥିବ ନିରନ୍ତରେ ଧନୁଶର । ଅସୁରମାନେ ମାୟାବୀ ମାୟା

ବଳେ ଜଣି ଏଛନ୍ତି ଦେବ ପୁରନ୍ଦର ॥ ସୁଗ୍ରୀବଙ୍କୁ କହ ଗିରି ଚଉପାଶେ ବଡ଼ବଡ କପିମାନେ ଜଗିଥିବେ । ଶତ୍ରୁର ସମ୍ମୁଖେ ଆମ୍ଭେ ରହିଥାଇ ଠାବେ ଠାବେ ବେଗେ ଠଣା ସେହି ଦେବେ ॥ ରାମ ଆଜ୍ଞା କପିରାଜନ ପାଇଣ କପି ପେଷି ଠାବେ ଠାବେ ଠଣା ଦେଲେ । ବୋଲେ ବଣି ରାମ ଆସ୍ଥାନ ସରକ ପଞ୍ଚଦ୍ୱାର କପି ଜଗାଇଲେ । ୫ ।

—×—

## ୧୭ଶ ଛାନ୍ଦ

ରାଗ—କେଦାର ପଟତାଳ

ସୁବଳ ପର୍ବତେ ବଜେକର ରାମ ଛାଡ଼ିଣ ଦେଲେ ଶୁକକୁ । ବନ୍ଧନୁ ମୁକତ ହୋଇଣ ସେ ଯାଇଁ ଜଣାଇଲା ରାବଣକୁ । ଆହେ ଦେବ । ମୋତେ ସୁଗ୍ରୀ ଦେଲା ପରାଭବ । ମାଡ଼ ମରାଇ ବନ୍ଧନ କରିଥିଲା ଛଡ଼ାଇ ଦେଲେ ରାଘବ ॥ ପର୍ବତେ ସିନ୍ଧୁ ବନ୍ଧାଇ ପାର ହୋଇଲେ ଅଗାଧ ଜଳଧି ଜଳ । ତରୁ ପାଷାଣ ଜଳରେ ନ ବୁଡ଼ିଲା ଛୁଇଁଲା ମାତ୍ରକେ ନଳ ॥ ଏବେ ସେ ସୁବଳଗିରିରେ ରହିଲେ କରଣ ତହିଁରେ ଗଡ଼ । ସୁଗ୍ରୀବ ସଙ୍ଗରେ କୋଟି କୋଟି କପି ଲଙ୍କା ପୋଡ଼ାଠାରୁ ବଡ଼ ॥ ଶୁଣିଣ ରାବଣ ବ୍ୟସ୍ତ ହୋଇଣ ବୋଲଇ ବାହୁଡ଼ଯାଅ । ସାରଣ ତୁମ୍ଭର ସଙ୍ଗତରେ ଯାଉ ସୈନ୍ୟ କଳ ମୋତେ କହ ॥ ଆଜ୍ଞା ପାଇଣ ମନ୍ତ୍ରୀ ଶୁକ ସାରଣ ମର୍କଟ ରୂପ ଧଇଲେ । ବୋଲେ ବଣି ଶ୍ରୀରାମଙ୍କ ସଇନ୍ୟରେ ପ୍ରବେଶ ଯାଇଁ ହୋଇଲେ । ୫ । —×—

## ୧୭ଶ ଛାନ୍ଦ—ସୈନ୍ୟକଳନା

ରାଗ—ଚନ୍ଦ୍ରକେଳି ବାଣୀ

ଶୁକ ସାରଣ ହୋଇଣ ମର୍କଟ । ସୈନ୍ୟ କଳୁଛନ୍ତି କରି କପଟ ॥ ବିଭୀଷଣ ଦୃଷ୍ଟିରେ ସେ ପଡ଼ିଲେ । ତାଙ୍କୁ ଧରିଆଣ ସେ ଆଜ୍ଞା ଦେଲେ ॥ ଚହ୍ନିଲେ ମନ୍ତ୍ରୀ ଶୁକ ସାରଣକୁ । ବାନ୍ଧି ଘେନଗଲେ ରାମ. ସମ୍ମୁଖକୁ ॥ ଶ୍ରୀରାମ ସମ୍ମୁଖରେ ସେ ଜଣାଇଲେ । ରାବଣ ମନ୍ତ୍ରୀ ବୋଲି ଶୁଣାଇଲେ ॥ ହୋଇଛନ୍ତି ବେନିଜନେ ମର୍କଟ । ସୈନ୍ୟ କଳୁଛନ୍ତି କରି କପଟ ॥ ଆଜ୍ଞା ହେଲେ ଏ ବେନିଙ୍କି ମାରିବା । ବୈରି ଯେଣୁ ଶିରଚ୍ଛେଦ କରିବା ॥ ହସି ଆଜ୍ଞାଦେଲେ ରାମ ନ ମାରି । ସୈନ୍ୟ ବୁଲାଇ ଦେଖାଅ ଆମ୍ଭର ॥ ଆଜ୍ଞାପାଇ ତାଙ୍କୁ ସୈନ୍ୟ ଦେଖାଇ । ସମ୍ମୁଖରେ କହିଲେ ତାଙ୍କୁ ରଖାଇ ॥ ଆଜ୍ଞା ଦେଲେ ଛାଡ଼ିଦିଅ ବୈରିଙ୍କୁ । ଯାଇ କହନ୍ତୁ ଜାନକୀ ବୈରିକୁ ॥ ଆଜ୍ଞା ପାଇଣ ତାହାଙ୍କୁ ଛାଡ଼ିଲେ । ବଣି ବୋଲେ ଲଙ୍କାକୁ ବାହୁଡ଼ିଲେ । ୧୦ ।

—×—

## ୧୮ଶ ଛାନ୍ଦ

ରାଗ—ସିନ୍ଧୁ କାମୋଦୀ । ନନ୍ଦତାଙ୍କ ଚଉତିଶା ବାଣୀ

ରାବଣକୁ ଦର୍ଶନ କରଣ ବେନଜନ ରାମଙ୍କ ବୃତ୍ତାନ୍ତ କହିଲେ । ବିଭୀଷଣ ଆମ୍ଭଙ୍କୁ ଚିହ୍ନି ବନ୍ଧନ କରି ରାମଛାମୁରେ ଉଭାକଲେ ଯେ । ଆହେ ଦେବ । ସେ ଆମ୍ଭଙ୍କ ବନ୍ଧନୁ ଫେଇ । ଛାଡ଼ିଦେଲେ ସକଳ ସୈନ୍ୟଙ୍କୁ ଦେଖାଇ । ଭାଗ୍ୟ ବଳରେ ଆମ୍ଭେ ଜୀବନରେ ଅଇଲୁ ଚିହ୍ନିଲୁ ଯୂଥପତି ତହିଁ ଯେ । ଶୁଣି ତାଙ୍କ ବଚନ ନୃପତି ଦଶାନନ ସେ ବେନି ସଙ୍ଗେ ଘେନିଗଲା । ଉଠନ୍ତେ ମହାଭୟ କେବଳ ହେମମୟ ଉଚ୍ଚ ଜଗତୀ ଆରୋହିଲା ସେ । ଲଙ୍କପାଳ । ଦେଖିଲେ ରାମ କପିବଳ । ପୂରିଛନ୍ତି ମହୀ ଆବରି ବନ ତଳ । ସିନ୍ଧୁ କ କୂଳ ଲଙ୍ଘି ଆସଇ ମହାଜଳ ଅନାଇ ହୋଇଲା ତରଳ ସେ ॥ ସାରଣକୁ ପୁଚ୍ଛଇ କହ ମୋତେ ଚିହ୍ନାଇ ଏମାନେ କେଉଁ କେଉଁ କପି । ଆମ୍ଭ ଲଙ୍କାକୁ ଚାହିଁ ତନୁରୁହ ଫୁଲାଇ ହେଉଛନ୍ତି ତ ମହାକୋପୀ ଯେ । ହେ ସାରଣ । କହ ଏମାନଙ୍କର ନାମ । କେମନ୍ତେ ସେ ଦେଖା ମୋତେ ଲକ୍ଷ୍ମଣ ରାମ । ବିପୁଳ ଶାଖାମୃଗମାନେ ଦିଶୁଛନ୍ତି ଗୋଟି ଗୋଟିକେ ଗଜ ସମ ସେ ॥ ଶୁଣି କହେ ସାରଣ ଶୁଣ ଦେବ ରାବଣ ଲଙ୍କାକୁ ଚାହିଁ ଯେ ଗର୍ଜ୍ଜଇ । ବାନର ସେନାପତି ପବନ ପ୍ରାୟ ଗତି ଏହାର ନାମ ନୀଳ ଅଟଇ ଯେ । ଆହେ ଦେବ । ଶତସହସ୍ର କୋଟି କପି । ଏହା ସଙ୍ଗ କ୍ଷଣେ ନ ଛାଡ଼ନ୍ତି ଅଦ୍ୟାପି । ଦେଖ ଏ ଶତବଳ ଏହାର ଅଙ୍ଗବଳ ବନଗିରି ଅଛନ୍ତି ବ୍ୟାପି ଯେ ॥ ବିଶ୍ୱକର୍ମାର ବାଳ ଉଭା ହୋଇଛି ନଳ ଏହି ସାଗରେ କଲା ସ୍ଥଳ । ଏହାର କର ଲଗି ସେତୁ ହୋଇଲା ଦେବ ଅଇଲେ ଋକ୍ଷ କପିବଳ ଯେ । ଆହେ ଦେବ । ଏହା ବୁଦ୍ଧି ଅପରିମିତ । ଶତକୋଟି ହରି ବଳଛନ୍ତି ବହୁତ । ଏହି ଦୁର୍ବିନ୍ଧ ସ୍ୱର୍ଗେ ଅମୃତ ପାନକଲା ଜିଣି ଦେବ ପୁରୁହୂତ ଯେ ॥ ଏହି ମହେନ୍ଦ୍ର ଦେବ ପୁଚ୍ଛ ହଲାଉଅଛି ଏହାର କୋଟି କପିବଳ । ଏହି ଗନ୍ଧମାଦନ ସହସ୍ର କୋଟି ସୈନ୍ୟ ସଂଗ୍ରାମେ ଏ ଦ୍ୱିତୀୟ କାଳ ଯେ । ଆହେ ଦେବ । ମହା ବଳଷ୍ଠ ଏ ସୁଷେଣ । ଶତ ଲକ୍ଷକୋଟି ଏହାର କପିଗଣ । ସୁଗ୍ରୀବର ଶ୍ୱଶୁର ବିଶ୍ୱାସ ଏ ରାମର ଅଛି ଏହାର ବୈଦ୍ୟ ପଣ ଯେ ॥ ଏହି ଦେବ ଗବୟ ଭୂମିରେ ପୁଚ୍ଛ ପିଟେ ଗବାକ୍ଷ ତାରି ପାଶେ ଉଭା । ଲଙ୍କାକୁ ଅନାଇଣ ତର୍ଜି ରଡ଼ ଛାଡ଼ିଣ ତାରି ପାଶେ ପବନ ଶୋଭା ଯେ । ଆହେ ଦେବ । ପୁଚ୍ଛ ଟେକି ଯେ ଅନାଇଛି । କୋଟି କୋଟି କପିବଳ ଏହାର ଅଛି । ଏହା ପାଶରେ ଦେବ ବିନତାସୁତ ରହି ବାହାସ୍ଫୋଟ ମନ ମାରୁଛି ହେ । ଦେଖ ଭୋ ଦେବ ଗଜ ଦିଶୁଛି ମହାତେଜ ଲଙ୍କାକୁ

ଗୃହିଁ ଯେ ହସଇ । ଏହାର ବଳ ଯେତେ କହିବ ଅବା କେତେ ବିଷମ ସମରେ ମିଶଇ ସେ । ଆହେ ଦେବ । ଏହା ପାରୁଶ୍ୱେ ଉଭା ରମ୍ଭ । ବହୁ କପି ସମୂହେ ବଶୁଛି ଆରମ୍ଭ । ତାହା ପାଖରେ ଉଭା ହୋଇଛି ଦଧିମୁଖ ସଂଗ୍ରାମରେ ଅଟଇ ଦମ୍ଭ ସେ ॥ ଦେଖ ଏ ଦଧିମୁଖ ଊର୍ଦ୍ଧ୍ୱକୁ କରି ମୁଖ ଦଶନେ ଓଷ୍ଠ ଅଛି ଚିପି । ଏହା ସଙ୍ଗରେ ଦେବ ଏହାର ସମ ହୋଇ କୋଟି କୋଟି ଅଛନ୍ତି କପି ହେ । ଦେଖ ଦେବ । ତା ବାମପାରୁଶ୍ୱେ କୁମୁଦ । ଆମ୍ଭ ସଙ୍ଗେ କରିବେ ବୋଲିଣ ବିବାଦ । ଉଗୁଇଁ କହୁଅଛି ପୁଚ୍ଛରେ ତର୍ଜୁଅଛି ହୋଇଣ ଅତ୍ୟନ୍ତ ପ୍ରମୋଦ ସେ ॥ ଦେଖ ଏ ଦେବ କୁନ୍ଦ ଅଟଇ ମହାନନ୍ଦ ଲଙ୍କାକୁ ଗୃହିଁ ସେ ଭାଷଇ । ତାର ପାରୁଶ୍ୱେ ଦେବ ଦୁର୍ମୁଖ ମୁଖ ଦେଖ ମହାଭୟଙ୍କର ଦିଶଇ ଯେ । ଆହେ ଦେବ । ଏହା ପାଶେ ଅଛି ସୁମୁଖ । ଏହା ସଙ୍ଗେ କପିବଳି ଛନ୍ତି ଅସଂଖ୍ୟ । ଏହା ପାଶରେ ବ୍ରହ୍ମ ଅଲୌକିକ ତା କର୍ମ କପି ଅଛନ୍ତି ଲକ୍ଷ ଲକ୍ଷ ଯେ ॥ ଦେଖ ଦେବ ଋଷଭ ମହାମତ୍ତ ବୃଷଭ ପ୍ରାୟକ ହୋଇଅଛି ଉଭା । ଦେଖ ବେଗଦରଶୀ ସିଂହର ପ୍ରାୟ ଦିଶି ଏହାର ବଳ କି କହିବା ଯେ । ଆହେ ଦେବ ॥ ତାହା ପାଶେ ହେମ ମୁକୁଟ । ଏହା ବୁଦ୍ଧି ସକଳ ଲୋକରେ ପ୍ରକଟ । ଏହା ବଳ ଯେତେ କହିବ ଅବା କେତେ କୋଟି କୋଟିଛନ୍ତି ମର୍କଟ ଯେ ॥ ଦେଖ ଦେବ କେଶରୀ ଏହା ସଙ୍ଗରେ ହରି ଅଛନ୍ତି କୋଟି କୋଟି ହୋଇ ॥ ସମସ୍ତେ ବଳବନ୍ତ ଶାଳ ଶିଳମାନ ତ ଘେନିଛନ୍ତି ସଂଗ୍ରାମ ପାଇଁ ଯେ । ଆହେ ଦେବ । ଇନ୍ଦ୍ରଯାନ ଏ ଧୂମ୍ରଯାନ । ହୋଇଛନ୍ତି ଉଭା କେଶରୀ ସନ୍ନିଧାନ । ଏହାଙ୍କ ସଙ୍ଗେ ଦେବ ବେନି କୋଟି ବାନର ଗୋଟିଏ ନାହିଁ ଏଣି ସାନ ହେ ॥ ଦେଖ ଏ ହନୁମନ୍ତ ପବନଦେବ ସୁତ ଏହାର ସୈନ୍ୟ ଅପ୍ରମିତ । କେତେ ସହସ୍ର କୋଟି କପି ଏହା ସଙ୍ଗରେ ନ ଜାଣେ ଏଥିର ଅନ୍ତ ଯେ । ଆହେ ଦେବ । ଋକ୍ଷଙ୍କ ପତି ଏ ଜାମ୍ବବ । ଏହା ସଙ୍ଗେ ଭଲ୍ଲୁକ ବଳ ଅସମ୍ଭବ । ଲକ୍ଷ ଲକ୍ଷ ହୋଇଣ ଯାହା ଭଲ୍ଲୁକବଳ ତାହା କେ କଳନା କରିବ ॥ ଦେଖ ଉଭା ସୁଗ୍ରୀବ ହେମବାଳା ଏ ଗ୍ରୀବ ଏହି ବାନରକୁଳରାଜ । ଏହାର ପାରୁଶ୍ୱରେ ଦେବ ଅଙ୍ଗଦ ଉଭା ବାଳିନୃପତିର ଆତ୍ମଜ ଯେ । ଆହେ ଦେବ । ପାରନ୍ତି ନାନା ରୂପ ଧରି । କାମରୂପୀ ଅଟନ୍ତି ଏ ସକଳ ହରି । ଏତେ କହି ସାରଣ ପଛଘୁଞ୍ଚା ଦେଇଣ ମନରେ ମହାଭୟ କରି ସେ ॥ ଶୁକ ଦେଖାଇ କହେ ଦୁର୍ବାଦଳ ଶରୀର ଗୁଣ୍ଡ୍ରସାକ ନୟନ ରାମ । ଏହି ଜାନକୀବର କୋଦଣ୍ଡ ଶର କର ଛିଦ୍ର ନିନ୍ଦା କରୁଛି କାମ ହେ ॥ ଆହେ ଦେବ । ତାଙ୍କ ପାରୁଶ୍ୱରେ ଲକ୍ଷ୍ମଣ । ଲଙ୍କା ଗୃହିଁ ଟଙ୍କାର କରୁଛନ୍ତି ଗୁଣ । ତାଙ୍କ ପାରୁଶ୍ୱେ ଉଭା ହୋଇଛି

ଦେବ ତୁମ୍ଭ ସୋଦର ଭ୍ରାତ ବିଭୀଷଣ ଯେ ॥ ଶୁଣିଣ ଲଙ୍କନାଥ କୁପିତ ହୋଇ ମତି ବହୁ ଭର୍ତ୍ସନା ତାଙ୍କୁ କଲା । ମନ୍ତ୍ରୀ ହୋଇଣ ତୁମ୍ଭେ ରାଜନୀତି ନ ଜାଣ ଉରାଉଅଛ ରେ ବୋଇଲା ସେ । ଆହେ ମନ୍ତ୍ରୀ । ଛେଦନ୍ତି ତୁମ୍ଭ ବେନି ଶିର । ପୂର୍ବେ ମୋତେ କରିଛ ବହୁ ଉପକାର । ଯାହାକୁ ତୋଷ କଲେ ବହୁ ବିଭୂତି ପାଇ ତାହା କୋପରେ ଯାଇ ଶିର ଯେ ॥ ମନ୍ତ୍ରୀ ହୋଇଣ ତୁମ୍ଭେ ରାଜାଗ୍ରମୁରେ ଶତ୍ରୁ ସୈନ୍ୟପ୍ରାକ୍ରମମନ କହ । ଏଣୁ ନୀତି ନ ଜାଣି ନ ପଢ଼ିଣ ନ ଶୁଣି ଗର୍ବରେ ହୋଇଅଛ ମୋହ ଯେ । ଆହେ ମନ୍ତ୍ରୀ । କ୍ଷମା କଲି ମୁଁ ଆଜ ଦୋଷ । ଆଉ-ବେଳେ ଏହା ନ କହିବ ମୋ ପାଶ । ପିଇବ ଧ୍ୟାନ ବଶି ସକଳ ଧନ ନଶି ଶ୍ରୀରାମ ଚରିତ ପୀୟୂଷ ହେ । ୧୭ ।

—×—

## ୧୯ଶ ଛାନ୍ଦ—ଛତ୍ରଚ୍ଛେଦନ

ରାଗ—କୌଶିକ

ମନ୍ତ୍ରୀମୁଖୁଁ ଶୁଣି କୋପେ ବାଣପାଣି ପୁଷ୍ପକଯାନେ ବିଜେ କଲେ । ଧନୁଶର ଧରି ଆକାଶେ ରହିଣ ସୁବଳଗିରିକି ଚାହିଁଲେ । ଡୋଳେ ଦେଖିଲେ, ଦୂର୍ବାଦଳ ଶ୍ୟାମ ଶରୀର । ବ୍ରହ୍ମାଣ୍ଡ ଶୋଭା କି ହେନ ଅବତାର ମଦନ ଯାର ପରିସର ॥ ବିଚିତ୍ର ମୃଗଛାଲପରେ ବିଜୟ ସୁଗ୍ରୀବ ଉରେ ଆଉଜିଣ । ଦକ୍ଷିଣଭୁଜ ତାରାସୁତ କନ୍ଧରେ ହନୁ ଚାପେ ବାମ ଚରଣ । ଲଙ୍କାଗଡରେ, ପଡ଼ିଛି କୋପନେତ୍ର କୋଣ । ଶ୍ରୀରାମବାମପାର୍ଶ୍ୱରେ ବସିଣ ଶର ସଳଖନ୍ତି ଲକ୍ଷ୍ମଣ ॥ ଗ୍ରମୁରେ ଜାମ୍ବବ ବେନିକର ଯୋଡ଼ି ଜଣାନ୍ତି ଯୁଦ୍ଧ ଅନୁକୂଳ । ଗୁଣ ଦେଇଣ କୋଦଣ୍ଡ ଧରିଛନ୍ତି ବାମଅଙ୍ଗ କରକମଳ । ଦକ୍ଷିଣକର, ପଲ୍ଲବେ ଶୋଭେ ତୀକ୍ଷଣ ଶର । ସୁବାସ କୁସୁମେ ସୁକଣ୍ଠ ମଣ୍ଡିତ ବନକୁସୁମ ମାଳା ଉର ॥ ମେଘଖଣ୍ଡ ପ୍ରାୟ ଗଗନେ ଦେଖିଣ ପଚାରୁଛନ୍ତି ସୀତାପତି । ଆହେ ଲଙ୍କପତି ଗଗନେ କି ଦିଶେ କହ କହ ଏ କିସ ରୀତି । କର୍ଣ୍ଣେ କହଇ, କର ବନ୍ଦନେ ବିଭୀଷଣ । ଅଙ୍ଗୁଳି ହେନ ଦେଖାଇ ବୋଲେ ଦେବ ସୈନ୍ୟ କନ୍ଦୁଅଛି ରାବଣ ॥ ଶ୍ରୀରାମ ଶ୍ରବଣେ ଏମନ୍ତ କହନ୍ତେ ଅନାଇଥିଲା ଦଶଶିର । ବୁଲାଇଣ ଗଦା ପ୍ରହାର କରନ୍ତେ ଧଇଲା ମରୁତ କୁମର । ଦେଖି ଶ୍ରୀରାମ କୋଦଣ୍ଡେ କାଣ୍ଡ ବସାଇଲେ । ରାବଣ ଧନୁ ମୁକୁଟ ସର୍ବ ଛତ୍ର ଛେଦ ବୋଲିଣ ଆଜ୍ଞାଦେଲେ ॥ ଆଜ୍ଞା ପାଇଣ ଶର ଧନୁ ମୁକୁଟ କାଟିଲା ତାହାର ସର୍ବ । ଏକାବେଳକେ ଛୁଟିଣ କି ପଡ଼ିଲ ଗ୍ରହ ସଙ୍ଗେ ସର୍ବ ନକ୍ଷତ୍ର । ତହିଁ କି ଅବା, ଗଜମୁକୁତା ହେଲା ବୃଷ୍ଟି । କି ଅବା

ମଲ୍ଲିକା କୁସୁମେ ରାମଙ୍କୁ ଅଞ୍ଜଳି ଦେଲେ ପରମେଷ୍ଠି ॥ ରାମବାଣ ଟାଣ ଦେଖିଣ ରାବଣ ଲଙ୍କ ଉପୁରେ ପଳାଇଲା । ଛେଦନ କଲେ ଯେତେ ଛନ୍ଦ ତାହାର ସିନ୍ଧୁ ଗର୍ଭରେ ସେ ପଡ଼ିଲା । ଚନ୍ଦ୍ରାକଳରେ, ମନ-ମୀନ ତାର ବୁଡ଼ିଲା । ବୋଲେ ବଳି ସୀତା ହରିଲା ବନରୁ ଦଇବ ତାହାକୁ ରୁଷିଲା ॥

—X—

## ୨୦ଶ ଛାନ୍ଦ

ରାଗ—ଦକ୍ଷିଣ କାମୋଦୀ

ଶାର୍ଦ୍ଦୂଳ କର ଧରି ଦଶଶିର । ଆରୋହଣ କଲା ବନ୍ଧ ଉଚପୁର ॥ ଦେଖିଲା ରାମ ବଳେ ସୁବଳଗିରି । ଗଡ଼ଦ୍ୱାର ଯାଏ କପି ଛନ୍ତି ପୂରି ॥ ଶୁକ ସାରଣଠାରୁ ଯା ଥିଲା ଶୁଣି । ସେହିରୂପେ ଶାର୍ଦ୍ଦୂଳ କହିଲା ବାଣୀ ॥ ଶାର୍ଦ୍ଦୂଳକୁ ପଚାରନ୍ତି ଲଙ୍କେଶ୍ୱର । କହ କେବଣ କପି କାହା କୁମର ॥ ଶୁଣି ଶାର୍ଦ୍ଦୂଳ କର ଦେଖାଇ କହେ । ରାମ ଆଗେ ଯେଉଁ ଦେବ ଉଭା ହୁଏ ॥ ବେଦବରଙ୍କର ପୁତ୍ର ଜାମ୍ବବନ୍ତ । ଋଷସୈନ୍ୟ ଅପ୍ରମିତ ॥ ଧନ୍ୱନ୍ତରୀ ପୁତ୍ରଟି ସୁଷେଣ ବୀର । ଏହାଙ୍କର କପି ସୈନ୍ୟ ଅଗୋଚର ॥ ଚନ୍ଦ୍ରଙ୍କ ନନ୍ଦନ ଦେବ ଦଧିମୁଖ । ରାମ ପାଶେ ଉଭା ହୋଇଅଛି ଦେଖ ॥ ବେଗଦରଶୀ ସୁମୁଖ ଦୁରୁମୁଖ । ଏ ତିନହେଁ ମୃତ୍ୟୁସୃଷ୍ଟିତ ଦେଖ ଦେଖ ॥ ଅନଳଙ୍କର କୁମର ଦେଖ ନୀଳ । ଆଗୁଆ ହୋଇଛନ୍ତି ସେନ କପିବଳ ॥ ଦେଖ ପବନ ନନ୍ଦନ ହନୁବୀର । ଏହୁ ଦହିଲାଟି ଆମ୍ଭ ଲଙ୍କାପୁର ॥ ଦେଖ ଏ ଅଙ୍ଗଦ ଇନ୍ଦ୍ରଙ୍କର ନାତି । ବାଳୀନନ୍ଦନ ଦ୍ୱିତୀୟ କପିପତି ॥ ମହେନ୍ଦ୍ର ଦୁର୍ବିନ୍ଧ ଦେବ ବେନି ବୀର । ଅଶ୍ୱିନୀକୁମାରଠାରୁ ଅବତାର ॥ ଗଦ ଗବାକ୍ଷ ସରଭ ତିନି ବୀର । ଋଷଭ ଗନ୍ଧମାର୍ଦନହିଁ ଆବର ॥ ପାଞ୍ଚ ବୀରେ ଅଛନ୍ତି ଯମର ସୁତ ॥ ଏହାଙ୍କର ବଳ ଦେବ ଅପ୍ରମିତ ॥ ହେମକୂଟ ବରୁଣଙ୍କ ପୁତ୍ର । କି କହିବା ଦେବ ଏହାଙ୍କ ଚରିତ ॥ ବିଶ୍ୱକର୍ମାଙ୍କ କୁମର ଏଟି ନଳ ! ଏଟି ସେତୁ କରି ଭସାଇଲେ ଶିଳ ॥ ଦେଖ ସୁଗ୍ରୀ ବାନର ନୃପତିବର । ମହାତେଜସ୍ୱୀ ଏ ସୂର୍ଯ୍ୟଙ୍କ କୁମର ॥ ବିଶ୍ରବାନନ୍ଦନ ଭ୍ରାତା ବିଭୀଷଣ । ଏହାଙ୍କ ବଳତ ଦେବ ଭଲେ ଜାଣ ॥ ରାମ ଲକ୍ଷ୍ମଣ ଏ ଦଶରଥବାଳ । କେବଳ ଏଟନ୍ତି ଦନୁଜଙ୍କ କାଳ ॥ କେତେ କହିବି ଗୁମୁରେ ବଂଶନେତ୍ର । ଦଶକୋଟି କପି ଦେବତାଙ୍କ ପୁତ୍ର ॥ ଯୁଦ୍ଧ କରିବ ନୋହିଲେ ସୀତା ଦେବ । ଦ୍ରବ୍ୟ ଶତ୍ରୁକୁ ଯେମନ୍ତ ଯୋଗାଇବ ॥ ଶୁଣି ସମସ୍ତ ମନ୍ତ୍ରୀଙ୍କୁ ଅଣାଇଲେ । ବୋଲେ 'ବଳି ନ ଦେବ ବିଚାର କଲେ । ୨୩ ।

—X—

# ୨୮ଶ ଛାନ୍ଦ ମାୟାଶିର ଓ ଧନୁ ଦର୍ଶନ

ରାଗ—ରାଜବିଜେ ଧନାଶ୍ରୀ

ମନ୍ତ୍ରୀମାନଙ୍କୁ ଦେଇଣ ମେଲାଣି । ଭିତରେ ବିଜେକଲା ବଂଶପାଣି । ବିଦ୍ୟୁଜ୍ଜିହ୍ୱାକୁ ଅଣାଇଲା ପାଶ । କରି ତାହାକୁ ବହୁ ପଉରୁଷ ଯେ । ମ ଭଙ୍ଗିବୁ ଆଜ୍ଞା ମୋର ରେ । ରାମର ଶିର ରାମର ଧନୁଶର କରିତବେ ବେଗେ କରରେ ॥ ଲଙ୍କାପତିର ଆଜ୍ଞା ପରମାଣେ । କରିତବେ ତା ସେ କଲା ତକ୍ଷଣେ । ଦେଖି ସନ୍ତୋଷ ହୋଇଲା ରାବଣ । ପ୍ରଶଂସା ତାକୁ କଲା ପୁଣ ପୁଣ ସେ । ବିଜେ କଲା ମଧୁବନ ଯେ । ବିଦ୍ୟୁଜ୍ଜିହ୍ୱାକୁ ଦୁଆରେ ରଖି ଏକାଗଲା ସୀତା ସନ୍ନିଧାନ ଯେ ॥ ରାଜାବିଜେ ଦେଖି ଅସୁରୀଗଣ । ବନ୍ଦନକଲେ ରାବଣ ଚରଣ । ସୀତା ଅବୟବ ମାନ ଘୋଡାଇ । ବିଜୟ କଲେ ହେଠମୁଖ ହୋଇ ସେ । ତା ଦେଖି କହେ ରାବଣ ଯେ । ଆଗୋ ସୀତେ କାଲି ନିଶା ଭାଗରେ ତୋ ପତିର ବାରତା ଶୁଣ ଗୋ ॥ ରାମ ଲକ୍ଷ୍ମଣ ସୁଗ୍ରୀବଙ୍କୁ ଘେନ ଆବର ସର୍ବ ବାନର ସଇନ । ସିନ୍ଧୁରେ ସେତୁ କରି ପାର ହେଲେ । ସୁବଳଗିରି ଉପରେ ରହିଲେ ସେ । ଶୋଇଥିଲେ ଶ୍ରାନ୍ତ ହୋଇ ସେ । ତାହା ଦେଖି ମୋତେ ଚରର କହିଲା ଏକାନ୍ତ ହୋଇଣ ଯାଇ ସେ । ମନେ ଏହା ମୁହିଁ ବିଚାର କଲି । ଏହି କାଳରେ ମାରିବି ବୋଇଲି । ଏହାଟାରୁ ମହାବୀର ଯୋଦ୍ଧା ଅନେକ । ପେଷିଲି ପ୍ରହସ୍ତ ସଙ୍ଗେ ଯେତେକ ସେ । ବେଢ଼ିଲେ ସୁବଳ ଗିରି ଗୋ । ଶୋଇଥିଲେ ରାମ ପ୍ରହସ୍ତ ଆଣିଲା ତା ଶିର ଛେଦନ କରି ଗୋ ॥ ଲକ୍ଷ୍ମଣ ପଳାଇ ଗଲାକ କେଣେ । ବନ୍ଧନ ହୋଇଛନ୍ତି ବିଭୀଷଣେ । ସୁଗ୍ରୀବ ଗ୍ରୀବ ଭାଙ୍ଗି ପକାଇଲେ । ହନୁମନ୍ତର ଦର୍ପ ଚୂର୍ଣ୍ଣ କଲେ ସେ । ଜାମ୍ବବ ପଶିଲେ ବନେ ଗୋ । ଥୋକେ କପିମାନେ ସିନ୍ଧୁରେ ପଡ଼ିଲେ ଥୋକେ କପି ମଲେ ରଣେ ଗୋ ॥ ଏବେ ଜାନକୀ ହୁଅ ତୁ ପ୍ରସନ୍ନ । ଦେଖିଥାଅ ତୋର ସ୍ୱାମୀ ବଦନ । ବିଦ୍ୟୁଜ୍ଜିହ୍ୱା ଦ୍ୱାରେ ଥିଲା ଯେ ଘେନ । ଅଣାଇଲା ତାହା ଦଶମୁଣ୍ଡ ନ ସେ । ଥୋଇଲା ସୀତା ଅଗ୍ରତେ ଯେ । ପ୍ରତ୍ୟକ୍ଷ କରିଣ ସରୋଜଲୋଚନା ବିକଳ ହୋଇଲେ ଚିତ୍ତେ ଯେ ॥ ଛେଦନ ରମ୍ଭା ପ୍ରାୟେକ ପଡ଼ିଲେ । ଦଣ୍ଡେ ଯାଏ ସେ ଜ୍ଞାନହିଁ ଗୁଡ଼ିଲେ । ପୁଣି ଜ୍ଞାନ ପାଇ ଶିରକୁ ଚୁମ୍ବି । ରୋଦନ କରନ୍ତି ବିକଳ ହୋଇ ସେ । ହା ହା ମୋର ପ୍ରାଣେଶ୍ୱର ହେ । ମୋହ ଛାର ପାଇଁ ଅଯୋଧ୍ୟା ଠାକୁର କପାଁ ହେଲ ଭୁଞ୍ଜି ଏବେ ଶିଘ୍ର । ମନୋରଥ ଭଲେ ହୋଇଲା ସିଦ୍ଧି । ଆଗରୁଁ ପାଞ୍ଚିଣ ଥିଲେ ଏ ବୁଦ୍ଧି ସେ । କଲେ ତ ମୋତେ ଅନାଥ ଯେ । ବୋଲଇ ବସି ବୋଲନ୍ତି ଠାକୁରାଣୀ ଯିବଇଁ ସ୍ୱାମୀର ସାଥି ସେ । ୯ ।

—×—

## ୨୨ଶ ଛାନ୍ଦ – ସୀତାଙ୍କ ଶୋକ

ରାଗ—ଚନ୍ଦ୍ରାଭୈରବ । ଗୋପବିଳାପ ବୃତ୍ତରେ

ଆହା ଧନୁର୍ଦ୍ଧର ବୀରବର । ଧନୁଶର ନ ଥିଲା କି କର । ଯାହାର । ବାଣ ବ୍ରହ୍ମାଣ୍ଡ ଦହିପାରେ, ତାଙ୍କୁ ମାଇଲା ପ୍ରହସ୍ତ ଚୋର ହେ ॥ ଦଇବ । ଆଣୁ ନ ଥିଲେ ମୋତେ ମୋ ପତି । ଜାଣନ୍ତୁ ସେ ପଡ଼ବ ବିପତ୍ତି । ମୂର୍ଚ୍ଛି ନ ପାରି ମୁଁ ସଙ୍ଗତେ ଅଇଲି, ତେଣୁ ହେ ଇଲା ଏମନ୍ତ ରୀତି ହେ । ଦଇବ ॥ ଚିରଞ୍ଜୀବୀ ଅଟନ୍ତି ଶ୍ରୀରାମ । ମୁନି ବଚନ ହେଲା କି ଭ୍ରମ । ମୋତେ ବୋଲନ୍ତି ବିଧବା ଯୋଗ ନାହିଁ; ଏବେ କିମ୍ପା ହେଲା ଏଡ଼େ କର୍ମ ହେ । ଦଇବ ॥ ଯେଉଁ ଯୁବତୀ ପତି ଆଗରେ । ମରେ ପୁଣ୍ୟବନ୍ତୀ ବୋଲି ତାରେ । ଯୁବତୀ ଆଗେ ପତି ଯେବେ ମରଇ, ତାକୁ ଦୂଷଣ ହୁଏ ସଂସାରେ ହେ । ଦଇବ ॥ ଯେବେ ଲକ୍ଷ୍ମଣ ଗଲେ ପଳାଇ । ମୋର ଶାଶୁଙ୍କୁ କହିବେ ଯାଇଁ । ସୀତା ନେଇ ଦୈତ୍ୟ ରାମଙ୍କୁ ମାଇଲେ, ଏହା ଶୁଣିଲେ ଜୀଇଁବେ ନାହିଁ ହେ । ଦଇବ ॥ ପୁଣି ଧନୁ ତୂଣୀକୁ ଅନାଇଁ । ଚିହ୍ନି ବଳପନ୍ତି ଗୁଣ ଗାଇ । ଏହି କାଳରେ ପ୍ରହସ୍ତ ଦ୍ୱାରେ ରହି, ତାର ଚାମୂକୁ କହି ପଠାଇ ସେ । ପ୍ରହସ୍ତ ॥ ଦୂତ ଶ୍ରବଣେ ବେଗେ ଜଣାଇ । ଦେବ ପ୍ରହସ୍ତ ଆସିଛୁ ଧାଇଁ । ଜଣାଇ ପଠିଆଇଛୁ କପିମାନେ, ଗଡ଼ ପାଚେରୀ ପଡ଼ିଲେ ଡେଇଁ ହେ । ହେ ଦେବ ॥ ଶୁଣି ସତ୍ୱରେ ତହିଁ ଅଇଲା । ପ୍ରହସ୍ତକୁ ସବୁ ପଚାରିଲା । ରାବ ଆସିବା ମାତ୍ରେ ଶିର ଧନୁ, ସେହିକ୍ଷଣି ଅଦୃଶ ହୋଇଲା ହେ । ସୁଜନେ ॥ ଦଶଶିର ବୋଲେ ମାର କପି । ଦୈତ୍ୟମାନଙ୍କୁ ପେଷିଲା କୋପି । ବୋଲେ ବସି ଚଉପାଶରେ ଜଗିଲେ, ରାଜା ଆଜ୍ଞା ପାଇ ଥାଟ ବ୍ୟାପି ସେ । ଅସୁରେ ॥

---

## ୨୩ଶ ଛାନ୍ଦ—ସରମାର ପ୍ରବୋଧ

ରାଗ—କାଫି

ସରମା ନାମେ ବିଭୀଷଣ ଘରଣୀ । ପ୍ରାଣୁ ଅଧିକ ଅତି ବିଶ୍ୱାସୀ ଯେ ଜାନକୀଙ୍କ ମିତଣୀ । ସୀତାଙ୍କ ମୋହ ଦେଖି କହନ୍ତି ବାଣୀ । ମିଛ-କଥାକୁ ମୋହ ଯାଉଛ ଗୋ ମୋର ପ୍ରାଣମିତଣୀ ॥ ପ୍ରହସ୍ତ କି କି ରୂପେ ବାଉବା ଦେଲା । ତାହା ଶୁଣି ରାବଣ ବିସ୍ମୃ ସେ ହୋଇ ଉଠିଣି ଗଲା ॥ ମୁହିଁ ଗଡ଼ ସେ କଥା ଜାଣିବା ପାଇଁ । ଦେଖିଲେ ଯୁଦ୍ଧକୁ ସେ ଗଲା ଗୋ ଅତି ସତ୍ୱର ହୋଇ ॥ ତୁମ୍ଭ ପତି ଅଛନ୍ତି ନିଶ୍ଚିନ୍ତ ହୋଇ । ତୁମ୍ଭେ ବୋଇଲେ ପ୍ରାଣମିତଣୀ ଗୋ ଦେଖି ଆସିବି ଯାଇ ॥ ସିନ୍ଧୁ ବନ୍ଧାଇ ସୈନ୍ୟ ହୋଇଲେ

ପାରି । ଲଙ୍କା ବେଢିଣ ଋକ୍ଷ ମର୍କଟ ଗୋ ଚଉପାଶରେ ପୂରି ॥ ରାବଣ ବଳେ ତାଙ୍କୁ ହୋଏ କି ମାରି । ବିଅର୍ଥେ ଚିନ୍ତା ତୁମ୍ଭେ ନ କର ଗୋ ସଖି ଋଷିକୁମାରୀ ॥ ମାୟାରେ ଶର ଧନୁ ଥିଲା ସେ ଆଣି । ଜାଣି ନ ପାରିଲ ତା ସଙ୍ଗାତ ଗୋ ସତ ପ୍ରାୟେକ ମଣି ॥ ଶୁଣି ଜାନକୀ ବହୁ ଆନନ୍ଦ ହେଲେ । ଦଗଧବନେ ଯେହ୍ନେ ସଜଳ ଘନ ଗୋ ବହୁ ବୃଷ୍ଟି ବା କଲେ ॥ ବୋଲନ୍ତି ସଖି ଆଗୋ ଜୀବନ ଦେଲ । କି ଦେବି ତୁମ୍ଭେ ପ୍ରାଣନାଥର ଗୋ ସର୍ବ ଶୁଭ କହିଲ ॥ ଏବେ ତୁମ୍ଭେ ରାବଣ ପୁରକୁ ଯାଅ । କି କି କରିବ ତାହା ଜାଣିଣ ଗୋ ମୋର ପାଶରେ କହ ॥ ତାହା ଶୁଣିଣ ଗଲା ସରମା ସଖୀ । ରାବଣ ସର୍ବପୁରେ ପଶିଣ ସେ ସର୍ବ ବିଚାର ଦେଖି ॥ ମାତା ମାତୁଳ ବୃଦ୍ଧ ବୃଦ୍ଧ ଅସୁର । ରାବଣକୁ ମଧ୍ୟରେ ବସାଇ ସେ କରେ ଗୁପ୍ତ ଉତ୍ତର ॥ ଅରବିନ୍ଦହିଁ ବ୍ରହ୍ମରୂପେ କହିଲା । ବୋଲଇ ବଶି ତାହା ଜାଣିଣ ସେ ସୀତ୍କାର କଲା । ୧୪ । —❋—

## ୨୪ଶ ଛାନ୍ଦ

ରାଗ—ପଞ୍ଚମ ବରାଡ଼ି

ସରମା ଜାନକୀ ପାଶ, କହଇ କରି ବିଶ୍ୱାସ, ଶୁଣ ଆଗୋ ଜୀବନ ମିତଣୀ । ଏଠାରୁ ଯାଇ ରାବଣ, ଘଲେ ଘେନ ମନ୍ତ୍ରିଗଣ, ବିଚାରମାନ ଅଇଲ ଶୁଣି । ଗୋ, ପ୍ରାଣସଖି, ଶୁଣ ରାବଣ ଗୋପ୍ୟ ବିଚାର । ଜନନୀ ତା ନଉକେଷା, କହିଲା ଯେତେକ ଭାଷା, ଭୂନ ହୋଇ ଥିଲା ଦଶଶିର ॥ ହୋଇଲା ରାମଙ୍କୁ ନର, ପ୍ରାୟ ମଣୁରେ ଅସୁର, ନାରାୟଣ ରାମ ଅବତାର ତାଙ୍କ ଆଜ୍ଞାରେ ବାନର, ବନ୍ଧନ କଲେ ସାଗର, ନିଶ୍ଚେ ନାଶିବେ ସର୍ବ ଅସୁର ॥ ସୋଦର ବୋଲ ନ କଲ, ବାହାର କରିଣ ଦେଲ, ସେ ଏବେଟି ହୋଇଲେ ତାଙ୍କର ହେ । ଦଶରଥର କୁମର, ସୀତା ଘେନ ଯାଉ ଘର, କମା ଆମ୍ଭଙ୍କୁ କରିବ ପର ॥ ଆବନ୍ଧ ନାମେ ରାକ୍ଷସ, ବୃଦ୍ଧ ରାବଣ ବିଶ୍ୱାସ, ସେ ବୋଇଲା କର ମାତା ବୋଲ । ରାମ ସଙ୍ଗେ ପ୍ରୀତି ହୋଇ, ସୀତା ଦେବା ବାହୁଡାଇ, ତେବେ ଆମ୍ଭର ହୋଇବ ଭଲ ॥ ଶୁଣି ନାସିକା ଫୁଲାଇ, ବିଂଶନୟନ ବୁଲାଇ, ଜନନୀକି ଏମନ୍ତ କହିଲା । ଲଙ୍କା ଅବା ଜୟ କରୁ, ରାମ ପଛେ ମୋତେ ମାରୁ, ସୀତା ନିଶ୍ଚେ ନ ଦେବି ବୋଇଲା ସେ ॥ ରଙ୍କ ଯେବେ ରତ୍ନ ପାଇ, ଦେବ ବୋଲି ବୋଲେ ନାହିଁ, ସେହିରୂପେ ତୁମ୍ଭଙ୍କୁ ସେ ପାଇ । କରିବ ବହୁତ ରଣ, ମରିବେ ଅସୁରଗଣ, ସଖି ସେ ତୁମ୍ଭଙ୍କୁ ଦେବ ନାହିଁ ॥ ସମ୍ବୋଧେ ରାବଣ ଗଲା, ଯୋଦ୍ଧାମାନଙ୍କୁ ରାଇଲା, ଦ୍ୱାରେ ଦ୍ୱାରକୁ [illegible] ଦେଲା । ପଶ୍ଚିମକୁ ଇନ୍ଦ୍ରଜିତ, ପୂର୍ବଦ୍ୱାରକୁ ପ୍ରହସ୍ତ,

ମହୋଦର ଦକ୍ଷିଣକୁ ଗଲା ॥ ମଧ୍ୟେ ରଖି ବିରୂପାକ୍ଷ, ସୈନ୍ୟ ତାର ଲକ୍ଷ ଲକ୍ଷ, ଉତ୍ତରଦ୍ୱାରେ ଆପେ ରହିଲା । ଉତ୍ତରଦ୍ୱାର ଜଗାଣ୍ଟି, ବିଜେକଲା ଲଙ୍କପତି, ବୋଲେ ବଳି ଗଡ ବନ୍ଧ ହେଲା ଯେ । ୭ ।

—×—

## ୨୫ ଶ ଛାନ୍ଦ—ରାବଣ ସୈନ୍ୟ ସଜ

ରାଗ—ଆଷାଢ଼ ଶୁକ୍ଳ

ସୁଗ୍ରୀବ ଲଙ୍କେଶ ଜାମ୍ବବ ହନୁ । ଅଙ୍ଗଦ ନଳନୀଳ ଚନ୍ଦ୍ରସୂନୁ । ଗବୟ ଗବାକ୍ଷ ଦୁର୍ବିଳ ବୀର । ସୁଷେଣ ପନଶ ସରଭ ବୀର । ସେମାନଙ୍କୁ ଘେନି । ବିଚାରନ୍ତି ରାମ ଲକ୍ଷ୍ମଣ ବେନି ॥ କେ ବୋଲେ ଲଙ୍କାଗଡ଼ର ଭିତର । ଅଛନ୍ତି ତହିଁ ଅନେକ ଅସୁର । କେ ବୋଲେ କେଉଁ ବାଟେ ଆମ୍ଭେ ଯିବା । କେ ବୋଲେ ପାଚେରି ଡେଇଁ ପଶିବା । କୁହା କୁହି ଶୁଣି । ବିଭୀଷଣ କହେ ମଧୁର ବାଣୀ ॥ କରଯୋଡ଼ି ଜଣାଏ ବିଭୀଷଣ । ହେ ଦେବ ମୋହର ବାରତା ଶୁଣ । ମୋହର ଦେବ ମନ୍ତ୍ରୀ ଚାରିଜଣ । ଲଙ୍କାରୁ ଅଇଲେ ସେ ଏହିକ୍ଷଣି । ତାଙ୍କ ନାମ ଶୁଣ । ବିବିଧପ୍ରକାରେ ଜାଣନ୍ତି ରଣ ॥ ଅନଳପ୍ରମୁଖ ଶର ସମ୍ପାତି । ପକ୍ଷୀ ହୋଇଣ ଲଙ୍କାରେ ଥାଆନ୍ତି । ସେମାନେ ଅଛନ୍ତି ବାରତା ଆଣି । ଶୁଣିବା ହେଉ ଦେବ ଚୂଡ଼ାମଣି । ରାବଣ ବଳ । ସବୁ ଅସୁରେ ହୋଇଛନ୍ତି ଠୁଳ ॥ ସହସ୍ରେ ଗଜର ସହସ୍ରେ ନାମ । ଯୁଦ୍ଧକୁ ଶଙ୍ଖ ଗିରେ ସମାନ । ଗଜ ଗୋଟିକେ ଦଶଲକ୍ଷ ଗଜ । ମେବର୍ଷ ହେଲାଣି କ ଦେବ ହେଜ । ବେନିସହସ୍ର ବାଜୀ । ଉଚ୍ଚୈଃଶ୍ରବା ଅଶ୍ୱ ପ୍ରାୟେକ ବୁଝି । ବାଜୀ ଗୋଟିକେ ଦଶଲକ୍ଷ ବାଜୀ । ବେନି ମେବର୍ଷ ହୋଇଲା ତା ହେଜ । ରଥ ତାର ଦେବ ଦଶ ସହସ୍ର । ମଣ୍ଡିଣଛନ୍ତି ଦ୍ରବ୍ୟ ରତ୍ନ ବସ୍ତ୍ର । ସେ ରଥ ଗୋଟିକେ । ଦଶଲକ୍ଷ ରଥ ଗୋଟି ଗୋଟିକେ ॥ ବୃନ୍ଦେ ରଥ ଦେବ ହୋଇଲା ଜାଣ । କହଇ ପଦାତିଙ୍କ ପରିମାଣ । କୋଟିଏ ପଦାତି ପଦାତି ମୁଖ୍ୟ ! କୋଟିକ ବାହାରେ ଛନ୍ତି ଅସଂଖ୍ୟ । ପଦାତି ଗୋଟିକେ । ଦଶଲକ୍ଷ ଖଟିବାରେ ଏ ଶଙ୍ଖେ ॥ ଏମନ୍ତ ବଳ ଦେଖି ଦଶାନନ । ପାଞ୍ଚଭାଗ କରି ବାଣ୍ଟିଲା ସୈନ୍ୟ ॥ ପଶ୍ଚିମଦ୍ୱାରେ ଗଲା ଇନ୍ଦ୍ରଜିତ । ପୂର୍ବଦ୍ୱାରେ ଜଗାଇଲା ପ୍ରହସ୍ତ । ବୀର ମହୋଦର । ମହାପାର୍ଶ୍ୱ ଘେନି ସଙ୍ଗତର ॥ ଦକ୍ଷିଣଦ୍ୱାର ଆବୋରି ରହିଲା । ରାବଣ ଉତ୍ତର ଦ୍ୱାରକୁ ଗଲା । ବିଜୟ କଲା ଜଗାଣ୍ଟି ଉପରେ । ଚତୁର ବଳ ଘେନି ସଙ୍ଗରେ । ସେ ଗଡ ଜଗିଲେ, ଗୋଟିଏ କେହି ବାହାର ନୋହିଲେ ॥ ବିରୂପାକ୍ଷକୁ ମଧ୍ୟରେ ରଖିଲେ । ଆୟୁଧମାନ ବାଣ୍ଟିକରି ଦେଲେ । ବିବିଧ ବାଦ୍ୟନାଦେ ପୂରେ ଲଙ୍କା । ଅସୁରେ ହୋଇଛନ୍ତି ରଣରଙ୍କା । କହିଲେ ମୋ ଚୂର । ଏଥକୁ ଦେବ କର ସୁବିଚାର ॥ ବୋଲିବ ଅବା ଏ ରାବଣ ଭାଇ ॥

ଉଗାଇ ମୋତେ କହୁଅଛୁ ଫାଇ । ତୁମ୍ଭ କ୍ରୋଧ ଜାତ ହୋଇବାପାଇଁ । ଏଣୁ କର ମୁଁ ତୁମ୍ଭରେ ଜଣାଇଁ । ସେ ଅସୁର କେତେ । ଜିଣି ପାର ଲଙ୍କାପ୍ରାପ୍ତେକ ଗତେ ॥ ଚାର ମନ୍ତ୍ରୀଙ୍କି ଦର୍ଶନ କରାଇ । ତାଙ୍କ ମୁଖୁ ସବୁ ଦେଲ ଶୁଣାଇ । ଶୁଣି ଶ୍ରୀରାମ ମଉନ ହୋଇଲେ । ଦରହାସେ ଧନୁଶର ଗୃହ୍ନିଲେ । ଘାନ ବସି ଭଣି । ଗଡ଼ବନ୍ଧ କହେ ଯୋଡ଼ଣ ପାଣି । ୧୨ ।

—X—

## ୨୪ଶ ଛାନ୍ଦ ରାମଚନ୍ଦ୍ରଙ୍କ ସୈନ୍ୟ ସଜ

### ରାଗ—ବସନ୍ତ ଭୈରବ

ପୁଣ ଜଣାଇଲେ କରଯୋଡ଼ି ବିଭୀଷଣ । ହେ ଦେବ ଲଙ୍କା ଗଡ଼ର ଘାର୍ଘପ୍ରସ୍ତ ଶୁଣ । ସିନ୍ଧୁ ମଧ୍ୟେ ଦ୍ୱୀପ ଦେବ ତିରିଶ ଯୋଜନ । ସେଥିମଧ୍ୟେ ତ୍ରିକୂଟ ଅଚଳ ବିରାଜନ । ତ୍ରିକୂଟ ପର୍ବତ ତ୍ରୟଶୃଙ୍ଗ ମହାଘାର୍ଘ । ମଧ୍ୟ ଶୃଙ୍ଗେ ବାନ୍ଧି କରଅଛି ଲଙ୍କ ଦୁର୍ଗ । ସେ ଗଡ଼ର ଘାର୍ଘ ଦେବ ତିରିଶ ଯୋଜନ । ଦଶଯୋଜନ ଓସାର ଦିବ୍ୟ ରମ୍ୟସ୍ଥାନ । ଚାରିପାଖେ ବେଢ଼ିଅଛି କନକ ପାଚେରି । ତଥିପରେ ଖାଇ ଜଳ ଜଳ ଅଛି ପୂରି । ଚାରିପାଶେ ଚଉଦ୍ୱାରେ ପାଷାଣ ଶଙ୍କୁଅ । ତଥି ଚାରିପାଶେ ବନ ଦିଶେ ଅତି ଭୟ ॥ ଦେବ ଦାନବରେ ଦେବ ଅଟଇ ଅଜେୟ । ନାନାରୂପେ ଯନ୍ତ୍ରମାନ ନାନାରୂପେ ବ୍ୟୂହ । ସ୍ଫଟିକଶିଳାମାନେ ଯେ ପାଚେରି ବେଢ଼ି ଶୋଭା । ଯେଉଁ ଦୁର୍ଗକୁ ଦେଖିଲେ ସୁରଦେବ ଲୋଭ ॥ ଏଥକୁ ହେ ଦେବ ଦିବ୍ୟରଥରେ ବରୁର । ଚାରିଦ୍ୱାରେ ବେଢ଼ିଥାନ୍ତୁ ଆମ୍ଭ ବନଗିର । ଶୁଣିଣ ସେ ଆଜ୍ଞା ଦେଲେ କପିଥାଟ । ଚାରିଦ୍ୱାରେ ଜଗନ୍ତୁ ନ ପାନ୍ତୁ ସେହି ବାଟ । ପୂର୍ବଦ୍ୱାରେ ଯାନ୍ତୁ ଆମ୍ଭ ସେନାପତି ନୀଳ । ଦକ୍ଷିଣ ଦ୍ୱାର ଜଗିବେ ବାଳିର ଦୁଲାଳ । ହନୁମନ୍ତ ପଶ୍ଚିମ ଦ୍ୱାରକୁ ତୁମ୍ଭେ ଯିବ । ଲଙ୍କପତି କପିରାଜ ମଧ୍ୟ ଜଗିଥିବ ॥ ଆମ୍ଭେ ଯିବୁ ଲକ୍ଷ୍ମଣଙ୍କୁ ସଙ୍ଗତରେ ଘେନ । ଉତ୍ତରଦ୍ୱାର ଜଗିଣ ଥିବୁ ଭାଇ ବେନ । ଆଉ ସେନାପତିମାନେ ବାଣ୍ଟହୋଇ ଯିବ । ଚାରି ଦ୍ୱାରେ ମଧ୍ୟ କପିଦଳ ଜଗିଥିବ ॥ ଏମନ୍ତ ପ୍ରକାରେ ତୁମ୍ଭେ ଲଙ୍କାଗଡ଼ ବେଢ଼ । ରାବଣକୁ ମାରି ନଷ୍ଟେ ଜିଣିବାଟି ଗଡ଼ । ରାମ ଆଜ୍ଞା ପାଇଣ ସକଳ କପିବୀରେ । ଭୂମି ଛୁଇଁ ବେନି କର ଲଗାଇଲେ ଶିରେ । ଲଙ୍କା ଦେଖିବାକୁ ବହୁଆନନ୍ଦ ହୋଇଲେ । ରାମ ଘେନି ସୁବଳଗିରିକି ଉଠିଲେ । ଦେଖିଲେ ଦିଶଇ ଦିବ୍ୟ ହେମମୟ ପୁର । ଜଗଙ୍ଗା ଅଟ୍ଟାଳୀ ମେଢ଼ ମଣ୍ଡପ ଆପାର ॥ ଚନ୍ଦ୍ର ସୂର୍ଯ୍ୟ ଯାମିନୀ ନକ୍ଷତ୍ର ଅଗ୍ନି ଘେନ । ଭାଷା କରଅଛନ୍ତି କି ମହୀର ମୂର୍ଦ୍ଧନ । ଶିରାଳ ସ୍ୱରରେ ନାଦଶଇ ଦିବାକର । ଶୋଭା ଦିଶୁଅଛି କି ବା ସ୍ୱର୍ଗର ସୋଦର । ପଚ୍ଚାରନ୍ତି କପିରାଜ କାହା କାହା ପୁର । ବୋଲେ ବସି ପୂର ଶୋଭାଉଛି ଲଙ୍କେଶ୍ୱର । ୬ ।

—X—

## ୨୭ଶ ଛାନ୍ଦ—ସୁଗ୍ରୀବ ଓ ରାବଣର ପ୍ରଥମ ଯୁଦ୍ଧ

ରାଗ—ଭାଟିଆରୀ, ଖେମଟା

କପିକୁଳ ସାଇଁ । ଗିରି ମୂର୍ଦ୍ଧନରେ ଥାଇ । ମନରେ ବହୁତ କୋପ ଜାତ କଲେ ଲଙ୍କାକୁ ଅନାଇଁ ॥ ସବୁହିଁ କାଞ୍ଚନ । ଦୀର୍ଘ ତିରିଶ ଯୋଜନ । ଦଶ ଯୋଜନ ପ୍ରତି ଚାରି ଅଟଇ ଯେତୁକୁ ସମାନ ॥ ଝେପାଏ ମାଇଲେ । ସିଂହଦ୍ୱାରେ ଉଭା ହେଲେ । ମଣ୍ଡନ ହୋଇଣ ମୁହୂର୍ତ୍ତେ ରାବଣ ମୁଖକୁ ଗୁହିଁଲେ ॥ ପୁଣି ଝେପା ମାରି । କ୍ରୋଧ ସମ୍ଭାଳି ନ ପାରି । ରାବଣ ଆସନ ଉପରେ ବସିଲେ ପେଲ ଦେଇ କରି ॥ ଆରେ ରେ ଅସୁର । ଏତେ ଗର୍ବ ତୋର ଗୁର । ଶ୍ରୀରାମ ଘରଣୀ ଚୋରାଇ ଆଣି ତୁ ରଖିଅଛୁ ପୁର ॥ ମୋଡନ୍ତି ତୋ ଗ୍ରୀବ । ଆଜ ଜାଣନ୍ତୁ ସୁଗ୍ରୀବ । କେବଳ ଶ୍ରୀରାମଠାକୁର ପ୍ରତିଜ୍ଞା ବ୍ୟର୍ଥ ହୋଇବ ॥ ଏତେବୋଲି ବୀର । ଧରି ଉଚ୍ଛୁଡ଼ିଲା ଶିର ॥ ଦଶଶିରରୁ ଦଶମୁକୁଟ ଛଡ଼ାଇ ବଞ୍ଚିଲା ଭୂମିର ॥ ରାବଣହିଁ ଧରି । ମାଲବନ୍ଧେ ଯୁଦ୍ଧ କରି । ଗଡ଼ନ୍ତି ପଡ଼ନ୍ତି କେହି କାହାକୁହିଁ ସଂଗ୍ରାମେ ନ ହାରି ॥ ସେ ବେନି ଶରୀର । ଶ୍ରମେ ସ୍ୱେଦ ଜରଜର । ନଖକ୍ଷତ ମୁନଘାତେ ରୁଧିର ହୋଇଲା ବାହାର ॥ ଦେଖନ୍ତି ଅସୁର ବେନିଜନଙ୍କ ସମର । ଧରିବେ ବୋଲିଣ ଯେ ଯାହା ମତରେ କଲେକ ବିଚାର ॥ ଗୁଡ ତାଙ୍କୁ ଦେଲେ । ପୁଣି ଝେପାଏ ମାଇଲେ । ସୁବଳ ଗିରିରେ ଶ୍ରୀରାମ ପାଶରେ ପ୍ରବେଶ ହୋଇଲେ ॥ ଗୁହିଁ ତାଙ୍କୁ ରାମ । ମିତ୍ର କଲତ ଅକର୍ମ । ଏକା ହୋଇ ଶତ୍ରୁ ପୁରକୁ ଯିବାର ନୁହଇଁ ନା ଧର୍ମ । କର୍ତ୍ତା ନିତ୍ୟା ଠାକୁର । ସର୍ବ ହରିଙ୍କ ଈଶ୍ୱର । ସୈନ୍ୟ ଥାଉଁ ଥାଉଁ ଆପଣାର ଯୁଦ୍ଧ ନୁହଇ ବିଚାର । ଶ୍ରୀରାମ ଭାରତୀ । ଶୁଣି କପିକୁଳପତି ॥ ବୋଲେ ବଶି ଲଜ୍ଜା ପାଇଣ ବଦନକଲେକ ଧରଣୀ । ୧୪ ।

—x—

## ୨୮ଶ ଛାନ୍ଦ—ଅଂଗଦପଣ୍ଡି

ରାଗ—କାଳୀ

ସୁବଳଗିରି ଶିଖରେ ଥୁଲୀ ବୁଲି ଦେଖିଲେ ରାମ । ତା ଦୀର୍ଘ ପ୍ରତି ବଂଶଯୋଜନ ଅଟଇ ମନୋରମ ॥ ଦଣ୍ଡକ ମାତ୍ର ଲଙ୍କାକୁ ଗୁହିଁ ସୁଲକ୍ଷଣ ବୁଦ୍ଧି କଲେ । ଗିରି ଶିଖରୁ ଓହ୍ଲାଇ ଲଙ୍କା ଯିବାକୁ ବରୁଲେ ॥ ଆହେ ଲକ୍ଷ୍ମଣ କରିବା ରଣ ଲଙ୍କା ଭିତରେ ପଶି । ଆଜ ମର୍କଟ ଅସୁରବଳ ହୋଇବେ ମିଶ ମିଶି ॥ ଧର୍ମେ ଅଧର୍ମେ ଜୟ ଅଜୟ ପ୍ରାନ୍ତରେ ହୋଇ ଜାଣି । ଯୂଥପତିଙ୍କ ମୁଖକୁ ଗୁହିଁ ଶୁଣି କହନ୍ତି ବାଣୀ ॥ ଆହେ ଲକ୍ଷ୍ମଣ ଆହେ

ସୁଗ୍ରୀବ ଆହେ ଲଙ୍କେଶ ହନୁ । ଆହେ ସୁଷେଣ ଆହେ ଜାମ୍ବବ ଆହେ ବାଳୀର ସୂନୁ ॥ ଆହେ ଗବୟ ଆହେ ଗବାକ୍ଷ ଆହେ ହେ ନଳ ନୀଳ । ଆହେ ପନସ ଆହେ ଦୁର୍ଦ୍ଧର ଆହେ ହେ ଶତବଳ ॥ ରାବଣ ସଙ୍ଗେ ରଣ କରିବା ଧର୍ମକୁ ଜାଣି ଥିବା । ଜାନକୀ ଦେଇ ଶରଣ ପଶୁ ଦୂତେକ ବର ଯିବା ॥ ଶ୍ରୀରାମ ବାଣୀ ସମସ୍ତ ଶୁଣି ବୋଲନ୍ତି ଦେବ ହେଉ । ଶ୍ରୀମୁଖ ଆଜ୍ଞା ଘେନିଣ ଏବେ ଅଙ୍ଗଦ ବୀର ଯାଉ ॥ ଶୁଣି ହରଷେ ରାବଣ ପାଶେ ଅଙ୍ଗଦ ଆଜ୍ଞାଦେଲେ । ତୂଣୀରୁ ଖର ନଧନ ଶର ଅଙ୍ଗଦ କରେ ଦେଲେ ॥ ମୋର ଏ ଶର ବାଳକୁମର ଦେଖାଅ ରାବଣକୁ । ବୋଲିବ ସୀତା ନ ଦେଲେ ଏହି ଶରେ ଫୋଡ଼ିବ ବୁକୁ ॥ ବିରଞ୍ଚି ଦେବ ଶିବ ବାସବ ସକଳ ଦିଗପାଳ । ରଖିଣ ନ ପାରିବେ ମାରିବ ନଷ୍ଟେ ଅସୁର କୁଳ ॥ ଦଶଦିଗକୁ ଦଶମୂର୍ଦ୍ଧନୀ କରିବ ତାର ବଳ । ଭୂମିରେ ପଡ଼ିଥିବ ତା ପିଣ୍ଡ ହୋଇ ରୁଧିର ଧୂଳ ॥ ଏବେ ସୀତାଙ୍କୁ ଦେଇଣ ମୋତେ ଶରଣ ଆସି ପଶୁ । ନୋହିଲେ ସୈନ୍ୟ ଘେନିଣ ଏବେ ସମର କରି ଆସୁ ॥ ଜାଣିବା ସେହି କାଳରେ ତାର ଆମ୍ଭର ବୀରପଣ । ଆକାଶେ ଥାଇ ଦେଖୁଣ ଥିବେ ସର୍ବ ଅମରଗଣ ॥ ଅଙ୍ଗଦ ବୀର ପ୍ରଣାମ କରି ଆକାଶେ ଝେପି ଗଲେ । ଜଗତି ସ୍ଥାନ ତାର ଆସ୍ଥାନ ସମ୍ମୁଖରେ ବସିଲେ ॥ ବୋଲଇ ଆରେ ଅସୁରାଧମ ରାମଙ୍କ ଆଜ୍ଞା ଶୁଣ । ସୀତା ସମର୍ପି ଶରଣ ପଶ ନୋହିଲେ କର ରଣ ॥ ଆରେ ରାବଣ ରାମ ଲକ୍ଷ୍ମଣ ଧର୍ମକୁ ନ ଛାଡ଼ିଲେ । ଏବେ ହେ ଆରେ ଯୁବତୀରତ୍ନେ ଯୁବତୀ ମଗାଇଲେ ॥ କୁଳ ବିନାଶ ଯେବେ ତୋହର ଜୀବନେ ଅଛି ଆଶା । ଗଳେ କୁଠାର ବାନ୍ଧିଣ ସୀତା ସମର୍ପ ରାମପାଶ ॥ ଦୟାଜଳଧି ସକଳ ଦୋଷ କରିବେ ତୋର କ୍ଷମା । ଅବିଳମ୍ବରେ ଶରଣ ପଶ ଦେଇ ଜନକଜେମା ॥ ନୋହିଲେ ନାଶ ଯିବୁ ଅବଶ୍ୟ ରଖିବେ ନାହିଁ କେହି । ବୋଲଇ ବଶି ଶ୍ରୀରାମ କାଣ୍ଡ ଚଣ୍ଡୀକି ବଳ ଭୁହି ॥

—×—

## ୨୪ଶ ଛାନ୍ଦ

### ରାଗ—ଆହାରୀ

ଅଙ୍ଗଦ ବାଣୀ, ଦୁଷ୍ଟ ରାବଣ ଶୁଣି । ଶିର କମ୍ପାଇ ସକ୍ରୋଧେ କହଇ ବାଣୀ ॥ ଆରେ ମର୍କଟ, କପି ! ହୋଇଲୁ ନଷ୍ଟ । ପିତାଶତ୍ରୁ ସେବି ଜୀଇଁଛୁ ରେ ପାପିଷ୍ଠ ॥ ମରଇ ପଡି ଯେହ୍ନେ ବୀର ଯୁବତୀ । ଜାରପୁରୁଷ ଅବୋର ବୋଲଏ ସତୀ । ତେହ୍ନେ ତୋ ମତି, ନୋହୁ ପୁରୁଷ ଜାତି ନର ପ୍ରକୃତି

ବାନର କହୁ ମୋ କତ ॥ ବାଳିକୁମର, ଦନ୍ତେ ଚାପି ଅଧର । ବୋଲନ୍ତି ମୋ ପ୍ରଭୁ ନିନ୍ଦାକରୁ ପାମର ॥ ତ୍ରୈଲୋକ୍ୟେଶ୍ୱର ରାମ ନୃପତିବର । ବାଳି ପରି ତୁମ୍ଭ ହୋଇବୁ ରେ ପାମର ॥ ନାହିଁ ତୋ ମନ, ବାଳି ରେ ଯେସନ । ସେ ତାଙ୍କ କଞ୍ଚିତ ଶରେ ହେଲେ ନିଧନ ॥ ଦିଅନ୍ତି ଦଣ୍ଡ, ତୋର ମୋଡନ୍ତି ମୁଣ୍ଡ । ମାରି-ବାକୁ ରାମ ଛୁଇଁଛନ୍ତି ମୁଣ୍ଡ । ମାରିବାକୁ ଛୁଇଁଛନ୍ତି କୋଦଣ୍ଡ । ଆରେ ଅସୁର, ଆରେ ଏ ଲଙ୍କାପୁର । ଏଥି ହୋଇଲାଣି ବିଭୀଷଣ ଠାକୁର ॥ ତୁ ବୋଲୁ ମୋର, ଆୟୁଷ ନାହିଁ ତୋର । ଦଗଧପଟ ପ୍ରାୟେ ଧରିଛୁ ଶରୀର ॥ କ୍ରୋଧେ ଅସୁର, କମ୍ପାଇ ଦଶଶିର । ଅସୁରଙ୍କୁ ଆଜ୍ଞା ଦେଲା ଏହାକୁ ଧର ॥ ଶୁଣି ଅସୁର ଧରିଲେ ଚାରିବୀର । ବାହୁ ଛାଞ୍ଚାଡନ୍ତେ ସେ ପଡ଼ିଲେ ଭୂମିର ॥ ଅସୁରଗଣ, ହେନ ଚାହିଁ ଆପଣ । ଜଗତି ଚାଳ ଭାଙ୍ଗି କଲେ ରଣଭଣ ॥ ରାମ ଛାମୁର ଯାଇଁ ଯୋଡ଼ିଲେ କର । ବୋଲେ ବିଶି ନୋହିଲା ସନ୍ଧିର ବିଚାର ॥



## ୩୦ଶ ଛାନ୍ଦ

କୁସୁମକଳା ବୃତ୍ତେ

ଶ୍ରୀରାମ ଛାମୁରେ ବାଳିସୁତ ଯୋଡ଼ି କର । ଜଣାଇଲେ ରାବଣର ସର୍ବ ସମାଚାର ॥ ଦୁଷ୍ଟଜନ ପ୍ରୀତିରେ ନୁହନ୍ତି ଦେବ ସାଧ୍ୟ । ସନ୍ଥ ଜନମାନେ ସର୍ବ-କାଳରେ ଆରାଧ୍ୟ ॥ ରାବଣ ପାପିଷ୍ଠ ଦୁଷ୍ଟ ଦଣ୍ଡକୁ ସେ ଯୋଗ୍ୟ । ବିଭୀଷଣ କରିବ ନିଶ୍ଚୟ ଲଙ୍କା ଭୋଗ । ଯଥାର୍ଥ ବଚନ ଶୁଣି କୋପ ମୋତେ କଲା । ଅସୁରଙ୍କ ହାତରେ ଧରାଇ ନେଉ ଥିଲା ॥ ସମସ୍ତ ପ୍ରକାରେ ଯୁଦ୍ଧ କଲା ସନମତ । ତୁମ୍ଭ ପ୍ରାୟେ ମଣଇ ସେ ସକଳ ଜଗତ ॥ ଶୁଣି ତା ଶ୍ରୀରାମଚନ୍ଦ୍ର ଯୁଦ୍ଧ ଆରମ୍ଭିଲେ । ଲଙ୍କାଗଡ଼ ଉତ୍ତର ଦ୍ୱାର ପାରୁଶେ ହେଲେ ॥ ଯୂଥପତିମାନେ ଚାରି ଭାଗ ହୋଇ ଗଲେ । ବୋଲେ ବିଶି ରାମ ଯାହା ଆଜ୍ଞା ଦେଇଥିଲେ ॥



## ୩୧ଶ ଛାନ୍ଦ—ଗୋଲଯୁଦ୍ଧ

ଉଦ୍ଧବ ଗୀତା ଦ୍ୱିତୀୟ ଛାନ୍ଦ ବୃତ୍ତରେ ଗାଇବ

ଉଦେ ହୁଅନ୍ତେ ଅରୁଣ ଘେନିଣ ବାନରଗଣ, ଶ୍ରୀରାମଚନ୍ଦ୍ର ଲକ୍ଷ୍ମଣ ଲଙ୍କା ବେଢ଼ିଣ । ଠାରି ବୋଇଲେ ଆପଣ ଚାରିଦ୍ୱାରେ କର ରଣ ପ୍ରକାର ମେଲ୍ଲଇଁଣ ହାଣ ଅସୁରଗଣ ॥ ଶ୍ରୀରାମ ଆଜ୍ଞା ପାଇଣ ସର୍ବ ଯୂଥପତିଗଣ ଚାରିଦ୍ୱାର ନିରୋଧିଣ, ସୈନ୍ୟ ଘେନିଣ । କ୍ଷେପିଲେ ବାନର ଗଣ, ପକ୍ଷୀ

ପ୍ରାପ୍ତକ ହୋଇଣ, ବସିଲେ ସେ ପ୍ରକାରରେ ଉଭୟ ଗ୍ରୁଡ଼ିଣ ॥ ଜଗିଥିଲେ ଦୈତ୍ୟ ଗଣ, ଦ୍ୱାରେ ଅର୍ଗଳ ଦେଇଣ, ଦେଖିଲେ କାଙ୍କଳାରେଣ, କପି ସାହାଣ । ଆରେ ରେ କାର କରଣ, ଆୟୁଧମାନ ଧରଣ, ସର୍ବେ ବାହାର ହୋଇଣ ଅସୁରଗଣ । ଫିଟାଇଣ ଗୃହଦ୍ୱାର, ବାହାଇ ହେଲେ ଅସୁର, ବଜାଇ ବିବିଧ ତୂର, ସକଳ ବୀର । ଧର ଧର ମାର ମାର, ଯେହ୍ନେ ଗର୍ଜଇ ସାଗର, ତହ୍ନେ ଶବଦ ଅସୁର, କଲେ ପ୍ରଚୁର ॥ କୋଟି କୋଟି ରଥଗଜ, ହୋଇଛନ୍ତି ଦିବ ସଜ, ଜିଣିବେ କି ଦେବରାଜ ସ୍ୱର୍ଗରେ ଆଜ । ବାଜି ଯୂଥ କବା ବାଜ, ଉଚ୍ଚୈଃଶ୍ରବାର ସାନୁଜ, ରାଜନ୍ତି ଦେଖାନ୍ତି ତେଜ ବିନ୍ଧ୍ୟ ନାଗଜ ॥ ବାନର ଅସୁର କୁଳ, ମିଶିଲେ ଉଭୟ ବଳ, ସିନ୍ଧୁ କି ଲଙ୍ଘିଲା କୁଳ, ପ୍ରଳୟ କାଳ । ଯୋଡ଼ ଯୋଡ଼ ହୋଇ ମେଳ, କଲେକ ସଂଗ୍ରାମ ଗୋଳ, ହେଲ କପି ଚତୁ ଶିଳ, ଅନ୍ତ ବିପୁଳ ? ଶଙ୍କାଜିତ ବାଳସୁତ; କଲେ ରଣ ଅପ୍ରମିତ, ରଥୀ ସାରଥୀ ସହିତ କଲେକ ହତ । ବିରଥୀ ହୋଇ ରାବଣୀ, ଗଦାଏ ମାଇଲେ ଆଣି, ଅଙ୍ଗଦ ମାରିବା ଜାଣି; ଧଇଲେ ପାଣି ॥ ସମାନ୍ତ ସେ ସ୍ଥୂଳଜଙ୍ଘ ବେବଜନଙ୍କର ଅଙ୍ଗ, ରୁଧିରେ ଦିଶେ ସୁରଙ୍ଗ, ସୁରଣରଙ୍ଗ । ହନୁ ଜମ୍ବୁମାଳି ଭେଟ, ରଣ କଲେକ ପ୍ରକଟ, ଜାଣି ତ ବାନରଶ୍ରେଷ୍ଠ ମାଇଲେ ଦୁଷ୍ଟ ॥ ପ୍ରହସ୍ତ ସଙ୍ଗେ ସୁଗ୍ରୀବ, ରଣ କଲେ ଅସମ୍ଭବ, ମୁଖେ ତାହା କେ କହିବ; ଜାଣନ୍ତି ଦେବ । କୁମୁଦ ସେ ସପ୍ତଘନ, ରଣ କଲେକ ବେନିଜନ, ଉପାଡ଼ି ଦୈତ୍ୟ ନୟନ, କଲେ ନିଧନ ॥ ବିରୂପାକ୍ଷକୁ ଲକ୍ଷ୍ମଣ ଓଗାଳି କଲେକ ରଣ, ଏକା କାଣ୍ଡକେ ମାରଣ, ନେଲେ ତା ପ୍ରାଣ । ମିତ୍ରଘନ ପ୍ରେତଘନ, ହେଲେ ରାମ ସନ୍ନିଧାନ, ଶତ୍ରୁ କେଭୁଦ୍ଧି କେତନ, ହେନଣ ସୈନ୍ୟ । ରାମ ସଙ୍ଗେ କଲେ ରଣ, ମହାବୀର ଗୃରଜଣ, ମାର ରାମ ଗୃର ବାଣ, ନେଲେ ପରାଣ । ମହାନ୍ଦ୍ର ବଜ୍ରମୁଷ୍ଟିକ, ସଂଗ୍ରାମ କଲେ ଅନେକ, ଗଲା ସେ ବଜ୍ରମୁଷ୍ଟିକ, ଶମନଲୋକ ॥ ନୀଳ ନିକୁମ୍ଭର ରଣ, ନେଲେ ସାରଥିର ପ୍ରାଣ, ପଳାଇଲେ ଗ୍ରୁଡ଼ି ରଣ, ହେନ ପରାଣ । ଅଶ୍ୱିନୀ ଦୁର୍ବିନ୍ଦ ଯୁଦ୍ଧ, ଦୁହେଁ ଅଟନ୍ତି ଅସାଧ୍ୟ, ଦୁର୍ବିନ୍ଦ କଲେ ସେ ବଧ, ଉଦ୍‌ଗାର ମଦ୍ୟ ॥ ବିଦ୍ୟୁନ୍ମାଳ ସଙ୍ଗେ ରଣ, କଲେକ ବୀର ସୁଷେଣ, ଶାଳଶିଳ ପ୍ରହାରିଲ, ନେଲେ ତା ପ୍ରାଣ । ଅସ୍ତ ହେଲେ ଦିନକର, ସଂଗ୍ରାମ ହୋଇଲା ଘୋର, ପ୍ରବଳ ହେଲେ ଅସୁର ସେ ନିଶାଚର । ଲକ୍ଷ କପି ବହୁ ମଲେ, ଅସୁର ମିଶି ମାଇଲେ, ଜାଣି ତା ସେ ନ ପାରିଲେ; ମୃତ୍ୟୁ ଲଭିଲେ । ସମସ୍ତ ଅସୁର ମିଳି, ବିଗ୍ରହଣ କଲେ ମେଳ, ମୁକ୍ତି ମାର ଯାଉ ସବ, କମାଇଁ କଲ ॥ ମହାପାର୍ଶ୍ୱ ଅସୁର, ସଙ୍ଗେ ବେନ ମହୋଦର, ଯମ ଶତ୍ରୁ ସଙ୍ଗେ ଶୂର, ସାରଣି ବୀର । ଅତିକାୟକୁ

ଘେନଣ, ରାମଙ୍କୁ ଆସି ବେଢିଣ, ବହୁତ ବଳ ଘେନଣ, ଏ ଷଡ଼ ଜଣ ॥ ଯେହ୍ନେ ମକର କୁହୁଡ଼, ସୂର୍ଯ୍ୟ କରଣ ଉହାଡ଼, ତେସନ ରାମଙ୍କୁ ବେଢ଼ି, ପଡ଼ଲେ ମାଡ଼ ॥ ଖଡ଼ଗ କୁନ୍ତ ମୂଦ୍‌ଗର, ଶକତ୍ତି ପରିଘ ଶର, ତ୍ରିଶୂଳ ଚକ୍ର ଆବର, କଲେ ପ୍ରହାର ॥ ରାମବନ୍ଧ ଶରକୋଟି, ସକଳ ଆୟୁଧ କାଟି, ହୃଦୟ ଗଲାକଫୁଟି, ଅବମା ଲେଟି ॥ ରଥୀ ମହାରଥୀ ମଲ୍ଲ, ଅଶ୍ୱ ଗଜ ପଲପଲ, ମଲେ ଦୈତ୍ୟ ଭଲଭଲ, ପୃଥିବୀ ଗଲ ॥ ରାମଙ୍କ କାଣ୍ଡ ପ୍ରଚଣ୍ଡ, ଦୈତ୍ୟ ହେଲେ ଖଣ୍ଡ ଖଣ୍ଡ, ନୃତ୍ୟନ୍ତି କବନ୍ଧ ଷଣ୍ଡ, ହରାଇମୁଣ୍ଡ ॥ ରୁଧିର ଧାରା ପ୍ରଖର, ବହିଲା ନଦୀପ୍ରାକାର, ଦେଖି ଭାଙ୍ଗିଲେ ଅସୁର, ସେ ଷଡ଼ବୀର ॥ ତାଙ୍କ ପଳାଇବା ଜାଣି, ଅଇଲା ବୀର ରାବଣୀ, ହୋଇ ଧନୁଶର ପାଣି; କାଲ କ ଜାଣି ॥ ଶ୍ରାବଣର ମେଘ ପର, ପ୍ରାୟ ବୃଷ୍ଟି କଲା ଶର, ଚେହ୍ନେ ଅସୁର ପ୍ରବର, ଅସୁର ବୀର । ରାଘବ ସବୁ କାଟିଲେ, ପ୍ରତିଅସ୍ତ୍ର ନ କଲେ, ମର୍ମକୁ ତାର ବନ୍ଧଲେ, ସେ ବୀର ହେଲେ ॥ ମନେ ବଚାରେ ରାବଣୀ; ଏ ଯୁଦ୍ଧେ ନୋହିବ ଜିଣି, ଏହାଂ କାଣ୍ଡ ବଜ୍ର ଜାଣି, ହୃଦୟ ମଣି ॥ ଏତେ ବୋଲି ମାୟା କଲା, ସଂଗ୍ରାମେ ଅଦୃଶ ହେଲା; ଗଗନେ ଯାଇ ରହିଲା ॥ ଯେତେ ସେ ମାଇଲା ଶର, ହୋଇଲା ସର୍ପ ଆକାର, ରାମ ଲକ୍ଷ୍ମଣ ଶରୀର, କଲେ ପ୍ରହାର ॥ ଗାନ୍ଧକରନ୍ତେ ବନ୍ଧନ ନଶ୍ଚଳାବୟବମାନ, ପଲାଶ ତରୁ ଯେସନ; ସେ ବେନି ଜନ ॥ ପୁଣି ବଦ୍ରେ ଘନ ଘନ, ଦେଖ ଅବୟବମାନ, ରାମ ଲକ୍ଷ୍ମଣ ବଦନ, ଝିଙ୍କ ଯେସନ ॥ ବେନି ଅଙ୍ଗରୁ ରୁଧିର, ବହୁଅଛି ଝର ଝର, ଯେସନେ କୁମ୍ଭରୁ ନୀର, ହୁଏ ବାହାର ॥ ଆଜ୍ଞା ଦେଲେ ରଘୁବୀର, କାହିଁଅଛି ତାକୁ ଧର; ଆଜ୍ଞା ପାଇ କପିବୀର, ହେଲେ ବାହାର ॥ ଆକାଶରେ ନ ଦେଖିଲେ, ଶରେ ପୀଡ଼ିତ ହୋଇଲେ, ଲେଉଟି ତହୁଁ ଅଇଲେ, ରାମୁରେ ହେଲେ ॥ ଲକ୍ଷ୍ମଣ ସେ ରଘୁମଣି, ମୋହେ ପଡ଼ଲେ ଧରଣୀ, ଶକ୍ର ଧ୍ୱଜପାତ ଜାଣି; ବେନି ପରାଣୀ ॥ ବେଢ଼ି ସର୍ବ ସେନାପତି, ଅନାଇ ଜାନକୀପତି, ବହୁ ଖେଦନ କରନ୍ତି, ସେ କପିପତି ॥ ଶରବୃଷ୍ଟି କରୁଥିଲେ, ବଭୀଷଣଙ୍କୁ ଦେଖିଲେ, ଶଙ୍କରିପୁ ଭୟ କଲେ, ପଳାଇଗଲେ ॥ ବଳପଟନ୍ତେ କପିପତି, ପ୍ରବୋଧନ୍ତି ଲଙ୍କପତି; ବୋଲନ୍ତି ଅଛେ ଅମାତ, ଯୁଦ୍ଧର ରୀତି ॥ ତୁମ୍ଭର ଦେଖିଣ ଶୋକ, ପଳାଇବେ କପିଯାକ, ତୁମ୍ଭେ ତ ଅତି ବବେକ, କପିନାୟକ ॥ ମୁଁ ଏବେ ଥାଟ ବୁଲିବ, କପିଙ୍କୁ ଭରସା ଦେବ; ଜଗିଥାଅ ମୁଁ ଆସିବ, ସବୁ କହିବ ॥ ଏତେ କହି ସେହୁ ଗଲେ, କପିରାଜନ ଜଗିଲେ, ଇନ୍ଦ୍ରଜିତ ଜୟ କଲେ, ବଶି ଭଣିଲେ । ୨୭ ।

---

## ୩୨ ଶ ଛାନ୍ଦ   ସୀତାଙ୍କୁ ମୋହରାମ ଦେଖାଇବା

ରାଗ—ପଞ୍ଚମବରାଡ଼ି । ବିପ୍ରସିଂହା ବାଣୀ

ରାମ ଲକ୍ଷ୍ମଣ ସଂହାରି, ଜୟ ଶଙ୍ଖଧ୍ୱନି କରି, ବାହୁଡ଼ିଲା ରାବଣକୁମର । ଚତୁରଙ୍ଗ ବଳ ସଙ୍ଗେ, ବାହୁଡ଼ା ବିଜୟ ରଙ୍ଗେ, ଯୋଦ୍ଧାମାନଙ୍କୁ ପଥେ କହେ ଉତ୍ତର ସେ । ବୀରମାନେ । ତୁମ୍ଭମାନଙ୍କୁ ସେ ଜୟ କଲା । ମୋର ହାତେ ଏବେ ପ୍ରାଣ ହରାଇଲା ହେ ॥ ଖଟ ଦୋଳରେ ସୁପାତି, ଶୋଆଇ ନ ପହୁଡ଼ନ୍ତି, ଶ୍ରୀରାମ ଉପରେ ଲଙ୍କପତି । ତାର ମୃତ୍ୟୁ ଶୁଣି ଅତି, ଆନନ୍ଦ ହୋଇବ ମତି, ସୀତା ଘେନି ଏବେ ବଞ୍ଚିବେ ସେ ରାତି ସେ । ଶତ୍ରୁଜିତ । ଏତେ କହି ଯାଇ ଓହ୍ଲାଇଲା । ପିତା ପାଦ ଛୁଇଁଣ ଦର୍ଶନ କଲା ସେ ॥ ଶ୍ରୀରାମ ମରଣ ଶୁଣି, ବଡ଼ ହୃଷ୍ଟ ବିଂଶପାଣି, ବିଂଶ ଭୁଜେ ଆଲିଙ୍ଗନ କଲା । ପୁତ୍ର ମୋର ଜୟ କଲା, ଆଜ୍ ମୋର ଭୟ ଗଲା, ଲଙ୍କା ନଗ୍ରରେ ଉତ୍ସବ କରାଇଲା ସେ । ଲଙ୍କପତି । ଆନନ୍ଦରେ ବିଚରିଲା । କଷ୍ଟେ ଏବେ ମୋର ଜାନକୀ ହୋଇଲା ଯେ ॥ ତ୍ରିଜଟାକୁ ଡକାଇ, ରାବଣେଶ୍ୱର କହଇ, ପତି ମୃତ୍ୟୁ ଦେଖ ଏବେ ସିନା । ପୁଷ୍ପ ବିମାନେ ବସାଇ, ଆଣିବ ରାମ ଦେଖାଇ, ପତି ଅନ୍ତେ ପାତିବ୍ରତ୍ୟ ରଖିବ କି ନା ସେ । ସୁକୁମାରି । ଏବେ ହେଉ ମୋର ମନୋହାରୀ । ଭୋଗ କରୁ ଏବେ ନୃପପୁର ଶିରୀ ସେ ॥ ଲଙ୍କପତି ଆଜ୍ଞା ପାଇ, ପୁଷ୍ପକ ବିମାନେ ବସାଇ, ସୀତାଙ୍କୁ ରଣଭୂମିକି ନେଲେ । ଧରଣୀରେ ପଡ଼ିଛନ୍ତି, କପିମାନେ ବେଢ଼ିଛନ୍ତି, ରାମ ଲକ୍ଷ୍ମଣଙ୍କୁ ଦେଖାଇଣ ଦେଲେ ସେ । ଭୂମିସୁତା । ତାହା ଦେଖି ହୋଇଲେ ମୂର୍ଚ୍ଛିତା । ପୁଣି ଜ୍ଞାନ ପାଇ ବିଳପନ୍ତି ସୀତା ସେ ॥ ଆହା ମୋର ପ୍ରାଣପତି; ମୋ ତ୍ତ୍ୱର ପାଇଁ ଏ ଗତି, ନ ମିଳନ୍ତା କି ଅନ୍ୟ ଯୁବତୀ । ହେଉଥିଲ କ୍ଷିତିପତି, ଦଇବ ଦେଲା ବିପତ୍ତି, ଏବେ ନୃପନ ବୁଜି ଶୋଇଲ କ୍ଷିତି ହେ । ପ୍ରାଣପତି । ମରିବି ମୁଁ ତୁମ୍ଭର ସଙ୍ଗରେ । କେଁ। ପ୍ରାଣ ଅଛୁ ମୋହର ଅଙ୍ଗରେ ହେ ॥ ସମୁଦ୍ର ବନ୍ଧନ କଲ, ସୈନ୍ୟ ସହିତେ ଆଇଲ, ଦେବଙ୍କୁ ଦୁର୍ଲ୍ଲଭ ଏହି କଥା । ଏବେ ଗୋଷ୍ପଦ ଜଳରେ ବୁଡ଼ିଲ କମା ସ୍ଥଳରେ, ବିପ୍ରମାନଙ୍କ ବଚନ ହେଲା ବୃଥା ହେ । ହେ ପ୍ରାଣନାଥ । ମୋତେ ଯେ ବୋଲନ୍ତି ସୁଲକ୍ଷଣୀ । ବିଧବା ନୋହିବ ଜନକନନ୍ଦିନୀ ହେ ॥ ଜାନକୀ ବିଳାପ ଶୁଣି, ତ୍ରିଜଟା ବୋଲଇ ବାଣୀ, ତୁମ୍ଭ ପତି ହୋଇଛନ୍ତି ମୋହ ଏ। ଦେବଯାନ ଅଟଇ, ବିଧବାଙ୍କୁ ନ ବହଇ, ତୁମ୍ଭେ ଏ କଥାକୁ ଚିହ୍ନ ଦୁଃଖୀ ନୁହ ଗୋ । ଶଶିମୁଖୀ । ଏତେ କହି ବାହୁଡ଼ାଇ ନେଲେ । ଅଶୋକ ବନରେ ଛାଡ଼ିବାକୁ ଚିହ୍ନାଇଲେ ସେ ॥ କେତେହେଁ କି ବେଳେ ତହିଁ

ରାମଚନ୍ଦ୍ର ଜ୍ଞାନ ପାଇ, ସୁଗ୍ରୀବଙ୍କୁ ଗୃହଁ ଆଜ୍ଞା ଦେଲେ । ଋକ୍ଷ କପି ନ ମରୁଅ ଭେ ମିତ୍ର ବାହୁଡ଼ ଯାଅ, ଦେଖ ଲକ୍ଷ୍ମଣ ଆମ୍ଭର ପ୍ରାଣ ଦେଲେ ହେ । କପିପତି । ଏହାଙ୍କ ବିନୁ ମୁଁ କି ଜୀଇବି, ସୁମିତ୍ରା ମାତାଙ୍କୁ କି ବୋଲ ବୋଲିବି ହେ ॥ ଅଇଲେ ସଙ୍ଗେ ଗୋଡ଼ାଇ, ନାନା ଦୁଃଖ ମାନ ସହି, ବନେ ମୋତେ ସେବା କରିଥିଲେ । ଏବେ ଭାଇ ମୋର ପାଇଁ, ସାଗରେ ସେତୁ ବନ୍ଧାଇ, ଦୁଷ୍ଟ ଅସୁରଙ୍କ ହାତେ ପ୍ରାଣ ଦେଲେ ହେ । କପିପତି । ନ ଜୀଅଇ ମୁଁ ଏହା ବିହୁନେ ଅଯୋଧ୍ୟାକୁ ମୁହିଁ ଯିବଇଁ କେସନେ ହେ ॥ ବିଳପନ୍ତେ ରଘୁବୀର, ଜ୍ଞାନ ସୁମିତ୍ରା କୁମର, ପାଇବାରୁ ଧଇର୍ଯ୍ୟ ହୋଇଲେ । ପ୍ରବୋଧିଣ କପିଗଣ, ବାହୁଡ଼ନ୍ତେ ବିଭୀଷଣ, ଶଙ୍କାଜିତ ବୋଲେ ଭୟେ ପଳାଇଲେ ହେ । ସୈନ୍ୟମାନେ । ନୁହଇ ବୋଲିଣ ବାହୁଡ଼ିଲେ । ସବୁରି ମନରୁ ଦୁଃଖ ଏଡ଼ିଲେ ହେ ॥ ଶ୍ରୀରାମ ଲକ୍ଷ୍ମଣ ଚହିଁ, ବିଭୀଷଣ ଦୁଃଖ ପାଇ, ବହୁତ ବିଳାପମାନ କଲେ । ଯାହାର ଦର୍ଶନ ପାଇଁ, ଲଙ୍କା ତେଜି ଅଇଲଇଁ, ବେନି କୁଳେ ଏବେ ନୋହିଲେ ବୋଇଲେ ସେ ବିଭୀଷଣ । ପ୍ରବୋଧନ୍ତି ଅଙ୍ଗଦ ସୁଷେଣ । ଅଧଇର୍ଯ୍ୟ ନୁହ ତୁମ୍ଭେ ଲଙ୍କା ରାଜନ ହେ ॥ ସୁଗ୍ରୀ ବୋଲନ୍ତି ସୁଷେଣ, ଶ୍ରୀରାମଚନ୍ଦ୍ର ଲକ୍ଷ୍ମଣ, କିଷ୍କିନ୍ଧ୍ୟାରେ କରି ହେ ଯତନ । ଆମ୍ଭେ ରାବଣ ମାରିବା, ଶ୍ରୀରାମଙ୍କୁ ସୀତା ଦେବା, ତେବେ ଯିବା ବାହୁଡ଼ିବେ ମୋର ସୈନ୍ୟ ସେ । ସୁଗ୍ରୀବର । କହନ୍ତେ ନାରଦ ପରବେଶ । ବୋଲେ ଋଷି ସ୍ତବ କଲେ ଶ୍ରୀରାମର ପାଶ । ୧୩ ।

—X—

## ୩୩ଶ ଛାନ୍ଦ—ନାରଦ ସ୍ତୁତି

ରାଗ—ପାହାଡ଼ିଆ କେଦାର । କଳହଂସ ବାଣୀ

ରାମ ଲକ୍ଷ୍ମଣ ସନ୍ନିଧେ ମୁନି, ସଙ୍ଗତେ ଘେନି ପରିବାଦିନୀ, ବୋଲେ କି ଭାଗ୍ୟ କଲେ ଆମ୍ଭର ନୟନ ବେନି ଯେ ॥ ଅସୁର ପନ୍ନାଗପାଶେ ଘେନି, ବନ୍ଧନ କରନ୍ତି ଭାଇ ବେନି, ଆନ ହୋଇଲେ ଯା'ନ୍ତା ଏ'ଶରୀ ଜୀବନ ଘେନି ଯେ ॥ ଏତେ କହି ନାରଦ ସ୍ତବ ପଢ଼ିଲେ, କୃତ ଅଞ୍ଜଳି ହୋଇଣ କର ଯୋଡ଼ିଲେ । ଭକତଭାବେ ପୁଲକ ହେଲେ, ବୀଣା ବଜାଇ ସେ ନୃତ୍ୟ କଲେ, ବେନି ନୟନୁ ଆନନ୍ଦ ଅଶ୍ରୁ ପଡ଼ିତ ହେଲେ ଯେ ॥ ଜୟ ତୁ ମତ୍ସ୍ୟ, କୂର୍ମ, ଶୂକର, ନୃସିଂହ, ଖର୍ବ; ପରଶୁଧର, ଶ୍ରୀରାମ, ହଳଧର, ବୁଦ୍ଧ, କଳ୍କୀ ଆକାର ଯେ ॥ ମନ୍ତ୍ର ପାଳିଣ ଦୁଷ୍ଟକୁ ମାରି ଉଲ୍ଲାସ କରି ମହୀର ଭାର, ଏହି କାରଣେ ଏ ଅବତାର ରାମ ଶରୀର ଯେ ॥ ତୁମ୍ଭେ ଟି ଦେବ ଅଖିଳ ତାତ, ତୁମ୍ଭର ଠାରୁଁ ସକଳ ଜାତ, ଚନ୍ଦ୍ରିବା ହେଉ ବନତା ସୁତ, ଆସୁ ତ୍ୱରିତ ଯେ । ଏମନ୍ତ କହିଣ

ଧାତାସୁତ, ବ୍ରହ୍ମଲୋକକୁ ଗଲେ ଭରତ; ପନ୍ନଗାଶନ ମନେ ଚିନ୍ତିଲେ କୌଶଲ୍ୟା ସୁତ ଯେ ॥ କ୍ଷୀର ସାଗର ଭିତରେ ଥିଲେ, ରମ୍ୟକଦ୍ୱୀପୁଁ ବାହାର ହେଲେ, ଆସନ୍ତେ ପକ୍ଷ ପବନେ ଗିରିବର ଉଡ଼ିଲେ ଯେ ॥ ଦେଖିଣ ସର୍ପେ ପଳାଇ ଗଲେ ଲବଣ ଜଳଧିରେ ପଶିଲେ, ବିନତାସୁତ ରାମ ଶ୍ରୀମୁଖରେ ଦର୍ଶନ କଲେ ଯେ ॥ ନାଗବନ୍ଧନୁ କରି ମୁକତ' ବିନତାସୁତ ଅମୃତହସ୍ତ, ଲାଗନ୍ତେ ତେଜ ହେଲା ବହୁତ ଗଲା ବ୍ରଣ ତ ଯେ ॥ ଶ୍ରୀରାମ ଆଜ୍ଞା ଦେଲେ ତାହାତ, ତୁମ୍ଭେ କ ମୋହର ଆମ୍ଭର ଜାତ. ଉପକାରତ କଲ ବହୁତ; ତୁମ୍ଭେ ମୋ ହିତ ଯେ ॥ ବିନତାସୁତ କହେ ଉତ୍ତର, ହେ ଦେବ ସବୁଦିନେ ମୁଁ ତୋର, ପୁଣ ଦର୍ଶନ କରଇଁ ଯିବା ଅଯୋଧ୍ୟାପୁର ଯେ ॥ ଏତେ କହିଣ ଗରୁଡ଼ ଗଲେ, ବାନରବଳ ଆନନ୍ଦ ହେଲେ; ପୁଣି ଯୁଦ୍ଧକୁ ଆରମ୍ଭ କଲେ, ବିଶି ଭଣିଲେ ଯେ । ୬ ।

— X —

## ୩୪ଶ ଛାନ୍ଦ—ଗୋଳଯୁଦ୍ଧ

( ଯଦୁବୋଲି ବୃତ୍ତେ ଗାଇବ )

ତରୁ ଉପାଡ଼ି ଗ୍ରୁଡ଼ନ୍ତି ରଡ଼ି । ଲଙ୍କାକୁ ବାନରେ ପଡ଼ନ୍ତି ଉଡ଼ି ॥
ବାଜିଲା ଗୋଳ, ଉଭୟ ଦଳ । ସିନ୍ଧୁ ମନ୍ଥନ ପ୍ରାୟେକ ଚହଲ ॥
କପିଙ୍କ ବାଣୀ ରାବଣ ଶୁଣି । ବୋଲଇ କେମନ୍ତ ଜୀଇଲେ ପୁଣି ॥
ବିସ୍ମୟ ହେଲା, ଶବ୍ଦ ନ ମିଳା । ପୁତ୍ର ଧୂମ୍ରାକ୍ଷକୁ ରାଇ ବୋଇଲା ॥
ଅସୁରଗଣ, ଥିବେ ବହନ । ମାରି ଆସ ବାବୁ ରାମ ଲକ୍ଷ୍ମଣ ॥
ଏମନ୍ତ ଶୁଣି, କୁମରମଣି । ପଶ୍ଚିମଦ୍ୱାରେ ବାହାର ରାବଣୀ ॥
ଅସୁର ଶ୍ରେଣୀ, ତେସନ ଜାଣି । ବନ୍ଧ ଭାଙ୍ଗିଲେ ଯେସ୍ନେ ଯାଇ ପାଣି ॥
କଲେକ ରଣ, ବାନରଗଣ । ବଡ଼ ବଡ଼ ବୃକ୍ଷମାନ ଘେନିଣ ॥
କଲେ ସମର, ସର୍ବ ଅସୁର । ଘେନି ଖଡଗ କୁନ୍ତ ଧନୁଶର ॥
କେହି ଶକତି ଶୂଳ ମାରନ୍ତି । କୁଠାର ଗଦା ଘେନି ଘେନି ପ୍ରହାରନ୍ତି ॥
ଦେଖିଣ ହନୁ, ରାବଣି ସୁନୁ । ଯେସନେ ରାହୁ ଗ୍ରାସ କରେ ଭାନୁ ॥
ଧୂମ୍ରାକ୍ଷପ୍ରାଣ; କପି ବିଶେଷ । ମାରି ପ୍ରବେଶ ହେଲା ରାମପାଶ ॥
ପଥର ଘେନି, ଥିଲା ପାବନି । କରୁଡ଼ିଲା ଧୂମ୍ରାକ୍ଷର ମୂର୍ଦ୍ଧନି ॥
ଅସୁର ମଳେ ପଳାଇ ଗଲେ । ଧୂମ୍ର ରାକ୍ଷସ ମଲାରେ କହିଲେ ॥
ଶୁଣି ରାବଣ, କଲା କାରୁଣ୍ୟ । ବଜ୍ରମୁଷ୍ଟିକି ରାଇଲା ଆପଣ ॥
ତୁ ଏବେ ଯିବୁ, କପି ମାରିବୁ । ହେଲା ମୃତ୍ୟୁକି କେବେହେଁ ନ କରିବୁ ॥

ସେହି ଅବଲ୍, ସୈନ୍ୟ ଘେନଲ । ଦକ୍ଷିଣଦ୍ୱାରେ ବାହାର ହୋଇଲ ॥
ରଥେ ବସିଲ, ଧନୁ ଧଇଲ । ଅଙ୍ଗଦ ଆଗେ ପ୍ରବେଶ ହୋଇଲ ॥
ଶର ବର୍ଷିଲ, କପି ମାଇଲ । ଅଙ୍ଗଦେ ଅଙ୍ଗେ ଶର ବୃଷ୍ଟି କଲ ॥
ତାହା ସମ୍ଭାଳି, ଅସୁର ବଳୀ । ବୃକ୍ଷେକ ପିଟିଲ୍ ଦେଖି ତାର ହୃଦ ॥
କ୍ରୋଧେ ଅଙ୍ଗଦ କରଇ ନାଦ । ଶର ପ୍ରହାରନ୍ତେ ରୁଧିର ଗଳି ॥
ଘେନ ପଥର, ବାଳିକୁମର । କଚୁଡ଼ିଲେ ରଥ ସାରଥି ପର ॥
ରଥ ଭାଙ୍ଗିଲ, ସାରଥି ମଲ । ଅସୁର ଖଡଗ କରେ ଧଇଲ ॥
ଅଙ୍ଗଦ ଧାଇଁ, ଧଇଲ ଯାଇ । ଖଡଗ ତା କରୁ ନେଲ ଛଡାଇ ॥
ସେ କପିଷଣ୍ଡ ଦେଲକ ଦଣ୍ଡ । ସେହି ଖଡ଼ଗେ କାଟି ଶୂରର ମୁଣ୍ଡ ॥
ସୈନ୍ୟ ଭାଜିଲ, ବାରତା ଦେଲ । ଅଙ୍ଗଦ କରେ ବଜ୍ରମୁଷ୍ଟି ମଲ ॥
ଶୁଣି ରାବଣ, ସକ୍ରୋଧ ମନ । ଅକମ୍ପନକୁ କହଇ ବଚନ ॥
ତୁମ୍ଭେ ମୋହର, କର ସମର । ଉପ୍ରୋଧ ନ କର ବାନର ମାର ॥
ଆଜ୍ଞା ପାଇଲ, ସୈନ୍ୟ ସାଜିଲ । ପଶ୍ଚିମଦ୍ୱାରେ ବାହାର ହୋଇଲ ॥
ବସି ରଥର, ସୈନ୍ୟ ସାଙ୍ଗର । ଉହାପୂ ହୋଇଲ ନିଶାଚର ॥
ଉଭୟ ଥାଟ, ହୋଇଲେ ଭେଟ । ସଂଗ୍ରାମେ ବେନିବଳ ହେଲେ ନଷ୍ଟ ॥
କଲେ ସମର କପି ଅସୁର । ଅକମ୍ପନକୁ ଦେଖି ହନୁବୀର ॥
କୋପେ ପ୍ରଖର, ସେ ହନୁବୀର । ପିଟିଲ ତାହାକୁ ହନୁ ପଥର ॥
ଭାଜିଲ ରଥ, ହେଲ ଅନର୍ଥ । ଅସୁର କାଣ୍ଡ ହୋଇଲ ବ୍ୟର୍ଥ ॥
ଅସୁର ଶିର, ମୋଡ଼ନ୍ତେ ବୀର । ନ ଛିଣ୍ଡନ୍ତେ ପକାଇଲେ ଭୂମିର ॥
ଶିଳେକ ନେଇ, ଦେଲେ ପକାଇ । ଅସୁର ଶିରରେ ପଡ଼ିଲ ଯାଇଁ ॥
ରଡ଼ି ଛାଡ଼ିଲ, ପ୍ରାଣ ଉଡ଼ିଲ । ପଥର ବାଜଣ ଅସୁର ମଲ ॥
ଭାଜିଲେ ଥାଟ, ନ ପାଇ ବାଟ । ଲଙ୍କାରେ ପଶିଲେ ପାଇଣ କଷ୍ଟ ॥
ବାରତା ହେଲ, ଶୂର କହିଲ । ହନୁ ହାତରେ ଅକମ୍ପନ ମଲ ॥
ଶୁଣି ରାବଣ, କରି କାରୁଣ୍ୟ । ପ୍ରହସ୍ତକୁ ଡକାଇ ସେହିକ୍ଷଣ ॥
ତୁ ମୋର ସଖୁ, ଯୁଦ୍ଧରେ ବାବୁ । ପୁତ୍ରଙ୍କର କଷ୍ଟ ପାସୋରାଇବୁ ॥
ଶୁଣି ପ୍ରହସ୍ତ, ସୈନ୍ୟ ବହୁତ । ଘେନ ବାହାରନ୍ତେ ବିଘ୍ନ ବହୁତ ॥
ବସି ପଥର, ପର୍ବ ଦୁଆର । ସଙ୍ଗରେ ସୈନ୍ୟ ଘେନିଣ ଅପାର ॥
ଧନୁ ଧଇଲ, ସୈନ୍ୟ ପଶିଲ । ଅନେକ ଋକ୍ଷ ବାନର ମାଇଲ ॥
ବିଷମ ରଣ, କଲ ଆପଣ । କୋଟି କୋଟି ମଲେ ବାନର ଗଣ ॥
ବାନର ମଲ ନୀଳ ଦେଖିଲ । ତରୁ ଶିଳା ଧରି ଆଗ ହୋଇଲ ॥
କଲେକ ରଣ, ସେ ବେନି ଜନ । ଅସୁର ବର୍ଷିଲ ସାୟକ ଟାଣ ॥

ଦେଖିଣ ନୀଳ; ମାଇଲେ ଶିଳ । ଭାଜିଲା ରଥ ଉଭା ହେଲେ ତଳ ॥
ନୀଳ ଶରୀର; ବହେ ରୁଧିର । କମ୍ପେ ଅଙ୍ଗଦ ହୋଇ ଥରହର ॥
କରିଣ ରଡ଼, ତରୁ ଉପାଡ଼ । ପ୍ରହସ୍ତ ଉପରେ ନେଇ କଚାଡ଼ ॥
ମଲା ଅସୁର, ଭାଜିଲା ଶର । ଶତ ଖଣ୍ଡ ହୋଇ ପଡ଼ ଭୂମିର ॥
ଦୈତ୍ୟ ସଇନୀ, ପଡ଼ ମେଦିନୀ । କେହି କେହି ଗଲେ ଜୀବନ ଘେନ ॥
ରୁଧିର ନଈ ସମରେ ବହି । ଶବରେ ପୃଥିବୀ ଦିଶଇ ନାହିଁ ॥
ନାଚେ କବନ୍ଧ ଶବ ଦୁର୍ଗନ୍ଧ । ଖାଉଛନ୍ତି ଶୃଗାଳ ଶାଗୁଣାବୃନ୍ଦ ॥
ଲଙ୍କା ରାଜନ, ବିକଳ ମନ । ଶୁଣିଣ ସେ ପ୍ରହସ୍ତର ନିଧନ ॥
ଘୋଷଣା ଦେଲା, ସୈନ୍ୟ ସାଜିଲା । ଆଜ ବିଜେ କରିବି ରେ ବୋଇଲା ॥
ବାହାର ରାଜା, ବଜାଇ ବାଜା । ଦୁଅନ୍ତି ଅସୁର ବଡ଼ ତରଜା ॥
ଅନେକ ରଥୀ, ଅନେକ ହାତୀ । ଅନେକ ଅଶ୍ୱ ଅନେକ ପଦାତି ॥
କରଇ ବିଜେ, ଅସୁର ରାଜେ । ତୁରୀ ଭେରୀ ଶଙ୍ଖ କାହାଳ ବାଜେ ॥
ଅଶ୍ୱ ପଛରେ, ଗଜ ଆଗରେ । ସମଦଣ୍ଡେ ବିଜେ ଅସୁରେଶ୍ୱରେ ॥
ପଢ଼ନ୍ତି ଭାଟ; ନଟକ ନାଟ । ଦାଣ୍ଡ ପୂରିଣ ଯାଉଛନ୍ତି ଥାଟ ॥
ବିବିଧ ଛତ୍ର, ଅତି ପବିତ୍ର । ହରଇ ଅଖିଳ ଜନଙ୍କ ନେତ୍ର ॥
କି ସ୍ୱର୍ଗପୁର, ମରିବେ ଜୁର । ଏହା ବିଗ୍ରହ ଡରନ୍ତି ଅମର ॥
କରିବା ରଣ, ଆଜ ଆପଣ । ଧ୍ୟାନ କରି ଭଣେ ରାମଚରଣ । ୬୪ ।

—×—

## ୩୪ଶ ଛାନ୍ଦ ରାବଣର ପ୍ରଥମଯୁଦ୍ଧ

ରାଗ—ବସନ୍ତ ଭୈରବ

ଚତୁରଙ୍ଗ ବଳ ଘେନି ବିଜୟେ ରାବଣ । ଯାନ ଚଢ଼ି ବେଢ଼ିଛନ୍ତି ପୁତ୍ର ପୌତ୍ରଗଣ ॥ ଗଡ଼ର ଉତ୍ତରଦ୍ୱାରେ ବାହାର ହୋଇଲେ । ପ୍ରଳୟକାଳରେ ଯେହ୍ନେ ସିନ୍ଧୁ ଉଛୁଳିଲେ । ରଥଗଜ ଲକ୍ଷ ଲକ୍ଷ ପଦାତି ଅଶେଷ । ଅଶ୍ୱବୃନ୍ଦ ମହିଷି ଆବୋରି ରାଜାପାଶ । ଦେଖିଣ ଶ୍ରୀରାମଚନ୍ଦ୍ର ବିଭୀଷଣେ ପୁଚ୍ଛନ୍ତି । ବୋଲନ୍ତି ଦେଖ ଅସୁରେ ଆସୁଛନ୍ତି ବାହି । ଅନେକ ରଥ ସଙ୍ଗରେ ଆସେ କେଉଁ ଦୈତ୍ୟ ।, ଜଣ ଜଣ କରି ଆଗୁ ଅଗ୍ରେ କହ ସତ୍ୟ । ଶୁଣି ବିଭୀଷଣ ଆଙ୍ଗୁଳି ଦେଖାଇ କହେ । କମ୍ପନ ଅସୁର ରଥ ଚଢ଼ି ଆଗେଧାଏଁ । ଦେଖ ଦେଖ ଦେବ ମଧ୍ୟରେ ଅସୁରେଶ୍ୱର । ବିଜେକରି ଆସଇ କନକ ରଥବର ॥ ଦଶଶିରେ ଦଶମୁକୁଟ ମଣିମୟ । ଗଣ୍ଡେ ଝଲକନ୍ତି ମକରକୁଣ୍ଡଳଚୟ । ଦଶ-ଭୁଜରେ କମାଣ ଦଶଭୁଜେ ବାଣ । ଶ୍ୟାମମେଘପ୍ରାୟେ କାନ୍ତିଦେବ ଏ ରାବଣ । ରାବଣ ଦକ୍ଷିଣପାଶେ ଶକ୍ରଜିତ ବୀର । ବାମ ପାର୍ଶ୍ୱରେ ରଥଚଢ଼ି ମହୋଦର ।

ନରାନ୍ତକ ଦେବାନ୍ତକ ଅଛନ୍ତି ପାଶର । ତାହାଙ୍କ ପାଶରେ ଆସୁ ଅଛଇ ତ୍ରିଶିର ॥ କୁମ୍ଭ ନିକୁମ୍ଭ ଏ ଦେବ କୁମ୍ଭକର୍ଣ୍ଣ ସୁତ । ଅତିକାୟ ମହାକାୟ କରଇ ବେଦାନ୍ତ ॥ ସାବଧାନ ହୋଇ ଦେବ କରିବା ସମର । ଯେତେମାନେ ଆସୁଛନ୍ତି ମହା ମହା ବୀର ॥ ଶୁଣି ଶ୍ରୀରାମ ବୋଲନ୍ତି ଏହି ଲଙ୍କାପତି । ଏହି ଚୋରାଇ ଆଣିଛି ଜନକଦୁହିତ ॥ ଏତେ ବୋଲି ଲକ୍ଷ୍ମଣକୁ ପାଶକୁ ଡାକିଲେ ॥ ପ୍ରତିଜ୍ଞା କରି କୋଦଣ୍ଡେ ଗୁଣ ଚଢ଼ାଇଲେ ॥ ତହିଁ ରାକ୍ଷସ ମର୍କଟ ହୋଇଲେକ ଭେଟ । ମିଶାମିଶି ହୋଇ ଗୋଳ କଲେ ବେନି ଥାଟ । ଯୂଥପତିମାନେ ରଥୀମାନଙ୍କ ସଙ୍ଗରେ । ଯୁଦ୍ଧ କଲେ ବେନି ବେନି ଏକ ଆରକରେ ॥ ଶାଳଶିଳ ଅସ୍ତ୍ରମାନ କରୁଛନ୍ତି ବୃଷ୍ଟି । କେହି କାହାକୁ ନ ଗୁଡ଼େ ହୋଇ ଏକା ଦୃଷ୍ଟି ॥ ଲଙ୍କାପତିଙ୍କ ପାବନ ଶାଳଶିଳ ଘେନ । ପ୍ରହାରନ୍ତେ ରାବଣ କାଟିଲା କାଣ୍ଡେ ବେନି । ବହୁ ରଣ କଲେ ଘେନ ସୁଗ୍ରୀବ ରାବଣ । କୋପେ ସୁଗ୍ରୀ ହୃଦକୁ ମାଇଲା ଏକ ବାଣ । ରାବଣର ଶରେ ସୁଗ୍ରୀ ହୃଦ ଗଲା ଫୁଟି । ଅଜ୍ଞାନ ହୋଇ ପଡ଼ିଲେ ପୃଥିବୀରେ ଲୋଟି ॥ ଏହା ଦେଖିଣ ମାରୁତି ଆଗ ଓଗାଳିଲେ । ବଜ୍ରସମ କରି ତାକୁ ଗୁଡ଼ପୋଡ଼େ ମାଇଲେ । କ୍ଷଣକେ ରାବଣ ତହିଁ ହୋଇଗଲା ମୋହ । ମୋହ ତେଜି ଗୁଡ଼ପୋଡ଼େ ମାଇଲା ହନୁ ଦେହ । ପୁଣି ବୋଧାଏ ମାରିଣ ରାବଣ ଉରକୁ । ଆପଣେ ନନ୍ଦଇ ହନୁ ଆପଣା କରକୁ ॥ ରାବଣ ମୁଥେ ମାଇଲା ପୁଣି ହନୁ ଶିର । ମୂର୍ଚ୍ଛିତ ହୋଇ ପଡ଼ିଲା ତେତେ ମହାବୀର ॥ ଏହା ଦେଖି ନୀଳ ସେନାପତି ଓଗାଳିଲେ । ବଜ୍ରସମ କରି ତାକୁ ଶିଳେକ ମାଇଲେ । କଞ୍ଚିତ କାଣ୍ଡରେ ତାହା କାଟିଲା ଲଙ୍କାପତି । ନୀଳ ରାବଣ ଥାଟରେ ଉଠିଲେ ତଡ଼ିତି । କ୍ଷୁଦ୍ରରୂପ ହୋଇ ତାର ଦେହରେ ଉଠିଲେ । ମୁକୁଟ ଝିଙ୍କିଣ ତାର ସେହ୍ନା ବଦାଇଲେ । ପୁଣି ତାର ରଥଧ୍ୱଜ ଉପରରେ ବସି । ଦେଖି ରାମ ନୀଳକୁ ପ୍ରଶଂସା କଲେ ହସି । ଦେଖିଣ ରାବଣ କ୍ରୋଧେ ଅଗ୍ନିଶର ଘେନ । ମନ୍ତ୍ରୀ ପେଶନ୍ତେ ପଡ଼ିଲା ନୀଳର ମୂର୍ଦ୍ଧନି ॥ ପୁତ୍ର ବୋଲି ଅଗ୍ନି ତାର ଜୀବନ ରଖିଲେ । କ୍ଷଣେ ପରଶନ୍ତେ ସେ ଭୂମିରେ ମୋହ ଗଲେ । ଏହା ଦେଖିଣ ଶ୍ରୀରାମ ହୋଇଲେ ବାହାର । ସାନୁଜ ଜଣାଇଲେ ଯୋଡ଼ିଣ ବେନିକର ॥ ହେ ଦେବ ମୁଁ ରାବଣର ସଙ୍ଗରେ ଯୁଝିବ ॥ କେତେ ପରାକ୍ରମ ତାର ଅଛଇ ବୁଝିବ । ପୁଣି ରଘୁନାଥ ତାହା ସନମତ କଲେ । ଲକ୍ଷ୍ମଣ ରାମକୁ ପନ୍ତକରି ଆଗ ହେଲେ ॥ ଲକ୍ଷ୍ମଣଙ୍କୁ ଦେଖିଣ କଲାକ ଶରବୃଷ୍ଟି । ଲକ୍ଷ୍ମଣ ତାହା କଞ୍ଚିତ କାଣ୍ଡେ ଦେଲେ କାଟି । ବେନିଜନ ପ୍ରତିଶର ଘେନିଣ କାଟନ୍ତି । ଅନେକ କପି ଅସୁର ସଂଗ୍ରାମେ ଲୋଟନ୍ତି ॥ ଲକ୍ଷ୍ମଣ ବନ୍ଧେ ରାବଣ ମର୍ମସ୍ଥାନେ ଶର । ସେହ୍ନା ଫୁଟିଣ ରୁଧିର

ବଢ଼େ ଝର ଝର । ବ୍ରହ୍ମା ଦେଲା ଶର ସେ ଲକ୍ଷ୍ମଣକୁ ବାନ୍ଧିଲା । ପ୍ରତିଶର ନ ମାନି ସେ କପାଳେ ପଡ଼ିଲା । ଜ୍ଞାନ ହରାଇଣ ଧନୁର୍ମୁଷ୍ଟି ଛାଡ଼ିଦେଲେ । ତତକ୍ଷଣେ ଜ୍ଞାନ ପାଇ ଧନୁ ଆମଞ୍ଚିଲେ ॥ ରାବଣ ଉପରକୁ ପେଷିଲେ ପାଞ୍ଚକାଣ୍ଡ । ଧନୁ କାଟି ସେହ୍ନା ତାର କଲେ ଖଣ୍ଡ ଖଣ୍ଡ । ଧନୁ ଛାଡ଼ିଣ ରାବଣ ଧଇଲା ଶକତି । ମାରନ୍ତେ ପଡ଼ିଲା ଆସି ଲକ୍ଷ୍ମଣର ଭ୍ରାନ୍ତ । ପଡ଼ିଲେ ଭୂମିରେ ବୀର ହୋଇଣ ଅଜ୍ଞାନ । ରଥୁଁ ଉତୁରି ତାହାକୁ ତୋଳେ ଦଶାନନ ॥ ବିଂଶଭୁଜେ ଆକର୍ଷିଣ ନ ପାରିଲା ତୋଳି । ବାହୁଡ଼ି ରଥରେ ବସି ଲଙ୍କା ପାଇ ଘେନି । ଶକତି ବାହୁଡ଼ି ତାର ରଥରେ ହୋଇଲା । ଲକ୍ଷ୍ମଣକୁ ମାରୁତି ତୋଳିଣ ଘେନିଗଲା । ଶ୍ରୀରାମ ଧନୁ ଧରିଣ ହେଲେ ଅଗ୍ରସର । ହନୁ ବୋଲେ ହେ ଦେବ ମୋ କନ୍ଧେ ବିଜେ କର ॥ ହନୁମନ୍ତ କନ୍ଧରେ ବିଜୟେ ଦାଶରଥି । ବେନି କନ୍ଧେ ଶୋଭେ କାଣ୍ଡ ଅକ୍ଷୟ ଭରତି । ରାମ ରାବଣ ସମ୍ମୁଖେ କଲେ ମହାରଣ । ଗରୁଡ଼ ପିଠିରେ କି ବିଜୟ ନାରାୟଣ । ଯେତେ ଯେତେ ଶର ସେ ବିନ୍ଧଇ ଲଙ୍କପତି । ପ୍ରତିଅସ୍ତ୍ର କରି ରାମ ସମସ୍ତ ଛେଦନ୍ତି ॥ ହନୁକୁ ଅନେକ କାଣ୍ଡ ମାଇଲା ନିଠାଇ । ତାହା ଦେଖିଣ ଶ୍ରୀରାମ କ୍ରୋଧଭର ହୋଇ । କାଣ୍ଡରେ କାଟିଲେ ରାମ ରଥ ଅଶ୍ୱ ଗୁର । ସାରଥି ମାରି ରାବଣ ହୃଦରେ ପ୍ରହାର ॥ ମୋହ ଯାଇଣ ରାବଣ ହୋଇଲା ବିରଥି । ଦେଖି ମନେ ମନେ ବିଚାରନ୍ତି ଦାଶରଥି ॥ ଆଜ ଆମ୍ଭେ କ୍ଷମାକରି ଛାଡ଼ିବା ଏହାକୁ । ବିରଥି ହୋଇଛି ଯାଉ ଆପଣା ପୁରକୁ ॥ ଏମନ୍ତ ବିଚାରୁଁ ପଳାଇଲା ଲଙ୍କେଶ୍ୱର । ରାଜାଙ୍କୁ ସମ୍ଭାଳି ଘେନି ଗଲେକ ଅସୁର । ରାମ ଲକ୍ଷ୍ମଣ ସୁଗ୍ରୀବ ଆଶ୍ୱାସନା କଲେ । ବୋଲଇ ଋଷି ସମସ୍ତେ ଚେତନା ପାଇଲେ ।୧୮।



## ୩୭ଶ ଛାନ୍ଦ—କୁମ୍ଭକର୍ଣ୍ଣ ନିଦ୍ରାଭଙ୍ଗ

ରାଗ—ଚୋଖି

• ସିଂହମୁଖୀଁ ଗୁଳ ଗଜ, ତ୍ରାସେକ ଅସୁରରାଜ, ପଳାଇଣ ଲଙ୍କାରେ ପ୍ରବେଶ ହୋଇଲା । ସମସ୍ତ ଅସୁର ରାଇ, ମନେ ମହା ଭୟ ପାଇ, ପୂର୍ବକଥା ମାନ ତାଙ୍କ ଆଗେ କହିଲା । ନର ବାନର ମୋ ବଇରି, ତାଙ୍କ ଯକାଶେ ଗଲା ମୋ ଏ ଲଙ୍କାଶିରୀ ॥ ବେଦମଣ୍ଡି କଲା କୋପ, ପୂର୍ବେ ଦେଇଥିଲା ଶାପ, ମୋର ଯୋଗେ ନାଶ ଯିବୁ ଆରେ ଅସୁର । ବ୍ରହ୍ମା କହିଥିଲେ ମୋତେ ଜଣନ୍ତା ନୋହିବେ ତୋତେ, ଯୁବତୀ ସକାଶୁଁ ମୃତ୍ୟୁ ହେବ ତୋହର । ରମ୍ଭା ମୋତେ ଶାପ ଦେଇଲା । ଆମ୍ଭ ସ୍ତ୍ରୀ ଯୋଗୁ ତୁ ମରିବୁ ବୋଇଲା ॥ ରଘୁବଂଶ ଦଣ୍ଡଧର, ଆରଣ୍ୟକ ନୃପବର, ତାହାକୁ

ମାରନ୍ତେ ଶାପ ମୋତେ ଦିଅଲା । ମୋହର ବଂଶରେ ଜାତ, ହୋଇ ତୋତେ କରୁ ହତ, ଏମନ୍ତ ଶାପ ଦେଇ ସେ ସ୍ୱର୍ଗକୁ ଗଲା । ଯେତେ ଯେତେ କଲିମୁ ତପ । ସେ ପୁଣ୍ୟ କେଣିକ ଗଲା ଫଳିଲା ପାପ ॥ ମୋର ଘୋର ତପ ଦେଖି, ଧାତା ହୋଇ ବହୁ ସୁଖୀ, ଯେତେ ବର ମାଗିଲି ମୁଁ ତୋତେ ସେ ଦେଲେ । ଗନ୍ଧର୍ବ କିନ୍ନର ଯକ୍ଷ, ନାଗ ସୁରସୁର ମୁଖ୍ୟ, ଏମାନଙ୍କେ ବଧ ତୁ ନୋହିବୁ ବୋଇଲେ । ନର ବାନର ମୋ ଅଶନ । ଏମାନଙ୍କୁ ତୁଚ୍ଛ କରି ମଣିଲି ମନ ॥ ବିଭୀଷଣ ହିତ ବୋଲ. ସେକାଳେ ହୋଇଲା ଶଲ, ବୃଦ୍ଧ ବୃଦ୍ଧ ଅସୁରଙ୍କ ବୋଲ ନ କଲି । ନର ବାନରଙ୍କ ହାତେ, ମୋ ପୁତ୍ରେ ମଲେ ବିଅର୍ଥେ, ଆପଣେ ଯାଇଣ ପରାଭବ ପାଇଲି । ବଜ୍ର ଜିଣି ତାଙ୍କର ବାଣ । ମାନବ ନୁହନ୍ତି ସେହି ରାମ ଲକ୍ଷ୍ମଣ ॥ ଇନ୍ଦ୍ର ଆଦି ସୁରଗଣ, ଜିଣିଲି କରି ମୁଁ ରଣ, ତିନି ଭୁବନରେ ଏକା ବିଜୟୀ ହୋଇ । ନାଶଗଲା ପୂର୍ବ ତପ, ପଡ଼ିଲା ନନ୍ଦିର ଶାପ ତେଣୁ କପିକରେ ପରାଭବ ପାଇଲି । ନରକପି ଅସୁର ମାରେ । ପୂର୍ବେ ନ ଥିଲା କଥାହିଁ ଦଇବ କରେ ॥ ଏବେ ଭ୍ରାତାକୁ ଉଠାଅ, ନାନା ଭକ୍ଷମାନ ଦିଅ, ନର ବାନରମାନଙ୍କୁ କରୁ ନିପାତ । ତା ବିନୁ ମୋହର ମାନ, ଫେଡିବାକୁ ନାହିଁ ଆନ, ଏକମାତ୍ର ସେହି ମୋର ଅଟଇ ହିତ । ଶୋଇବାର ନବ ଦିବସ । ମୋତେ ହୋଇଲାଣି ଏବେ ଯୁଗ ଅଶେଷ ॥ ଶୁଣି ସର୍ବ ପରିଜନ, କୁମ୍ଭକର୍ଣ୍ଣର ସଦନ, ଦ୍ୱାରେ ଜଗି ହୋଇ ଭିତରକୁ ନ ଗଲେ । ଯେଉଁମାନେ ବଳେ ଗଲେ; ଭିତରେ ଯାଇ ପଶିଲେ, ନିଶ୍ୱାସ ପବନେ ବହୁ ଦୂରେ ପଡ଼ିଲେ । ବଳବନ୍ତ ଅସୁରମାନେ । ରହିଲେ ତାହାର ସଦନ ସନ୍ନିଧାନେ ॥ ସହସ୍ରେକ ଶଙ୍ଖଭେରୀ, ଘଣ୍ଟା ମର୍ଦ୍ଦଳ ମହୁରୀ, ଟମ ନିଶାରେ ନିଶାଣ କର୍ଣ୍ଣପାଶେ ବାଇଲେ । କେହି ଘେନି ଲୌହଦଣ୍ଡ, ପ୍ରହାରନ୍ତି ତାର ପିଣ୍ଡ, କେହି ପାଷାଣ ତ ନେଇ ଅଙ୍ଗେ ମାଇଲେ । ନିଦ୍ରା ଯହୁଁ ନୋହିଲା ଭଙ୍ଗ । ବହୁ ପ୍ରହାର କରନ୍ତି ତାହାରଅଙ୍ଗ ॥ ଯୋଜନେ ତା ପୁରଦ୍ୱାର, ପର୍ବତ ପ୍ରାନ୍ତ ଏକାକାର, ତହିଁ ବହୁ ଉପହାରମାନ ବାଢ଼ିଲେ । ପାକ ମାଂସ କ୍ଷୀର ଜାଣି, କୁଢ଼ାଇଲେ ଦୈତ୍ୟ ଆଣି, ସହସ୍ରେ ପୋଡ଼ୁଅ ଛେଳ.ପାଶେ ଗୁଡ଼ିଲେ ॥ ଦେବିସସ୍ର ଘାର ମଦିରା । ସହସ୍ରେ ଘାର ରୁଧିର ବାଢ଼ିଲେ ଯାରା ॥ କର୍ଣ୍ଣେ ଜଳ ପୂରାଇଲେ, ଅଙ୍ଗେ ଗଜ ମଡ଼ାଇଲେ । ଅଙ୍ଗ ମୋଡ଼ଣ ଉଠିଲା ଅସୁର ବୀର । ହାଇ ମାରି ଟେକି ମୁଖ, ମାଗଇ ଆଣରେ ଭକ୍ଷ, ଏମନ୍ତ ବୋଲନ୍ତେ ତାକୁ ଦେଲେ ଆହାର । ରାମ ପାଦ ପଙ୍କଜେ ସ୍ଥିତି । ତହିଁ ଷଟପଦ ଦୀନ ବୀରର ମତି । ୧୨ ।

## ୩୭ଶ ଛାନ୍ଦ

### ରାଗ—ମୁଖାବରୀ

ସାର ରନ୍ଧନ ମାଂସ ଭୋଜନ । ପଛେ କଲକ ରୁଧିର ପାନ । ଗିଳିଦେଲା ବହୁ ପଶୁମାନ । ଗର୍ଭ ପୂରଇ କଲା ଭୋଜନ ॥ ବେନି ସହସ୍ର କଳସ ସୁରା ପାନକଲା ସେ ଅସୁର ବୀର । ଦିବ୍ୟବେଶ ଦିଶେ ହୋଇ ଘୋର । ଚାର ମାନସ କରଣ ଧୀର ॥ ପଚ୍ଛରଇ ସେ ଅସୁରରାଜ । କପାଁ ଭାଙ୍ଗିଲ ମୋ ନିଦ୍ରା ଆଜ । କହ କହ ମୋତେ କିସ କାର୍ଯ୍ୟ । ଦିଶୁଅଛ ହମସ୍ତେ ନିସ୍ତେଜ ॥ ସବୁ କହିଲେ ଅସୁରଗଣ । ଦେବ ଲଙ୍କା ହେଲା ରଣଭଣ । ସୁଗ୍ରୀ ସହିତେ ରାମ ଲକ୍ଷ୍ମଣ । ଗଡ଼ ବେଢ଼ିଣ କରନ୍ତି ରଣ ଯେଣୁ ମାଇଲେ ବହୁ ଅସୁର । ଏହି କାରଣରେ ଦଶଶିର । ନିଦ୍ରା ଭଙ୍ଗାଇଲେ ଦେବ ତୋର । ରାମ ଲକ୍ଷ୍ମଣଙ୍କୁ ଏବେ ମାର ॥ ଶୁଣି ବହୁତ ପ୍ରତିଜ୍ଞା କଲା ॥ ରାମ ମାରିବି ନିଶ୍ଚେ କହିଲା । ଆଗ କପି ଖାଇବ ବୋଇଲା । ଏତେ ବୋଲିଣ ଶୂଳ ଧଇଲା ॥ କରଯୋଡ଼ି କହେ ପରଜନେ । ଦେବ ମରନ୍ତି ଯିନା ସେମାନେ । ଆଗ ଯାଅ ରାଜା ସନ୍ନିଧାନେ । କ ବିଚ୍ଚରିବେ ଅବା ସେ ମନେ ॥ ଏତେ କହନ୍ତେ ହୋଇଲା ଉଭା । ଲଙ୍କାଗଡ଼କୁ ଦିଶିଲା ଶୋଭା । ସିନ୍ଧୁ ମନ୍ଥନ କାରଣେ କିବା । ମନ୍ଦର ଗିରି ଆଣିନ୍ତି ଦେବ ॥ ସୂର୍ଯ୍ୟମଣ୍ଡଳ ଛୁଇଁଛି ଶିର । ଶୋଭେ ମୁକୁଟ କୁଣ୍ଡଳ ହାର । ମୁଖ ଦିଶେ ବଡ଼ ଭୟଙ୍କର । ଦେଖି ପଳାଇଲେ ବନଚର ॥ ଲଙ୍କାଗଡ଼ର ହେମ ପ୍ରାକାର । ଦିଶେ କଟି ମେଖଳା ପ୍ରକାର । ପଦାଘାତେ ମହୀ ଥରହର । ଗୃଲ ଆସଇ ଲଙ୍କାଦାଣ୍ଡର ॥ ବିଭୀଷଣେ ପୃଚ୍ଛି ରାମ ଭାଷେ । ଲଙ୍କପତି ଏ ଲଙ୍କାରେ କେ ସେ । ମେରୁ ଶୃଙ୍ଗପ୍ରାୟ ଶିରେ ଦିଶେ । କପି ପଳାନ୍ତି ଏହାର ତ୍ରାସେ ॥ ବିଭୀଷଣ କହେ ଯୋଡ଼ି କର । ଦେବ ଏଟି ରାବଣ ସୋଦର । ଏହା ପ୍ରାୟ ନାହିଁ ଆଉ ବୀର । ଭୟେ ଉଠାଇଲେ ଦଶଶିର ॥ ଜାତ ହୋଇଣ ଅସୁର ବୀର । କୋଟି କୋଟି ଖାଇଲା ଏ ନର । କୋପ ଏତେ ଏଣୁ ବଜ୍ରଧର । ବଜ୍ର ପ୍ରହାରିଲେ ଏହା ଉର ॥ ଶଙ୍କ ଗଜ ଦନ୍ତ ଉପାଡ଼ିଲା । ସେହି ଦନ୍ତେ ତାକୁ ପ୍ରହାରିଲା । ଦେଖି ପିତାମହ ଶାପ ଦେଲା । ଶୋଇ ଥାଅରେ ବୋଲି ବୋଇଲା ॥ ଶୁଣି ରାବଣ କଷ୍ଟପ୍ର କଲା । ଷଡ଼ମାସେ ଉଠିବ ବୋଇଲା । ଏବେ ଯୁଦ୍ଧକୁ ଉଠି ଅଇଲା । ବୋଲେ ବଶି ତା ଭ୍ରାତା କହିଲା । ୧୫ ।

—※—

## ୩୮ଶ ଛାନ୍ଦ

ରାଗ—କେଦାର କାମୋଦୀ

ରାବଣପୁରେ କୁମ୍ଭକର୍ଣ୍ଣ ପ୍ରବେଶ । ଉଠିଣ ମାନ୍ୟ କଲେ ସର୍ବ ରାକ୍ଷସ ଯେ । ହୋଇଲା ରାବଣକୁ ସେ ପ୍ରଣିପାତ । କୋଳକରି ପାଖେ ବସାଇଲା ଦୈତ୍ୟ ଯେ ॥ ଶୋକମଗ୍ନ ହୋଇ କହେ ଲଙ୍କପତି । ଏତେ କାଳେ ପଡିଲା ଘୋର ବିପତ୍ତି ଯେ । ରାମ ଲକ୍ଷ୍ମଣ ଦଶରଥ ନନ୍ଦନ । କାନ୍ତା ଘେନଣ ଥିଲେ ନିର୍ଜନ ସ୍ଥାନ ଯେ ॥ ଛେଦିଲେ ସୂର୍ପଣଖା ନାସା ଶ୍ରବଣ । ମାଇଲେ ତ୍ରିଶିର ଖର ଦୂଷଣ ଯେ । ଏଣୁ ତାର ବନିତା ଆଣିଲି ମୁହିଁ । ଅଶୋକ ବନକାରେ ଅଛଇ ଥୋଇ ଯେ ॥ ବାଳି ମରାଇ ହେଲେ ସୁଗ୍ରୀବର ମିତ୍ର । ଲଙ୍କା ଖୋଜିଲା ଆସି କପି ତା ଦୂତ ଯେ । ଅକ୍ଷୟକୁମାରଣ ଲଙ୍କାପୋଡ଼ିଲା । ବାନରବଳ ସୈନ୍ୟ ଘେନିଅଇଲା ଯେ ॥ ସାଗରେ ସେତୁ ବାନ୍ଧି ପାର ହୋଇଲେ । ଏବେ ଆସିଣ ଲଙ୍କା ବେଢ଼ି ରହିଲେ ଯେ । ମାଇଲେ ପୁତ୍ର ନାତି ଅନେକ ମୋର । ଭସ୍ମ କଲେ ମୋହର କନକପୁର ଯେ ॥ ତୁ ତ ସର୍ବଦା ଶୟନରେ ରହିଲୁ । ସମ୍ପଦ ବିପଦକୁ ସାହା ନୋହିଲୁ ରେ । ଏବେ ମୁଁ ଭୟପାଇ ତୋଳିଲି ତୋତେ । ରାମ ମାରି ଅଭୟ କରି ତୁ ମୋତେ ଯେ ରାବଣ ବଦନରୁ ଶୁଣି ଏମନ୍ତ । କୁମ୍ଭକର୍ଣ୍ଣ କହିଲା ନୀତି ବୃତ୍ତାନ୍ତ ଯେ । ରାଗ ହୋଇ କପାଇଁ ଅନୀତି କଲ । ନରତେ ପର ଯୁବତୀକି ହରିଲ ଯେ ॥ ଏଣୁକରି ତୁମ୍ଭଙ୍କୁ ଧର୍ମ ଛାଡ଼ିଲା । ସୁକୃତ ନାଶଯାଇ ପାପ ବଢ଼ିଲା ଯେ । ଏବେ କି ହେବ ଆଉ କହିଲେ ମୋତେ । ଅତି ଅଧର୍ମ, ଧର୍ମ ସହିବ କେତେ ଯେ ॥ ଏକାକାକାଳେ ତ ସମର ନ କଲ । ପ୍ରାଣେ ନ ମାରି ତା ଯୁବତୀ ଆଣିଲ ଯେ ॥ ଏବେ ସେ କପିରାଜ ସାହା ପାଇଲା । ତେଣୁକରି ଏଠାକୁ ସିନା ଅଇଲା ଯେ ॥ ନଷ୍ଟେ ଜାଣିଲି ବୁଦ୍ଧି ହେଲା ବିନାଶ । ନୀତି କହିବା ମନ୍ତ୍ରୀ ନାହାନ୍ତି ପାଶ ଯେ । ନାରୀ ଚୋରାଇବାର ନୋହେ ଭୂଷଣ । ବୀରପଣକୁ ସିନା ହୋଏ ଦୂଷଣ ହେ ॥ ଏମନ୍ତ ଶୁଣି କହେ ସେ ମନ୍ଦୋଦର । ରାଜାମାନଙ୍କ ସ୍ୱଇଚ୍ଛା ବ୍ୟବହାର ଯେ । ଲଙ୍କପତିଙ୍କି ତୁମ୍ଭେ କହୁଛ ନୀତି । ପାଣ୍ଡିତ୍ୟରେ ଯେ ବୃହସ୍ପତିଙ୍କି ଜିତ ଯେ ॥ ରାଜା କରଇ ଯେଣୁ ସେ ବିଧି । ସକଳ ଲୋକରେ ସେ ହୁଏ ପ୍ରସିଦ୍ଧି ଯେ । ରାଜା ଆଜ୍ଞା ଅବଜ୍ଞା କରି ନୁହଇ । ଅବଜ୍ଞା କଲେ ଜନେ ଶିର ନ ଥାଇ ଯେ ॥ କୁମ୍ଭକର୍ଣ୍ଣ କହେ ଶୁଣ ମନ୍ଦୋଦର । ତୁମ୍ଭ ମନ୍ତ୍ରୀପଣେ ହେଲା ଏତେ ଦୂର ଯେ । ରାବଣକୁ କଲ ସକାମେ ବିନାଶ । ଆମ୍ଭଙ୍କୁ କହୁଥାଅ ବସିଣ ପାଶ ଯେ ॥ ଦେଖିଣ ରାବଣର କ୍ରୋଧବଦନ । ପୁଣି କହଇ ହସି ସାମ୍ୟ ବଚନ ଯେ । ମାରିବି

ଏକା ରାମ ଲକ୍ଷ୍ମଣ ଯନ୍ତି । ଯୋଦ୍ଧାମାନେ ମୋହର ନ ଥିବେ କନ୍ତି ଯେ ॥ ଏହା ଶୁଣିଣ ମହୋଦର କହଇ । ଏ କଥା ତୁମ୍ଭ ବଚନରକୁ ଅଇଲା ଯେ । ଏକା ହୋଇଣ ତୁମ୍ଭେ କରିବ ରଣ । ଦିଶିଲାଣି ତୁମ୍ଭର ବିବେକପଣ ଯେ ॥ ଏହା ଶୁଣି ରାବଣ ସନ୍ତୋଷ ହେଲା । ଅସୁରବଳ ଘେନି ଯାଅ ବୋଇଲା ଯେ । ଅଙ୍ଗେ ଖଞ୍ଜିଲା ତାର ବହୁ ଭୂଷଣ । ବନ ବସି ଶ୍ରୀରାମପାଦେ ଶରଣ ଯେ । ୧୭ ।



## ୩୯ ଶ ଛାନ୍ଦ କୁମ୍ଭକର୍ଣ୍ଣ ବଧ

ରାଗ—ମଙ୍ଗଳଗୁଜ୍ଜରୀ

ରାବଣକୁ ଓଳଗିଣ କୁମ୍ଭକର୍ଣ୍ଣ ବୀର । ଶୂଳ ଘେନି ସମରକୁ ହୋଇଲା ବାହାର । ଉତପାମାତନ ଜାତ ଅଦଭୁତେ ହେଲା । ଆକାଶରୁ ସନ୍ତତ ରୁଧିର ବରଷିଲା ॥ ପୃଷ୍ଠରେ ଶୃଗାଳ ଧାଇଁ କରୁଛନ୍ତି ରଡ଼ି । ଶିରୋପରେ ଗୃଧ୍ର ପକ୍ଷୀ ମାଂସ ଘେନି ଉଡ଼ି । ଲଙ୍କାର ପାଚେରୀ ଡେଇଁ ବାହାର ହୋଇଲେ । ଚତୁରଙ୍ଗବଳ ତାର ସଙ୍ଗେ ସଙ୍ଗେ ଥିଲେ ॥ ବାନର ଭଲ୍ଲୁକ ବଳ ଦେଖି ପଳାଇଲେ । ଅସୁରସୈନ୍ୟ ତାହାଙ୍କୁ ଗୋଡ଼ାଇ ମାଇଲେ । ଯୂଥପତିମାନେ ପାଲଟିଣ କଲେ ରଣ । ନିରନ୍ତରେ ବୃଷ୍ଟି କଲେ ଶାଳ ଶିଳାଗଣ ॥ କୋଟି କୋଟି କପି କୁମ୍ଭକର୍ଣ୍ଣ ମାରେ ହେଲେ । ପୁଣିହିଁ ପଳାନ୍ତି କପି ଜୀବନ ବିକଳେ । ଓଗାଳିଲେ ସୁଗ୍ରୀବ ଅଙ୍ଗଦ ହନୁବୀର । ଶାଳଶିଳ ମାରି ତାର ଅଙ୍ଗ କଲେ ଚୂର ॥ ହନୁମନ୍ତ ବୁଲାଇଣ ମାଇଲା ଅଚଳ । ଛଡ଼ାଇଣ କରି ବେନିଖଣ୍ଡ କଲେ ଶୂଳ । ଶାଳଶିଳ ଧରି ଦୈତ୍ୟ ସୁଗ୍ରୀ ଶିରେ ପିଟି । ମୋହଯାନ୍ତେ ସୁଗ୍ରୀବକୁ ଧଇଲା ସାଉଁଟି ॥ ଦୃଢ଼ କରି ବେନିକରେ ଧରି କଲା କୋଳ । ଯେସନେ ଧରି ନିଅନ୍ତି କୋଳ କରି ବାଳ । ବାହୁଡ଼ିଣ ଲଙ୍କାଗଡ଼େ ହୋଇଲା ପ୍ରବେଶ । ଦେଖି ତା ଲଙ୍କା ଅସୁରେ ପୂଜିଲେ ବିଶେଷ ॥ ହନୁ ଅଙ୍ଗଦ ଗୋଡ଼ାଉଛନ୍ତି ବେନି ପାଶ । ଛଡ଼ାନ୍ତି ନାହିଁ ସେ ରାଜା କନ୍ଧୋକୁ ରୋଷ । ଏମନ୍ତ ବିଚାରି ସଙ୍ଗେ ଗୋଡ଼ାଇଣ ଥିଲେ । ରାବଣପୁରେ ପଶିଲେ ଆଣିବା ବୋଇଲେ । କପିରାଜ ପୂର୍ବପୁଣ୍ୟବଳୁ ଜ୍ଞାନ ପାଇ । ବେଗେ ଧରେ ବେନି କର୍ଣ୍ଣ ନଖରେ ଛିଣ୍ଡାଇ ଦାନ୍ତରେ ନାସିକା ଛିଣ୍ଡାଇଣ ଉଡ଼ି ଅସେ । ଥୋଇଣ ଉଭା ହୋଇଲା ଶ୍ରୀରାମଙ୍କ ପାଶେ ॥ ଦେଖି ରଘୁନାଥ ତାକୁ ସାଧୁ ସାଧୁ କଲେ । ଗିରିଶୃଙ୍ଗ ପ୍ରାୟ ନାସା ଶ୍ରବଣ ଦେଖିଲେ । ଲଜ୍ଜା ପାଇ ବାହୁଡ଼ିଲା ପୌଲସ୍ତିର ନାତି । ବୃକ୍ଷବାନର

ବହୁତ ଖାଇଲା ବକୋଡ଼ି ॥ ହେମଗିରିରୁ କି ଗେରୁ ବହେ ସ୍ୱଧାର । ସେରୂପ ଅସୁର ମୁଖୁ ବହଇ ରୁଧିର । ରାମ କାହିଁ ରାମ କାହିଁ ବୋଲି ଆସେ ଧାଇଁ । ବେନି କରେ ଧରି ବଳ ଗିଳଇ ଘେନାଇ ॥ ଆସ ଆସ ମାନବରେ ଯିବୁ ଆଜ କାହିଁ । ଖର ଦୂଷଣ ବିରାଧ କବନ୍ଧ ମୁହଁ ଇ । ଦେଖିଣ ଲକ୍ଷ୍ମଣ ତାକୁ କଲେ ଶର ବୃଷ୍ଟି । ପେଲି ଆସେ ଦନୁଜ ରାମଙ୍କୁ କରି ଦୃଷ୍ଟି ॥ ଦେଖିଣ ବିରୂପ ରାମ ଟହ ଟହ ହସେ । ଛିନ୍ନ କର୍ଣ୍ଣ ନାସିକା କେ ଆସେ ମୋର ପାଶେ । ଏତେ ବୋଲି ଶର ବୃଷ୍ଟି କଲେ ତାର ଅଙ୍ଗ । ହସଇ ଅସୁର ଶର ନୁହଇ ବିଭଙ୍ଗ ॥ ଦେଖିଣ ଶ୍ରୀରାମ ଖରାନ୍ତକ ଶର ଧରି । ଗୁଣେ ବସାଇ ଅସୁର ହୃଦକୁ ପ୍ରହାରି । ସେ ଶର ବାଜନ୍ତେ ଦୈତ୍ୟ ନୋହିଲା ବିଭଙ୍ଗ । ପରିଘ ବୁଲାଇ ପିଟି ଥିଲା ରାମ ଅଙ୍ଗ ॥ ସେତକ୍ଷଣି ବାଛି ରାମ ବିନ୍ଧିଲେକ ଶର । ପରିଘ ସହ କାଟିଲେ ଅସୁରର କର । ବାମକରେ ତରୁ ଉପାଡ଼ିଣ ଆସେ ଧାଇଁ । ଆଉ ଶରେ ମାରି ବାମ କରକୁ ଛିଣ୍ଡାଇ ॥ ଅର୍ଦ୍ଧଚନ୍ଦ୍ର ଶରରେ ଛେଦନ୍ତେ ବେନି ପାଦ । କୋପରେ ଅସୁର ହେଇଁ କରେ ଘୋର ନାଦ । ହେଇଁ ଗିଳନ୍ତେ କପିଙ୍କୁ ଶରବୃଷ୍ଟି କଲେ । ତୂଣୀ ପ୍ରାୟ ତୁଣ୍ଡ ଦେଖି ମୁଣ୍ଡକୁ କାଟିଲେ ॥ ଲଙ୍କାଠାରେ ଅଟ୍ଟାଳୀ ମୁଣ୍ଡ ବାଜି ଚୂର୍ଣ୍ଣ ହେଲେ । ଦଶକୋଟି କପି ପିଣ୍ଡ ପଡ଼ନ୍ତେଣ ମଲେ । ଦେଖିଣ ସାନନ୍ଦେ ଦେବେ ପୁଷ୍ପବୃଷ୍ଟି କଲେ । ବୋଲେ ବଳି ଅର୍ଦ୍ଧଅଙ୍ଗ ସିନ୍ଧୁରେ ପଡ଼ିଲେ । ୬ ।

———

## ୪୦ଶ ଛାନ୍ଦ—ରାବଣର ଷଡ଼ରଥୀ ବଧ

ରାଗ—ରଣବଟକେ । କୋଠାଇ ଗୁଣ୍ଡିରୀ ବସନ୍ତବାଣୀ

କୁମ୍ଭକର୍ଣ୍ଣ ବଧ ଶୁଣିଣ ରାବଣ ମୂର୍ଚ୍ଛା ଯାଇଣ ପଡ଼ିଲା । କେତେହେଁକ ବେଳେ ଚେତନା ପାଇଣ ବହୁତ ବିଳାପ କଲା ହେ । ବୀର । ଯେଉଁଭରେ ବଜ୍ର ହେଲା ଚୂର । ତୋର ମାନବ କାଟିଲା ଶିର । ଆଜ ହୃଷ୍ଟ ହେବ ସୁନାଶିର । ମୋତେ କି ବୋଲିବେ ସ୍ୱସୁର ହେ ॥ ଏ ଲଙ୍କା ସମ୍ପଦେ ମୋର କାର୍ଯ୍ୟ ନାହିଁ ଛାଡ଼ିବି ଜୀବନ ଆଶ । ଜାନକୀରେ ମୋର କେଉଁ କାର୍ଯ୍ୟ ଅଛି ଭ୍ରାତା ଯେବେ ଗଲା ନାଶ ହେ । ଭ୍ରାତ । ମୋର ଛିଡ଼ିଲା ଦକ୍ଷିଣ ହାତ । ତୋତେ ମରାଇଲି ମୁଁ ବିଅର୍ଥ । ତୋର ବିହୀନେ ହେଲି ଅନାଥ । ସଂଗ୍ରାମରେ ଅର୍ଜିଲି ଅନର୍ଥ ହେ ॥ ସାନୁଜ । ବିଭୀଷଣ ବୋଲି ନ କଲି, ନ କଲି ପ୍ରଶସ୍ତ ବୋଲି । ଭଲ ଭଲ ଲୋକେ ଯାହା କହୁଥିଲେ ମଣିଲି ତାହା ମୁଁ ଗାଲି ହେ । ଯିବି । ରାମ ଲକ୍ଷ୍ମଣଙ୍କୁ ସଂହାରିବି । ଲୁଷ ବାନରଙ୍କୁ ନ ରଖିବି । ତାଙ୍କୁ ନ

ମାଇଲେ ନ ଆସିବ । ରଣଯଜ୍ଞ ମୁଁ ଆଜ କରିବି ହେ ॥ ରାବଣ ବିଳାପ ଶୁଣିଣ ନିଶିର ମହାକାୟ ମହୋଦର । ମହାପାରୁଶ୍ୱ ସହିତେ ନରାନ୍ତକ ଦେବାନ୍ତକ ଷଡ଼ବୀର । ସେମାନେ । କହି ପ୍ରବୋଧ କରି ବଚନେ । ଦେବ କିପାଁ କର ଶୋକ ମନେ । ଆଜ୍ଞା ହେଲେ ଯିବୁ ଆମ୍ଭେମାନେ । ଶତ୍ରୁ ମାରିବୁ ଯେ ସାବଧାନେ ॥ ମହୋଦର ମହାପାରୁଶ୍ୱ ଯିଏନ୍ତି ରାବଣ କନିଷ୍ଠ ଭ୍ରାତ । ତାହାଙ୍କୁ ବୋଇଲେ ତୁମ୍ଭେ ନ ଛାଡ଼ିବ ରାଜ ପୁତ୍ରଙ୍କର ସାଥ ହେ । ବୀରେ । ହେଳା ନ କରିବଟି ସମରେ । ନ ମଣିବ ଏ ନର ବାନରେ । ତାଙ୍କ ସମାନ ନୁହନ୍ତି ସୁରେ । ମଲେ ଜୀଅନ୍ତି କି ଉପାୟରେ ॥ ରାବଣ ଶ୍ରୀମୁଖରେ ମେଲାଣି ହୋଇଣ ବାହାର ସେ ଷଡ଼ବୀରେ । ଅନେକ ରଥ ଗଜ ଅଶ୍ୱ ପଦାତିମାନେ ଅଛନ୍ତି ସଙ୍ଗରେ ସେ । ବୀରେ । ଅତିକାୟ ଚଢ଼ି ରଥବରେ । ମହାପାରୁଶ୍ୱ ହସ୍ତୀ ଉପରେ । ବସି ନିଶିର ହୟ ପିଠିରେ । ଶସ୍ତ୍ରମାନ ଧରିଛନ୍ତି କରେ ॥ ନରାନ୍ତକ ଦେବାନ୍ତକ ବେନି ଭାଇ ମହାପାରୁଶ୍ୱକୁ ଘେନି । ଗଜ ଅଶ୍ୱ ରଥ ଚଢ଼ିଣ ଆଗୁଆ ହୋଇଛନ୍ତି ଏହି ଛଅ ସେ । ଶୂର । ଆଗେ ବାଜୁଅଛି ଝାରଝର । ଦେଖେ ପୂରିଅଛନ୍ତି ବାନର । ଧରିଛନ୍ତି ଶିଳ ତରୁବର । ଦେଖି ଭୟ ପାଇବେ ଅମର ॥ ଦୁଷ୍ଟ ରାକ୍ଷସ ବେନି ବୀର ମିଶିଣ କଲେ ବହୁତ ସମର ତରୁ ଶିଳ ନାନା ଶସ୍ତ୍ରଙ୍କ ବୃଷ୍ଟିରେ ନ ଦିଶିଲେ ଦିବାକର ସେ । ରଣ । ମଲେ ବାନର ରାକ୍ଷସଗଣେ । ନରାନ୍ତକ ଅଶ୍ୱ ଆରୋହଣେ ବର୍ଚ୍ଛି ଘେନି ଭୂଷଇ ଆପଣେ । କପି ମାଇଲା ଲକ୍ଷ ପ୍ରମାଣେ ॥ ବାନର ମଲାବା ଦେଖିଣ ସୁଗ୍ରୀବ ଅଙ୍ଗଦକୁ ବୋଲେ ମାର । ବାଳିର କୁମର ଶୂନ୍ୟହସ୍ତେ ଉଭା ହେଲେ ଅସୁର ଆଗର ସେ । ବୀର । ବର୍ଚ୍ଛି ମାରେ ଅଙ୍ଗଦ ଉପର । ବାଜ ବରଚ୍ଛି ଭାଙ୍ଗିଲା ତାର । ଚାପୋଡ଼େ ମାଇଲେ ଅଶ୍ୱପର । ଅଶ୍ୱ ମରନ୍ତେ ଉଭା ଅସୁର ॥ ମୁଠେ ମାରନ୍ତେ ଅଙ୍ଗଦ ନରାନ୍ତକ ରୁଧିର ଉଦ୍‌ଗାର ମଲା । ମହୋଦର ଗଜ ଚଢ଼ିଣ ଅଙ୍ଗଦ ସଙ୍ଗଙ୍କେ ସମର କଲା । ସେ ହନୁ । ଶ୍ରାନ୍ତ ଦେଖିଣ ବାଳିର ସୁନୁ । ଓଗାଳନ୍ତେ କମ୍ପେ ଦୈତ୍ୟ ତନୁ । ଦେଖି ଦୈତ୍ୟ ବନ୍ଦେ ଧରି ଧନୁ । ତାର ଶର ମଣେ ତୃଣସମାନ ॥ ହନୁ ଶରଘାତ ତାହାର ସହିଣ ଗଜଦନ୍ତ ଉପାଡ଼ିଲେ । ସେ ଗଜଦନ୍ତ ଉପାଡ଼ି ମହୋଦର ଅଙ୍ଗରେ ପ୍ରହାର କଲେ ସେ । ଶୂର । ଦନ୍ତ ଭାଙ୍ଗିଲା ବାଜିଣ ଶିର । ତହୁଁ ରୁଧିର ହେଲା ବାହାର । କ୍ରୋଧେ ବିନ୍ଧଇ ସେ ତୀକ୍ଷ୍ଣ ଶର । ଦେଖି ହନୁ ହୋଇଲେ କାତର ॥ ହନୁକୁ ସାହା ହୋଇଣ ନୀଳବୀର ମହୋଦରର ଆଗର । ମହାପର୍ବତ ଉପାଡ଼ିଣ ବୁଲାଇ ପକାଇଲା ଦୈତ୍ୟ ଶିର ସେ । ମଲା । ଗଜ ସହିତେ ଚୂର୍ଣ୍ଣ

ହୋଇଲା । ତାହା ଦେଖି ନିଶିର ଧାଇଁଲା । ହନୁ ସଙ୍ଗତରେ ରଣ କଲା । ଖଣ୍ଡା ବୁଲାଇଣ ହାଣୁଥିଲା ॥ ସେହି ଖଡଗ ତା କରୁ ଛଡ଼ାଇଣ ହନୁ ତ କରେ ଧଇଲେ । ଚହଟଗଡ କର ବୁଲାଇ ତାହାର ଗ୍ରୀବାରେ ପ୍ରହାର କଲେ ତା । ମୁଣ୍ଡ । ଛିଡ଼ ହୋଇଲାକ ବେନ ଖଣ୍ଡ । ଦଶମୁଣ୍ଡ ଦଶଇ ପ୍ରଚଣ୍ଡ । ରତ୍ନକୁଣ୍ଡଳ ମଣ୍ଡିତ ଗଣ୍ଡ । ରଣଭୂମିରେ ପଡ଼ିଲା ପିଣ୍ଡ ॥ ନିଶିରା ମରଣ ଦେଖି ଦେବାନ୍ତକ ଗଜ ଆରୋହି ଧାଇଁଲା । ବିବିଧ ଆୟୁଧ ଘେନ ହନୁ ସଙ୍ଗେ ବହୁତ ସମର କଲା ସେ । ହନୁ । ମୁଥେ ମାଇଲା ଗଜର ତନୁ । ଗଜ ମଲା ଭଗ୍ନ ହୋଇ ଯାନୁ । ମଲ୍ଲଯୁଦ୍ଧ କଲା ଘର୍ଷି ଧନୁ । ଯୁଦ୍ଧେ ମଲା ରାବଣର ସନୁ ॥ ଦେବାନ୍ତକ ମୃତ୍ୟୁ ଦେଖିଣ ଧାଇଁଲା ମହାପାରୁଶ୍ୱ ଅସୁର । ଅଶ୍ୱ ଚଢ଼ିଣ ସେ ହନୁକୁ ଗୋଡାନ୍ତେ ଋଷଭ ତାହା ଆଗର ସେ । ବୀର । ଗଦା ମାଇଲା ଋଷଭ ପର । ଗଦା ଉଛୁଳି ଧଇଲା କର । ସେହି ଗଦାରେ କଲା ପ୍ରହାର । ପ୍ରାଣ ଗଲା ଫାଟି ଦୈତ୍ୟ ଶିର ॥ ଏହା ଦେଖି ମହାକାୟ ରଥ ଚଢ଼ି ବିବିଧ ଆୟୁଧ ଘେନ । ଶର ପ୍ରହାରନ୍ତେ ରାମଙ୍କ ଶରଣ ପଶିଲେ କପି ସଇନ୍ୟ । ତା ଦୃଷ୍ଟିଁ । ପଚାରନ୍ତି ଜାନକୀଙ୍କ ସାଇଁ । ଏଡ଼େ ଦନୁଜ ଦେଖିବା ନାହିଁ । କୁମ୍ଭକର୍ଣ୍ଣ ଅଇଲା କି ଜୀଇ । ସେନାମାନେ ଆସନ୍ତି ପଳାଇ ॥ ବିଭୀଷଣ ବୋଲେ ଶୁଣିବା ଶ୍ରୀଦେବ ରାବଣର ଏ ନନ୍ଦନ । ବହୁତ ତପ କଲାରୁ ବର ଦେଇ ଅଛନ୍ତି କଞ୍ଜ ଆସନ ହେ । ବୀର । ସାବଧାନ ହୋଇ ଯୁଦ୍ଧ କର । ଜିଣି ପାରଇ ଏ ଦଶପୁର । ମାର ପକାଇବ ବାନର । ଶୁଣି ରାମ ହେଲେ ଅଗ୍ରସର ॥ ଶ୍ରୀରାମଙ୍କୁ ପଛ କରଣ ଲକ୍ଷ୍ମଣ ଓଗାଳଲେ ତାକୁ ଯାଇ । ଅସୁର ହସିଣ ବୋଇଲା କୁମର ଅଇଲୁ ମରିବା ପାଇଁ ରେ । ବାଳ । ମୃତ୍ୟୁ ଦେବତାର ମୁହିଁ କାଳ । ମୋତେ ଡରନ୍ତି ଏ ଦିଗପାଳ । ତୋତେ ମାଇଲେ ନାହିଁଟି ଫଳ । ପଳା ଧନୁଶର ଥୋଇ ତଳ ॥ ଲକ୍ଷ୍ମଣ ବୋଲନ୍ତି ଶବଦମେଘଟି ଗର୍ଜିନ ବରଷେ ଜଳ । ତୋର ମୋର ଏହିଠାରେ ଜାଣିବା କେ ବୃଦ୍ଧ ଯୁବା କେ ବାଳ ରେ । ବୀର । ଏତେ କହିଣ କଲେ ସମର । ଡ଼ର କମ୍ପିଲେ ସକଳ ସୁର । କାଣ୍ଡ ପ୍ରହାରଲେ ଦୈତ୍ୟ ଶିର । ଦେଖି ପ୍ରଶଂସା କଲା ଅସୁର ॥ ଦୁହେଁ ମହାକ୍ଷତ୍ରୀ କେହି କାହାକୁ ହିଁ ନୋହିଲେକ ବଡ଼ ସାନ । ଏହା ଦେଖିଣ ମାରୁତି ବିଚାରିଣ କହିଲେ ଲକ୍ଷ୍ମଣ କର୍ଣ୍ଣେ ସେ । ବୀର । ବ୍ରହ୍ମ ଅସ୍ତ୍ର ବେଗେ ଧର କର । ଶୁଣି ବାହାର କଲେକ ଶର । ଯାହା ଦେଇଥିଲେ ସୁନାସୀର । ଗୁଣେ ବସାଇ କଲେ ପ୍ରହାର ॥ ବ୍ରହ୍ମ ଅସ୍ତ୍ର ବାଜି ଅତିକାୟ ବୀର ଭୂମିରେ ପଡ଼ିଣ ମଲା । ତାହା ଦେଖିଣ ଲକ୍ଷ୍ମଣଙ୍କୁ ଆକାଶୁଁ କୁସୁମ ବୃଷ୍ଟି ହୋଇଲା ।

ସେ ମଲେ । ଷଡ଼ରଥୀ ଆସି କ୍ଷୟ ଗଲେ । ଦେଖି ଅସୁରବଳ ଭାଜିଲେ ।
ପଳାଇଣ ରଣୁ ଯହିଁ ଗଲେ । ବସି ବୋଲେ ରାବଣେ କହିଲେ । ୨୧ ।



## ୪୧ ଶ ଛାନ୍ଦ—ଇନ୍ଦ୍ରଜିତର ଯୁଦ୍ଧ

ଚକ୍ରକେଳି ବାଣୀ । ଦଧିମନ୍ଥନ ବୋଲି

ଯୁବନାଶ୍ୱଙ୍କର ରଣେ ମରଣ । ଏହା ଶୁଣି ଶୋକ କଲା ରାବଣ ॥ ଗୁଣମାନ ଗୁଣି ହେଲା ଅଜ୍ଞାନ । ତାହା ଦେଖି କହେ ଜ୍ୟେଷ୍ଠ ନନ୍ଦନ ॥ ତାତ କିମ୍ପାଇଁ ହେଉଅଛ ମୋହ । ଯେବେ ମୁଁ ଅଛି ଇନ୍ଦ୍ରଜିତ ପୁଅ ॥ ଏଥକୁ ହେବ ନ କର କାରୁଣ୍ୟ । ମାରଣ ଆସିବ ରାମ ଲକ୍ଷ୍ମଣ ॥ ନାଗ ପାଶେ ବେଳେକ ମରିଥିଲେ । କ କି ପ୍ରକାରେ ଜୀଇଣ ଅଇଲେ ॥ ଏତେ କହିଣ ସାଜିଲାକ ବଳ । ବଜାଇ ବିବିଧ ବାଦ୍ୟ ଚହଳ ॥ ବଡ ବଡ଼ ଅସୁର ସେନ ସଙ୍ଗେ । ଲଙ୍କାରୁ ବାହାର ହୋଇଲା ରଙ୍ଗେ ॥ ରଥୀମାନଙ୍କୁ ଯୁଦ୍ଧକୁ ପେଷିଲା । ଆପଣେ ହୋମ ସ୍ଥାନକୁ ଅଇଲା ॥ ଛାଗଳ ରକତ ଲୌହ ସ୍ରୁବରେ । ମନ୍ତ୍ର ପଢ଼ି ଢାଳେ ଅଗ୍ନି ମୁଖରେ ॥ ଲୋହିତ ବସନରେ ହୋମ କଲା । ପୁଣି ଗୁଆ ଘୃତମାନ ଢାଳିଲା ॥ ଜ୍ୱଳିଲା ଅନଳ ଦକ୍ଷିଣ ହୋଇ । ଶକ୍ରଜିତ କରୁ ଆହୁତି ପାଇ ॥ କାର୍ଯ୍ୟସିଦ୍ଧି ଚିହ୍ନମାନ ଦେଖିଲା । ସମସ୍ତ ଶର ବ୍ରହ୍ମଅସ୍ତ୍ର କଲା ॥ ରଥ ଚଢ଼ିଣ ଶସ୍ତ୍ରମାନ ନେଇ । ଅଦୃଶ୍ୟ ହୋଇ ତେଜିଣ ଅବନୀ ॥ ଆକାଶେ ଥାଇ ବନ୍ଧିଲା ନାରାଜ । କପିସୈନ୍ୟକୁଳ କଲା ନସ୍ତେଜ ॥ ଆକାଶେ ଯହିଁ ତହିଁ ବାଜଇ ଶର । କୁଡ଼ କୁଡ଼ ହୋଇ ମଲେ ବାନର ॥ ଗବୟକୁ ମାରେ ଶର ଅଠର । ଗବାକ୍ଷକୁ ମାଇଲାକ ପନ୍ଦର ॥ ଅଙ୍ଗଦକୁ ମାଇଲା ବିଂଶ ଶର । ହନୁକୁ ତ୍ରିଂଶ କଲା ପ୍ରହାର ॥ ଋଷଭକୁ ପାଞ୍ଚ ଗଜକୁ ଦଶ । ଦୁର୍ବିନ୍ଦକୁ ସାତ ସୁଗ୍ରୀବେ ବିଂଶ ॥ ବିନତାକୁ ପାଞ୍ଚ ବ୍ରହ୍ମକୁ ସାତ । ବନ୍ଧୁ ଅଛି କୋପେ ରାବଣସୁତ ॥ ନଳ ନୀଳକୁ ପନ୍ଦର ପନ୍ଦର । ସୁଷେଣକୁ ଦଶ କଲା ପ୍ରହାର ॥ ଜାମ୍ବବକୁ ଦଶ ଶରରେ ଗୁର । ଦଧିମୁଖକୁ ଆଠ ଶର ମାର ॥ ଏହିରୂପେ ସର୍ବ ସେନାକୁ ମାର । ବ୍ରହ୍ମଅସ୍ତ୍ରେ ମୋହ କଲା ସବୁର ॥ ରାମ ଲକ୍ଷ୍ମଣଙ୍କୁ ବନ୍ଧିଲା ଶର । ଶ୍ରାବଣ ମାସର କି ଜଳଧର ॥ ଶ୍ରୀରାମ ବୋଲନ୍ତି ଶୁଣ ଲକ୍ଷ୍ମଣ । ଅଦୃଶ୍ୟ ହୋଇ ବନ୍ଧୁ ଅଛି ବାଣ ॥ ଆମ୍ଭେ ଥିବା ଏବେ ଭୂମିରେ ପଡ଼ି । ମଲେ ବୋଲି ଜାଣି ଯାଉ ବାହୁଡ଼ି ॥ ଏତେ ବୋଲି ରାମ ଲକ୍ଷ୍ମଣ ପଡ଼ି । ଭୂମିରେ ଅଜ୍ଞାନ ହୋଇଲେ ଗଡ଼ି ॥ ଏହା ଦେଖି ହରଷରେ ଶକ୍ରଜିତ । ରାମ ଲକ୍ଷ୍ମଣ ନଷ୍ଟେ ହେଲେ ହତ ॥ ବାନର ସେନାପତିମାନେ ମଲେ । ବ୍ରହ୍ମଅସ୍ତ୍ରେ ଜୀବନ ହରାଇଲେ ॥ ଏମନ୍ତ ମନରେ

ବିଗ୍ରହର କଲି । ଅସୁର ସୈନ୍ୟେ ପ୍ରବେଶ ହୋଇଲା ॥ ସଂଗ୍ରାମେ ଶ୍ରୀରାମଙ୍କୁ ଜୟ କରି । ବାହୁଡ଼ି ବିଜେ କଲା ଲଙ୍କାପୁରୀ ॥ ଦେଖିଲା ରାବଣ କରିଛି ସଭା । ଓଳଗି କରଣ ହୋଇଲା ଉଭା ॥ ରାମଙ୍କୁ ମାରି ଅଇଲି ବୋଇଲା । ଶୁଣି ରାବଣ ଆନନ୍ଦ ହୋଇଲା ॥ ନିଶ୍ଚିନ୍ତ ହୋଇଣ ଅସୁରମାନେ । ସୁଖେ ନିଦ୍ରା ଗଲେ ଯେଝା ସଦନେ ॥ ଏଥୁ ଅନନ୍ତରେ ଶୁଣିବା ରସ । ବେନି ଘଡ଼ି ମାତ୍ର ଥିଲା ଦିବସ ॥ ବିଭୀଷଣ ଆଡ଼ ହୋଇ ଯେ ଥିଲେ । ଭଲୁକା ହୋଇ ସୈନ୍ୟରେ ପଶିଲେ ॥ ଅଜ୍ଞାନେ ପଡ଼ିଛନ୍ତି କପିବଳ । ରାମ ଲକ୍ଷ୍ମଣ ପଡ଼ିଛନ୍ତି ତଳ ॥ ଆଦ୍ୟପାକ ଦେଖି ବିକଳ ମନ । ଦେଖିଲେ ଜ୍ଞାନେ ଅଛି ହନୁମାନ ॥ ବ୍ରହ୍ମାଙ୍କ ବର ପୂର୍ବେ ପାଇଥିଲେ । ବ୍ରହ୍ମଅସ୍ତ୍ରେ ହନୁ ମୋହ ନୋହିଲେ ॥ ହନୁ ଉଠାଇକଲେ ଆଲିଙ୍ଗନ । ପୀଡ଼ା ନାହିଁ ନା ମରୁତନନ୍ଦନ ॥ କିଛି ପୀଡ଼ା ନାହିଁ ହନୁ କହିଲେ । ସଙ୍ଗ ହୋଇ ଜାମ୍ବବ ପାଶେ ଗଲେ ॥ ଋକ୍ଷପତି ପାଶେ ହେଲେ ପ୍ରବେଶ । ବିଭୀଷଣ ତାଙ୍କୁ କଲେ ଆଶ୍ୱାସ ॥ ବିଭୀଷଣ ବାଣୀ ଶୁଣି ଜାମ୍ବବ । ବୋଲନ୍ତି ଯୁଦ୍ଧ କଲି ଅସମ୍ଭବ । ବ୍ରହ୍ମଅସ୍ତ୍ରେ ସର୍ବେ ହୋଇଲେ ମୋହ । ଜୀଇଛି କି କହ ମରୁତ ପୁଅ ॥ ବିଭୀଷଣ ବୋଲନ୍ତି ଋକ୍ଷପତି । ଶ୍ରୀରାମ ଲକ୍ଷ୍ମଣ ପଡ଼ି ଅଛନ୍ତି ॥ ତାହାଙ୍କ ବାରତା ନ ପଚାରିଲ । ହନୁଠାରେ ଅନୁରାଗ ବହିଲ ॥ ଏମନ୍ତ ଶୁଣି କହେ ଋକ୍ଷେଶ୍ୱର । ସବୁରି ମଙ୍ଗଳ ହନୁ ଥିବାର ॥ ହନୁବୀର ତାହା ଶୁଣୁଣ ଥିଲେ । ବେନି ପାଦରୁ ଛୁଇଁ ଓଳଗି କଲେ ॥ ବୋଲନ୍ତି ସୁଖେ ମୁଁ ଅଛଇ ଜୀଇ । ଏକା ହୋଇଣ କିସ କରିବଇଁ ॥ ଜାମ୍ବବ କହିଲେ ନୁହେଁ ଏମନ୍ତ । ଯାହା ମୁଁ କହିବି କର ତେମନ୍ତ ॥ ହିମାଳୟର ଉତ୍ତରେ ସୁମେରୁ । କଇଳାସ ଗିରି ତହିଁ ଉତ୍ତରୁ ॥ ତହୁଁ ଉତ୍ତରୁ ଲବଣ ଜଳଧି । ତଦନ୍ତରେ କ୍ଷୀରସିନ୍ଧୁ ପ୍ରସିଦ୍ଧି ॥ ତଥି ମଧ୍ୟରେ ଅଛି ଚନ୍ଦ୍ରଗିରି । ଦ୍ରୋଣଗିରି ଅଛି ତାକୁ ଆବୋରି ॥ ସେ ବେନି ଗିରି ମଧ୍ୟରେ ଔଷଧି । ମରିବା ଲୋକେ ଜୀଅନ୍ତି ଅବଧି ॥ କେ ଔଷଧି ମୃତ୍ୟୁସଞ୍ଜୀବନୀ । ବିଶଲ୍ୟକରଣୀକ ହୋନି ବେନି ॥ ସନ୍ଧାନକରଣୀ ଔଷଧି ତିନି । ଚତୁର୍ଥେ ସୁବର୍ଣ୍ଣକରଣୀ ଯେହି ॥ ଏମନ୍ତେ ଚାରି ଔଷଧିଙ୍କ ନାମ । କହିଛନ୍ତି ସେହିଠାରେ ବିଶ୍ରାମ ॥ ଦେବାସୁର ଯୁଦ୍ଧେ ନଅନ୍ତି ଦେବ । ତେଣୁ ଅସୁରଙ୍କୁ ଜଣେ ବାସବ ॥ ତୁମ୍ଭେ ଯେବେ ଯାଇ ଆଣିବ ତାହା । ସମସ୍ତେ ଜୀଇବେ ହନ୍ତିଲ ଏହା ॥ ଜାମ୍ବବ ମୁଖରୁ ଏମନ୍ତ ଶୁଣି । ତନୁ ବିସ୍ତାର କଲେ କପିମଣି ॥ ଦେବଙ୍କ ଆସିବା ମାର୍ଗରେ ଗଲେ । ଜାମ୍ବବ ଦେଇଁ ମାର୍ଗେ କହିଥିଲେ ॥ ଗରୁଡଙ୍କ ବେଗୁଁ ଅଧିକ ଗଲେ । ଗିରିଶିଖରେ ପ୍ରବେଶ ହୋଇଲେ ॥ ଜାଣିଣ ଲୁଚିଲେ ଔଷଧିମାନ । ନ ଦେଖି ଭ୍ରମ ପବନନନ୍ଦନ ॥

ଔଷଧି ନ ଦେଖି ଉପାୟ କଲେ । ତା ମଧ୍ୟ ଶୃଙ୍ଗ ଉପାଡ଼ ଆଣିଲେ । ସେ ଶୃଙ୍ଗ ଘେନ ସେହୁ ସୂର୍ଯ୍ୟ ମାର୍ଗେ । ଅଇଲେ ମାରୁତ ମରୁତୁଁ ବେଗେ ॥ ଶ୍ରୀରାମ ଥାଟରେ ହେଲେ ପ୍ରବେଶ । ଦେଖି ଋକ୍ଷପତି ହେଲେ ହରଷ ॥ ଔଷଧି ନାସ ଦିଅନ୍ତେ ଉଠିଲେ । ମଲା ଲୋକଙ୍କୁ ଜୀବନ ପାଇଲେ ॥ ଶ୍ରୀରାମ ଲକ୍ଷ୍ମଣ ସଚେତ ହେଲେ । ହନୁକୁ ବହୁତ ପ୍ରଶଂସା କଲେ ॥ ସୁଗ୍ରୀ ସହିତେ ଯୂଥପତିମାନେ । ସମସ୍ତେ ପ୍ରଶଂସନ୍ତି ହନୁମାନେ ॥ ଶ୍ରୀରାମ ବୋଲନ୍ତି ହନୁକୁ ଚାହିଁ । ଏବେ ଏ ଗିରି ରଖିଆସ ଯାଇଁ ॥ ଆଜ୍ଞା ପାଇଣ ଗିରି ଘେନିଗଲେ । ହିମାଚଳ ପାଶେ ରଖି ଅଇଲେ ପ୍ରଥମ ରଣୁଁ ଯେତେ ପଡ଼ିଥିଲେ । ଔଷଧି ପବନ ଲାଗି ଜୀଇଲେ ॥ ଅସୁରମାନେ ନ ଜୀଇଲେ ଏଣୁ । ସାଗରେ ରାବଣ ପକାଏ ଯେଣୁ । ତହିଁ ଶତ ଗୁଣେ ହୋଇଲା ବଳ । ବୋଲେ ବଳି ସହୁ ବାନରକୁଳ ॥

—x—

## ୪୨ଶ ଛାନ୍ଦ କୁମ୍ଭନିକୁମ୍ଭ ବଧ

ରାଗବତ ବୃତ୍ତେ ଗାଇବ

ଏଥୁ ଅନ୍ତରେ ଶୁଣ ରସ । ସୁଗ୍ରୀବ ହୋଇଣ ହରଷ । ଜଣାଇ ଶ୍ରୀରାମ ଶ୍ରୀମୁଖରେ । ବିଚାର କରିଣ ମନରେ । ଆମ୍ଭର ସୁସ୍ଥ ହେବା ଶୁଣି । ଆଉ କି ଆସିବ ରାବଣି ॥ ରାବଣ ସୈନ୍ୟ ନ ପେଷିବ । ଆପଣେ ବାହାର ନୋହିବ ॥ ଏବେ ନିଶାରେ ଆମ୍ଭେ ଯିବା । ଏ ଲଙ୍କା କଟକେ ପଶିବା । ପୋଡ଼ିବା ସକଳ ଭୁବନ କରିବା ଅସୁର ନିଧନ ॥ ସୁଗ୍ରୀବ ମୁଖରୁଁ ଏହା ଶୁଣି । ଆନନ୍ଦ ହେଲେ ରଘୁମଣି ॥ ଯୂଥପତିମାନଙ୍କୁ ରାଇ । ସୁଗ୍ରୀବ ଏ ବିଚାର କହି । ଶୁଣି ସେ ସୀତ୍କାର କଲେ । ଯୁଦ୍ଧକୁ ବାହାର ହୋଇଲେ । ବହୁ ଗର୍ଜନମାନ କରି । ଉଲ୍କାମାନ କରେ ଧରି । ପଶିଲେ ଲଙ୍କାଗଡ଼ ଡେଇଁ । ବହୁ ବାନରବଳ ନେଇ । ଲଙ୍କା ନଗର ଶୋଭା ଚାହିଁ । ଅନଳ ଦେଲେକ ଲଗାଇ । ପୋଡ଼ିଲେ ଦିବ୍ୟପୁରମାନ । ଦିଶନ୍ତି ପର୍ବତ ସମାନ । ପୋଡ଼ିଣ ପଡ଼ୁଅଛି ଝଡ଼ । ଦେଖି କପି ହସନ୍ତି ରଡ଼ । ଉଜ୍ଜ୍ୱଳ ହେଲା ଦଶଦିଶ । ଅନ୍ଧକାର ହୋଇଲା ନାଶ । ଯେ ଘରୁ ହୋଇଲା ବାହାର । ତାହାକୁ ମାରନ୍ତି ବାନର । ପୋଡ଼ିଲେ ପାର୍ଥିବ ଦ୍ରବ୍ୟମାନ । କସ୍ତୁରୀ କର୍ପୂର ଚନ୍ଦନ ॥ ଅଗୁରୁ କୁଙ୍କୁମ ସୁଗନ୍ଧ । ଆମୋଦେ କରାଇ ଆନନ୍ଦ । ହୀରା ମାଣିକ୍ୟ ବଇଡ଼ୁର୍ଯ୍ୟ । ନୀଳମର୍କତମଣି ତେଜ । ପୁଷ୍ପରାଗ ପ୍ରବାଳମୟ । ସର୍ବେ ହେଲେ ଅଙ୍ଗାରମୟ । ହେମ ରଜତ କାଚପୁର । ସ୍ଫଟିକ ଚନ୍ଦନ ନଗର । ଜଗତୀ ଅଟ୍ଟାଳୀ ପ୍ରାସାଦ । ମେଡ଼ ମଣ୍ଡପ ଆଦି ସୌଧ ॥ ଯହିଁ ଯେତେ ଅସୁର ଥିଲେ । ବେଦନ କରିଣ ଉଠିଲେ ॥ ଅସୁରେ କରନ୍ତି ରୋଦନ । ଶୁଭଇ

ଶଙ୍କର ଭୁବନ ॥ ପ୍ରବଳ ହୋଇ କପିବଳ । ମାରୁଛନ୍ତି ଅସୁରକୁଳ ॥ ହେନ ଘଡ଼ି ଲଙ୍କାରେ ପଶି । ସମସ୍ତ କଲେ ଭସ୍ମ ରାଶି ॥ ରାବଣ ଦେଖିଣ ବସୁମ୍ମୀ । ନିଶ୍ୱାସ ତେଜଇ କ୍ରୋଧ ହୋଇ ॥ ବହୁ ପ୍ରତିଜ୍ଞାମାନ କଲା । କୁମ୍ଭ ନିକୁମ୍ଭଙ୍କୁ ରାଇଲା । ବୋଇଲା ମାର କପିବଳ । ତୁମ୍ଭଙ୍କୁ ଡ଼ରେ ଆଖଣ୍ଡଳ ॥ ଦେଖ ଲଙ୍କା ଦହନ କଲେ । ବହୁତ ଅସୁର ମାଇଲେ ॥ ଶୁଣି ନିକୁମ୍ଭ କୁମ୍ଭ ବେନ । ଗର୍ଜି ଉଠିଲେ ଶସ୍ତ୍ରଘେନ ॥ ରଣକୁ ହୋଇଲେ ବାହାର । ଆରୋହି ବେନରଥବର ॥ ଅକମ୍ପନ ପ୍ରଜଂଘ ବେନ । ଶୋଣିତାକ୍ଷକୁ ସଙ୍ଗେ ଘେନ ॥ ଜମ୍ବୁପାକ୍ଷହିଁ ଅଛି ସଙ୍ଗେ । ଅସୁରବଳ ଘେନ ରଙ୍ଗେ ॥ ବାହାର ହୋଇ ଯୁଦ୍ଧ କଲେ । ବାନର ଆଗେ ଓଗାଳିଲେ ॥ ଦେଖି ଅଙ୍ଗଦ ଅକମ୍ପନ । ଆଗରେ ହୋଇଲେ ବହନ ॥ ଦେଖି ଅସୁର ବର୍ଷେ ଶର । ଅଙ୍ଗଦ ମାରନ୍ତି ପଥର ॥ ସେ ଦୁଇ କ୍ଷଣେ କଲେ ରଣ । କ୍ଷମୀ ଅଟନ୍ତି ବେନ ଜଣ ॥ ଅଙ୍ଗଦ ଗିରିଶୃଙ୍ଗ ଘେନ । ମାଇଲେ ଅସୁର ମୁର୍ଦ୍ଧନ ॥ ଭୂମିରେ ପଡ଼ି ପ୍ରାଣ ଗଲା । ଦେଖି ଶୋଣିତାକ୍ଷ ଧାଇଁଲା ॥ ଅଙ୍ଗଦ ସଙ୍ଗେ କଲା ରଣ । ବର୍ଷଇ ବାଛି ତୀକ୍ଷଣ ବାଣ ॥ ଆକାଶେ ରଥ ନେଇଗଲା । ଅଙ୍ଗଦ ଆକାଶକୁ ଗଲା ॥ ଅସୁର କରୁ ଧନୁ ନେଇ । ଭାଙ୍ଗିଣ ଦେଲାକ ପକାଇ ॥ ଖଡ଼୍ଗଫଳା ଦୈତ୍ୟ ନେଲା । ବହୁ ସମରମାନ କଲା ॥ ଦେଖି ଅଙ୍ଗଦବୀର ଧାଇଁ । ଖଡ଼୍ଗ ଘେନଲେ ଛଡ଼ାଇ ॥ ଅସୁରଶିରେ ପ୍ରହାରିଲେ । ଭୂମିରେ ପଡ଼ି ମୋହ ଗଲେ ॥ ତା ଦେଖି ଦେଖି ବଜ୍ରପାକ୍ଷ ବୀର । ଅଙ୍ଗଦେ କଲାକ ସମର ॥ ମୋହରୁ ଉଠି ଶୋଣିତାକ୍ଷ । ସମର କଲାକ ଅସଂଖ୍ୟ ॥ ପ୍ରଜଂଘ ସହିତେ ବେଢ଼ିଲେ । ବହୁତ ଗର୍ଜ୍ଜନ ଛାଡ଼ିଲେ ॥ ବେଢ଼ିଣ କଲେମହାରଣ । ଏକା ଅଙ୍ଗଦ ଦୈତ୍ୟଗଣ । ଦୁର୍ବିନ୍ଦ ମହେନ୍ଦ୍ର ବାନର । ମାତୁଳ ଏହି ଅଙ୍ଗଦର ॥ ବଢ଼ିବା ଦେଖିଣ ପ୍ରତ୍ୟକ୍ଷ । ଓଗାଳିଲେ ଏ ଶୋଣିତାକ୍ଷ ॥ ଅଙ୍ଗଦ ଘେନିଣ କୃପାଣ । ପ୍ରଜଂଘ ସଙ୍ଗେ କଲେ ରଣ ॥ ଛେଦିଲେ ପ୍ରଜଂଘର ଶିର । ଭୂମିରେ ପଡ଼ିଲା ଅସୁର ॥ ମହେନ୍ଦ୍ର ଜମ୍ବୁପାକ୍ଷ ରଣ । ଦେଖନ୍ତି ଅସୁର ଗଣ ॥ ମଲ୍ଲ ବନ୍ଧରେ ରଣ କଲେ । ପଥରେ ନେଇ କଚାଡ଼ିଲେ ॥ ପ୍ରାଣ ହାରିଲା ଜମ୍ବୁପାକ୍ଷ । ଅସୁରେ ହୋଇଲେ ନିରେଖ ॥ ଦୁର୍ବିନ୍ଦ ଶୋଣିତାକ୍ଷ ମେଳ । ସେ ବେନ କଲେ ରଣ ଗାଳ ॥ ଦନୁଜ ଗଦା ପ୍ରହାରିଲା । ଦୁର୍ବିନ୍ଦ ଛଡ଼ାଇ ଆଣିଲା ॥ ସେହି ଗଦାରେ ତାକୁମାରୁ । ପଡ଼ିଲା ଦୈତ୍ୟ ପ୍ରାଣ ହାର ॥ ଦେଖିଣ ସୈନ୍ୟ ପଳାଇଲେ । ନିକୁମ୍ଭେ ଶରଣ ପଶିଲେ ॥ କୁମ୍ଭକର୍ଣ୍ଣ ପୁତ୍ର ସଙ୍ଗର । ଦୁର୍ବିନ୍ଦ କଲେକ୍ସ ସମର ॥ ଅନେକ ତରୁ ଶିଳା ଘେନ । ମାଇଲେ କୁମ୍ଭର ମୂର୍ଦ୍ଧନ ॥ କୁମ୍ଭ ବର୍ଷନ୍ତେ ତୀକ୍ଷଣ ଶର । ମୋହ ହୋଇଲେ

କପିବୀର ॥ ତା ଦେଖି ମହେନ୍ଦ୍ର ଧାଇଁଲେ । ତାଙ୍କ ସଙ୍ଗେ ବହୁ ରଣ କଲେ ॥ ବାନ୍ଧନ୍ତେ ମହେନ୍ଦ୍ର କୁମର । ମୂର୍ଚ୍ଛିତ ହେଲେ କପିବୀର ॥ ବେନି ମାତୁଳ ମୋହ ଗୃହୀ । ଅଙ୍ଗଦ ଅଇଲେକ ଧାଇଁ ॥ ପିଟନ୍ତେ ତାକୁ ଶିଳା ତରୁ । ଅସୁର କାଟିଲା ଦୂରରୁ ॥ ଅସୁର ବିନ୍ଧେ ତୀକ୍ଷ୍ଣ ଶର । ବାଜଇ ଅଙ୍ଗଦ ଶରୀର ॥ ଏଥି ମାରନ୍ତେ ମହାଶିଳ । କାଟଇ କୁମ୍ଭକର୍ଣ୍ଣ ବାଳ ॥ ଅସୁର ବାଛି ଘେନି ଶର । ପ୍ରହାର କଲାକ ସତ୍ୱର ॥ ଅଙ୍ଗଦ କପାଳେ ପଡ଼ିଲା । ବହୁତ ରୁଧିର ବହିଲା ॥ ଏଣୁ ଅଙ୍ଗଦ ମୋହ ହେଲେ । ବାନରେ ପଳାଇଣ ଗଲେ ॥ ଶ୍ରୀରାମେ କହିଲେ କେ ସେ ଯାଇଁ । ଅଙ୍ଗଦ ପଡ଼ିଲେ ଗୋସାଇଁ ॥ ସୁଗ୍ରୀବ ଥିଲେ ଯେ ସମ୍ମୁଖରେ । ଶୁଣିଣ ଅଇଲେ ସତ୍ୱରେ ରାମ । ଶୁଣିଣ ହେଲେ ତାପୀ । ପେଷିଣ ଦେଲେ ବହୁ କପି ॥ କୁମ୍ଭକୁ ବେଢ଼ିଲେ ସକଳଆପଣେ ବାନର ଭୂପାଳ ॥ କୁମ୍ଭକୁ ଯାଇ ଓଗାଳିଲେ ତରୁ ପଥର ବୃଷ୍ଟି କଲେ ॥ ଟଙ୍କାର କରି ଦୈତ୍ୟ ଧନୁ । ବିନ୍ଧଇ କୁମ୍ଭକର୍ଣ୍ଣସୂନୁ ॥ ସକଳ ତରୁ ଶିଳାମାନ । ଛେଦନ କଲେ ଘନ ଘନ । ୮୦ । କୁହୁଡ଼ି ପ୍ରାୟେକ ନାରାଜ ବିନ୍ଧେ କୁମ୍ଭକର୍ଣ୍ଣ ଆତ୍ମଜ ॥ ସୁଗ୍ରୀବ ଅଙ୍ଗେ ପଡ଼ି ଶର । ବାଜିଣ ଗଳଇ ରୁଧିର ॥ ସୁଗ୍ରୀବ ବହୁ ବିକ୍ଷୋଭ କଲେ । ଶାଳ ତରୁଏ ଉପାଡ଼ିଲେ । ପିଟନ୍ତେ କାଟିଲା ଦନୁଜ ସୁଗ୍ରୀବ ଦେଖିଣ ଆଶ୍ଚର୍ଯ୍ୟ ॥ ଡେଇଁ ତା ରଥରେ ବସିଲେ । ବହୁତ ତାକୁ ପ୍ରଶଂସିଲେ । ଧନ୍ୟ ତୋହର ଯୋଦ୍ଧାପଣ । କୁମ୍ଭକର୍ଣ୍ଣ ସୁତ ପ୍ରମାଣ । କିସ କରିବୁ ଏବେ କର । ବୋଲି ଧଇଲେ ଧନୁଶର ॥ ଭାଙ୍ଗିଣ ପକାଇ ତା ଦେଲେ ଏବେ କି କରିବୁ ବୋଇଲେ ॥ ରଥେ ବସିବାର ଦେଖିଲା । ଆଲିଙ୍ଗନ କରି ଧଇଲା ॥ ସେ ବେନି ଧରାଧରି ହେଲେ । ମାଲି ବନ୍ଧରେ ରଣ କଲେ ॥ ବେ ବେନି ମହୀରେ ପଡ଼ିଲେ । କେହି କାହାକୁ ନ ଛାଡ଼ିଲେ ॥ ସାଗରେ ପଡ଼ିଲେ ସେ ଯାଇଁ । ବେନି ମଳର ପ୍ରାୟ ହୋଇ ॥ ତହୁଁ ବାହାର ତାକୁ କଲେ । ମୁଥେ ତା ଶିରରେ ମାଇଲେ ॥ ବାହାର ହୋଇଲା ଅନଳ । ଅସୁର ହୋଇଲାବିକଳ ॥ ଭୂମିରେ ପଡ଼ି ମୋହ ଗଲା । ନିକୁମ୍ଭ ଆସି ରଣ କଲା ॥ ମାଇଲା ଅନେକ ବାନର । ବଜ୍ର ସମାନ ତାର ଶର ॥ ସୁଗ୍ରୀବ ଉପରକୁ ଆସେ । ହନୁ ମିଳିଲା ତାର ପାଶେ ॥ ତା ସଙ୍ଗେ କଲେ ବହୁ ରଣ । ଶାଳଶିଳା ବାଣମାରଣ ॥ ଅସୁର କରେ ଶରବୃଷ୍ଟି । ପିନ୍ଧୁଡ଼ି ନ ପାରନ୍ତି ବୃଷ୍ଟି ॥ ତା କରୁ ଧନୁ ହନୁ ନେଲା । ଆଣ୍ଠୁରେ ଭାଙ୍ଗି ପକାଇଲା ॥ ଅସୁର ଧରିଣ ହନୁକୁ । ଶୂନ୍ୟରେ ନେଲା ଆକାଶକୁ ॥ ଆକାଶେ ମାଲିରଣ କଲେ । ମୁଥରେ ମରାମରି ହେଲେ ॥ ହନୁ ଘୃଷିଲେ ତାର ଶିର । ମୁଥେକ କଲେକ ପ୍ରହାର ॥ ଭୂମିରେ ଆଣି

ପକାଇଲେ । ବେନି ପାଦେ ମର୍ଦ୍ଦନ କଲେ ॥ ପଡ଼ିଲା ନିକୁମ୍ଭ ଅସୁର । ମଲା ଉଦ୍‌ଗାରଣ ରୁଧିର ॥ କୁମ୍ଭ ନିକୁମ୍ଭ ଯେଣୁ ମଲେ । ଅସୁରେ ପଳାଇଣ ଗଲେ ॥ ସେ ବାର୍ତ୍ତା ପାଇଣ ରାବଣ । କଲା ବହୁତ ସେ କାରୁଣ୍ୟ ॥ ପୁଣି ହୋଇଲା କୋପମତି । ଚିନ୍ତେ ବସି ଜାନକୀପତି । ୧୯ ।

## ୩୪ଶ ଛାନ୍ଦ—ମକରାକ୍ଷସ ବଧ

ରାଗ—ପଞ୍ଚମବରାଡ଼ି । ବୃନ୍ଦାବତୀ ବାଣୀ

କୁମ୍ଭ ନିକୁମ୍ଭ ମରଣ, ଶୁଣିଣ କୋପେ ରାବଣ, ଖରସୁତକୁ ଚାହିଁ ବୋଇଲେ । ଆହେ ହେ ମକରାକ୍ଷସ, ତୁମ୍ଭେ ଏବେ ପାଅ ଯଶ, ରାମ ଲକ୍ଷ୍ମଣ ମାରି ଆସ ବୋଇଲେ ସେ । ଦଶଶିର । ଆଜ୍ଞା ପାଇଣ ଖରନନ୍ଦନ । ସଙ୍ଗେ ଘେନି ବାହାର ଅସୁର ସୈନ୍ୟ ସେ ॥ ଚଢ଼ି ହେମ ରଥବର, କରେ ଧରି ଧନୁଶର, ଲଙ୍କାକଟକୁ ହୁଏ ବାହାର । ବାଜଇ ଶଙ୍ଖ ମହୁରୀ, ଆବର ଝମକ ଭେରୀ, ଶ୍ୱେତପତାକା ଉଡ଼ଇ ଫରହର ସେ । ଦୈତ୍ୟବୀର । ଚତୁରଙ୍ଗ ବଳରେ ଅଇଲା । ଋକ୍ଷ ବାନର ଥାଟେ ପ୍ରବେଶ ହେଲା ସେ ॥ ଏକେ ଏକେ କଲେ ରଣ, ବାନର ଅସୁରଗଣ, ମିଶାମିଶି ହୋଇ ମରାମରି । ଘେନି ଶାଳଶିଳ, କୁଳ ପ୍ରହରିଲେ ବାନରବଳ, ଦେଖି ଖରସୁତ ରହିଲା ଆବୋରି ସେ । ବର୍ଷେ ନିରନ୍ତରେ ତୀକ୍ଷ୍ଣ ଶର । ଖରସୁତ ଶରେ ମଲେକ ବାନର ସେ ॥ ବିକଳ ହୋଇ କୋପୀ ପଳାଇଣ ଋକ୍ଷ କପି, ଶ୍ରୀରାମ ଶରଣ ପଶିଲେ । ରଘୁବୀର ଧନୁଶର, ଧରିଣ ଉଭା ଭୂମିର, ଆସନ୍ତେ ଦେଖି ରାମ ହସିଲେ ସେ । ଦୈତ୍ୟବୀର । କହଇ ଶ୍ରୀରାମକୁ ଉତ୍ତର । ତୁମ୍ଭ ପରି ମାରନ୍ତୁ ଆମ୍ଭ ପିଅର ସେ ॥ ଆଜ ମୁଁ ତୋତେ ମାରିବି, ପିଅର ଋଣ ଶୁଝିବି ଭାଗ୍ୟବଳେ ମୁଁ ପାଇଲି ଭେଟ । ଲକ୍ଷ୍ମଣ ସୁଗ୍ରୀ ସହିତେ ମରିବେ ମୋ ଶରଘାତେ, ଆଜ କାହିଁ କି ଯିବେ ଋକ୍ଷ ମର୍କଟ ହେ । ରଘୁବୀର । ଦେଖୁଥିବେ ସକଳ ଅମର । ଆଜପେଷିବି ମୁଁ ଶମନପୁର ହେ ॥ ହସିଣ ଯେ ରଘୁନାଥ, କହିଲେ ନାହିଁ ସାମର୍ଥ୍ୟ, ପରାକ୍ରମେ ବୀରପଣ ଜାଣି । ଏହିକ୍ଷଣି ତା ଜାଣିବା, ବଚନେ କେତେ ଭଣିବା, ଆମ୍ଭ ପ୍ରାକର୍ମ ନାହିଁ କି ତୁମ୍ଭେ ଶୁଣି ହେ । ଦୈତ୍ୟସୁତ । ଖର ଦୂଷଣ ତ୍ରିଶିରା ସଙ୍ଗେ । ଏକା ମାଇଲି ଚଉଦ ସହସ୍ର ରଙ୍ଗେ ହେ ॥ ଏମନ୍ତ ଶୁଣି ଦନୁଜ, ବୃଷ୍ଟି କଲାକ ନାରାଜ, କଲନା ନୋହିଲା ତାର କାଣ୍ଡ । ତା କାଣ୍ଡକେ ଶର ନାଶ କଲେ ରାମ ପ୍ରଚଣ୍ଡକାଣ୍ଡ, ଯେସନେ କ୍ଷୁଦ୍ରକର କାଟି ଇକ୍ଷୁଦଣ୍ଡ ସେ । ଦୈତ୍ୟବୀର । ପୁଣି କୁନ୍ତେ ବୁଲାଇ ମାଇଲା । ଶ୍ରୀରାମ ତିନିକାଣ୍ଡେ ଖଣ୍ଡଖଣ୍ଡ ହେଲା ସେ ॥

କୋଦଣ୍ଡରେ ଶର ସନ୍ଧି, ଦୈତ୍ୟ ଉପରକୁ ବିନ୍ଧି, କାଟିଲେ ତା କରୁ ଶର ଧନୁ । ପୁଣିହିଁ ଶରେ ପ୍ରହାରି, ସାଥି ଅଶ୍ୱକୁ ମାରି, ଶୂନ୍ୟକରି ହୋଇଲା ସୈନ୍ୟସେନୁ ସେ । ଦୈତ୍ୟବୀର । ଯେତେ ଯେତେ ବିନ୍ଧୁଥିଲା ଶର । ଏହିରୂପେ କାଟୁଥିଲେ ରଘୁବୀର ସେ ॥ ଅଗ୍ନିଶସ୍ତ୍ର କରେ ଧରି, ବସାଇ କୋଦଣ୍ଡେ କରି. ଦୈତ୍ୟ ଉପରକୁ ପ୍ରହାରିଲେ । ପଶିଣ ହୃଦରେ କାଣ୍ଡ, ଜଳିଲା ହୋଇ ପ୍ରଚଣ୍ଡ, ଭୂମିରେ ପଡ଼ି ମକରାକ୍ଷସ ମଲେ ସେ । ଦୈତ୍ୟ ବୀର ତାର ସଙ୍ଗରେ ଯେତେକ ଥିଲେ । ରାମଚନ୍ଦ୍ର ବାଣେ ପ୍ରାଣ ହରିଲେ ସେ ॥ ଶ୍ରୀରାମ ଲକ୍ଷ୍ମଣ ନାରାଚେ, ମଲେ ବହୁତ ଦନୁଜେ, ଯାହା ଥିଲେ ପଳାଇଣ ଗଲେ । ଲଙ୍କାରେ ଯାଇ ପଶିଲେ, ରାବଣ ଆଗେ କହିଲେ, ଦେବ ମକରାକ୍ଷସ ଆଜହିଁ ମଲେ ସେ । ଦୈତ୍ୟବୀର । ଶୁଣି ବହୁତ ବିସ୍ମୟ ହେଲା । ଦନ୍ତ ରଟମଟ କରି ଗ୍ରେବାଇଲା ସେ ॥ ନିର୍ଧୂମ ଅନଳ ପ୍ରାୟେ, ନୟନ ଦୁଇ ଜ୍ୱଳଏ, ଭ୍ରୁକୁଟି କଲା ଦଶକପାଳ । ଦଶହରକୁ ଅନାଇ, ଖରନିଃଶ୍ୱାସ ପକାଇ, ଖରସୁତ ମଲା ବୋଲିଣ ବିକଳ ସେ । ଦଶଶିର । କ୍ଷଣେ ଯାଏ ହୋଇଲା ଅଜ୍ଞାନ । ବସି ଚିନ୍ତେ ରାମ ରାଜୀବଲୋଚନ ସେ ॥



## ୪୪ଶ ଛାନ୍ଦ—ମାୟାସୀତା ବଧ

ରାଗ—କୌଶିକ

ଶକ୍ରଜିତକୁ ଅଣାଇଣ ରାବଣ କହଇ ପ୍ରଶଂସା କରିଣ । ସୁରପତିକ ଧରି ଆଣିଲାକାରୁ ଜାଣଇ ତୋର ବୀରପଣ । ଆହେ । କୁମର । ରାମ ଲକ୍ଷ୍ମଣ ସଂହାର । ତୋହ ବିନୁ ତାଙ୍କୁ ଜିଣିବାକୁ ନାହିଁ ଲଙ୍କା ଭିତରେ ଏଡ଼େ ବୀର ॥ ଦୃଶ୍ୟ ଅଦୃଶ୍ୟ ହୋଇଣ ତାର ସଙ୍ଗେ କରିବ ଭୁମ୍ଭେ ମାୟାରଣ । ବେନି ଥର କ କ ପ୍ରକାରେ ବର୍ତ୍ତିଲେ ଏବେ ତୋ ଶରେ ଦେବ ପ୍ରାଣ । ଶୁଣି କୁମର । ରାବଣ ମୁଖରୁ ବଚନ । ଶିରେ କର ଦେଇ ମେଲାଣି ହୋଇଲା ଆରୋହିଲା ତା ନିଜ ଯାନ ॥ ଚତୁରଙ୍ଗବଳ ଆଗରେ ପେଷିଣ ହୋମସ୍ଥାନକୁ ବୋଲି ଗଲା । ବିବିଧ ଆୟୁଧମ ନ ତହିଁ ରଖି ପଶୁରୁଧିରେ ହୋମ କଲା । ରକ୍ତ ବସନ । ରକ୍ତକୁସୁମ ରକ୍ତଗନ୍ଧ । ଲୌହ ସ୍ରୁବରେ ଛାଗଳର ରୁଧିର ମାଂସ ହୋମ କରି ଆନନ୍ଦ ॥ ଦକ୍ଷିଣାବର୍ତ୍ତ ହୋଇଣ ବୈଶ୍ୱାନର ଜ୍ୱଳିଣ ଆହୁତି ଘେନିଲେ । ଜାଣି କାର୍ଯ୍ୟସିଦ୍ଧି ଶକ୍ରାଜିତବୀର ବାହୁଡ଼ି ରଥ ଆରୋହିଲେ । ସେହିକ୍ଷଣି ଟସ । ରଥ ଘେନି ହେଲା ଅଦୃଶ୍ୟ । ଆକାଶେ ତାହାକୁ ନ ଦେଖିଲେ କେହି ତାକୁ ହୁଅଇ ସବ ଦୃଶ୍ୟ ॥ ଶ୍ରାବଣ ମାସର ଜଳଧାରା ପ୍ରାୟ ଶର ବୃଷ୍ଟି କଲା ଗଗନୁ । ମହାମେଘ ହୋଡ଼ାଇଲା ପ୍ରାୟ ହୋଇ ଉହାଡ଼

କଲ ଦେବ ଗନ୍ଧ । ଦେଖି ଚକିତ । ହୋଇଲେ ଶ୍ରୀରାମ ଲକ୍ଷ୍ମଣ । ଊର୍ଦ୍ଧ୍ୱମୁଖ ହୋଇ ଆକାଶେ ଗୃହାନ୍ତେ ମୁଖେ ପଡ଼ଇ ବାଣଗଣ ॥ ଋକ୍ଷ କପିବଳ ହୋଇଲେ ଆକୁଳ ଆକୁଳେ ବୋଲନ୍ତି ଲକ୍ଷ୍ମଣ । ଏ ଶରଘାତ ମୁଁ ସହ୍ୟ ନ ପାରଇ ବିକଳ ହୋଉଛି ମୋ ପ୍ରାଣ । ଆଜ୍ଞା ହୋଇଲେ । ବ୍ରହ୍ମଅସ୍ତ୍ର ମୁହିଁ କରିବି । ଦେବ ଦାନବ ମାନବ ସନ୍ଧଚେଣ ଏକାବେଳକେ ସଂହାରିବି ॥ ରାମ ବୋଲନ୍ତି ଜଣକ ଅପରାଧେ ଏଡ଼େ ଅଧର୍ମକୁ କରିବ । ସମସ୍ତେ ଅବା ତୁମ୍ଭଙ୍କୁ କସ କଲେ କପାଇଁ ତାହାଙ୍କୁ ମାରିବ । ଏମନ୍ତ କହି । ଶରକୁ ପ୍ରତିଶର କଲେ । ଦଣ୍ଡେମାତ୍ର ରହ ଏହାଙ୍କୁ ମାରିବା ବୋଲି ଶ୍ରୀମୁଖେ ଆଜ୍ଞା ଦେଲେ ॥ ଏତେ ବୋଲି କୋଦଣ୍ଡରେ ଅସ୍ତ୍ର ସନ୍ଧି ଆକାଶକୁ ଗୃହିଁ ରହିଲେ । ନିଶ୍ଚୟ ମାରିବା ଦେଖିଣ ଅସୁର ମନରେ ମହାଭୟ କଲେ । ମାୟା କରିଣ । ଉପାୟ ତହିଁ ଭିଆଇଲେ । ମାୟା କରିଣ ସୀତାଏ ଆରୋପିଣ ରଥେ ତାହାଙ୍କୁ ବସାଇଲେ ॥ ଦେଖିଲା ହନୁ ରଥରେ ବସିଛନ୍ତି ଜନକରାଜନ ଦୁହିତା । ରାମରଖ ରାମରଖ ବୋଲୁଛନ୍ତି ବିକଳେ ଶ୍ରୀରାମ ବନିତା । ତାହା ଦେଖିଣ । ହନୁ କରେ ବହୁ ରୋଦନ । ରୋଦନ ଦେଖିଣ ରାବଣ ନନ୍ଦନ କହଇ ବହୁତ ବଚନ ॥ ତୁମ୍ଭେ ତ ଏହାଙ୍କୁ ନ ନେଲେ ନ ଯିବ ରାଜା ତ ଆମ୍ଭର ନ ଦେବେ । ଏହାଲାଗି କେତେ ଅସୁର ବାନର ଆହୁରି ବିଅର୍ଥେ ମରିବେ । ଏଣୁ କରିଣ । ହାଣୁଥିଲି ମୁହିଁ ଏହାଙ୍କୁ । ଏବେ ମୁଁ ତୁମ୍ଭର ଆଗରେ ହାଣୁଛି ତୁମ୍ଭର ପ୍ରତେ କରିବାକୁ ॥ ଏମନ୍ତ କହି ପାଦେ ତାକୁ ପ୍ରହାର କରେ ଘେନିଲା ଅସିବର । ବେନିଖଣ୍ଡ କରି ହାଣି ପକାଇଲା ଅନାଇ ଥିଲେ ହନୁବୀର । ପୁଣି ବୋଇଲା । ବାହୁଡ଼ି ଯାଅ ବନଚର । ତୁମ୍ଭ ଆମ୍ଭ ଗୋଳ ଯହିଁରୁ ହୋଇଲା ତାକୁ ପେଷିଲୁ ଯମପୁର ॥ ଏହା ଦେଖି ହନୁ କରୁଗିରିବର ରଥରେ ତାର କରିଗୃଡ଼ିଲା । ସାରଥି ରଥ ପଛକୁ ଘେନିଗଲା ସେ ଗିରି ବିଅର୍ଥ ହୋଇଲା । ବହୁ ରୋଷରେ । ବହୁ ରଣ କଲା ମାରୁତି । ସମସ୍ତ କପି ତରୁ ଶିଳା ମାରନ୍ତେ କାଟଇ ବଜ୍ରବାର ନାତି ॥ ବେଢ଼ି କପି ମାରିବାର ଦେଖି ଦୈତ୍ୟ ମନରେ ଏମନ୍ତ ପାଞ୍ଚିଲା । ନିକୁମ୍ଭବଟ ତଳେ ହୋମ କରିବି ବୋଲି ଶୀଘ୍ରେ ରଣ ମୁଞ୍ଚିଲା । ଯାନ୍ତେ ପଳାଇ । ଗୋଡ଼ାଇ ଛନ୍ତି ବନଚର । ତରୁ ଶିଳା ରଥ ଉପରେ ମାରନ୍ତେ ସହଇ ରାବଣ କୁମର ॥ ଖଣ୍ଡ ଦୂର ଗୋଡ଼ାଇଣ ହନୁ କପିସୈନ୍ୟ ଘେନିଣ ବାହୁଡ଼ିଲେ । ନିକୁମ୍ଭବଟ ତଳରେ ଶଙ୍କାଜିତ ଯାଇଣ ପ୍ରବେଶ ହୋଇଲେ । ଚଉପାଶରେ । ଅସୁର ସୈନ୍ୟ ଜଗାଇଲେ । ସକଳ ସାମଗ୍ରୀ ଘେନି ଶୁଦ୍ଧମନ୍ତ୍ର ହୋମ ହୋମ କରି ବସିଲେ ॥ ଶ୍ରୀରାମ, ପଶ୍ଚିମ ଦ୍ୱାରେ ରଣ ଶୁଣି ଋକ୍ଷ-

ପଣ୍ଡିଙ୍କି ପେଷିଦେଲେ । ଊଷବଳ ଘେନି ଚଳନ୍ତେ ଜାମ୍ବବ ମାର୍ଗରେ ହନୁକୁ ଭେଟିଲେ । ଦୂତେ ବାହୁଡ଼ି । ଶ୍ରୀରାମ ସନ୍ନିଧେ ପ୍ରବେଶ । ବୋଲେ ବଣି ରାମ ଦେଖିଲେ ହସୁଅଛୁ ଅତି ବିରସ । ୧୫ ।



## ୪୫ଶ ଛାନ୍ଦ

ରାଗ—ପଞ୍ଚମବରାଡ଼ି

ଶୋକେ ଯାଇ ହନୁମାନ, ରାମଙ୍କୁ କରି ଦର୍ଶନ, କହିଲା ସେ ଯୁଦ୍ଧର ବିଧାନ । ରାବଣ ଜ୍ୟେଷ୍ଠନନ୍ଦନ ସୀତାଙ୍କୁ ବସାଇ ଯାନ, ଆଣନ୍ତେ କରୁଥିଲେ ରୋଦନ । ଭୋ ଦେବ ସେ । ଖଡ୍‌ଗରେ ବେନିଖଣ୍ଡ କଲା । ଯାହାଁପାଇଁ କଲି ରଣ, ତାର ଦେଖିଲି ମରଣ, ଏତେ ରଣ ଅକାରଣ ହେଲା ॥ ହନୁମୁଖଁ ଶୁଣି ରାମ, ଜ୍ଞାନ ହାରିଗଲେ ନାମ, ଧନୁଶର ପକାଇ ଭୂମିର । ଏମନ୍ତ ଦେଖି ଲକ୍ଷ୍ମଣ, ଜଳ ସିଞ୍ଚି ସେହିକ୍ଷଣ, ଆଉଜାଇଲେ ଆପଣା ଉର । ଭୋ ଦେବ ହେ । କରିଥାଅ ଧର୍ମକୁ ଆଦର । ଧର୍ମ କଲେ କେତେ ଦୂର, କେଉଁ ଅଧର୍ମ ଭୁମ୍ଭର, ଜାଣିଲ ଧର୍ମେ ହୁଏ ଅସାର ॥ ଧର୍ମ ଅଧର୍ମ ଯୁଝିଲେ, ଦୁହେଁ ପ୍ରାଣ ହରାଇଲେ, ଏଣୁ ଧର୍ମ ଅଧର୍ମିକି ନାହିଁ । ମହା ଅଧର୍ମୀ ରାବଣ, ଦେଖ ପୁତ୍ର ନାତିଗଣ, ଧର୍ମ ଥିଲେ କି ମରନ୍ତେ ନାହିଁ । ଭୋ ଦେବ ହେ । ଧର୍ମ ଅଧର୍ମକୁ ଯେ ଡରଇ । ଜାଣିଲି ମୁଁ ଏତେକାଳେ, ଦେଖିଲି ମୁଁ ବେନିଡୋଳେ, ସଂସାରେ ସେ ବହୁ ଦୁଃଖ ପାଇ ॥ ପୁଣି ବୋଲନ୍ତି ଲକ୍ଷ୍ମଣ, ଧର୍ମ କରନ୍ତି ପ୍ରମାଣ, ନସହା ଦୁର୍ବଳ ଜନମାନେ । ସେହିରୂପେ ଭୁମ୍ଭ ମତି, ବୋଲ ମୋର ଧର୍ମଗତି, ଏଣୁଟି ପଶିଲ ଆସି ବନେ । ଭୋଦେବ ହେ । ଧର୍ମ କର ଧନ ଥିଲେ ସିନା । ଧର୍ମରେ ସମସ୍ତ ଗୁଣ, ମୂର୍ଖରେ ପଣ୍ଡିତପଣ; ପାତକୀ ହୁଅନ୍ତେ ଧନ ବିନା ॥ ଘେନି ମୁଁ ବ୍ରହ୍ମଅସ୍ତ୍ରକୁ; ମାରୁଥିଲି ସମସ୍ତଙ୍କୁ, ବୋଇଲେ ଜଣେ କରିଛୁ ଦୋଷ । ଧର୍ମତଃ ବିରୋଧ କର, ଅଧର୍ମ କପଟାଇ କର, ସମସ୍ତ ଜନଙ୍କର କି ଦୋଷ । ଭୋ ଦେବ ହେ । ସେ ଧର୍ମ ତ ଏବେ ନ ରଖିଲା । ପ୍ରମାଦ ଶିରେ ପ୍ରମାଦ, ସନ୍ତତ ହୁଏ ବିଷାଦ, ବେଳକୁ ବେଳ କଷଣ ଦେଲା ॥ ଏମନ୍ତ ଶ୍ରବଣେ ଶୁଣି, ମୋହ ତେଜି ରଘୁମଣି, ପ୍ରିୟାଶୋକେ ହୋଇଲେ କାତର । ଏମନ୍ତ ଦେଖି ଲକ୍ଷ୍ମଣ; ବୋଲନ୍ତି ଭୋ ଦେବ ଶୁଣ, ମାରିବି ମୁଁ ନଷ୍ଟେ ଦଶଶିର । ଭୋ ଦେବ ହେ । ତେବେ ଅଯୋଧ୍ୟାକୁ ଆମ୍ଭେ ଯିବା । ଏ ଲଙ୍କାଗଡ଼ରେ ଯେତେ, ଅସୁରମାନେ ଅଛନ୍ତି ଯେତେ, ଅଛନ୍ତି ତାହାଙ୍କୁ ନ ରଖିବା ॥ ଏହିକାଳେ ବିଭୀଷଣ, ପରିବେଶ ସେହିକ୍ଷଣ, ଦେଖିଲେ

ଶ୍ରୀରାମଙ୍କ ବିଳାପ । ସୀତାର ବିନାଶ ଶୁଣି; ବିଳପନ୍ତେ ରଘୁମଣି, ବିଭୀଷଣ ବୋଲେ ମୁଞ୍ଚ ତାପ । ଭୋ ଦେବ ହେ । ସୀତାଙ୍କୁ ଦେଖିବ ସେହି କାହିଁ । ଇନ୍ଦ୍ରଜିତ ମାୟା କଲା; ହନୁ ଜାଣି ନ ପାରିଲା, ହୋମ କରୁଅଛି ଏବେ ଯାଇଁ ॥ ବିଭୀଷଣ ମୁଖରୁ ଶୁଣି, ହୃଷ୍ଟ ହୋଇ ହୋଇ ରଘୁମଣି, କୋଦଣ୍ଡ ଧଇଲେ ବାମପାଣି । ବୋଲଇ ଦୁଷ୍ଟ ରାବଣି, ଏବେ ନକ ଯିବ ଜିଣି, ଶରେ ଶିର ପକାଇବ ହାଣି । ଭୋ ଦେବ ହେ । ବିଭୀଷଣ ପ୍ରଶଂସା କରନ୍ତି । ଛାଡ଼ିଲେ ଶୋକ ସନ୍ତାପ, ବଢ଼ିଲା ବିଷମ କୋପ, ବସି ଭଜଇ ଜାନକୀପତି ॥

—×—

## ୪୭ଶ ଛାନ୍ଦ ଲକ୍ଷ୍ମଣ ଇନ୍ଦ୍ରଜିତର ଯୁଦ୍ଧ

ରାଗ—ଚକ୍ରକେଳି

କରଯୋଡ଼ି କହେ ବିଭୀଷଣ । ଭୋ ଦେବ ମୋର ବିନୟ ଶୁଣ ॥ ସଂଗ୍ରାମ ତେଜି ଗଲା ମେଘନାଦ । ରାଜାଧିରାଜ ହେ । ହେବ ବଡ଼ ପ୍ରମାଦ ॥ ଲଙ୍କାର ପଶ୍ଚିମଦ୍ୱାର ନିକଟ । ଅଛଇ ତହିଁ ନିକୁମ୍ଭିଳା ବଟ । ତହିଁର ମୂଳେ ସେ ହୋମ କରିବ । ରାଜାଧିରାଜ ହେ । ରଥେ ବାହାର ହେବ ॥ ସେ ରଥେ ବସି ହୋଇବ ବିଜୟୀ । ଏମନ୍ତ ବର ଧାତା ଅଛି ଦେଇ । ସାବଧାନ ହୋଇ କରିବା ରଣ । ରାଜାଧିରାଜ ହେ । ପେଷ ବୀର ଲକ୍ଷ୍ମଣ ॥ ସାମାନ୍ୟ ନୁହେ ରାବଣ କୁମର । ଶତ୍ରୁଙ୍କୁ ଜିଣିଅଛି ବହୁବାର । ଏଥକୁ ଦେବ ନ କରିବ ହେଳା । ନଷ୍ଟେ ମାରିବା ହେ । ମନ୍ଦୋଦରୀଙ୍କ ବଳା ॥ ଶୁଣି ରାମ ଲକ୍ଷ୍ମଣଙ୍କୁ ଚାହିଁଲେ । ସଜ ହୋଇ ଆସ ବୋଲି ବୋଇଲେ ॥ ଶୁଣି ଲକ୍ଷ୍ମଣ ଶ୍ରୀରାମ ବଚନ । ଅଙ୍ଗେ ଲାଇଲେ ହେ । ଅଭେଦ କବଚମାନ ॥ ବେନି କନ୍ଧେ ବେନି ତୂଣୀ ଛନ୍ଦିଲେ । ଶତ୍ରୁ ନାଶ ଖଣ୍ଡା ବାମେ ପିନ୍ଧିଲେ । ବେଦବନ୍ତ ଶର ସଂଗ୍ରହ କଲେ । ଇନ୍ଦ୍ର ଦେବାର ହେ । ଧନୁ କରେ ଧଇଲେ ॥ ଶ୍ରୀରାମ ଚିତ୍ତରେ ହୋଇଲେ ଉଭା । ସୈନ୍ୟର ଭିତରେ ହସିଲେ ଶୋଭା । ଶ୍ରୀରାମ ପାଦ ଛୁଇଁଲେ ତ୍ୱରିତ । ପ୍ରଣାମ କଲେ ହେ । ସୁମିତ୍ରାଙ୍କର ସୁତ ॥ ରାମ କହନ୍ତି ବିଭୀଷଣେ ଚାହିଁ । ଏହାଙ୍କର ପାଶ ଛାଡ଼ିବ ନାହିଁ । ହନୁ ଅଙ୍ଗଦ ସଙ୍ଗତରେ ଥିବେ । ନଳ ନୀଳାଦି ହେ । ସମସ୍ତ କପି ଯିବେ ॥ ଯେତେ ଯେତେ ଅଛନ୍ତି ମହାବୀର । ସମସ୍ତେ ଯାଇଣ ସମର କର । ରାମ ମୁଖରୁ ଶୁଣି କପିସଇନା । ବାହାର ହେଲେ ହେ । ଲକ୍ଷ୍ମଣ ସଙ୍ଗେ ତ୍ୱରନ ॥ ବେଢ଼ିଲେ ଲଙ୍କାର ପଶ୍ଚିମଦ୍ୱାର । ଦେଖିଲେ ବେଢ଼ି ଅଛନ୍ତି ଅସୁର । ବିଭୀଷଣ ଲକ୍ଷ୍ମଣଙ୍କୁ କହିଲେ । ସୈନ୍ୟ ମାଇଲେ ହେ । ସେ ଆସିବ ବୋଇଲେ ॥ ଶୁଣି ସଂଗ୍ରାମ କଲେ କପିବଳ । ପିଟିଲେ ଶାଳ ଉପୁଡ଼ିଲେ ଶିଳା । ଅସୁର ମାଇଲେ

ହୋଇ ପ୍ରବଳ । ଉଭୟେ ବଳୟେ ବଳ ହେ । ସଂଗ୍ରାମ ବେଳୁ ବେଳ ॥ ହନୁ ଅଙ୍ଗଦ ଦ୍ୱିବିନ୍ଦ୍ର ମହେନ୍ଦ୍ର । ନଳ ନୀଳ ସୁଷେଣ ଯେ ସୁଗନ୍ଧ । ପନସ ରମ୍ଭା ମହା ମହା ବୀର । ସମର କଲେ ହେ । ସେ ଦୈତ୍ୟ ଅଗୋଚର ॥ ଧନୁ ଧରିଣ ଆଗେ ବିଭୀଷଣ । କୋପେ ଛାଡ଼ଇ ଶତ ଶତ ବାଣ । ଚାରିମନ୍ତ୍ରୀ ଘେନି କରନ୍ତେ ରଣ । ବହୁ ମାଇଲେ ହେ । ସେହି ଅସୁରଗଣ ॥ ବଡ଼ ବଡ଼ ଯହିଁ ଅସୁର ମଲେ । ଯେତେ ଥିଲେ ସେ ସମର୍ଥ ନୋହିଲେ । କହିଲେ ଯାଇ ମେଘନାଦ ଆଗେ । ହୋମ ନ ସରୁ । ସେହୁ ଅଇଲେ ବେଗେ ॥ ଅଙ୍ଗରେ ନାଇଲେ ବଜ୍ର କବଚ । ଖଣ୍ଡା ଯମଦାଢ଼ ତୂଣ ସୁସଞ୍ଚ । ବୀରବେଶ ହୋଇ ବୀର ରାବଣି । ସାରଥି କଲେ ହେ । ରଥବରକୁ ଆଣି ॥ କୃଷ୍ଣ ଅଶ୍ୱ ଏକ ରଥରେ ଯୋଚି । ଧନୁ ଟଙ୍କାର କରିଣ ଆମନ୍ତ୍ର । ଦିବ୍ୟ ବେଶରେ ଦିଶୁଅଛି ତୋରା । ରଥେ ବସିଲେ ହେ । କାଳଦେବତା ପରି ॥ ରଥ ଆଣି କଲେ ଲକ୍ଷ୍ମଣ ଆଗେ । ବିଭୀଷଣଙ୍କୁ ଚାହିଁ କହେ ରାଗେ । ଆରେ କୁଳାଙ୍ଗାର ଅସୁରାଧମ । କେତେକାଳରୁ ରେ । ପୀଢ଼ିଛି ତୋର ରାମ ॥ ଏକା ଗର୍ଭରୁ ହୋଇଲୁ ଜନମ । ପିତା ହୋଇ ଚାହୁଁ ପୁତ୍ର ମରଣ । ମୋତେ ମାରିବାକୁ ଆସିଛୁ ଧାଇଁ । ଏଡ଼େ ନିଷ୍ଠୁର ରେ । ହୋଇଲୁ ତୁ କିପାଇଁ ॥ ଏମନ୍ତ ବୋଲିଣ କରେ ସମର । ଦେଖିଣ ପକାଇଲେ ବନଚର । ଲକ୍ଷ୍ମଣ ଧନୁ ଧରି ଆଗୁସାର । ହନୁ ପିଠିଲ ଯେ । ରଥରେ ଚତୁବର ॥ ପୁଣି ହନୁ ଶିଳେ ମାରନ୍ତେ ଖଣ୍ଡେ । ରାବଣ ତନୁଜ କାଟିଲା କାଣ୍ଡେ । ଯେତେ ମାରନ୍ତି ଯୂଥପତିମାନେ । ରାବଣସୁତ ହେ । କାଟନ୍ତି ସାବଧାନେ ॥ ଦେଖି ଲ ଧନୁ ଧରି ବିଭୀଷଣ । ମର୍ମସ୍ଥାନକୁ ବିନ୍ଧୁଛନ୍ତି ବାଣ । ଅନାଇ ପୁଣି ବୋଲଇ ବଚନ । ଧିକ ଧିକ ଆରେ । ତୋର ନିର୍ଲଜପଣ ॥ ମୁଁ ତୋର ପୁତ୍ର ମରାଇବୁ ମୋତେ । ରାମ ତୋର କିସ କି ଦେବ ତୋତେ । ସୋଦର ଛାଡ଼ି ପରକୁ ଆବୋରୁ । ଅସତ୍ତି ଧି ଘର । ପରପେ ଧର୍ମ କରୁ ॥ ବିଭୀଷଣ ବୋଲେ ଶୁଣରେ ସୁତ । ମର୍ମ ଥିଲି ଜନ ମୋହର ମିତ । ରହେ ନିର୍ମିତ ଯେଉଁ ପୁର କରି । ଅଗ୍ନି ଲାଗିଲେ ଯେ । ତହିଁ ପଶିକି ମରି ॥ ବହୁତ ଅଧର୍ମ କଲା ତୋ ତାତ । ତେଣୁ ତା ସଙ୍ଗ ହୋଇଲି ମୁକତ । ନ ଜାଣୁ କି ତୁହି ମୋର ସ୍ୱଭାବ । ଋଷି ବୋଲଇ ହେ । କହ ଏବେ କି ହେବ । ୨୪ ।

—X—

## ୪୭ଶ ଛାନ୍ଦ—ଇନ୍ଦ୍ରଜିତ ବଧ

### ରସକୋଇଲି ବାଣୀ

ଲକ୍ଷ୍ମଣ ଇନ୍ଦ୍ରଜିତ ଗୁରୁ ରଣ । ମହାକ୍ଷଣୀ ଅତ୍ୟନ୍ତ ବେନି ଜଣ । ଶର ଆତଯାତେ ନ ଦିଶେ ଭାନୁ । ମଣ୍ଡଳାକାର ଦିଶେ ବେନି ଧନୁ ସେ । ବନ୍ଧିବା ଭୁଜ ନ ଦିଶେ ସେ । ହନୁ କନ୍ଧରେ ଆରୋହି ରାମାନୁଜ ଦିଗ୍ଗଜେନ୍ଦ୍ର ପ୍ରାୟେ ଦିଶେ ସେ ॥ ଲକ୍ଷ୍ମଣ ପେଷିଲେ ବାବନ ଶର । କାଟିଲେ ଅସୁରର ଧନୁଶର । ପୁଣି କୋପେ ବିନ୍ଧିଲେ ପାଞ୍ଚକାଣ୍ଡ । କାଟିଲେ ଅଶ୍ୱ ସାରଥିର ମୁଣ୍ଡ ସେ । ରଥ କଲେ ହନୁ ଭଙ୍ଗ ସେ । ସେହିକ୍ଷଣି ଅନ୍ୟ ରଥେ ଆରୋହିଣ ଯୁଝିଲା ଲକ୍ଷ୍ମଣ ସଙ୍ଗ ସେ ॥ ବିନ୍ଧନ୍ତେ ଶରେ ଶର ପରତାଳ । ଜଳଇ ଚହୁଁ ନିର୍ଧୂମ ଅନଳ । ଦେଖି ତରଳ ହୋଏ ବେନିବଳ । ଉତପାତ ଜାତ ବେଳକୁବେଳ । ସେ ଦନୁଜ ରଣେ ପ୍ରବଳ ସେ । ତିନି କାଣ୍ଡ ବାଛି ବିନ୍ଧିଲେ ବାଜିଲା ଲକ୍ଷ୍ମଣଙ୍କର କପାଳ ସେ ॥ ଗଳୁଅଛି ତିନି ଧାର ରୁଧିର । ଫୁଫୁକାର କରି ବିନ୍ଧନ୍ତି ଶର । ବିଷମ ବ୍ୟଥା ପାଇଣ ଲକ୍ଷ୍ମଣ । ବାଛି ବିନ୍ଧିଲେ ଶର ସେହିକ୍ଷଣ ସେ । ଅଙ୍ଗ କବଚ କାଟିଲେ ସେ । ଉର ଉପରେ ବସିଣ ଶର ରୁଧିର ବାହାର କଲେ ସେ ॥ ସେହିକା ଉପରେ କାଣ୍ଡମାନ ବସେ । ଝିଙ୍କପକ୍ଷୀ ପ୍ରାୟେ ଶରୀର ଦିଶେ । କି ଅବା ଫୁଟିଲା ପଲାଶ ତରୁ । ତେସନ ରୁଧିର ବେନି ଅଙ୍ଗରୁ ସେ । ନାଗଫୁଲ ପ୍ରାୟେ ଶୋଭଯେ । ବେନିବୀରେ ବେଳୁବେଳ ବଳବନ୍ତ ନିଜ ଭୁଜବଳ ପ୍ରଭା ଯେ ॥ ଆକାଶେ ଭାଳନ୍ତି ଅମରଗଣ । ନପୁଣ ଅସୁର ମାରେ ଲକ୍ଷ୍ମଣ । ଏମନ୍ତ ବୋଲିଣ ଜପୁ ବାଞ୍ଛିଲେ । ଲକ୍ଷ୍ମଣ ବିଜୟୀ ହେଉ ବୋଇଲେ ସେ । ବହୁତ କଲ୍ୟାଣ କଲେ ସେ । ଦେବତା ଋଷିଙ୍କ କଲ୍ୟାଣେ ଲକ୍ଷ୍ମଣ ବହୁ ବଳବନ୍ତ ହେଲେ ସେ ॥ ପୁଣି ଲକ୍ଷ୍ମଣ ପେଷି ଦିବ୍ୟଶର । କାଟି ରଥଧ୍ୱଜ ସାରଥି ଶିର । ବିରଥୀ ହୋଇଣ ରାବଣସୁତ । ନିଜ ପୁରକୁ ସେ ଗଲେ ତ୍ୱରିତ । ହେମ ରଥବରେ ଚଢ଼ି ସେ । ଲକ୍ଷ୍ମଣ ସମ୍ମୁଖେ ପ୍ରବେଶ ହୋଇଲେ କରି ମହାଘୋର ରଡ଼ି ସେ ॥ ପୁଣିହିଁ ସଂଗ୍ରାମ କଲେ ବହୁତ । ପ୍ରଚଣ୍ଡଶର କରି ସୁମିତ୍ରାସୁତ । ବେଳକୁ ବେଳ ବଢିଲା ସମର । ଦେଖି ଭାଳିଲେ ବିଭୀଷଣ ବୀର । ମୁଁ କରିବି ଏବେ ରଣ ଯେ । ଦଣ୍ଡେ ବିଶ୍ରାମ କରନ୍ତୁ ଏବେ ଶାନ୍ତି ହରନ୍ତୁ ବୀର ଲକ୍ଷ୍ମଣ ସେ ॥ ଏହା ବିଚାରି ବିଭୀଷଣ ବୀର । ଧନୁ ଧରିଣ ହେଲେ ଅଗ୍ରସର । ବିନ୍ଧିଲେ କୋପେ ଅନେକ ନାରାଚ । ଛେଦଇ ତାହା ରାବଣ ଆତ୍ମଜ ସେ । ଅସୁରେ ଅସୁର ରଣ ସେ । ପୁଣି ଧିକାର କରଇ ଶକ୍ରଜିତ ଧିକ ତୋ ମୃଷାର୍ଥପଣ ସେ ॥ ବିଭୀଷଣ ବୋଲେ ଶୁଣ କୁମର । ଆଉ

ଯେ ଆୟୁଷ ନାହିଁ ତୋହର । ଯେତେ ବୀର ଥିଲେ ଲଙ୍କା ଭିତରେ । ସମସ୍ତେ ଗଲେ ସଂଗ୍ରାମପୁର ସେ । ଏକା ମାତ୍ର ଅଛୁ ତୁହି ଯେ । ତୁ ମଲେ ତୋ ପିତା ଝୁରିଣ ମରିବ ବସି ସେ ଏକାକୀ ହୋଇ ଯେ ॥ ଏମନ୍ତ କହି କରନ୍ତି ସମର । ଶକତି କୁଠାର ପରଶୁ ଶର । ବିବିଧ ଅସ୍ତ୍ର ହାନନ୍ତି ଆତଯାତ । ଦେଖି ଆଗ ହେଲେ ସୁମିତ୍ରାସୁତ । ତା ସଙ୍ଗରେ କଲେ ସଂଗ୍ରାମ ଯେ । ବେଳକୁ ବେଳ ବହୁ ତେଜ ବଢ଼ିଲା କରନ୍ତେ କ୍ଷଣେ ବିଶ୍ରାମ ଯେ ॥ ରାବଣ ତନୁଜ ବପୁ ବିମାନ । ବେଳକୁ ବେଳ ହୋଇଲା ନଉନ । ଫୁଟିଲା ତନୁ ହୋଇ ଅଶକତ । ତେବେହେଁ ବିନ୍ଧଇ ଶର ବହୁତ । ତା ଜାଣି କହେ ବିଭୀଷଣ ଯେ । ଫୁଟିଲାଣି ଆଉ ଦଣ୍ଡେ ଯୁଦ୍ଧକର ମାରିବାଟି ଏହିକ୍ଷଣ ହେ ॥ ତିନରାତ୍ର ତିନଦିବସ ରଣ । ଗଲାଣି ଏହାର ନାହିଁ ପରାଣ । ଲଙ୍କାରେ ଏହିମାତ୍ର ଅଛି ବୀର । ପୂର୍ଣ୍ଣ ହୋଇଣ କର ସମର । ମାରିବା କରିବା ଜୟ ହେ । ରାବଣକୁ ଆଉ କିଛି ଭୟ ନାହିଁ ହୋଇବା ଆମ୍ଭେ ନିର୍ଭୟ ହେ ॥ ବିଭୀଷଣଙ୍କ ଏମନ୍ତ ବଚନ । ଶୁଣି ଲକ୍ଷ୍ମଣ ହେଲେ ହୃଷ୍ଟମନ । ବେଳୁବେଳ ଶର କଲେ ସନ୍ଧାନ । ଦକ୍ଷିଣ ଭୁଜ ତୂଣ୍ଡରେ ଘନଘନ । ଜାଣି ବୋଲେ ହେବ ଜୟ ହେ । ଇନ୍ଦ୍ର ଦେବା ଶର ତୂଣୀରୁ ବାହାର କରି ଦେଖି କଲା ଭୟ ହେ ॥ ଇନ୍ଦ୍ରଦତ୍ତ ଧନୁରେ ବସାଇଲେ । ଉଚ୍ଚାରଣ ମନ୍ତ୍ର ପଢ଼ି ପେଷିଲେ । କାଟିଲା ଅସ୍ତ୍ର ଶକ୍ରଜିତ ଶିର । ମୁକୁଟ କୁଣ୍ଡଳ ସହିତେ ତାର ସେ । ପଡ଼ିଲା ଯାଇଁ ଭୂମିରେ ଯେ । ଲକ୍ଷ୍ମଣ ଶିରେ ଦେବରାଜା କୁସୁମ ବୃଷ୍ଟି କଲେ ନିରନ୍ତର ଯେ ॥ ଦୁନ୍ଦୁଭି ବଜାଇଲେ ସୁରପୁର । ବହୁ ଆନନ୍ଦ ହେଲେ ସୁନାସୀର । ଯୂଥପତିମାନେ ଆନନ୍ଦ ହେଲେ । ଲକ୍ଷ୍ମଣ ଅଙ୍ଗ ଆଲିଙ୍ଗନ କଲେ ସେ । କରିଣ ବହୁତ ସ୍ତୁତି ଯେ । ଲକ୍ଷ୍ମଣଙ୍କୁ ବେଢ଼ି ପଟୁଆର କରି ରାମ ଛାମୁକୁ ଆଣନ୍ତି ଯେ ॥ ଯୁଦ୍ଧ ବାରତା କୁହାକୁହି ହୋଇ । ଶ୍ରୀରାମ ଛାମୁରେ ହୋଇଲେ ଯାଇଁ । ରାମପାଦ ଛୁଇଁ ଲକ୍ଷ୍ମଣ ବୀର । ଓଳଗି ଉଭା ହୋଇଲେ ଛାମୁର ସେ । ବିଭୀଷଣ ଜଣାଇଲେ ଯେ । ଆଜ ଦେବ ତୁମ୍ଭ ଭ୍ରାତ ଶକ୍ରଜିତ ମାରିଣ ଅଭୟ କଲେ ହେ ॥ ଶୁଣିଣ ରାମ ବହୁ ହୃଷ୍ଟମନ । ଲକ୍ଷ୍ମଣଙ୍କୁ କଲେକ ଆଲିଙ୍ଗନ । ଶିର ଚୁମ୍ବିଣ କୋଳେ ବସାଇଲେ । ଶୁଣିପୁଣି ଶିର ଆଘ୍ରାଣ କଲେ । ଆଉସି ଶ୍ରୀହସ୍ତେ ଅଙ୍ଗ ଯେ । ଆଜ୍ଞା ଦେଲେ ଆଜ ଲଙ୍କା ଜୟ କଲ ତୁମ୍ଭେ ଥିଲକୁ ମୋ ସଙ୍ଗ ହେ ॥ ଏବେ ରାବଣକୁ ମାରିବ ମୁହିଁ । ଆଉ କାହାକୁ ମୋର ଭୟ ନାହିଁ । ଏମନ୍ତ ବୋଲି ଲକ୍ଷ୍ମଣଙ୍କୁ ଚାହିଁ । ଅଙ୍ଗୁ କାଣ୍ଡମାନ କାଢ଼ି ପକାଇ ସେ । ସୁଷେଣକୁ ଆଜ୍ଞା ଦେଲେ ଯେ । ଯେମନ୍ତ ଏହାଙ୍କ ଅଙ୍ଗବଣ ଯିବ ଔଷଧ

ଦିଅ ବୋଇଲେ ଯେ ॥ ରାମ ଆଜ୍ଞା ପାଇ ବୈଦ୍ୟ ସୁଷେଣ । ଔଷଧି ଆଣି ଦେଲା ସେହିକ୍ଷଣ । ତ୍ରଣ ଲଭଣ ହୋଇଲେ ସୁବର୍ଣ୍ଣ । ଗତରୁ ଅଧିକବଳ ସମ୍ପନ୍ନ ଯେ । ହେଲେ ସମସ୍ତେ ଆନନ୍ଦ ଯେ । ଧ୍ୟାନ ହରିର ମତ୍ତ ମଧୁପ ଶ୍ରୀରାମ ପଦାର ବନ୍ଦ ଯେ । ୨୦ ।



## ୪୮ଶ ଛାନ୍ଦ—ରାବଣ ଶୋକ

ରାଗ—ବଙ୍ଗଳାଶ୍ରୀ

ରାବଣ ସମ୍ମୁଖରେ ଜଣାଇଲେ ଯାଇ ନିଜ ପରିଜନମାନେ ।
ରାମଭ୍ରାତା ଶକ୍ରାଜିତ ବଧ କଲା ଦେଖି ଅଇଲୁ ନୟନେ ॥
ଇନ୍ଦ୍ରଜିତ ବଧ ଶୁଣିଣ ରାବଣ ମୂର୍ଚ୍ଛା ଯାଇଣ ପଡିଲା ।
କେତେହେଁକ ବେଳେ ଚେତନା ପାଇଣ ଉଚ୍ଚରେ ରୋଦନ କଲା ॥
ଆହା ପୁତ୍ର ମୋର ଗୁଣବନ୍ତ ବଳବନ୍ତ ହାରିଲୁ କାହାକୁ ।
କେତେ କେତେବେଳେ ଜିଣି ନ ଥିଲୁ ତୁ ସ୍ୱର୍ଗରେ ଶଚୀନାହାକୁ ॥
ତୋ ମୁଖକମଳ ଦେଖି ଦିଗପାଳମାନେ କରୁଥାନ୍ତି ଭୟ ।
କେଉଁ ଯୋଗବଶେ ରାମର ସାନୁଜ ସଂଗ୍ରାମରେ କଲା ଜୟ ॥
ଜାଣିଥିଲି ମୋର ଉତ୍ତର ଷୋଡଶ କରନ୍ତୁରେ ଶକ୍ରାଜିତ ।
ବିଧି ଏହା କଲା ମୁଁ ତୋର ସେ କର୍ମ କରିବାକୁ ହେଲି ସୁତ ॥
ଜନ୍ମ ହୋଇ ମେଘ ପ୍ରାୟ ଧ୍ୱନି କଲୁ ତେଣୁ ନାମ ମେଘନାଦ ।
ଇନ୍ଦ୍ରଙ୍କୁ ଜିଣିଲୁ ଦିନରୁ ବିଧାତା ଦେଲେ ଇନ୍ଦ୍ରଜିତ ପଦ ॥
କଞ୍ଜିତ ଯୁଦ୍ଧରେ ମାନବ ହାତରେ ହାରିଲୁ ଯେ ତୁହି ପ୍ରାଣ ।
ଶୁଣିଲେ ଦେବତା ସହିତେ ଆନନ୍ଦ ହୋଇବେ ଶଚୀରମଣ ॥
ଏକା କରି ମୋତେ ସୋଦର ସହିତେ କେଣେ ଗଲୁରେ କୁମର ।
ମାନବ ହାତେ ପରାଭବ ପାଇଲୁ ବିଧି କଲା ଏତେ ଦୂର ॥
ମାୟାସୀତା ମାଇଲୁ କୋପକରି ପ୍ରାଣେ ମାଇଲେକ ତୋତେ ।
ଏବେ ମୁଁ ସୀତାକୁ ସତେହେଁ ମାରିବି ରାମ ମାରୁ ଆସି ମୋତେ ।
ଏମନ୍ତ କହିଣ ଖଡ୍ଗ ଧରିଣ ପୁତ୍ରଶୋକରେ ଉଠିଲା ।
ସୀତାକୁ ହାଣିବି ବୋଲିଣ ବେଗରେ ଅଶୋକବନକୁ ଗଲା ॥
ଦୂରରୁ ଦେଖିଣ ସୀତାଙ୍କ ସହିତେ ଅସୁରୀଏ ଭୟ କଲେ ।
ମୋତେ ଏ ମାରିବ ବୋଲି ଆସୁଅଛି ସୀତା ମନେ ବିଚାରିଲେ ॥
ମୁଁ କପି ହନୁରି ସଙ୍ଗେ ନ ଗଲି ନଅନ୍ତା କାନ୍ତ ପାଶକୁ ।
ତେତେବେଳେ ହୁଡ଼ି ଏବେ ବିଚାରିଲେ କି ହେବ ପ୍ରାଣନାଶକୁ ॥

ଧାଇଁ ଆସି ଅଗବନ୍ଧ ନାମେ ମନ୍ତ୍ରୀ ସ୍ତମ୍ଭରେ ସେ ଓଗାଳିଲେ ।
ସୁପାରୁଶ୍ୱ ବୋଲି ଆର ମନ୍ତ୍ରୀ ତାରି ବହୁ ଦେଖାଇ କହିଲେ ॥
ବ୍ରହ୍ମାର ଚତୁର୍ଥ ପୁ ରୁଷ ଶ୍ୱେଦେବ କରିବ ସ୍ତ୍ରୀବଧ ବଧ ।
କପାଇଁ ଏହାକୁ ସେନଣ ଅଇଲ ଏ କି କରୁଥିଲ ସଧ ॥
ଶ୍ୱେ ଦେବ ରାବଣ ଆମ୍ଭ ବାଣୀ ଶୁଣ ହିଂସ୍ରିବଧ କି କାରଣ ।
ପାପବୁଦ୍ଧି କଲେ ପୁତ୍ର ନାହି ତୋର ଜୀଇ କି ଆସିବେ ପୁଣ ॥
ଦେଖ ଦେଖ ଜଗନ୍ମୋହିନୀ ସୁନ୍ଦରୀ ନାଶ କରିବ କେମନ୍ତେ ।
ବିହି ଏହାକୁ ସଂଯୋଗ କରିଅଛି ତୁମ୍ଭରି ଭୋଗ ନିମନ୍ତେ ॥
ଏମନ୍ତ ଶୁଣିଣ ସୀତାଙ୍କୁ ଅନାଇ ମଦନେ ହୋଇଲା ବଶ ।
ପୁଣିହିଁ ତାହାକୁ ଅନେକ ଦେଖାଇ କହିଲେକ ସୁପାରୁଶ୍ୱ ॥
ଏଥି କୋପ ଦେବ ରାମଠାରେ କଲେ ସୀତା ହୋଇବ ଆମ୍ଭର ।
ଏମନ୍ତ କହି ବାହୁଡ଼ାଇ ପୁରକୁ ଆଣିଲେ ଅସୁରେଶ୍ୱର ॥
ଆସ୍ଥାନ କରିଣ ସମସ୍ତ ଅସୁରମାନଙ୍କୁ ରାଇ କହିଲା ॥
ପୁନ ମଲା ବୋଲି ମୋହ ପରାକ୍ରମ ତାହା ସଙ୍ଗତେ କି ଗଲା ॥
ବ୍ରହ୍ମାର ଦେବାର ଅଭେଦକବଚ ନାହିଁ କରେ ମୋର ପୁତ୍ରେ ।
ବ୍ରହ୍ମା ଦେଲା ଅସ୍ତ୍ର ବ୍ରହ୍ମା ଦେଲା ଧନୁ ନ ବହଇ କି ମୁଁ କରେ ॥
ଏକା ହୋଇ ତ୍ରିଭୁବନକୁ ଜିଣିଲ କେଉଁ ପୁତ୍ର ମୋର ଥିଲେ ।
ଆଜଠାରୁ ଜାଣ ଶ୍ରୀରାମ ଲକ୍ଷ୍ମଣ ସୁଗ୍ରୀ ବିଭୀଷଣ ମଲେ ॥
ଅସୁରମାନଙ୍କୁ ଭରସା ହୋଇବା ପାଇଁ ଏମନ୍ତ କହିଲା ।
ବୋଲେ ବସି ଲଙ୍କା ପୁର ଶୂନ୍ୟକରି ଅସୁରବଳ ପେଷିଲା ॥

---

## ୪୯ଶ ଛାନ୍ଦ—ମହୀରାବଣ ଚରିତ

ରାଗ—କେଦାରକାମୋଦୀ

ଏଥୁଅନନ୍ତରେ କଥା ଶୁଣ ସୁଜନ । ଯୁଦ୍ଧରେ ପଡ଼ନ୍ତେ ରାବଣର ନନ୍ଦନ ॥ ଅସୁରଙ୍କୁ ଧରି ରଣଭୂମିକି ଗଲା । ପୁତ୍ରକୁ ଦେଖିଣ ବହୁ ଶୋକ ସେ କଲା ॥ ଏ ସମୟେ ସିଂହଧ୍ୱନ ଦେଲା ଉଦନ୍ତ । ଶୁଣିକରି ରାବଣ ହୋଇଲା ଚକିତ ॥ ଇନ୍ଦ୍ରଜିତ ପଡ଼ିବାର ଶୁଣିଲା ରଣେ । ସାତ ପୁତ୍ର ପଡ଼ିଲେ ଯେ ଶ୍ରୀରାମ ବାଣେ ॥ ଅଲେପୀ ସଲେପୀ କଙ୍କ ଧଙ୍କ ଯେ ବୀର । ସିଂହ ତୁରଙ୍ଗ ଯେ ଦେବଦତ୍ତ କୁମର ॥ ଗଡ଼ରେ ପଶନ୍ତେ ଜଗାଇଲେ ସେ ଧାଇଁ । ସାନ ସନ୍ତ ଗଡ଼ରେ ପଶିଲେ ଝସ ଇ ॥ ଶ୍ରୀରାମଙ୍କୁ ସଚରାରେ ଛାଡ଼ ନ ଦେଲେ । ଶ୍ରୀରାମ ବାଣରେ ସାତଙ୍କରେ ଯେ ମଲେ ॥ ବାରତା ପାଇଣ

ଯେ ରାବଣ କାତର । ହୃଦପୂ ମଧ୍ୟେ ରାମଙ୍କୁ କଲାକ ଡର ॥ ମୃତପିଣ୍ଡ ଛାଡ଼ି ଉଠିଲା କୋପକରି । ବୋଇଲା ଯତେକ ଆଜ କେ ଦେବ ମାରି ॥ ଅଭିମାନସମୁଦ୍ର କେ ପାରି କରିବ । ଏମନ୍ତ ବୋଲି ଭାଳଇ ସେ ଦଶଗ୍ରୀବ ॥ ଭାଇ ବିଭୀଷଣ ମୋର କୁଳକୁ ଶତ୍ରୁ । ହନୁମନ୍ତ ଜାଣେ ମୋର ମରଣ ହେତୁ ॥ ନଳ ସେନାପତି ଯୋଗୁଁ ବାନ୍ଧିଲେ ବନ୍ଧ । ଆବର ଯେ ସେନାମାନେ ଜାଣନ୍ତି ଛନ୍ଦ ॥ ଜାମ୍ବବର ହାତେ ମନ୍ତ୍ରପୋଥି ଅଛଇ । ମରିବା ଲୋକକୁ ସେ ଜିଆଇ ପାରଇ ॥ ସୁଗ୍ରୀବକୁ ଯେନ ଦଶକାଳ ଯେ ବୃଦ୍ଧ । ଏମାନେ ଯୁଦ୍ଧରେ ନ କରନ୍ତି ଉପ୍ରୋଧ ॥ ଶ୍ରୀରାମ ଲକ୍ଷ୍ମଣ ହାଦେ ସେ ଦୁଇଭାଇ । ଧନୁ ଧଇଲେ ପୃଥିବୀ ଜିଣି ପାରଇ ॥ ଏତେ ବୋଲି ଲଙ୍କପତି ବିରସ ଚିତ୍ତ । ବୁଦ୍ଧି ଏ ବିଚାରି କଲା ମନେ ଉଚିତ ॥ ଇନ୍ଦ୍ରଜିତ ସୁତ ମହୀରାବଣ ବୀର ।ପାତାଳ ଭୁବନେ ଅଟେ ସେ ଦଣ୍ଡଧର ॥ ତାହାକୁ ସେ ଲଙ୍କପତି ମନେ ଚିନ୍ତିଲା । ପାତାଳ ପୁରେ ତା ଆସନ କମ୍ପିଲା ॥ ବିଚାରିଲା ଲଙ୍କପତି ଚିନ୍ତିଲା ମୋତେ । ବୋଲଇ ବିକ୍ରମ ବାହାରିଲେ ତ୍ୱରିତେ । ୧୯ ।

—×—

## ୪୦ଶ ଛାନ୍ଦ

ରାଗ—କେଦାର

ଏଥୁଅନ୍ତେ କଥା ଶୁଣ । ବଳପୂର୍ଣ୍ଣ ମହୀରାବଣ ॥ ମକର ଧ୍ୱଜକୁ ରାଇ । ବୋଲେ ଦ୍ୱାର ରଖ ତୁମ୍ଭ ॥ ଦ୍ୱାର ତୁମ୍ଭ ଜଗିଥିବୁ । କାହାକୁ ଛାଡ଼ି ନ ଦେବୁ ॥ ଆକଟ ତାହାକୁ କଲା । ବଳରୁ ବାହାର ହେଲା ॥ ଚଳଇ ଅତି ପ୍ରଖର । ପ୍ରବେଶ ଲଙ୍କା ନଗର ॥ ଦେଖିଲା ସେ ଲଙ୍କଦେଶ । ଭେଦନ୍ତି ନାରୀ ପୁରୁଷ ॥ ମନେ ଭାଳେ ମହାବୀର । ଯାକୁ ସେବେ ଦେବାସୁର ॥ ତାକୁ କେ ବାଟଛାଡ଼ି ଦେଲା । ଏତେ ଭାଳି ବେଗେ ଗଲା ॥ ପ୍ରବେଶ ଯେ ଅନ୍ତଃପୁର । ଭେଟିଲା ସେ ଦଶଶିର ॥ ଲକ୍ଷ୍ମଣେ ପାଦେ ପଡ଼ିଲା । ଉଠି ଶିରେ କର ଦେଲା ॥ ଚମ୍ବିରେ ମହୀରାବଣ । ବିରସ କମ୍ପାଇ ପୁଣ ॥ ନୟନୁ ଲୋତକ ଧାର । ବହିଅଛି ଝର ଝର ॥ ଶୁଣି ରାବଣ ଉଠିଲା । ନାତିକି ସେ କୋଳ କଲା ॥ କହେ ତାକୁ ଦଶ ଶିର । ଶୁଣ ଆହେ ମହାବୀର ॥ ଶ୍ରୀରାମ ଲକ୍ଷ୍ମଣ ବେନି । ସଙ୍ଗରେ କପିସଇନ ॥ ସମୁଦ୍ରେ ବନ୍ଧ ବାନ୍ଧିଲେ । ସୁବଳପୁରେ ରହିଲେ ॥ ଭାଇ ବିଭୀଷଣ ଗଲା । ତାରେ ଶରଣ ପଶିଲା ॥ ଭାଙ୍ଗିଲେ ମୋ ଲଙ୍କାଦେଶ । କୁମ୍ଭକର୍ଣ୍ଣ ଗଲାନାଶ ॥ କାଲି ଆସି ଯୁଦ୍ଧ କଲେ । ପିତାକୁ ତୋର ମାଇଲେ ॥ ବଂଶ କଲେ ମୋର ନାଶ । ଏବେ ମୁଁ କରିବି କିସ ॥ ପିତା ମୃତ୍ୟୁ ଶୁଣି ବୀର । ଢଳିପଡ଼ିଲା

ଭୂମିର ॥ ଉଚ୍ଚରେ ରୋଦନ କଲା । ପିତା ଗୁଣ ସ୍ମରିଲା ॥ ଆସିଣ ସେ ରାଣୀହଂସ । ମିଳିଲେ ତାହାର ପାଶ ॥ ତାହାକୁ ପ୍ରବୋଧ କଲେ । ବିଷମ ଭଣିଲେ । ୨୪ ।

## ୫୧ ଶତ୍ ଛାନ୍ଦ

ରାଗ—ସିନ୍ଧୁଡ଼ା

ମହୀରାବଣକୁ ଅଙ୍କରେ ବସାଇ ବୋଲଇ ସେ ଦଶଶିର । ରାମ ଲକ୍ଷ୍ମଣଙ୍କୁ ସଂହାରିବା ପାଇଁ ବୁଦ୍ଧି ଏବେ ବାପ୍ କର । ପିତା ଶତ୍ରୁ ତୋହର । ଶୁଣି କୋପ କଲା ମହାବୀର । କଣେ ହାତ ଦେଇ ତିନିବାର । ଆଜ କାଟିବି ତାହାର ଶିର ॥ ରକ୍ଷ କପିବଳ ଶ୍ରୀରାମ ଲକ୍ଷ୍ମଣ ରଣେ ଆଜ ବିନାଶିବି । ଏ ଲଙ୍କାନଗରେ ତୁମ୍ଭଙ୍କୁ ଯେ ମୁହିଁ ଅକଣ୍ଟକ ରାଜ୍ୟ ଦେବି । ଏବେ ଶୁଣ ମୋ ବାଣୀ । ପୁତ୍ରଶୋକ ଛାଡ଼ି ବଂଶପାଣି । ଆଗୁଁ ନ ପାରିଲ ମୋତେ ଆଣି । ରକ୍ଷକପି ଦେଇଥାନ୍ତି ହାଣି ॥ ଶ୍ରୀରାମ ଲକ୍ଷ୍ମଣ ଏ ବେନି ଭାଇଙ୍କି ବିନା ଯୁଦ୍ଧେ ସଂହାରିବି । ରଣେ ଜୟକରି ତୁମ୍ଭର ଛାମୁରେ ଦର୍ଶନ ଆସି କରିବି । ଶୁଣି ସେ ଦଶଶିର । ମୁଣ୍ଡେ ମୁକୁଟ ବାନ୍ଧିଲା ତାର । ବୋଲେ ରାମ ଲକ୍ଷ୍ମଣଙ୍କୁ ମାର । ଭୋଗ କରିବୁ ଏ ଲଙ୍କାପୁର । ଶୁଣି ମହୀରାବଣ ବାହାର । ଦୃଷ୍ଟି କଲା ଗଗଣ ଉପର ॥ ହସ୍ତରେ ମୃତ୍ତିକା ଧରି ମହାବୀର ହରଙ୍କୁ ସେ ସୁମରିଲା । ବିଭୀଷଣ ରୂପ ଧରିଣ ଅସୁର ସୁବେଳଯାଟରେ ମିଳିଲା । ରାମବେନି ପ୍ରହର । ତାକୁ ଦେଖିଲାକ ହନୁବୀର । ଲାଞ୍ଜ କରିଛି ଗଡ଼ ଆକାର । ବୋଲେ କାହିଁଥିଲ ଲଙ୍କେଶ୍ୱର ॥ ବୋଲଇ ଅସୁର ଶୁଣ କପିବୀର ଯାଇଥିଲି ସନ୍ଧ୍ୟା କରି । ବେଗେ ଛାଡ଼ ଦ୍ୱାର ଶ୍ରୀରାମଙ୍କୁ ମୁହିଁ ଯିବଇଁ ଦର୍ଶନ କରି । ହନୁ ଛାଡ଼ିଲା ଦ୍ୱାର । ଥାଟେ ପଶିଲା ସେ ନିଶାଚରେ । ତହିଁ ହୋଇଲା କପି ଆକାର । ଯାଇଁ ମିଳି ଶ୍ରୀରାମ ପାଶର ॥ ଦେଖିଲା ବିଚିତ୍ର କୁରଙ୍ଗ ଟୂଳରେ ବିଜୟେ ସେ ରଘୁପତି । କରେ ଧନୁଶର ଧରିଣ ସେଠାରେ ଜଗିଛନ୍ତି ସଉମିତ୍ରି । ଇନ୍ଦ୍ରଜିତ ବିନାଶ । କଥା କହନ୍ତି କୌଶଲ୍ୟା ଶିଷ୍ୟ କଲି ମାରିବଟି ଲଙ୍କେଶ । ଏତେ କହି ହୁଅନ୍ତି ହରଷ ॥ ସୁଗ୍ରୀ ବିଭୀଷଣ ବୋଲନ୍ତି ଶ୍ରେ ଦେବ ତୁମ୍ଭେ ଅଟ ଦଇତ୍ୟାରି । ସେ ଛାର ଅସୁର ପାପୀ ଦୂରାଚାର ହରାଇଲା ଲଙ୍କାଶିରୀ । ଏବେ ହାରିବ ପ୍ରାଣ । ସୀତା ଲକ୍ଷ୍ମୀ ତୁମ୍ଭେ ନାରାୟଣ । ତ ହାତଶୁଣୁଛି ମହୀରାବଣ ॥ ଏଥି ସମୟରେ ମନ୍ତ୍ରୀ ଜାମ୍ବବାନ କରଯୋଡ଼ି ଜଣାଇଲା ବେନି ପ୍ରହର ତିନି ଦଣ୍ଡ ରଜନୀ ପ୍ରବେଶ ଆସି ହୋଇଲା । ସେ ରହୁଥାଇଁ । ଯୂଥପତିଙ୍କି ମେଲାଣି ଦେଇ । ଫଳ ମୂଳ

କଲେକ ମଣୋହି । ସୁଖେ ପହୁଡଲେ ସୀତାସାଇଁ । ଜଗି ବସିଲେ ଲକ୍ଷ୍ମଣ ତହିଁ ॥ ସ୍ୱର୍ଗେ ଦେବତାଏ ବିଚାର କରନ୍ତି ଗଲା ଇନ୍ଦ୍ରଜିତ ସୁତ । କେମନ୍ତ କରଣ କରିଣ ଆଣିବ ପାଶେ ଯେ ସୁମିତ୍ରାସୁତ । ଏଥି ଉପାୟ କର । ନାଶ ହେବ ଯେମନ୍ତ ଅସୁର । ନିଦ୍ରାଦେବୀ ପେଷି ଧାତକାର । ବିଜେ କଲେ ଲକ୍ଷ୍ମଣ ନେତ୍ରର । ଶୁଣି ନିଦ୍ରାବତୀ ଚଳିଲେ ତଡ଼ନ୍ତ କପି ସୈନ୍ୟରେ ମିଳିଲେ । ସେନା ଯୂଥପତି ଆଦି ଲଙ୍କପତି ସମସ୍ତେ ନେତ୍ରେ ଧାରିଲେ । ନିଦେ ସେ ଅଚେତନ । ଏ ଯେ ଦେବତା କୂଟ ବିଧାନ । ଦେଖି ଇନ୍ଦ୍ରଜିତର ନନ୍ଦନ ॥ ତହୁଁ ନିଦ୍ରାବତୀ ଚଳିଲେ ତତନ୍ତ ଲକ୍ଷ୍ମଣ ନେତ୍ରେ ମିଳିଲେ । ଧନୁଶର ଧରି ସୁମିତ୍ରା ନନ୍ଦନ ଘୋର ନିଦ୍ରାରେ ଘାରିଲେ । ଧନୁ ମସ୍ତକେ । ସଉମିତ୍ରୀ ପଡ଼ିଲେ ଘୁମାଇ । ଦେଖି ଅସୁର ଆନନ୍ଦ ହୋଇ । ବିକ୍ରମ ଯେ ରାମରସ କହି । ୧୧ ।



## ୫୨ଶତ୍ ଛାନ୍ଦ

ରାଗ ଯମକ

ଏସନ ସମୟେ ତହିଁ ଇନ୍ଦ୍ରଜିତ ସୁତ । ଦେଖିଲା ସେ ବେନିଭାଇ ନିଦ୍ରାରେ ମୋହିତ ॥ ନିଜ ରୂପ ଧରି ରାମ ନିକଟକୁ ଗଲା । ବେନିଭାଇଙ୍କୁ ମସ୍ତକେ ବସାଇ ଚଳିଲା ॥ ମନେ ବିଚାରଇ ପୁଣ ଇନ୍ଦ୍ରଜିତ ବଳି । ଲଙ୍ଗୁଳରେ ହନୁମନ୍ତ ଗଡ଼ କରିଅଛି ॥ ପିମ୍ପୁଡ଼ି ଗଳିବାକୁ ଯେ ଏଥିରେ ନାହିଁ ବାଟ । ଭଲ ଯତ୍ନ କରିଛି ପବନର ଗୃଠ ॥ ତତକ୍ଷଣେ ବୀର ଯେ ଉର୍ଦ୍ଧ୍ୱକୁ ଉଡ଼ିଗଲା । ହନୁର ଲାଙ୍ଗୁଳ ବୀର କଣ୍ଠତେ ଜାଣିଲା ॥ ହନୁମନ୍ତର ଲାଙ୍ଗୁଡ଼ ଡେଇଁବାର ବେଳେ । ରାବଣ ଦେଖିଲା ଥାଇଁ ଜଗତୀ ଉପରେ ॥ ରାମ ଲକ୍ଷ୍ମଣଙ୍କ ରୂପ ଦେଖି ଭୟ କଲା । ପରମ ପୁରୁଷ ହୁଏ ବୋଲି ବିଚାରିଲା ॥ ମହୀରାବଣରଠାରୁ ଉଦ୍ଧରିବେ ଯେବେ । ପରମପୁରୁଷ ବୋଲି ଜାଣିବି ମୁଁ ତେବେ ॥ ପ୍ରମନ୍ତ ବିଚାରି ଚଳେ ଅନ୍ତଃପୁର ଗଲା । ଭୋଜନ ସାରି ପଲଙ୍କେ ସୁଖେ ପହୁଡ଼ିଲା ॥ ଏଥୁ ଅନନ୍ତରେ ଇନ୍ଦ୍ରଜିତର କୁମର । ପାତାଳ ବିଳରେ ଯାଇ ପଶିଲା ପଶିଲା ସତ୍ୱର ॥ ଖରତର ହୋଇ ବୀର ବେଗେ ଚଳିଗଲା । ମକରଧ୍ୱଜ ଦ୍ୱାରର ନିକଟେ ମିଳିଲା ॥ ଶଯ୍ୟା ସହିତରେ ଯେ ମସ୍ତକେ ଅଛି ଧରି । ଦେଖିଣ ମକରଧ୍ୱଜ ତାହାକୁ ପଚାରି ॥ କେବଣ ଦେଶରୁ ଭୁରେ ଅଇଲୁ ପାମର । କହ କହ ଖଡଗେ କାଟିବି ତୋର ଶିର ॥ ମହୀରାବଣ ବୋଲଣି ଚହ୍ଲା ତାକୁ ଦେଲା । ଲଙ୍କାରୁ ମୁଁ ପିତାଶତ୍ରୁ ଆଣିଛି ବୋଇଲା ॥ ଏ ତ୍ରିବେନି ଭାଇଙ୍କି ନିଜ ପୁରକୁ ମୁଁ ନେବି । ନିଶା

ଶେଷେ ଦେଖି ପାଶେ ସ୍ତମ୍ଭଙ୍କୁ ବଳ ଦେବ ॥ ଦ୍ୱାରେ ଭୂତ ନିରୋଧ କରିଣ ଜଗିଥିବୁ । ଯେ ବଳଆଇଁ ଆସିବ ପ୍ରାଣରେ ମାରିବୁ ॥ ଏମନ୍ତ ବୋଲିଣ ଦୈତ୍ୟ ନିଜପୁରେ ଗଲା । ପଥର ଘରରେ ବେନିଭାଇଙ୍କି ରଖିଲା ॥ ଦୁଆରେ ଅସୁରଙ୍କର ଅନେକ ଅସୁର ଜଗାଇ । ବେନିଭାଇଙ୍କ କର୍ଣ୍ଣ ନେଲା ଧନୁକୁ ଛଡ଼ାଇ ॥ ବେନିଭାଇଙ୍କର ଧନୁ ନିଜ କରେ ଧରି । ବୋଲଇ ବିକ୍ରମ ସେ ପ୍ରବେଶ ନିଜପୁରୀ ।

— · —

## ୩୮ଶ ଛାନ୍ଦ

ରାଗ—କେଦାର

ଏଥୁଅନ୍ତେ ଶୁଣ ରସ ! ରଜନୀ ହୋଇଲା ଶେଷ ॥ ନିଦ୍ରାବନ୍ତି ଚଳିଗଲେ । ଲକ୍ଷ୍ମଣ ଜାଗ୍ରତ ହେଲେ ॥ କାକ ପିକ ଡାକ ଶୁଣି । ଉଠିଲେକ ରଘୁମଣି ॥ ଦେଖିଲେ ପଥର ଘର । ପଚ୍ଚାରନ୍ତି ରଘୁବୀର ॥ ଶୁଣ ହେ ଲକ୍ଷ୍ମଣବୀର । କେ ନେଲା ଧନୁ ଆମ୍ଭର ॥ ଏ ନୋହେ ସୁବଳଗିରି । ଅସୁର ଆଣିଛି ହରି ॥ ଏହା କର୍ମେ ଲେଖା ଥିଲା । ରାଜଭୋଗ ଛାଡ଼ ହେଲା ॥ ରାଜ୍ୟଭ୍ରଷ୍ଟ ପତ୍ନୀକଷ୍ଟ । ଏବେ ହେଲୁ ପ୍ରାଣେ ନଷ୍ଟ । ଏତେ ବୋଲି ଶୋକ କଲେ । ଶୁଣି ଲକ୍ଷ୍ମଣ ବୋଇଲେ ॥ ଧର୍ମ ଯେବେ ହେବ ସତ । କି କରି ପାରିବ ଦୈତ୍ୟ ॥ ଧନୁ ନ ଥିଁ ମୋର କର । କର । କାଟନ୍ତି ଅସୁର ଶିର ॥ ଲକ୍ଷ୍ମଣ ବଚନ ଶୁଣି । ତୁନି ହେଲେ ରଘୁମଣି ॥ ଏଥୁଅନ୍ତେ କଥା ଆନ । ସୁବଳେ କପି ସଇନ ॥ ନିଦ୍ରା ଚେଇଣ ଉଠିଲେ । ଶ୍ରୀରାମଙ୍କୁ ନ ଦେଖିଲେ ॥ ନଦୀ ପର୍ବତ ଖୋଜିଲେ । ନ ପାଇ ନିରାଶ ହେଲେ ॥ କାନ୍ଦଇ ଯେ ହନୁମନ୍ତ । କପାଳରେ ମାରି ହସ୍ତ ॥ ସୁଗ୍ରୀବର ବିଭୀଷଣ । ଜାମ୍ବବ ମନ୍ତ୍ରୀ ସୁଷେଣ ॥ ଅଙ୍ଗଦ ତାରା ପିଅର । ଋଷ କପି ଯେ ଅପାର ॥ ଅଷ୍ଟ ସେନା ଯୂଥପତି । ହାହାକାର ସେ କରନ୍ତି ॥ ଶୋକ ସମ୍ଭାଳି ଜାମ୍ବବ । ବୋଲନ୍ତି ଶୁଣ ସୁଗ୍ରୀବ ॥ ହନୁମନ୍ତକୁ ପଚ୍ଚାର । କହିବ ତହିଁ ବିଚାର ॥ ହନୁ କହଇ ଉଦନ୍ତ । ଶୁଣ ଆହେ କପିନାଥ ॥ କାଲି ରାତିର ଅର୍ଦ୍ଧେଣ । ଦ୍ୱାର ମୁଁ ଥିଲି ଜଗିଣ ବିଭୀଷଣ ମୋର ପାଶ । ଆସି ହେଲେ ପରବେଶ ॥ ତାଙ୍କୁ ମୁହିଁ ପଚ୍ଚାରିଲି । କେଣେ ଯାଇଥିଲ ବୋଲି ॥ ସେ ବୋଇଲେ ଆହେ ହରି । ଯାଇଥିଲି ସନ୍ଧ୍ୟାକରି ॥ ଶୁଣି ମୁଁ ଛାଡ଼ିଲି ଦ୍ୱାର । ସେ ଗଲେ ଗଡଭିତରେ ॥ ଏମନ୍ତ ହନୁ କହିଲେ । ବିକ୍ରମ ନରେନ୍ଦ୍ର ବୋଲେ । ୨୮ ।

—✕—

## ୫୪ଶତ ଛାନ୍ଦ

ରାଗ—ଯମକ

ଏହା ଶୁଣି ବୋଲଇ ସେ ବିଭୀଷଣ ବୀର । ଜାଣିଲି ଯେ ଘେନି ଗଲା ଇନ୍ଦ୍ରାରିକୁମର ॥ ପାତାଳକୁ ନେଲା କି ସେ ନେଲା ଲଙ୍କାପୁର । ଏହି କଥା ଆମ୍ଭଙ୍କୁ ତ ନୋହିଲା ଗୋଚର ॥ ଚରକୁ ପେଷିଣ ବେଗେ ବୁଝିବା ଉଦନ୍ତ । ତାହା ଶୁଣି ବୋଲଇ ଯେ ବୀର ହନୁମନ୍ତ ॥ ଅଶୋକବନକୁ ମୁହିଁ ବେଗ ହୋଇ ଯିବି । ତ୍ରିଜଟାର ଠାରୁଁ ତଥ୍ୟ ବାରତା ବୁଝିବି ॥ ଏତେ କହି ହନୁମନ୍ତ ବନ୍ଦମିଣ ଗଲା । ଶଶାରୂପ ଧରି ପୁଣି ପକ୍ଷୀ ପ୍ରାପ୍ତ ହେଲା ॥ ବୃକ୍ଷର ଉହାଡେ ଯେ ରହିଲା ଗୋପ୍ୟ ହୋଇ । ଜାନକୀଙ୍କ ମୁଖ ଚାହିଁ ତ୍ରିଜଟା କହଇ ॥ ରାମ ଲକ୍ଷ୍ମଣଙ୍କୁ ମହୀରାବଣ ଯେ ନେଲା । ପାତାଳ ଭୁବନେ ଦେବୀପାଶେ ବଳି ଦେଲା ॥ ଆଜଠାରୁ ମୋହର ଯେ ଗଲା ସବୁ ଦୁଃଖ । ଏବେ ଜାନକୀକି ଘେନି କରିବଇଁ ସୁଖ ॥ ମନ୍ଦୋଦରୀ ଆଗେ ଏହା ଶ୍ରବଣ କରିଲେ । ଶୁଣିକରି ଜାନକୀ ଅନେକ ଶୋକ କଲେ ॥ ତ୍ରିଜଟା ସୀତାଙ୍କ ଶୋକ ଶାନ୍ତ କରାଇଲେ । ନୟନ କୋଣରୁ ବେନି ଦେବୀ ଜାତ ହେଲେ ॥ ବଇଦେହୀ ମୁଖ ଚାହିଁ ବୋଲନ୍ତି ସେ ବାଣୀ । କି କରିବୁଁ ଆଜ୍ଞାଦିଅ ଶ୍ରୀରାମଙ୍କ ରାଣୀ ॥ ଦେବୀ ମୁଖ ଚାହିଁ ସୀତା ବୋଲନ୍ତି ବଚନ । ମୋ ସ୍ୱାମୀଙ୍କି ହରି ନେଲା ଯେ ମହୀରାବଣ ॥ ସଙ୍କଟକାଳରେ ସାହା ହୋଇଲ ଯେ ମୋତେ । ତାରି ଯେ ତାରିଣୀ ନାମ ବୋଲିଅ ଜଗତେ ॥ ପାତାଳପୁରକୁ ବେନି ଦେବୀ ଚଳିଯାଅ । ସ୍ୱାମୀ ଦେବରଙ୍କୁ ମୋର ରକ୍ଷା କରିଥାଅ ॥ ତାହା ଶୁଣି ବେନି ଦେବୀ ବେଗେ ଚଳିଗଲେ । ପାତାଳଭୁବନେ ବେନିଭାଇଙ୍କି ଜଗିଲେ ॥ ଏହା ଶୁଣି ମାରୁତି ଯେ ବେଗେ ବାହୁଡ଼ିଲା । ବୋଲଇ ବିକ୍ରମ ସୁବଳସ୍ଥାରେ ମିଳିଲା । ୧୬ ।

—×—

## ୫୫ଶତ ଛାନ୍ଦ

ରାଗ—କେଦାର

ହନୁମନ୍ତ ମୁଖୁ ଶୁଣି । ସତ ବୋଲି ସର୍ବେ ମଣି ॥ ତହୁଁ ସର୍ବେ ଚଳି ଗଲେ । ବିବରଦ୍ୱାରେ ମିଳିଲେ ॥ ଦେଖିଲେ ବିବରଦ୍ୱାର । ହୋଇ ଅଛି ଅନ୍ଧକାର ॥ ବିଭୀଷଣ ଯେ କହଇ । ଏଥେ କେ ପଶିବ ଯାଇଁ ॥ ଶୁଣିଣ ହନୁ କହଇ । ବିବରେ ପଶିବି ମୁହିଁ ॥ ଏହା ଶୁଣି ବିଭୀଷଣ । ମୁଦ୍ରିକା ଧରି କରେଣ ॥ ହନୁ ଦେହରେ ବୋଲିଲେ । ଅଦୃଶ୍ୟ ଦୃଶ୍ୟ ହୋଇଲେ ॥ ଚଉଦ ଗଣ୍ଡା

ଯୋଜନ । ବେଗ ଛାଡ଼ରେ ଗମନ ॥ ଭିତର ଦ୍ୱାରେ ମିଳିଲା । ମକରଧ୍ୱଜେ ଦେଖିଲା ॥ ଦେଖି ତାଙ୍କୁ କଲା ନମ । ଭଣଇ ବୀର ବିକ୍ରମ । ୧୦ ।

—X—

# ମକରଧ୍ୱଜ ଛାନ୍ଦ

ରାଗ—ଯମକ

ଆଗ ଓଗାଳଣ ସେ ବୋଲଇ ମହାବୀର । ଏ ପୁରେ ପଶିଲୁ ତୁ ରେ କାହିଁକି ବାନର ॥ ପ୍ରାଣେ ଆଶା ଥିଲେ ତୁହି ବାହୁଡ଼ଣ ଯା ଯା ॥ ନ ଜାଣୁ କି ପ୍ରତାପୀ ମହୀରାବଣ ରାଜା । ନ ଶୁଣଇ ବଚନ ସେ ଅଞ୍ଜନାର ବଳା । କହୁ କହୁ ପାତାଳପୁରକୁ ଚଳିଗଲା ॥ ଦେଖିଣ ମକରଧ୍ୱଜ ପ୍ରଜ୍ୱଳିତ ହେଲା । ଖଡଗ ଘେନିଣ ସେ ହନୁକୁ ପ୍ରହାରିଲା ॥ ବାଜିଣ ସେ ଅସିବର ହେଲା ବେନିଖଣ୍ଡ । ଦେଖିଣ ମକରଧ୍ୱଜ ହେଲା ପରଚଣ୍ଡ ॥ ପୁଣି ଏକ ବୃକ୍ଷ ସେ ଯେ ଉପାଡ଼ି ଧରଇ । ପାବନର ଅଙ୍ଗେ ବେଗେ ପିଟିଲାକ ନେଇ ॥ ଇନ୍ଦ୍ରଙ୍କର ବଜ୍ରାଘାତ ନ ବାଧିଲା ଯାକୁ । ସ୍ଥିର ନଲକ୍ଷଣ ବୃକ୍ଷ କି କରିବ ତାକୁ । କୋପଭରେ ହନୁମନ୍ତ ମାଇଲା ପଥରେ । ଚୂମ୍ବନ ସେ ଦେଲା ଯାଇ ତାହାର ମୁଖରେ ॥ ପିତା ପୁତ୍ର ଯୁଦ୍ଧ ଧର୍ମବଳେ ସେ ରଖିଲା । ପୁଣିହିଁ ବୃକ୍ଷେକ ନେଇ ପାବନ ପିଟିଲା ॥ ମକରଧ୍ୱଜ ଅଙ୍ଗରେ ବୃକ୍ଷ ଭାଜି ଗଲା । ଦେଖି କରି ପାବନ ଯେ ମଲ୍ଲଯୁଦ୍ଧ କଲା ॥ ବେନିକରେ ଧଇଲା ମକରଧ୍ୱଜ ପାଣି । ଭୂମିରେ ସେ ବେନିବୀର ଗଡଯାନ୍ତି ପୁଣି ॥ ପବନ ନନ୍ଦନର ଯେ ବଳ ଅପ୍ରମିତ । ସେହି ତ ସହଜେ ଅଟେ ହନୁମନ୍ତ ସୁତ ॥ ବୋଲଇ ମକରଧ୍ୱଜ ପାବନକୁ ଚାହିଁ । କପି ହୋଇ ଏତେ ବଳ ପାଇଲୁ ତୁ କାହିଁ ॥ ମୋହର ସଙ୍ଗରେ ତୁହି କଲୁ ସମଯୁଦ୍ଧ । ନ ମଣଇ ସଂଗ୍ରାମେ ମୁଁ ଇନ୍ଦ୍ରାଦି ବିବୁଧ ॥ ଏତେ ବୋଲି ହନୁକୁ ସେ ଭୂମିରେ ପାଡିଲା । ପାବନର ବକ୍ଷସ୍ଥଳ ମାଡ଼ିଣ ବସିଲା । ମୁଥକ ଉଞ୍ଚାଇ ବୀର ମାରିବାର ବେଳେ । ହନୁମନ୍ତ ଲେଉଟି ବସିଲା ବକ୍ଷସ୍ଥଳେ ॥ ଲାଙ୍ଗୁଳରେ ଗୁଡ଼ାଇ ଊର୍ଦ୍ଧ୍ୱକୁ ଟେକିଲା । ଇଷ୍ଟ-ଦେବତା ମୋହର ସୁମର ବୋଇଲା ॥ ଅତି ବ୍ୟାକୁଳରେ କହେ ସେ ମକରଧ୍ୱଜ । ମୋ ଇଷ୍ଟଦେବତା ଅଟେ ପବନ ଆତ୍ମଜ ॥ ସେ ମୋହର ପିତା ଅଟେ ମୁଁ ତାର ନନ୍ଦନ । ହନୁମାନ ବ୍ୟତେକ ମୁଁ ନ ଜାଣଇ ଆନ ॥ ତାହା ଶୁଣି ହନୁମାନ ବେଗେ ଛାଡ଼ିଦେଲା । କେମନ୍ତେ ମୋହର ପୁତ୍ର କହରେ ବୋଇଲା ॥ ମୁହିଁ ଅଟେ ହନୁମାନ ନାହିଁ ମୋର ନାରୀ । ପୁତ୍ର ଉପୁଜିଲା କାହୁଁ କହ ତୁ ବିଚାରି ॥ ଅଞ୍ଜନାର ଗର୍ଭ ଜାତ ଅଟେ ମୁହିଁ ନିତ । ମୋର ବୀର୍ଯ୍ୟେ କେମନ୍ତେ ତୁ ହେଲୁରେ ସଂଜାତ ॥ ଯହୁଁ ସେ ମକରଧ୍ୱଜ ଏମନ୍ତ ଶୁଣିଲା । ଏ

ମୋହର ପିଅର ସେ ବୋଲଣ ଜାଣିଲ ॥ ପାତାଳ ଗୁମୁରେ ଖାର ଯୋଡ଼ ବେନିକର । ନ ଜାଣି ମୁଁ ଅପରାଧ କଲ କ୍ଷମା କର ॥ ବୋଲଇ ହେ ତାତ ଏବେ ମୋର ବୋଲ ଶୁଣ । ଯେ ହନ ସୀତାଙ୍କୁ ଖୋଜ ଅଇଲ ଆପଣ ॥ ଲଙ୍କାପୁର ଦହଣ ସେ ବାହୁଡ଼ିବା ବେଳେ । ଦେହରୁ ଗଳଣ ସ୍ୱେଦ ପଡ଼ିଲା କ ଜଳେ ॥ ସେ ବିନ୍ଦୁକୁ ମୀନ ବେଗେ କଲ୍କ ଆହାର । ନରଦେହ ତହୁଁ ମୋତେ ହେଲେ ବେଦବର ॥ ସେ ମୀନକୁ ଧୀବର ସେ ଧରି ଘେନିଗଲା । ରାଜା ମହୀରାବଣ ଗୁମୁରେ ନେଇ ଦେଲା ॥ ସେ ମୀନ କାଟନ୍ତେ ମୁଁ ହୋଇଲି ଉପଗତ । ହନୁମନ୍ତ ବୀରବର ଅଟେ ଏ ମୋ ସୁତ ॥ ମକରଧ୍ୱଜକୁ ହନୁମନ୍ତ କୋଳ କଲା । ଶ୍ରୀରାମ ଲକ୍ଷ୍ମଣ କାହିଁ କହରେ ବୋଇଲା ॥ ଶୁଣିଣ ମକରଧ୍ୱଜ ବୋଲଇ ଉତ୍ତର ॥ ଶୁଣିଣ ମକରଧ୍ୱଜ ବୋଲଇ ଉତ୍ତର । ଶ୍ରୀରାମ ଲକ୍ଷ୍ମଣ ସେ ଅଛନ୍ତି ବନ୍ଦଘର ॥ ସୁଲୋଚନା ନନ୍ଦନ ସେ କାଲି ପ୍ରାତେ ଯିବ । ଭଗବତୀ ଗୁମୁରେ ସେ ନରବଳ ଦେବ ॥ ଏଥକୁ ଉପାୟ ତାତ ବେଗେ ଯାଇ କର । ମହାଦୁଷ୍ଟ ଅଟେ ଇନ୍ଦ୍ରଜିତର କୁମର ॥ ତାହା ଶୁଣି ହନୁମନ୍ତ ବେଗ ହୋଇ-ଗଲା । ଫୁଲ ଘେନି ଯାଉଅଛି ମାଲୁଣୀ ଦେଖିଲା ॥ ଦେଖି ହନୁମନ୍ତ ସେ ଭ୍ରମର ରୂପ ହେଲା । ସେଇ ଫୁଲ ଗୁଙ୍ଗୁଡ଼ାରେ ଯାଇଣ ବସିଲା ॥ ସେଇ ଫୁଲ ସଙ୍ଗେ ହନୁ ପ୍ରାସାଦେ ପଶିଲା । ଦେବୀଙ୍କ ମସ୍ତକ ଉପରେ ଯାଇଣ ବସିଲା ॥ ଯେତେ-ବେଳେ ଫୁଲ ନେଇ ଦେଲା ଦେବୀ ଶିର । ଖିଷ୍ଟୁ ରୂପ ଧଇଲା ସେ ପବନକୁମର ॥ ବାମ ଗୋଡ ନେଇଣ ଦେବୀର ଶିରେ ଦେଲା । କ୍ରୋଧଭର ହୋଇଣ ସେ ତଳକୁ ଚୁପିଲା ॥ ମହାଭୟଙ୍କର ହେଲା ପବନର ସୁତ । ସହସ୍ରେକ ଭୁଜ ତେଜ ଦ୍ୱିଗୁଣ ଆଦିତ୍ୟ ॥ ସହସ୍ରେକ ଭୁଜରେ ସେ ଶସ୍ତ୍ରମାନ ଧରି । ବୋଲଇ ବାହମ ହାରି ରହିଲା ଆବୋରି । ୪୦ ।

## ୫୭ଶତ ଛାନ୍ଦ

ରାଗ—କେଦାର

ଏଥୁଅନ୍ତେ କଥା ଶୁଣ । ଦେବୀରୂପେ ହନୁମାନ ॥ ବୋଲେ ବଳଭୋଜ୍ୟ ଦିଅ । ରାଜା ଆଗେ ଯାଇ କହ ॥ ଶୁଣି ଦୈତ୍ୟ ଉପୁଜାଇ । ରାଜାଙ୍କ ଆଗେ ଜଣାଇ ॥ ବୋଇଲେ ହେ ଦେବ ଶୁଣ । ଦେବୀ ହୋଇଲେ ପ୍ରସନ୍ନ । ବଳିଭୋଜ୍ୟ ସେ ମାଗନ୍ତି । ଶୁଣି ମନେ ହୁଏ ଭ୍ରାନ୍ତି ॥ ଶୁଣି ସେ ରାଜା ହରଷ । ଆଜ ଦେବୀ ହେଲେ ତୋଷ ॥ ଶ୍ରୀରାମ ଲକ୍ଷ୍ମଣ ଦୁଇ । ତାହାଙ୍କୁ ଖାଇବା ପାଇଁ ॥ ଏତେବୋଲି

ବେଗେ ଗଲା । ଶୀତଳ ସାମଗ୍ରୀ ଦେଲା ॥ ଗୃହରଗଣେ ଘେନିଗଲେ । ଦେବୀ ଆଗରେ ରଖିଲେ ॥ ଦେଖି ପାବନ ହରଷ । ଏକାବେଳେ କଲେ ଗ୍ରାସ ॥ ମହାସୁଖରେ ଭୁଞ୍ଜିଲେ । ପୁଣି ଦେ ଦେ ଦେ ବୋଇଲେ ॥ ଶୁଣି ଗୃହରେ ବେଗେ ଯାଇ । ରାଜାଙ୍କ ସମ୍ମୁଖରେ କହି ॥ ଦେବୀ ସନ୍ତୋଷ ନୋହିଲେ । ଆବର ହିଅ ବୋଇଲେ ॥ ଶୁଣି ରାଜା ବେଗେ ଗଲା । ପଥର ଘର ଫେଡ଼ିଲା ॥ ବୋଲେ ରାମ ଲକ୍ଷ୍ମଣଙ୍କୁ । ନାଶ କଲ ମୋ ପିତାକୁ ॥ ଏଠାରୁ ତୁମ୍ଭଙ୍କୁ ନେବ । ଦେବୀ ପାଶେ ବଳି ଦେବ ॥ କଣ୍ଠ ଆଲ ଉକାଇଲା । ଘେନି ଧାଁଅରେ ବୋଇଲା ॥ ରାଜଦାଣ୍ଡେ ଘେନିଯାନ୍ତି । ଦେଖି ଜନେ ପ୍ରଶଂସନ୍ତି ॥ ଦେବୀପାଶେ ନେଇ କଲେ । ଦୂରହୁଁ ହନୁ ଦେଖିଲେ ॥ ବହୁତ ବିକଳ ହୋଇ । ମନରେ ସ୍ତୁତି କରଇ ॥ ରାଘବ ପଦ ଚରଣେ । ବିକ୍ରମ ନରେନ୍ଦ୍ର ଭଣେ । ୧୮ ।

---

## ୪୮ଶତ ଛାନ୍ଦ

ରାଗ—ରସ କୋଇଲି

ଏଥୁ ଅନନ୍ତରେ ଅସୁରଗଣ । ରାମଚନ୍ଦ୍ରଙ୍କୁ ମାରିବେ ବୋଲିଣ । ଦୃଢ଼ କରି ସେ ଖଡ଼ଗ ଧଇଲେ । ରାମ ଚଉପାଶେ ବେଢ଼ି ରହିଲେ ସେ । ମହୀରାବଣ ସେ କାଳେ ଯେ । ଶୁଚିମନ୍ତ ହୋଇ ନବରୁ ବାହାରି ଦେବୀପାଶେ ଯାଇଁ ମିଳେ ଯେ ॥ ଦେଖିଲା ତେଜ ଅତି ସେ ଶଙ୍କରୀ । ସବୁବଦନରୁ ହସେ ଭୟଙ୍କରୀ । ନର-ବଳୀ ପାଇଁ ହୋନ୍ତି ଆତୁର । ଏହା ବିଚାରି ଅସୁର ପାମର ସେ । ରାମଙ୍କୁ କହେ ବଚନ ଯେ । ସାଷ୍ଟାଙ୍ଗ ହୋଇଣ ଭଗବତୀଙ୍କର ଚରଣେ କର ପ୍ରଣାମ ହେ ॥ ଏ ସମୟେ ବାତ ଆସି ସତ୍ୱରେ । କହି ଦେଲେ ଏହା ରାମ କର୍ଣ୍ଣରେ । ବୋଲ ତୁମ୍ଭେ ଆମ୍ଭେ ରାଜତନୟ । କପରି ପ୍ରଣାମ କରିବା ହିଅ ସେ । କହି ବାୟୁ ତହୁଁ ଗଲେ ଯେ । ଯେଉଁଠାରେ ଥିଲେ ହନୁ ମାୟାଦେବୀ ତା ପାଶେ ପ୍ରବେଶ ହେଲେ ଯେ ॥ ହନୁ କର୍ଣ୍ଣରେ କହିଲେ ଏସନ । ଯାହା କହୁଛି ଶୁଣରେ ନନ୍ଦନ । ପ୍ରଣାମ କାଳେ ଦଇତକୁ ତୁହି । ଏହି ଖଡ଼୍‌ଗେ ଶିର ଦେବୁ ଛିଣ୍ଡାଇ ସେ । ପୁଣି ହନୁ ତୋଷ ହେଲେ ଯେ । ପବନଦେବତା ଦେବଙ୍କ ଉଦନ୍ତ କହି ନିଜସ୍ଥାନେ ଗଲେ ଯେ ॥ ପବନଦ୍ୱାରୁ ଶୁଣି ରାମଗଣ । ମହୀରାବଣେ କହନ୍ତି ବଚନ । ଆମ୍ଭେ ରାଜପୁତ୍ର ନ ଜାଣୁ ଏହା । ଜାଣିଥିଲେ ତୁମ୍ଭେ ଦେଖାଅ ତାହା ହେ । ଶ୍ରବଣେ ମହୀରାବଣ ଯେ । ଆନନ୍ଦିତ ହୋଇ ମନେ ବିଚାରିଲା ମୋ କାର୍ଯ୍ୟ ହେବ ସାଧନ ଯେ ॥ ଏମନ୍ତ ବିଚାରି ଦୈତ୍ୟ ରାଜନ । ସାଷ୍ଟାଙ୍ଗେ ଦେବୀଙ୍କି କରୁ ପ୍ରଣାମ । ନୁଆଁଇବା କାଳେ ଗ୍ରୀବାକୁ ତହୁଁ । ବେଗେ ହନୁମାନ ଖଡଗ ନେଇ ସେ । ସତ୍ୱରେ କରି ପ୍ରହାର ଯେ । ଗଣ୍ଡି ମୁଣ୍ଡ ତାର ଭିନ୍ନ ଭିନ୍ନ କରି ପେଷିଦେଲା ପ୍ରେତାଗାର

ଯେ ॥ ବୋଲନ୍ତି ରାମ ଲକ୍ଷ୍ମଣଙ୍କୁ ଗୃହ୍ବ । ହନୁ ଖ୍ରୀଷ୍ମ ରୂପ ଦେଖାରେ ଯାଇ । ହନୁ ମୋହର ଅଟେ ଉପକାରୀ । ଶତ୍ରୁଗଣ ମାଝେ ଅଛନ୍ତି କପଟ ଯେ । ଲକ୍ଷ୍ମଣ ହନୁ ଦେଖିଲେ ଯେ । ହନୁ ଖ୍ରୀଷ୍ମ ରୂପ ଦେଖିଣ ସାନୁଜ ଭୁଜରେ ନେଇ ବୁଜିଲେ ଯେ ॥ ଶ୍ରୀରାମ ହସ୍ତେ ନାହିଁ ଶରାସନ ।'ଦେଖି ହରିଗୃହ କରି ହନୁମାନ । ରାମ ଲକ୍ଷ୍ମଣ ଥିବା ସ୍ଥାନ ହେରି । ଲାଙ୍ଗୂଳକୁ ଗଡ ପରାୟେ କରି ଯେ । ତାର ମଧ୍ୟେ ଦୁଇଭାଇ ଯେ । କହଇ ବଳରାମ ଅସୁର ନାଶିଲା ହନୁମନ୍ତ କ୍ରୋଧ ହୋଇ ଯେ ।



## ୬୯ତମ ଛାନ୍ଦ

ରାଗ—କେଦାର

ଏଥୁଅନ୍ତେ ଜନେ ଶୁଣ । ଅସୁର ହେଲାନ୍ତେ ନିଧନ ॥ ଶ୍ରୀରାମଚନ୍ଦ୍ର ହରଷ । ହନୁଙ୍କୁ ଡାକିଣ ପାଶ ॥ ବୋଇଲେ ହେ ହନୁବୀର । ଯାହା ଇଚ୍ଛା ମାଗ ବର । ଆମ୍ଭ ଜୀବନ ରଖିଲ । ଏଥୁ କି କରିବ ଭଲ ॥ ଶୁଣି ହନୁମନ୍ତ କହି । ଯହିଁ ଥିବ ଥିବ ତହିଁ । ଏ ପୁରେ ମୋର ନନ୍ଦନ । କରିବ ତାକୁ ରାଜନ ॥ ଶୁଣି ସ୍ୱୀକାର କଲେ । ପୁତ୍ରକୁ ଆଣ ବୋଇଲେ ॥ ହନୁ ହସ୍ତ ବଢ଼ାଇଲେ । ମକର-ଧ୍ୱଜକୁ ନେଲେ ॥ ଦେଖି ରାମ ପୁଚ୍ଛାକଲେ । ପାବନି ସବୁ କହିଲେ । ମକର-ଧ୍ୱଜକୁ ତହିଁ । ରା ପାଟଶାଢ଼ୀ ଦେଇ ରାଜ୍ୟେ ଅଭିଷେକ ହେଲା । ରାମ ଚରଣେ ପଡିଲା ॥ ବୋଲନ୍ତି ସେ ରଘୁବୀର । ବେଗେ ଆଣ ଧନୁଶର ॥ ଭଣ୍ଡାରୁ ଧନୁ ଆଣିଲା । ରାମ ପାଶେ ସମର୍ପିଲା ॥ କରେ ଧରି ଧନୁଶର । ବିଜୟେ ହନୁ କନ୍ଧର ॥ ରାମ ଲକ୍ଷ୍ମଣଙ୍କୁ ଘେନ । ବେଗେ ଚଳିଲା ପାବନ ॥ ବିବରଦ୍ୱାରେ ମିଳିଲେ । ସେନାଏ ଦର୍ଶନ କଲେ ॥ ସୁବଳ ଗିରିକି ଗଲେ । ରାବଣ ଦୂତେ କହିଲେ ॥ ଶୁଣି ଶୋକେ ଦଶଶିର । କାଟିବି ରାମର ଶିର ॥ ଏମନ୍ତେ ପ୍ରତିଜ୍ଞା କଲା । ବଳରାମ ଗୀତେ କହିଲା । ୧୯ ।

---

## ୭୦ ତମ ଛାନ୍ଦ—ଉନ୍ମତ୍ତାଦି ଅସୁରଙ୍କ ବଧ

ରାଗ—ତୋଡ଼ି

ଡଗରକୁ ଗୃହିଁ ଦଶଶିର । ବୋଲଇ ଲଙ୍କାରେ ଯେତେ ଘର । ବାଳ ବୃଦ୍ଧ ଗୁଡ଼ ଯେତେକ ଅସୁର ସମସ୍ତେ ଯାଇଁ ସମର କର ॥ ପୁତ୍ର ଭ୍ରାତ ନାତି ଯେବେ ମଲେ । ମୋର ବଳ ସେ କି ଘେନିଗଲେ । ଏକ ରାମକୁ ସମସ୍ତେ ବେଢ଼ି ମାର ମେଲିଣ ରାବଣ ଆଜ୍ଞା ଦେଲେ । ଯାହାର ଯେତେ ଆୟୁଧ ଥିବ । ଏକା ରାମ ଶିରେ ପ୍ରହାରିବ । ଏକା ରାମକୁ ମାରିଲେ ଜୟ

ହେବ । ଏକା ବାନରଙ୍କୁ ନ ଡରିବ ॥ ଆଜ୍ଞା ପାଇଣ ଅସୁରବଳ । ବାହାର ହୋଇଣ କଲେ ଗୋଳ । ରାମଙ୍କୁ ବେଢ଼ନ୍ତେ ଯୂଥପତିମାନେ ଓଗାଳ ମାଇଲେ ତରୁ ଶିଳ ॥ ଅସୁରମାନଙ୍କୁ ଦୃଶ୍ୟ ନୋହି । ଅଦୃଶ୍ୟ ହୋଇଲେ ସୀତାଧାଇଁ । ଯେସନେ ଆତ୍ମାକୁ କେହି ନ ଦେଖନ୍ତି ଇନ୍ଦ୍ରିୟ ମାନ ଦେହରେ ଥାଇ ॥ ସେହିରୂପେ ଅସୁରଙ୍କୁ ଦୃଷ୍ଟି । ରାମ କରୁଛନ୍ତି ଶରବୃଷ୍ଟି । ଏଣୁ ଅନେକ ଅସୁର କ୍ଷୟ ଗଲେ ଉଶ୍ୱାସ ହୋଇଲା ସର୍ବସୃଷ୍ଟି ॥ ଏକ ରାମଶର ଅଙ୍ଗେ ପଡ଼ି । ଅସୁରେ ମଲେ ଭୂମିରେ ଗଡ଼ି । ପ୍ରଚଣ୍ଡ ବାତେ ଯେହ୍ନେ ପକ୍ୱ ରସାଳ ତଣାଳ ତରୁ ଶିଖରୁ ଝଡ଼ି ॥ ପୁଣିହିଁ ରାମ ଏମନ୍ତ କଲେ । ଅସୁରଟି ରାମମୟ ହେଲେ । ରାମ ପ୍ରାୟ ମଣି ଏକକୁ ଆରେକ ମରାମରି ହୋଇ କ୍ଷୟ ଗଲେ ॥ ଅଠର ସହସ୍ର ଗଜ ମଲେ । ଦ୍ୱିଲକ୍ଷ ପଦାତି କ୍ଷୟ ଗଲେ । ତଉଦ ସହସ୍ର ସସ୍ତ୍ର ଅଶ୍ୱ ରଥୀ ଶମନ ଭୁବନ ଚଳିଗଲେ ॥ ଅନେକ ରାକ୍ଷସଗଣ ମଲେ । ଏକା ହୋଇ ରାମ କ୍ଷୟ କଲେ । ଲଙ୍କାର ସକଳ ରାକ୍ଷସ ବିକଳ ଶୁଣିଣ ଉଠି ରୋଦନ କଲେ ॥ କେ ବୋଲଇ ସୂର୍ପଣଖା ଭଲ । ତାହା ଯୋନ ଏତେ ଦୂର ହେଲା । କାମରେ ଆରତ ହୋଇଣ ରାମଙ୍କୁ ଗୁରସ୍ତ କରିବ ବୋଲି ଗଲା ॥ କେ ବୋଲେ ଭବିଷ୍ୟ ତାର ଗାଳ । ବିକଟଦର୍ଶନ ହୋଠ ନେତ୍ର । ରାମ ସୁକୁମାର କୁମାର ବୟସ ମଦନମୋହନ ରାଜପୁତ୍ର ॥ ଏକେ ଏକେ କୁହା କୁହି ହେଲେ । ନାନାବିଧ ଭାଷାରେ ଧିକ୍କାରିଲେ । ଖର ଦୂଷଣ ମଲେ ଯେତେକ ଅସୁର ଗଣିତ ଅସୁରେ ବାଳପିଲେ ॥ ଶୁଣି ରାବଣ କାରୁଣ୍ୟ ସ୍ୱନ । କ୍ରୋଧେ ମନ କଲେ ଛନ୍ନ ଛନ୍ନ । ବୀରବେଶ ହୋଇ ଧନୁ ଶର ଧରି ବିଜେ କଲେ ମଣିମୟ ଯାନ ॥ ଦଶ ମୁକୁଟ ସପତଶିଖ । ବିଂଶ କୁଣ୍ଡଳ ମକରମୁଖ । ଯମଦାଢ଼ ଛୁରୀ କଟିରେ ଶୋହଇ ଅଙ୍ଗଡ଼ାବ ଖଣ୍ଡା ବାମପାଖ ॥ କୃଷ୍ଣ ହୟଚୟ ରଥେ ଯୋଚି । ସାରଥି ରଥ ବାହଇ ପାଞ୍ଚି । ସକଳ ଆୟୁଧ ରଥେ ରଖିଅଛି ସକଳ ତାପ ମନରୁ ମୁଞ୍ଚି ॥ ସଙ୍ଗରେ ଉନ୍ମତ୍ତ ମତ୍ତବୀର । ଚଢ଼ିଛନ୍ତି ବେନି ରଥବର । ହେମ ରଥବର ଚଢି ବରୁପାକ୍ଷ ସୈନ୍ୟରେ ହୋଇଛି ଅଗ୍ରସର ॥ ନବର ବାହାର ଲଙ୍କେଶ୍ୱର । ରଥଗଜ ଅଶ୍ୱ ସଙ୍ଗତର । ଅମଙ୍ଗଳମାନ ଦେଖିଣ ଆସୁଛି ଘୁମୁରେ ବାଜୁଛି ଝାଂଝର ॥ ଯୁଦ୍ଧେ ଉନ୍ମତ୍ତକୁ ରାଇ ପାଶ । ବୋଲଇ ରେ ବାବୁ କର ନାଶ । ସମସ୍ତେହେଁ ମଲେ ତୋ ବେନି ବାହାକୁ କରିଅଛି ମୁହିଁ ପ୍ରତିଆଶ ॥ ଶୁଣିଣ ଯୁଦ୍ଧେ ଉନ୍ମତ୍ତ ବୀର । ଶିରରେ ଲଗାଇ ବେନିକର । ସୁଗ୍ରୀବ ଘୁମୁରେ ରଥବର କଲା କରେ ଧରିଅଛି ଧନୁଶର ॥ ବନ୍ଧଇ ଅସୁର ଶରକୁଳ । ସୁଗ୍ରୀବ ମାରନ୍ତି ତରୁଶିଳ । ଉନ୍ମତ୍ତ ସଙ୍ଗରେ ଯୋଦ୍ଧା କପିପତି ସମର କଲେକ

ବହୁବେଳ ॥ ଗୁଡ ଶାଳଶିଳ ଧନୁର୍ବାଣ । ମାଲରଣ କଲେ ବେନିଜଣ । ଗୃପୋଡ଼େ ମାରଣ ଯୁଦ୍ଧେ ଉନ୍ମତ୍ତର କପିପତି ହେଲେ ନେଲେ ପ୍ରାଣ ॥ ତାହା ଦେଖି ବିରୂପାକ୍ଷ ବୀର । ସୁଗ୍ରୀ ପାଶେ କଲି ରଘୁବର । ବହୁ ପରକାରେ ବହୁତ ସମର ହୋଇଲା ସେ ବେନି ବୀରଙ୍କର ॥ ଶିଳେ ମାରି ରଥ ଚୂର୍ଣ୍ଣ କଲେ । ସାରଥି ଅଶ୍ୱଙ୍କ ପ୍ରାଣ ନେଲେ । ଦେଖିଣ ରାବଣ ମହାଗଜେ ଦେଲା ତାହା ଆରୋହି ସମର କଲେ ॥ ପୁଣି ଧନୁ ଧରି ବର୍ଷେ ବାଣ । ତରୁଘାତେ ଗଲା ଗଜ ପ୍ରାଣ । ଧନୁ ତାର କରୁ ଛଡ଼ାଇ ଭଙ୍ଗନ୍ତେ ଖଡ଼ଗ ଧଇଲା ସେହିକ୍ଷଣ ॥ ସୁଗ୍ରୀବ ସାଉଁଟି ଖଣ୍ଡା ଯେନି । ହଣାହଣି ହେଲେ ବୀର ବେନି । ମୁକୁଟ କୁଣ୍ଡଳ ସହିତେ କାଟିଲେ ବିରୂପାକ୍ଷ ବୀର ମୁରଧନି ॥ କପିରାଜ ରଣେ ଜୟ କଲେ । ଆକାଶୁଁ କୁସୁମ ବରଷିଲେ । ସୁଗ୍ରୀବ ଜୟ କରି ଶୋଭା ପାଇଲେ ବୋଲେ ଋଷି ରାମ ପ୍ରଶଂସିଲେ । ୨୬ ।

—————

## ୬୧ ତମ ଛାନ୍ଦ —ଲକ୍ଷ୍ମଣ ଶକ୍ତିଭେଦ

ରାଗ—କାମୋଦୀ

ଯୁଦ୍ଧେ ଉନ୍ମତ୍ତହତ, ଦେଖିଣ ମହାମତ୍ତ, ସୁଗ୍ରୀବ ଆଗେ ରଥ କଲା । ଦେଖାଇ ବହୁ ତେଜ, ସସ୍ତ୍ର ସସ୍ତ୍ର ନାରାଚ, ଗୁଣରେ ବସାଇ ବିନ୍ଧିଲା ସେ । କପିରାଜ । ଦେଖିଣ ଯୁଦ୍ଧକୁ ଲେଉଟେ । ଶାଲ ତରୁ ଏ ହେନି ପିଟେ । ଦେଖି ତାହା ଅସୁର, କ୍ରୋଧରେ ଗୁରୁତର, ନାରାଚ ପେଷି ତାହା କାଟେ ॥ ଦେଖିଣ ବାଳିସୁତ, ଧାଇଁ ଆସି ତ୍ୱରିତ ମତ୍ତ ସଙ୍ଗତେ କଲା ରଣ । ଶାଳଶିଳରେ କରି; ସାରଥି ଅଶ୍ୱ ପାଞ୍ଚ ତା କରୁ ନେଲେ ଧନୁବାଣ ସେ ବାଳିସୁତ । ମାଲରଣ ତା ସଙ୍ଗେ କଲେ । ଭୂମିରେ ଗଡ଼ାଗଡ଼ି ହେଲେ । ଦୈତ୍ୟ ଧରନ୍ତେ ଖଣ୍ଡା, ଧରିଣ ସେହି ଖଣ୍ଡା, ଅଙ୍ଗଦ ତା ଶିର ଛେଦିଲେ ॥ ଦେଖୁଥିଲେ ରାବଣ, ମହାମତ୍ତ ମରଣ, ରାକ୍ଷସେ ପଳାନ୍ତି ହାରିଣ । ତାହା ଦେଖି ରାବଣ, ବର୍ଷେ ଅନେକ ବାଣ, ବାନର କଲା ରଣଭଙ୍ଗ ସେ । ଦଶଶିର । ସାରଥିକ କହେ ଉତ୍ତର । ରାମ ସମ୍ମୁଖେ ରଥ କର । କରି ଘୋର ସମର, ପେଷିବି ଯମପୁର, ଦଶରଥ ବେନି କୁମର ॥ ସାରଥି ରଥବର, କଲା ରାମ ସମ୍ମୁଖ, ଦେଖି ସୁଲକ୍ଷଣ ରଘୁବୀର । ଆହେ ହେ ଲଙ୍କେଶ୍ୱର, ଦେଖ ଏ ଦଶଶିର, ଏହିକି ଭ୍ରାତୃରସୋଦର ହେ । ଲଙ୍କେଶ୍ୱର ପଡ଼ିଲ ଅନ୍ତର ଛୁଟିଲ । ଆଉ କେ ଶରଣ ପିବ ଘର । ଆଜ ଜାନକୀଚୋର, ଛେଦନ ହେବ ଶିର, ଏଥିକି ସନ୍ଦେହ ନ କର ॥ ଏତେ ବୋଲିଣ ଶର, ବିନ୍ଧିଲେ ପାରବାର, ରାବଣ କଲେ ଚୂରଣ । ପୁଣି ବିନ୍ଧନ୍ତେ ଶର, ପୁଣିକ୍ର ପ୍ରଭୁ ଶର, କରିଣ କାଟଇ ଅଧୂର ସେ । ଦଶଶିର । ସହୁ କାଟିଲେ ରାମଶର ।

ଦେଖିଣ ରାମ କୋପଭର । ପେଷିଲେ ପାଞ୍ଚଶର, ସାରଥିର ଉପର, ତକ୍ଷଣେ ମୃତ୍ୟୁ ହୋଏ ତାର ॥ ପୁଣିହିଁ ପାଞ୍ଚଶର, ପେଷି ରଥ ଉପର, ତାର ମହୁକଧ୍ୱଜ କାଟେ । ସମସ୍ତେ ଦେଖି ସାଧୁ ସାଧୁ କଲେ ପ୍ରମୋଦୁଁ ମହୀରେ ପଡ଼ି ଧ୍ୱଜ ଲୋଟେ ସେ । ରାମାନୁଜ । ପୁଣି ବନ୍ଧିଣ ଦଶଶିର । ଧନୁ ସେହୁଁ କାଟିଲେ ତାହାର । ଭୁଜତେ ବିଭୀଷଣ, ଗଦାରେ ପ୍ରହାରିଣ, ନେଲେ ପ୍ରାଣ ତା ଅଶ୍ୱଙ୍କର ॥ କ୍ରୋଧରେ ଦଶଶିର, ଶକତି ଘେନ କର, ରାମକାୟେ କଲା ପ୍ରହାର । ଦେଖି ଲକ୍ଷ୍ମଣ ବୀର, ପେଷିଣ ତୀକ୍ଷ୍ଣଶର; କାଟି ପକାଇଲେ ଭୂମିର ସେ ଦଶଶିର । ଲଙ୍କା ପାଇଲା ଗୁରୁତର । ବିଭୀଷଣରେ କ୍ରୋଧଭର । ମୟଦୈତ୍ୟ ଦେବାର, ଶକତି ଘେନ କର; ଗର୍ଜ୍ଜନ କରଇ ଅସୁର ॥ ସେ ଶକ୍ତିରେ ଶୋଭିତ; ଅଷ୍ଟଘଣ୍ଟି ଲମ୍ବିତ, ତେଜ ଦ୍ୱିଗୁଣ ଦିବାକର । ରାବଣ କରେ ଏହା ଦେଖିଣ ଶଚୀନାହା, ସଭୟତେ କମ୍ପିଲେ ଅମର ସେ । ବିଭୀଷଣ । ଜାଣିଲେ ସେ ରାବଣ ରୁଷ୍ଟ । ଲୁଚିଲେ ଲକ୍ଷ୍ମଣଙ୍କ ପୃଷ୍ଠ । ବିଭୀଷଣ ଲକ୍ଷ୍ମଣ ପୃଷ୍ଠରେ ପଳାୟନ, ରାବଣ କାମୋଡ଼ନ୍ତି ଓଷ୍ଠ ॥ କ୍ରୋଧେ ବୋଲେ ରାବଣ, ଆରେ ଆରେ ଲକ୍ଷ୍ମଣ, ବିଭୀଷଣକୁ ଛାଡ଼ଦେଲୁ । ତାକୁ ପ୍ରାଣେ ମାରନ୍ତି, ରଣେ ଜୟ କରନ୍ତି, ଏବେ ତୋ ପ୍ରାଣ ହାରିଲୁରେ । ରାଜପୁତ୍ର । ନୋହୁ ତୁ ମୋ ଶସ୍ତ୍ରକୁ ପାତ୍ର । ଏମନ୍ତ ବୋଲି ବିଂଶନେତ୍ର । ଶକତି ପ୍ରହାରନ୍ତେ ଲକ୍ଷ୍ମଣ ଉରେ ପଡ଼ି ଫୁଟିଣ ଗଲା ତାଙ୍କ ଗାତ୍ର ॥ ଶକତି ବାଜି ଉର, ଭୂମିରେ ପଡ଼ି ବୀର; ଜ୍ଞାନ ହରାଇ ମୋହି ଗଲେ । ଦେଖିଣ ରାମଚନ୍ଦ୍ର, ଶ୍ରୀମୁଖ ଶୁଖିଗଲା; ଆକୁଳେ ବହୁ ରଣ କଲେ ସେ । ରଘୁବୀର । ଲକ୍ଷ୍ମଣଙ୍କଠାରେ ଦେଇ ମନ । ବନ୍ଧେ ନାରାଚ ଘନ ଘନ । ରାମର କ୍ରୋଧମନ, ଜାଣିଣ ଦଶାନନ, ଆଡ଼ କରିଣ ନେଲା ଯାନ ॥ ରାମ ତେଜିଣ ରଣ, ଆସି ଦେଖି ଲକ୍ଷ୍ମଣ, ଶକତି ଉପାଡ଼ି ବୋଇଲେ । ସମସ୍ତ ଯୂଥପତି, ଉପାଡ଼ି ନ ପାରନ୍ତି, ରାମ ତା ଶ୍ରୀକରେ ଧଇଲେ ସେ ॥ ରଘୁବୀର । ଶକତି ଉପାଡ଼ିଲେ ହେଲେ । ଯେହ୍ନେ ଗଜ ପଙ୍କଜ ତୋଳେ । ବେନିଖଣ୍ଡ ଶକତି, କରି ପକାଇ ଦେଲେ, ଗର୍ଭ ଗାତ୍ର ଦେଖିଲେ ତୋଳେ ॥ ହା ହା ଆହେ ଲକ୍ଷ୍ମଣ, ତୁମ୍ଭେ ମୋହର ପ୍ରାଣ, ସଙ୍ଗେ ଆଣିଲି ଏଥିପାଇଁ । ତୁମ୍ଭେ ଏଡ଼େ ଦାରୁଣ, ତୁମ୍ଭ ସଙ୍ଗତେ ନେଲ ନାହିଁ ହେ । ବୀରବର । ମୁଁ ଯେ ତୁମ୍ଭର ସହୋଦର । କପାଇଁ ମୋତେ କଲ ପର । ମଉନ ହୋଇ ଶୁଅ, କମ୍ପା କଥା ନ କହ, କେଉଁ ଦୋଷ ଦେଖିଣ ମୋର । ତେଜିଲି ପ୍ରାଣ ଆଣ, ଯେଣୁ ମୋ ଭ୍ରାତ ନାଶ ସୀତା କରିବ ଏବେ କିସ । ଯୁଦ୍ଧରେ କାର୍ଯ୍ୟ ନାହିଁ, ଶାଖାମୃଗ ମରଇ ଥାଉବ ଅବା କେତେ ଯଶ ଯେ ବୀରବର । ପ୍ରାଣୁ ଅଧିକ ମୋତେ କର୍ଣ୍ଣ । ସେବକ ପ୍ରାୟ ଚେଷ୍ଟା ତୋର ।

ବିଳାପ କଲେ ଆମ୍ଭେ, ପ୍ରବୋଧି କହ ତୁମ୍ଭେ, ଏବେ କି କାରଣେ ନ କର ॥ ଆହେ ଲକ୍ଷ୍ମଣବୀର, ସ୍ନେହ ଦେଖି ତୁମ୍ଭର, ଆଣିଲୁ ଆମ୍ଭ ସଙ୍ଗତର । ଆମ୍ଭର ଦେଖି ସ୍ନେହ, ଅନ୍ତରେ ଦୟା ବହ, ଆମ୍ଭଙ୍କୁ ନିଅ ସେ ସଙ୍ଗର ହେ ॥ ବୀରବର । ନ କଲେ ପ୍ରତି ଉପକାର । ଅଧର୍ମ ହେବଟି ତୁମ୍ଭର । ଜାଣ କି ତୁମ୍ଭେ ମନେ, ତୁମ୍ଭ ସଙ୍ଗ ବିହୀନେ, ଯିବୁ ଆମ୍ଭେ ଅଯୋଧ୍ୟାପୁର ॥ ରାବଣକୁ ମାରିଲେ; ସୀତା ଘେନି ଅଇଲେ, ଯଶ କାହାକୁ ଦେଖାଇବି । ଅଯୋଧ୍ୟାପୁର ଗଲେ, ଜନନୀ ପଚାରିଲେ ତାହାଙ୍କୁ କି ବୋଲି କହିବି ହେ । ବୀରବର । ଥିବାରୁ ସବୁ ସୁଲକ୍ଷଣ । ଯେଣୁଟି ବୋଲାଅ ଲକ୍ଷ୍ମଣ । ଗୁଣି ତୁମ୍ଭର ଗୁଣ, ଗୁଣିଣ ମୋର ପ୍ରାଣ ନ ଯାଇ ଅଛି କି କାରଣ ॥

—*—

## ୭୨ତମ ଛାନ୍ଦ—ରାମଚନ୍ଦ୍ରଙ୍କ ଶୋକ

ରାଗ—ଅର୍ଦ୍ଧସିନ୍ଧୁଡ଼ା

କରନ୍ତି ରୋଦନ କଉଶଲ୍ୟା ନନ୍ଦନ ଶୁଣ ଆରେ ସଉମିତ୍ରି । କେବଣ ପାତକ ପୂର୍ବେ କରିଥିଲୁ ବାଳକ ବ୍ରହ୍ମଣକତି । ଭାଇ ପ୍ରାଣର ସଖା । ମୋତେ ଛାଡ଼ିକରି ଗଲୁ ଏକା ॥ ଅଯୋଧ୍ୟାରେ ଥିଲେ ସୁଖେ ତ ଥାଆନ୍ତ ଗୋଡ଼ାଇ ଅଇଲୁ ଭାଇ । ଧନୁଶର ଧରି ଜଗି ବସିଥାଉ ରାତେ ଉଜାଗର ହୋଇ । ମନେ ନ ଧରୁ ଆନ । ତୁ ତ ସାବତମାତା ନନ୍ଦନ ॥ଘରକୁ ଗଲେ ଯେ ମାତା ପଚାରିବେ ଲକ୍ଷ୍ମଣ କେଣିକି ଗଲା । କି ବୋଲି ବୋଲିବି ମାତାଙ୍କ ଛାମୁରେ ବିଧାତା ଏ ଦଣ୍ଡ ଦେଲା । ଆଉ ଯିବି କିମ୍ପାଇଁ । ସୀତା; ନେବାରେ ମୋ କାର୍ଯ୍ୟ ନାହିଁ ॥ ଆହେ ବିଭୀଷଣ ହେଲା ଜାଳିଆଣ ଦେଖିବା ଭାଇ ସାନୁଜ । ବଞ୍ଚିବ କି ନାହିଁ ଅଚଳ ଶକତି ମାରିଗଲା ଲଙ୍କରାଜ । ସେ ଯେ ଗରିଷ୍ଠ ଶର । ଏକଘ୍ନୀ ନାମ ଅଟେ ତାର ॥ ଓପାଡ଼ିଣ ଶକ୍ତି ବୀର ରଘୁପତି ହୃଦକୁ ଦେଲେ ଅନାଇ । ଇଅଁଳା ପିଅଁଳା ଶିଶୁମୁନା ନାଡ଼ୀ ଦିଶୁଛି ପିଙ୍ଗଳ ହୋଇ । ମୁଁ ଯେ କରିବି କିସ । ଖାଇ ମରିବି ଗରଳ ବିଷ ॥ ଆହେ ବିଭୀଷଣ ସୁଗ୍ରୀବ ରାଜନ ମନ୍ତ୍ରୀ ଜାମ୍ବବ ସୁଷେଣ । କାହାର କେତେକ ଉପାୟ ଯେ ଅଛି ବଞ୍ଚିବ ଭାଇ ଲକ୍ଷ୍ମଣ । ଶୁଣି ସୁଷେଣ କହେ । ବୋଲେ ଗୋପୀ ବଞ୍ଚିବେ ଉପାୟେ ॥

—॰—

## ୭୩ତମ ଛାନ୍ଦ

ରାଗ—କାମୋଦୀ

ଆହେ ମନ୍ତ୍ରୀ ସୁଷେଣ, କିସ ଉପାୟ ଜାଣ, କହ ମୁଁ କି ବୁଦ୍ଧି କରିବି । ଅଯୋଧ୍ୟା ସମ୍ପଦର, କାର୍ଯ୍ୟ ନାହିଁ ମୋହର, ସାନୁଜ ସଙ୍ଗତେ ମରିବି

ହେ । କପିବର । ଶୁଣିଣ ଶିରେ ଦେଇ କର । ବୋଲଇ ଶୁଣ ରଘୁବୀର । ଲକ୍ଷ୍ମଣଙ୍କର କଷ୍ଟୁ; ଅଲକ୍ଷଣ ନ ଦେଖି, ଔଷଧି ଆଣୁ ହନୁବୀର ହେ ।। ରାମ ହନୁକୁ ଚାହିଁ, ବହୁତ ଦୁଃଖୀ ହୋଇ, ସୁଷେଣ କି କହନ୍ତ ଶୁଣ । ଯେଉଁ ଔଷଧି ପୂର୍ବେ, କହିଥିଲେ ଜାମ୍ବବେ, ତାହା ଆଣିବ ଏହିକ୍ଷଣ ହେ । ହନୁବୀର । ଶୁଣିଣ ଶ୍ରୀରାମ ଉତ୍ତର । ଶିରେ ଦେଇଣ ବେନିକର । କାୟା କରି ବିସ୍ତାର, ପବନୁ ଅତି ଖର, ଗଲେ ସେ ଆକାଶ ମାର୍ଗରେ ସେ ।। ରାବଣ ଆଗେ ଯାଇଁ, ଡ଼ଗର ଯେ ଜଣାଇ ଶୁଣିବା ହେଉ ଲଙ୍କେଶ୍ୱର । ଔଷଧି ଆଣି-ବାକୁ, ଗନ୍ଧମାର୍ଦନେ ଗଲା; ଦେଖି ଅଇଲ ହନୁବୀର ସେ । ଦଶଶିର । ତାହା ଶୁଣି ବିସ୍ମୟ ହେଲା । କାଳନେମିକି ଡ଼କାଇଲା । ବସାଇ ତାକୁ ପାଶ; କରି ଅତି ବିଶ୍ୱାସ, ଏମନ୍ତ ବଚନ ବୋଇଲା ସେ ।। ଆଜ୍ଞା ଦେଲା ତାହାକୁ; ଔଷଧି ଆଣିବାକୁ, ଗଲା ଯେ ପବନକୁମର । ଯେମନ୍ତ ନ ଆସିବ, ଲକ୍ଷ୍ମଣ ନ ବଞ୍ଚିବ, ଏମନ୍ତ ଉପାୟ ତୁ କର ହେ । ଦୈତ୍ୟବୀର । ଶୁଣି ସେ ମନେ ଭୟ କଲା । ପୁଣି ଏମନ୍ତ ବିଚାରିଲା । ମାରିଚ ପ୍ରାୟ ନାଶ, ହେବି ଆଜ ଅବଶ୍ୟ, ଦଇବ ପ୍ରତିକୂଳ ହେଲା ସେ ।। ନ ଗଲେ ଏହିକ୍ଷଣ, ମାରିବ ଏ ରାବଣ, ଗଲେ ମାରିବ ହନୁବୀର । ହନୁ ମୋତେ ମାଇଲେ, ରାବଣ ଜୟ କଲେ, କାର୍ଯ୍ୟ ହୋଇବ ମିତ୍ରଙ୍କର ସେ । ଦୈତ୍ୟବୀର । ଏମନ୍ତ ନିର୍ଣ୍ଣୟ ସେ କଲା । ପବନ ବେଗୁଁ ବେଗେ ଗଲା ।। ହିମାଚଳ ନିକଟ ଗନ୍ଧର୍ବ ସରୋବର ତହିଁ ତଟେ ପ୍ରବେଶ ହେଲା ସେ ।। ଅଛି ତହିଁ କୁମ୍ଭୀରୀ, ସେ ପୂର୍ବେ ଅପସରୀ, ତାହା ଜାଣି ଉପାୟ କଲା । ସଙ୍ଗେ ଅସୁରଗଣ, ମୁନିବେଶ କରିଣ, ଆପଣେ ତପସ୍ୱୀ ହୋଇଲା ସେ । ଦୈତ୍ୟବୀର । ସୁବର୍ଣ୍ଣ ପ୍ରାସାଦ ରଚିଲା । ହେମ ପ୍ରତିମା ଏ ସ୍ଥାପିଲା । ବିବିଧ ତରୁବର, ଫଳ ପୁଷ୍ପେ ମନୋହର, ଏମନ୍ତ ଆଶ୍ରମ ପାଞ୍ଚିଲା ଯେ ।। ବିଭୂତିରେ ଭୂଷଣ, ଶିରେ ଜଟା ଧରିଣ, ପ୍ରାସାଦ ଦୁଆରେ ବସିଲା । ହନୁ ଆସିବା ପାଇଁ ଆକାଶକୁ ଅନାଇ କୃଷ୍ଣାଜିନ ମାଡ଼ି ବସିଲା ସେ ।। ମାୟାମୁନି । ହନୁ ଆସିବାର ଜାଣିଲା । ପ୍ରତି-ବଚନରେ ଡାକିଲା । ହେ ବୀର ହେ ଅସ, ଅମ୍ଭ ପାଖରେ ବସ, ଶ୍ରାନ୍ତିହରି ଯାଅ ବୋଇଲା ସେ ।। ଯେବେ ତୁ ନ ଆସିବୁ, ଆଜ୍ଞା ଭଗ୍ନ କରିବୁ, କାର୍ଯ୍ୟ ହୋଇବ ତୋର ନାଶ । ତାର ବଚନ ଶୁଣି, ଭୟରେ କପିମଣି, ଆସି ମିଳିଲେ ତାର ପାଶ ସେ । ହନୁବୀର । ମୁନିଙ୍କି କଲେ ନମସ୍କାର । ଶିରେ ଲଗାଇ ବେନିକର । ହେ ମୁନି କୃପା କର, କହ କାହିଁକି ନୀର, ପିଇ ତୃଷା ହରିବି ମୋର ସେ ।। ଶୁଣି ମୁନି ହରଷ ବୋଇଲେ ବାବୁ ବହ, କମଣ୍ଡଳରୁ ପିଅ ନୀର । ହନୁ ଶୁଣି ବୋଇଲେ, ଏଥୁ ଜଳ ପିଇଲେ, ତୃଷା ତ ନ ଯିବ

ମୋହର ହେ । ମୁନବର । ଶୁଣି ସେ ଆନନ୍ଦ ହୋଇଲା । ସରୋବର ଦେଖାଇଂ ଦେଲା । ହନୁ ତର୍ହିଁରେ ଯାଇଁ, ଜଳ ପିଅନ୍ତେ ରହି; କୁମ୍ଭୀରୀ ଆସିଣ ଧଇଲା ସେ ॥ ହନୁ ଚରଣ ଧରି, ଘୋର ଗର୍ଜ୍ଜନ କରି, ନଅଇ ଜଳର ଭିତର । ଦେଖି ପବନସୁତ ଜଳେ ବୁଡ଼ି ଭିତରୁ, ବେନି ପାଟିଧଇଲା ତାର ସେ । ହନୁବୀର କୁଳରେ ଆଣି ପକାଇଲେ । କ୍ରୋଧେ ତା ଶରୀର ଦଳିଲେ । ପ୍ରାଣ ଛାଡ଼ି ଅସୁରୀ, ହୋଇଣ ଅପସରୀ, ହନୁକୁ ଏମନ୍ତ ବୋଇଲେ ସେ ॥ ଏହି ଋଷି ରୂପ ହୋଇ, କାଳ ନେମିଟି ଏହି, ରାବଣ ଦେଲା ପଠାଇ । ଏ ଜଳରେ ବୁଡାଇ ତୋତେ ମାରିବା ପାଇଁ, ଅସୁର ମୁନି ଅଛି ହୋଇ ହେ । ହନୁବୀର । ଏହାକୁ ବେଗ କରି ମାର । କ୍ଷଣେହେଁ ବିଳମ୍ବ ନ କର । ତୁମ୍ଭଙ୍କୁ ବାଟ ଚାହିଁ, ଆକାଶକୁ ଅନାଇଁ; ଦୁଃଖେ ଅଛନ୍ତି ରଘୁବୀର ହେ ॥ ଶୁଣି ତାର ଉତ୍ତର, କ୍ରୋଧେ ହନୁ ସତ୍ୱର, ମୁନିଙ୍କୁ କହିଲେ ସେ ଯାଇ । କଲ ଯେ ଉପକାର, ପିଆଇ ମୋତେ ନୀର, ସେବା ମୁଁ କରିବି ଗୋସାଇଁ ହେ । ମୁନିବର । ଏବେ ମୋ ହସ୍ତେ ପୂଜା ପାଅ । ସୁଖେ ଶମନପୁରେ ଯାଅ । ମାୟା ତପସ୍ୱୀ ହୋଇ, ଶିବ ପୂଜୁଛ ରହି; ତହିଁର ଫଳ ଦେବି ନିଅ ହେ ॥ ଏତେକ କହି ବୀର, ମୁଥେ ମାରି ତାଉର ଚରଣ ଛାହାର ଧଇଲା । ଚକ୍ର ପ୍ରାୟେ କରଣେ, ଆକାଶେ ବୁଲାଇଣ, ପ୍ରାସାଦ ଉପରେ ପିଟିଲା ସେ । ହନୁବୀର । ମାରି ତାକୁ ପକାଇ ଦେଲେ । ପ୍ରାସାଦ ପ୍ରତିମା ଭାଙ୍ଗିଲେ । ଯେତେ ଅସୁରଗଣ, ଥିଲେ ତା ସଙ୍ଗେ ପୁଣ ମାରି ଯମପୁରେ ପେଷିଲେ ସେ ॥ ହିମାଚଳର ତଟ, ମେରୁ ଗିରି ନିକଟ, ଗନ୍ଧମାଦନରେ ହୋଇଲେ । ଜାଣି ତାହା ଗନ୍ଧମାଦନରେ ହୋଇଲେ । ଜାଣି ତାହା ଗନ୍ଧର୍ବେ, କୋପ କରଣ ସର୍ବେ ମାରୁତି ଅଗ୍ରତେ ମିଳିଲେ ସେ । ଅତି ଚଣ୍ଡ । ମାଇଲେ ତୀକ୍ଷଣ କାଣ୍ଡ ଖଣ୍ଡ ॥ ଗଦା ମୁଦ୍ଗର ଲୌହ ଦଣ୍ଡ । ସହି ତା ହନୁମାନ, କୋପ କରଣ ମନ ଗର୍ଜିଣ ତର୍ଜିଲେ ପ୍ରଚଣ୍ଡ ॥ ତଳ ଗୋଇଠା ମୁଷ୍ଟି, ପ୍ରହାର କପି ଯଷ୍ଟି, ସେ ତିନକୋଟି ହତକଲେ । ହନୂ ଆସିବା ଜାଣି, ଔଷଧମାନେ ପୁଣି, ଦୃଷ୍ଟିକି ଗୋଚର ନୋହିଲେ ସେ । ହନୁବୀର । ଏଣୁ ହୋଇଲେ କୋପ ଭର । ଗିରି ଭାଙ୍ଗି ଧଇଲେ ଶିର । ଅତିବେଗେ ପାବନ, ଔଷଧ ଗିରି । ଘେନି, ଗଗନେ ଗଲେ ସେ ସତ୍ୱର ସେ ॥ ଏ ରସେ ଭକ୍ତେ ବଶି, ବଂଶପାଣି ବନାଣି, ସୀତା ବିଳାସୀ ରୂପଧାରୀ । କାଳଦଣ୍ଡ ଉଦ୍ଧରି, ରଖ କୋଦଣ୍ଡଧାରୀ, ଅଯୋଧ୍ୟା ମଣ୍ଡଳବିହାରୀ ହେ । ରାମଚନ୍ଦ୍ର । ମହାବଳସୂ ନୃପଇନ୍ଦ୍ର । ନିଖିଳ ଗୁଣୀଗଣ ସାନ୍ଦ୍ର । କନ୍ଦର୍ପ ଦର୍ପହର, ଦର୍ପଣ ଝଳସାର, ସୁନ୍ଦର ଜଟାପକ୍ଷ ଚନ୍ଦ୍ର ହେ ॥

—×—

## ୭୪ତମ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

ଘେନିଣ ଔଷଧି, କପିକୁଳନିଧି, ଗଗନ ମାର୍ଗରେ ଗମେ । ଦଶନଶ୍ଛ ଲାଗି ଲୁଜୁବାଟ ଭାଙ୍ଗି, ମିଳିଲା ଅଯୋଧ୍ୟା ଧାମେ ॥ ନନ୍ଦୀଗ୍ରାମପୁର, ଗମଇ ପ୍ରଖର ଗଳା ଝଡ଼େ ଶ୍ରମଯୀଳ । ରଜନୀ ଭ୍ରମଣି, କରି ରଘୁମଣି; ସେ କାଳେ କୈକେୟୀ ବାଳ ॥ ଶୁଣିଣ ଶବଦ; ହୋଇଣ ଚବଦ; ଭରତ ଅନ୍ତରେ ଭାଳେ । ପକ୍ଷରେ ରହିତ; ଯେଉଁ ପରବତ; ଆକାଶରେ ସେହି ଚଳେ । ବିଚାରି ଏସନେ; ବାଣେ ଶରାସନେ; ବସାଇ ବାହନ୍ତେ ବିର । ଦେଖି ଶଙ୍କା ପାଇ; ଆକାଶରେ ଥାଇ, ବିଚାରେ ବାୟୁକୁମର ॥ ନଷ୍ଟେ ଏହି ରାମ; ବହି ମନେ ଭ୍ରମ; ମୋହର ବିଳମ୍ବ ଦେଖି । ଲାଗୁଅଛି ଘଟ; ଜଟିଛନ୍ତି ବାଟ; କୋଦଣ୍ଡରେ କାଣ୍ଡ ଯୋଖି ॥ କି ଅବା ଭରତ; ରାମ ସାନ ଭ୍ରାତ; ଦଶରଥ ରାଜା ବେଟା । ରାଘବ ବିହୀନ; କୃଶ କରି ତନୁ; ମୁଣ୍ଡେ ବହିଛନ୍ତି ଜଟା ॥ ଏହାଙ୍କୁ ସମ୍ଭାଷି, ଯିବି ମୁହିଁ ଖସି; ନୋହୁ ମୋର ବିଘ୍ନକର । ଏମନ୍ତ ବିଚାରି; ଗଗନୁ ଉତ୍ତରି, ମିଳିଲା ଭୂମିରେ ବୀର ॥ ଦେଖିଣ ତ୍ୱରିତ; ଆପଣେ ଭରତ; ପଚାରନ୍ତି ତୁମ୍ଭେ କେହୁ । ଗଗନେ ବିଚରି; ଯାଉଅଛ ଭୂମି ପକ୍ଷ ବିନା ମହାବାହୁ ॥ ଶୁଣି ହନୁମାନ; ବୋଲେ ହେ ସୁମନ; ମୁହିଁ ପବନର ବାଳ । ସେବା କରେନିତି; ରାମ ରଘୁପତି ଚରନକମଳ ତଳ ॥ ଲଙ୍କା ଅଧିକାରୀ; ସୀତା ନେଲା ହରି; ବାଳିକୁ ଶ୍ରୀରାମ ମାରି । ହୋଇ ସୁଗ୍ରୀମେଳ; ବାନ୍ଧି ସିନ୍ଧୁଜଳ, ପ୍ରବେଶ ସୁବଳଗିରି ॥ ନାଗପାଶ ବ୍ରହ୍ମଶର ଆଦି ହାନି, ଅନେକ କଲୁ ସମର । ରାବଣ ତନୁଜ, ନାଶିଲେ ଅନୁଜ; ଶ୍ରୀରାମ ଲକ୍ଷ୍ମଣ ବୀର ॥ ଘେନି ପୁତ୍ରଶୋକ; ଲଙ୍କାର ନାୟକ; ଶକତି ମାଇଲା ସଞ୍ଚେ । ଦେଇ ପଞ୍ଚପ୍ରାଣ, ପଡ଼ିଛି ଲକ୍ଷ୍ମଣ ନିରଖ ପରାପ୍ତେ ମଞ୍ଚେ ॥ ଅଉଷଧି ପାଇଁ, ସେହି ଘେନି ମୁହିଁ ମିଳିଲି ଗନ୍ଧମାର୍ଦ୍ଦନ । ହୋଇ ବିସ୍ମରିତ; କହ କନା ସତ; ଅଟ ତୁମ୍ଭେ କେଉଁ ଜନ ॥ ଶୁଣିଣ ଭରତ; ବୋଇଲେ ଶୁଣ ତ ମୁହିଁ ରାମଚନ୍ଦ୍ର ଭାଇ । ଦଶରଥ ସୁତ ଜଗତେ ବିଦିତ କୈକେୟୀ ମୋହର ମାଈ ॥ ସଂସାରେ ଥାଇକି; ଏ କଷ୍ଟ ଭାଇକି ବିହିଲା ମୋର ଦଇବ । ଦେହେ ପଞ୍ଚପ୍ରାଣ; ଥିଲେ କେହି ପୁଣ, ଏ ଦୁଃଖ ସହି ରହିବ । କପି ସୁଧାନିଧି ଜୀଉ ମୋହର ସାନୁଜ । ରାବଣକୁ ମାରି ବେଗେ ପୁରପଧାରି ଆସିଣ କରନ୍ତୁ ରାଜ୍ୟ ॥ ଶୁଣି ଏ ଉତ୍ତର, ମରୁତ କୁମର, ଦକ୍ଷିଣ ମୁଖତ ହୋଇ । ମହାରଣରଙ୍କା ପ୍ରବେଶ ସେ ଲଙ୍କା, ପାଖରେ ନିଃଶଙ୍କା ହୋଇ ॥ ଜାଣି ରଘୁଶ୍ରିପ, ହୋଇଣ ସନ୍ତୋଷ,

ବୋଇଲେ ଅଇଲୁ ବାବୁ । ଯୂଥପତିବୃନ୍ଦ, ଲଭଣ ଆନନ୍ଦ, ବୋଇଲେ ତୁ କଲୁ ସବୁ ।। ଶୁଣି ଭଣେ ହନୁ, ଏମନ୍ତ ବଚନୁ; ଦୋଷ କରିଛି ଏତେକ । ଔଷଧି ନ ଚହ୍ନି ଗିରିମୂରଧନୀ, ଆଣିଲି ମୋର ମସ୍ତକ ।। ଶୁଣି ସୁଖ ପାଇ ପର୍ବତ ଓହ୍ଲାଇ, ରଖିଲେ ବାନରଗଣ । ଧନ୍ୱନ୍ତରୀଙ୍କର, ଖୋଜିଲେ କୁମର, ଔଷଧି ଚହ୍ନିଁ ସୁଷେଣ ।। ଅଉଷଧି ଚହ୍ନି, ପଞ୍ଚ ଚହ୍ନୁଁ ଆଣି, ଶିଳାରେ ଛେଚିଲେ ନେଇ । ଆଣିଣ ଅନଳ; କ୍ଷୀରସିନ୍ଧୁ ଜଳ; ଗୁଡ଼ାଏ ତହିଁ ମିଶାଇ ।। ସେନଣ ବଇଦ୍ୟ, ଲକ୍ଷ୍ମଣ ସନ୍ନିଧି, ଦେନ ନାସାପୁଡ଼ା ଟେକି । ଦେଲେ ଦ୍ରବ୍ୟ ନାଶ, ଝଡ଼ିଲା ସେ ପ୍ରାସ, ମୁଦ୍‌ଦେଲା ହୃଦସ୍ଥଳ ।। ଭାଇ କୋଳୁ ଉଠି, କର ଦୁଇଗୋଟି ଯୋଡ଼ିକଲେ ନମସ୍କାର ।। ଦେଖି ଜୟେ ଜୟେ, କରନ୍ତି କପିଏ, ଆନନ୍ଦେ ଉଠିଲେ ବୀର ।। ଏ ଅନ୍ତେ ତତ୍କ୍ଷଣେ, ଆଜ୍ଞା ପରମାଣେ ହନୁମନ୍ତ ନେଲା ଗିରି । ଶୂନ୍ୟେ ଦୈତ୍ୟ ମାରି, ଗିରି ରଖିକରି; ଆସି ହେଲା ଲଙ୍କାପୁରୀ ।। ଭଣେ ଦୀନ ବଳି; ଏହି ରସେ ରସି, ଦିନ ରାତି ମୋର ଯାଉ । ରାବଣ ଅରାତି; ଚରଣେ ପୀରତି, ପ୍ରତିକ୍ଷଣେ ମୋର ଥାଉ ।।

---

## ଚଉଷଷ୍ଠିମଛାନ୍ଦ

ରାଗ—ଦକ୍ଷିଣକାମୋଦୀ

ରାମ ଆଜ୍ଞା ଦେଲେ ବିଭୀଷଣେ ଶୁଣି । କହ ଲଙ୍କାପତି ହେ ରାବଣ କାହିଁ ।। ଶୁଣି ବିଭୀଷଣ କହେ ଯୋଡ଼ି କର । ଶୁଣ ଦେବ ଯହିଁ ଅଛି ଦଶଶିର ।। ଶକତି ମାରି ମନେ ବିଚାର କଲା । ଶୁକ୍ରଙ୍କ ପାଶକୁ ଅତି ବେଗେ ଗଲା ।। ଚରଣେ ପଡ଼ି ଅତି ଆକୁଳ ହୋଇ । ବଂଶ କରଯୋଡ଼ି ଯୁଦ୍ଧ କଥା କହି ।। ଶୁଣି ଭୃଗୁସୁତ ତାରେ ଦୟା କଲେ । ସର୍ବଜୟ ମନ୍ତ୍ର ଉପଦେଶ ଦେଲେ ।। ବୋଲନ୍ତି ଏ ମନ୍ତ୍ର ଯେବେ ହୋମ କର । ବାହାର ହୋଇବ ତହୁଁ ରଥବର । ସେ ରଥେ ବସିଣ ଯାଇ କର ରଣ । ନ ଜିଣିବେ ରାମ ହେଲେ ନାରାୟଣ ।। ଶୁଣି ସେ ଆନନ୍ଦମନେ ବେଗେ ଆସି । ହୋମ କରୁଅଛି ସେ ମନ୍ତ୍ରରେ ବସି ।। ମୋର ମନ୍ତ୍ରୀ ତାର ସଙ୍ଗତରେ ଥିଲେ । ଏ ସର୍ବ ବୃତ୍ତାନ୍ତ ଜାଣି ସେ କହିଲେ ।। ସମ୍ପୂର୍ଣ୍ଣ ହୋଇଲେ ହୋମ ହେବ ମନ୍ଦ । ମାରି ନ ପାରିବା ଆଉ ଦଶକନ୍ଧ ।। ଯେଉଁପରି ବିଘ୍ନ ହେବ ତାହା କର । ଶୁଣି ରାମ ଡକାଇଲେ ହନୁବୀର ।। ମହେନ୍ଦ୍ର ଦ୍ୱିବିଦ ନଳ ନୀଳ ଯହିଁ । ଅଙ୍ଗଦ ଜାମ୍ବବନ୍ତଙ୍କୁହିଁ ଆଜ୍ଞା ଦେଇ ।। ବୋଇଲେ ବହନ ତୁମ୍ଭେ ଲଙ୍କେ ପଶ । ହୋମ କରୁଛି ରାବଣ କର ନାଶ । ରାମ ଆଜ୍ଞା ପାଇ

ଶିରେ କର ଦେଇ । ଲଙ୍କାଗଡ଼େ ପଶିଲେ ଯାଚେଶ୍ୱ ତ୍ତେଇଁ । ଖୋଜି ନ ପାରନ୍ତେ ଲଙ୍କା ସର୍ବସ୍ଥାନ । ଯେଉଁଠାରେ ହୋମ କରେ ଦଶାନନ ।। ବିଜଟାକୁ ହନୁ ଯାଇ ପଚ୍ଛରିଲେ । ଯାଇ ହୋମସ୍ଥାନ ସେ ଦେଖାଇଦେଲେ ।। ମନ୍ତ୍ର ତେଜେ ତା ପାଶେ ନ ପାରେ ପଶି । ବିସ୍ମୟ ହୋଇଲେ ହନୁ ଭଣେ ବିଶି ।।

—୦—

## ୭୭ତମଛାନ୍ଦ

ରାଗ—ଦକ୍ଷିଣକାମୋଦୀ

ରାବଣ ହନୁ ଦେଖି କ୍ରୋଧ କଲ୍ପ । ରାବଣ ଅନ୍ତଃପୁରେ ପଶିଲେ ଯାଇଁ ।। ମନ୍ଦୋଦରୀ କେଶ ଧରି ଘେନ ଆସି । ରାବଣ ଆଗେ ରଖି ବଚନ ଭାଷି ବୋଇଲେ ପାମର ଆରେ ଦେଖ । ଏ ତୋହର ମନ୍ଦୋଦରୀ ରାଣୀ ଦୁଃଖ ।। ରାମ ନ ଥିଲେ ସୀତା ଆଣିଲୁ ତୁମ୍ଭ । ଆମ୍ଭେ ମନ୍ଦୋଦରୀ ନେବୁଁ ତୋତେ କହୁ ।। ସୀତାଙ୍କ ସଙ୍ଗରେ ଅଯୋଧ୍ୟାକୁ ଯିବ । ଦାସୀ ହୋଇ ଚରଣରେ ଖଟିଥିବ ।। ଆଜ ଯେତେ ରାଣୀ ଛନ୍ତି ଅନ୍ତଃପୁର । କପିଙ୍କି ବାଣ୍ଟିଣ ଦେବେ ରଘୁବୀର ।। ପାରିଲେ ତୁ କ କରିବୁ ଆସି କର । ବୋଲନ୍ତି ପବି ବୀରଙ୍କ ପରେ ବୀର ।। ମନ୍ଦୋଦରୀ ରୋଦନ ହନୁରବାଣୀ । ହୋମ ଛାଡ଼ି ଅନାଇଲା ବଂଶପାଣି ।। ଦେଖିଲା ମନ୍ଦୋଦରୀ ରାଣୀର କେଶ । ବାମକରେ ଧରିଛନ୍ତି ପବନଶିଷ୍ୟ । କ୍ରୋଧ ହୋଇ କରରେ ଖଡ଼ଗ ଧରି । ହୋମ ଛାଡ଼ି ଧାଇଁଲା ହନୁକୁ ମାରି ।। ମନ୍ତ୍ର ତେଜେ ହନୁ ରହି ନ ପାରିଲେ । ମନ୍ଦୋଦରୀ କେଶ ଛାଡ଼ି ପଳାଇଲେ ।। ରାବଣ ଯିବା ଦେଖି ଅଙ୍ଗଦ ବୀର । ହୋମ ସ୍ଥାନୁ ଶ୍ରୁବ ଶ୍ରୁଚ ନେଲେ ତାର ।। ନଳ ନୀଳ ଆଦ୍ୟସ୍ଥାନୀ ଘେନଗଲେ । ମଳ ମୂତ୍ର ଅଗ୍ନି କୁଣ୍ଡେ ପୂର୍ଣ୍ଣ କଲେ ।। ମହେନ୍ଦ୍ର ଦୁର୍ବିନ୍ଦ ଦୁହେଁ ଧାଇଁ ଯାଇଁ । ହୋମ ଘୃତମାନ ସବୁ ଦେଲେ ପିଇ ।। ଅଗ୍ନିକୁଣ୍ଡ ଭାଙ୍ଗି ହୋମ କରି ନାଶ । ରାମ ଆଗେ କହିଲେ ପବନଶିଷ୍ୟ ।। ମନ୍ଦୋଦରୀ କର ଧରି ଦଶଶିର । ପ୍ରବୋଧ କରିଣ ନେଲା ଅନ୍ତଃପୁର ।। ପୂର୍ବଜନ୍ମ କଥାମାନ ତାକୁ କହି । ଯୁଦ୍ଧକୁ ବାହାରି ହେଲା ସେହ୍ନା ଲଇ ।। ଧନୁ ଧରି ପୁଷ୍ପକମାନରେ ବସି । ଯୁଦ୍ଧ ଭୂମିକି ଆଇଲା ଭଣେ ବିଶି । ୧୭ ।



## ୭୮ତମ ଛାନ୍ଦ—ରାମ ରାବଣଯୁଦ୍ଧ

ରାଗ—ପଞ୍ଚମବରାଡ଼ି

ମନେ କରି ଗରୁଡ଼ମ ସାଜି ରଥ ତୁରଙ୍ଗମ ମିଳିଲା ସେ ଯହିଁ ଥିଲେ ରାମ । ଏମନ୍ତ ସମୟେ ରାମ ରାବଣର ଧରି ନାମ ଆସ ଆସ କରି ତୁ

ସଂଗ୍ରାମ ରେ । ଦଶଶିର । ଶୁଣିଣ ଶ୍ରୀରାମ ଉତ୍ତର । ଶୁକଙ୍କୁ କହେ ସତ୍ୱର । ବାହା ମୋର ରଘୁବର ରାମର ପାଶେ ନେଇଣ କର ।। ବିନ୍ଧିଲେ ବିଷମବାଣ ଛେଦିଲା ତାହା ରାବଣ ପ୍ରତିଶରମାନଙ୍କୁ କରିଣ । ପୁଣି ରାମ ବିନ୍ଧେ ବାଣ କାଟିଲା ତାହା ରାବଣ ପ୍ରତିବାଣମାନଙ୍କୁ ମାରିଣ ସେ । ରଘୁବୀର । ବେଳକୁଁ ବେଳ ବଢିଲା ଯେ ତେଜ । କି ଅବା ପ୍ରଳୟାନଳ ଦହିବ ଭୂମିମଣ୍ଡଳ ସେହିରୂପେ ଦିଶେ ରାମରାଜ ।। ଆକାଶେ ଶରୀରମଣ ଘେନିଣ ଅମରଗଣ ଦେଖନ୍ତି ଦେବନନ୍ଦନଙ୍କ ରଣ । ମାତଳିକି ଚାହିଁ ପୁଣ ବୋଲନ୍ତି ସେ ସୁରରାଣ ଆମ୍ଭ ରଥକୁ ସାଜିଣ ଆଣ ହେ । ମାତଳି । ଶ୍ରୀରାମଙ୍କୁ ମୋର ରଥ ଦିଅ । ରଥେ ବିଜୟ କରାଅ ଆପଣେ ସାରଥି ହୁଅ ମରୁ ବେଗେ ବିଶ୍ରବାର ପୁଅ ।। ଶୁଣି ସେ ଶକ୍ର ବଚନ ତକ୍ଷଣେ ମଣ୍ଡିଲେ ଯାନ ଭୂମିକି ସେ ଅଇଲେ ବହନ । ଶ୍ରୀରାମ ସନ୍ନିଧେ ଯାନ କରି ପଢ଼େ ସ୍ତବମାନ ସୁରପତି ଦେଲେ ଏହି ଯାନ ହେ । ରଘୁବୀର । ଏହି ରଘୁବରେ ବିଜେ କର । ଭୂମିରେ ଉଭା ଆପଣ ରଥରେ ଅଛି ରାବଣ ଏ କଥା ନୁହଇଟି ନକର ।। ଶୁଣି ମାତଳି ବଚନ ପ୍ରଦକ୍ଷିଣ କରିଯାନ ନମସ୍କାର କଲେ ଯେ ବହନ । ରଘୁକୁଳର ନନ୍ଦନ ତକ୍ଷଣେ ଆରୋହି ଯାନ ମାତଳିଙ୍କ ଭାଷିରେ ବଚନ ହେ । ମାତଳି । ସାବଧାନ ହୋଇଣଟି ଥିବ । ବିରଚି ରଥ ବାହିବ ରାବଣ ସମ୍ମୁଖେ ଥିବେ ଉଭୟଙ୍କ ସଂଗ୍ରାମ ଦେଖିବ ।। ରଥରେ ବହୁତ ଅସ୍ତ୍ର ଦେଇଛନ୍ତି ସସ୍ତ୍ରନେହ ଧନୁର୍ଗଦା କୁନ୍ତ ଯେ କୁଠାର । ଶକତି ପରିଘ ଶର ଶୂଳ ଆଦି ଅସିବର ନାନାବିଧ ଆୟୁଧ ସେ । ରଘୁବୀର । ଦେଖି ବହୁତ ଆନନ୍ଦ ହେଲେ । ବହୁତ ଶର ସନ୍ଧିଲେ ବହୁତ ଶର ଛେଦିଲେ ବହୁଥର ସେ ସଂଗ୍ରାମ କଲେ ।। ଅସୁର ଅସ୍ତ୍ର ରାବଣ ପ୍ରହାରନ୍ତେ ସେହିକ୍ଷଣ ସର୍ପ ଶାର୍ଦ୍ଦୂଳ ଆଦି ଯେ ଜୀବ । ସହସ୍ର ସହସ୍ର ହୋଇ ଆସନ୍ତି ଖାଇବା ପାଇଁ ଦୂରୁଁ ତାହା ଦେଖିଣ ରାଘବ । ସେମାନଙ୍କୁ । ଅଗ୍ନିଶର ପ୍ରୟୋଗକୁ କଲେ । ପୋଡ଼ିଣ ସମସ୍ତେ ମଲେ ଦେବକୁଳ ଦେଖୁଥିଲେ ସାଧୁ ସାଧୁ ତ ଅମର କଲେ ହସ ।। ପୁଣିହିଁ ପନ୍ନଗ ଅସ୍ତ୍ର ପେଷିଲା ପଢିଣ ମନ୍ତ୍ର ସର୍ପମାନେ ଉଡ଼ିଣ ଅଇଲେ । ଶ୍ରୀରାମ ଗରୁଡ ଅସ୍ତ୍ର ପେଷନ୍ତେ କେବଳ ମାତ୍ର ପଳାଇ ସେ ସିନ୍ଧୁରେ ପଡ଼ିଲେ ଯେ ।। ସେ ରାବଣ ପୁଣିହିଁ ବିନ୍ଧିଲା ରୁଦ୍ର ଅସ୍ତ୍ର । ରାମ କଲେ ପ୍ରତିଶସ୍ତ୍ର ବିନ୍ଧିଲେ କୁବେର ଅସ୍ତ୍ର ବେନି ଅସ୍ତ୍ର ଯୁଝନ୍ତି ସେ ମାତ୍ର ।। ହୋଇଣ ଅନଳ ଜାତ ସେ ବେନି ହେଲା ନିପାତ ରାବଣ ଯେ କ୍ରୋଧ କଲା ଜାତ । ବିନ୍ଧିଲାକ ଅଗ୍ନିବାଣ ଜଳବାଣେ ସେହିକ୍ଷଣ ନିବାରିଲେ କଉଶଲ୍ୟାସୁତ ଯେ । ସେ ରାବଣ । ପୁଣି ବିନ୍ଧେ ପରିଘତ ବାଣ ।

ଆସନ୍ତେ ପର୍ବତ ବାଣ ବଜ୍ର ବାଣେ ରାମବାଣ କାଟିଲେକ ତାହା ସେହିକ୍ଷଣ । ପୁଣି ଛନ୍ଦେ ମେଘଅସ୍ତ୍ର ଶ୍ରୀରାମ ବାୟବ୍ୟ ଅସ୍ତ୍ର ଉଡ଼ାଇଣ ନେଲା ତା ବନ୍ଧନ । ଦେଖି ଖାର ଦଶାନନ କ୍ରୋଧ ଜାତକର ମନ ପୁଣି କାଣ୍ଡେ କଲାକ ସନ୍ଧାନ ଯେ । ସେ ରାବଣ । ଗୃହିଁ ଦଶରଥଙ୍କ ନନ୍ଦନ । ଅବସ୍ଥିବ ଛତ୍ରିଶ ଶର ଛନ୍ଦେ ଘନ ଘନ ଶ୍ରୀଅଙ୍ଗରୁ ରୁଧିର ପତନ ॥ ଦେଖି ରାମ କ୍ରୋଧମନ ବାଛି ଦିବ୍ୟଶର-ମାନ କୋଦଣ୍ଡରେ ନେଇଣ ସନ୍ଧିଲେ । ରାବଣାବୟବ ଗୃହିଁ ମର୍ମସ୍ଥାନକୁ ଦେଖାଇ ଘନ ଘନ ଶରକୁ ବିନ୍ଧିଲେ ଯେ । ସେ ରାଘବ । ଶରେ ତାର ଅଙ୍ଗକୁ ଗ୍ରାଇଲେ । ଝିଙ୍କପକ୍ଷୀ ପ୍ରାୟ ଦିଶେ ଅଞ୍ଜନା ଗିରିରେ କି ସେ ବହୁ କାଶ ପୁଷ୍ପ ବିକାଶିଲେ ॥ ବାଜଣ ଶ୍ରୀରାମ ଶର ରୁଧିରେ ସେ ଜର ଜର ହୋଇଣ ଯେ ହୋଇଲା ଅଜ୍ଞାନ । ରାବଣର ମୋହ ଦେଖି ସାରଥି ରଥରେ ରଖି ଆଡ଼ କରିଣ ସେ ନେଲା ଯାନ ଯେ । ସେ ରାବଣ । ସେହିକ୍ଷଣି ପାଇଲାକ ଜ୍ଞାନ । କମ୍ପା ସମର ମୁଞ୍ଚିଲୁ ଶତ୍ରୁ ମୁଖରୁ ଘୁଞ୍ଚିଲୁ ସାରଥିକ ବୋଲେ ଏ ବଚନ ॥ କିବା ରାମ ଦେଲେ ଲାଞ୍ଚ କିବା ବିଭୀଷଣ ପାଞ୍ଚ କିବା ମୋହଠାରେ ତୋର କ୍ରୋଧ । ପରାଣ ନାହିଁ ବିଗୃର ଜାଣିଲି ମୁଁ ନିଶ୍ଚେ ତୋର ଏହିକ୍ଷଣି କରିବଇଁ ବଧ ଯେ । ରେ ସାରଥି । ରଣେ କରାଇଲୁ ତୁ ଅଜୟ । କି ବୋଲିବେ ଦିଗପାଳ ଦେଖି ତାର ପ୍ରତିକୂଳ କମ୍ପା ମୋତେ କରିବେଟି ଭୟ ॥ ସାରଥି ଯୋଡ଼ିଣ କର ବୋଲଇ କୋପ ନ କର ତୁମ୍ଭ ସ୍ନେହେ ରଥ ମୁଁ ଆଣିଲି । ସାରଥି ସ୍ୱଭାବ ଏହି ଯୋଦ୍ଧାଙ୍କ ରୀତି ଜାଣଇ ତୁମ୍ଭ ମୋହ ହେବାର ଜାଣିଲି । ସେ ଦଶାନନ । ସାରଥିର ବହୁତ ଯେ ଗୁଣ । ହାରିବା ଜିଣିବା ଜାଣେ ବିଷମ ସମର ରଣେ ଧିକ ହେଉ ସେ ସାରଥିପଣ ॥ ପୁଣି ଦଶଶିର ତୋଷ କ୍ଷମା କଲି ତୋର ଦୋଷ ରାମ ଆଗେ ମୋର ରଥ କର । ଆନ ହୟମାନ ଆଣ ଯେ କରିପାରିବେ ରଣ ଯୋତ ଆଣି ରଥରେ ସତ୍ୱର ଯେ । ରେ ସାରଥି । ଆମ୍ଭେ ଆଜ୍ଞା କଲେ ତୁ ଆଣିବୁ । ରାମସଙ୍ଗେ ଅହର୍ନିଶି ସମର କରିବ ବସି ବସି ବୋଲେ ଗଲେ ତୁ ଜାଣିବୁ । ୧୫ ।

---

## ୭୮ତମ ଛାନ୍ଦ—ରାବଣ ବଧ

ରାଗ—ବିଚିତ୍ରକାମୋଦୀ । ପଞ୍ଚତାଳ

ଯୋତ କୃଷ୍ଣ ଅଶ୍ୱମାନ ସେ ରଥେ ଚଢ଼ି ଦଶାନନ । ଶ୍ରୀରାମ ରଥ ସମ୍ମୁଖେ ରଥ କରି ଶର ଛନ୍ଦେ ହାନ ହାନ । କିହେ ଯୁଝିଲା । ରାମ ଭୁଜର ପ୍ରତାପ ବୁଝିଲା । ଶ୍ରୀରାମର ଶର ହୃଦେ ପଡ଼ି ତାଳ ବେକୁବେଲ ଜ୍ଞାନ

ହକିଲା ॥ ହାଣନ୍ତେ ବିବିଧ ବାଣ ସେ ପରସ୍ପରେ ବେନି ଜଣ । ସ୍ୱର୍ଗରୁ ଆସି ଆକାଶରେ ରହିଣ ଦେଖନ୍ତି ଅମରଗଣ । ସେ ମିଶିଲେ । ମହା ମେଘ ପ୍ରାୟେ ବେନି ଦିଶିଲେ । ସୁତୀକ୍ଷ୍ଣ ନାରାଚ ବଦ୍ୟୁପ୍ରାୟ ତେଜ ଶର ଜଳ କି ବରଷିଲେ କି ଏ ବେନି ମତ୍ତଗଜ ସେ । ଚଉଦନ୍ତେ କରେ ଯୁଦ୍ଧ । କିବା ବୃତ୍ରାସୁର ସଙ୍ଗରେ ସମର କରୁଛନ୍ତି ଦେବରାଜ । ସେ ପାଞ୍ଚିଲେ । ବେନି ଜନେ ବଳ ଆଞ୍ଚିଲେ । ଶଙ୍ଖ କେ ଦଣ୍ଡ ପ୍ରାୟେ ବେନି କୋଦଣ୍ଡ ବହୁ ଶର ତହିଁ ମୁଞ୍ଚିଲେ ॥ ଶରମାନ ଆତପାତ ସେ । ଦିଶଇ ନାହିଁ ଆଦିତ୍ୟ । ରୁଧିରର ନଈ ନିରନ୍ତରେ ବହି କବନ୍ଧ କରନ୍ତି ନୃତ୍ୟ । ସେ ଭୂଜରେ । ନ ଦିଶଇ ବାନ୍ଧିବାର ତେଜରେ । କେବଳ ମଣ୍ଡଳାକାର ପ୍ରାୟେ ଧନୁ ଦିଶଇ କରସରୋଜରେ ॥ ଫୁଟିଲା ପଳାଶ ସଙ୍ଗ ସେ । ପାଦପ କି ବେନି ଅଙ୍ଗ । ବେନି ଝିଙ୍କ କି ସେ କି ରାମ ରାବଣ କରନ୍ତି ସମର ରଙ୍ଗ । ସେ ରସନ୍ତି । ଏକ ଆରକରେ ବେନି ଭାଷନ୍ତି । ଅସ୍ତ୍ର ମାନଙ୍କର ଆସିବା ଯିବାର କେହି କାହାକୁ ନ ଦିଶନ୍ତି ॥ କୁମ୍ଭସୁତ ବେଗେ ଆସି ସେ । ରାମକର୍ଣ୍ଣେ କହେ ହସି । ସୂର୍ଯ୍ୟଙ୍କ ହୃଦୟ ଉପଦେଶ ଦେଲେ ଶୁଣି ରାମଚନ୍ଦ୍ର ଘୋଷି । ତା ପଢିଲେ । ବେଳୁଁ ବେଳ ବହୁ ତେଜ ବଢ଼ିଲେ । ରାବଣ ଅଙ୍ଗ ବେଳୁଁ ବେଳ ଅବଶ ଅବୟବୁଁ ବଳ ଛାଡ଼ିଲେ ॥ ସାତ ରାତ୍ରି ସାତ ଦିନ ସେ । ଯୁଦ୍ଧ କଲେ ଅବିଚ୍ଛିନ୍ନ । ରୁଧିର ବୃଷ୍ଟି ଆକାଶରୁ ହୋଇଲା ଜାତ ଉତପାତମାନ । ସେ ରଣରେ । ମହାଶବଦ କରନ୍ତି ଗୁଣରେ । କେହି କାହାକୁ ସାନ ବଡ ନୁହନ୍ତି ମହାବୀର ବେନି ଗୁଣରେ ॥ ବାଛି ରାମ ଦିବ୍ୟ କାଣ୍ଡ ସେ । କାଟିଲେ ରାବଣ ମୁଣ୍ଡ । ସେ ମୁଣ୍ଡ ଛାଡ଼ି ଆଉ ମୁଣ୍ଡେ ବାହାର ହୋଇଣ ଦିଶିଲା ପିଣ୍ଡ । ସେ ହଟିଲେ । ଆଉ ମୁଣ୍ଡେ ଆଉ ଶରେ କାଟିଲେ । ପୁଣି ତହିଁ ମୁଣ୍ଡେ ବାହାର ହୁଅନ୍ତେ ପୁଣି ଆଉ ମୁଣ୍ଡେ କାଟିଲେ । ଏଣୁ ହୋଇ ସାତବାର ସେ । କାଟିଲେ ରାବଣ ଶିର । କାଟୁଥିଲେ ତାର ବେଳୁ ବେଳ ଶିର କନ୍ଧରୁ ହୋଏ ବାହାର । ସେ ତକତେ । ପଚ୍ଛରନ୍ତି ମାତଳିକି ଗୁପତେ । ମାତଳି ବୋଇଲା ବ୍ରହ୍ମଅସ୍ତ୍ରେ ବୁକୁ ଫୋଡ଼ିଲେ ମରିବ ତ୍ୱରିତେ ॥ ଶୁଣି ମାତଳି ଉତ୍ତର ସେ । ଶରକୁ କଲେ ବାହାର । ମହାଭୟଙ୍କର ଅନଳ ଆକାର ଘଟନ ବିଧାତାଙ୍କର । ସେ ଅସ୍ତ୍ରରେ । ଅଷ୍ଟଘଣ୍ଟି ଅଛି ଅଷ୍ଟଧାତରେ । ପଛରେ ମରୁତ ମଧ୍ୟରେ ଆଦିତ୍ୟ ଅଗ୍ନି ଅଛି ଫଳା ଭିତରେ ॥ ସେ ଅସ୍ତ୍ର ବସାଇ ଗୁଣେ ସେ । କର୍ଣ୍ଣ ପରିଯନ୍ତେ ଆଣେ । ମନ୍ତ୍ର ପଢ଼ି ଛାଡି ଦିଅନ୍ତେ ଉପରେ ପଡ଼ି ନେଲା ତାର ପ୍ରାଣେ । ସେ ପଡ଼ିଲେ । ଧନୁ ଛାଡ଼ି ରଥରୁ ଗଡ଼ିଲେ । ରାବଣ ପ୍ରାଣ ଘେନି ଅସ୍ତ୍ର ତତ୍କ୍ଷଣ ରାମ ତୂଣୀକି ବାହୁଡ଼ିଲେ ॥ ସକଳ ଦେବତା ମିଳି ସେ । କଲେ କୁସୁମ

ଅଞ୍ଜଳି । ଜୟ ଲକ୍ଷଣରେ ଅଭିଷେକ ପ୍ରାପ୍ତ ହରିଲ ରାମମଣ୍ଡଳ । ସେ ଆକାଶେ । ଦେବେ ଦୁନ୍ଦୁଭି ବଜାନ୍ତେ ହରଷେ । ବୋଲେ ବଳି ଋକ୍ଷ କପିବଳ ହୃଷ୍ଟଚିତ୍ତର ପଳାଇଲେ ରାକ୍ଷସେ ॥

—×—

## ୬୯ତମ ଛାନ୍ଦ

ରାଗ—ଭୈରବୀ । ସରମାନ

ରାବଣ ସଂହାରି ବୀର ଦାଶରଥି ରଥୁ ଓହ୍ଲାଇ ଭୂମିରେ ଉଭା ହେଲେ । ମହାହୃଷ୍ଟ ହୋଇ ସୁଗ୍ରୀବକୁ ରାଇ ବେନିଭୁଜେ ତାଙ୍କୁ ଆଲିଙ୍ଗନ କଲେ । କି ସଖେ ହେ ପଡ଼ିଅଛି ଦଶଶିର । ତୁମ୍ଭ ଯାହା ପାଇଁ ସିନ୍ଧୁ ପାର ହୋଇ ରାବଣ ମାରିଲୁଁ ଏ ଯଶ ତୁମ୍ଭର ॥ ରାମ ସ୍ନେହ ଦେଖିଣ ଲକ୍ଷ୍ମଣବୀର ସୁଗ୍ରୀ ପାଦ ଛୁଇଁ ଶିରେ ଦେଲେ କର । ସୁଗ୍ରୀବ ସକଳ କପିସେନା ଘେନି ପୂଜା କଲେ ରାମ ବେନି ଶ୍ରୀପୟର ॥ ରାବଣ ମାରିବା ଯାଏ ଉତପାତମାନ ଅବଛିନ୍ନେ ଜାତ ହେଉଥିଲେ । ମଲା ବେଳରୁ ଯେ ଯାହା ସଦଭାବେ ରହି ଭୟ ତେଜି ନିଶ୍ଚିନ୍ତେ ରହିଲେ ॥ ମାତଲିକି ଆଜ୍ଞାଦେଲେ ରଘୁବୀର ଶକ୍ର ସନ୍ନିଧିକୁ ନିଅ ରଥବର । ଆମ୍ଭେ ତୁମ୍ଭଙ୍କୁ କି ଦେଇଣ ଶୁଝିବୁ କଲ ଆମ୍ଭର ବହୁତ ଉପକାର ॥ ଆଜ୍ଞା ପାଇଣ ମାତଲି ରଥବର ଶୀଘ୍ର କରି ଘେନିଗଲା ସୁରପୁର । ବୋଲେ ବଳି ରାମଥାଟ ହୃଷ୍ଟ ହୋଇନ କରନ୍ତି ବନଚର ॥

—×—

## ୭୦ ତମ ଛାନ୍ଦ—ମନ୍ଦୋଦରୀ ପ୍ରଭୃତିଙ୍କ ଶୋକ

ରାଗ—ଶଙ୍କରାଭରଣ

ରାବଣରେ ଅନ୍ତଃପୁର ଦ୍ୱାରେ ପଳାଇଣ କହିଲେ ଅସୁରେ ରାମସଙ୍ଗେ ରଣ କରିଣ ରାବଣ ପ୍ରାଣ ହାରି ପଡ଼ିଲେ ଭୂମିରେ ସେ । ରାଜନ ॥ ଶୁଣି ସକଳ ତରୁଣୀ ଗଣ । ବହୁ ଉଚ୍ଚରେ କଲେ କାରୁଣ୍ୟ । ମନ୍ଦୋଦରୀ ସଙ୍ଗେ ସମସ୍ତ ଯୁବତୀ ଅନ୍ତଃପୁରୁ ବାହାର ହୋଇଣ ସେ । ସୁନ୍ଦରୀ ॥ ଯୁଦ୍ଧଭୂମିରେ ପ୍ରବେଶ ହେଲେ । ପଡ଼ିଅଛି ରାବଣ ଦେଖିଲେ । ହା ହା ନାଥ ନାଥ ବୋଲି ସମସ୍ତ ଯୁବତୀ ବେଢ଼ି ବସିଣ ରୋଦନ କଲେ ସେ । ସୁନ୍ଦରୀ ॥ ଦେବ ରାକ୍ଷସକୁଳ ଈଶ୍ୱର । ତ୍ରିଭୁବନରେ ଏକଇ ବୀର । କେଉଁ ବୀର ହାତେ ପ୍ରାଣ ହରାଇଣ ଏବେ ଶୋଇଲ ହେ ରାଜନ ॥ ଆମ୍ଭମାନଙ୍କୁ କାହାକୁ ଦେଇ । ତୁମ୍ଭେ ଶୋଇଲ ମଉନ ହୋଇ । ଚନ୍ଦ୍ରତପନ ଆମ୍ଭଙ୍କୁ ନ ଦେଖନ୍ତି ଏବେ କାନ୍ଦୁଛୁ ଅନାଥ ହୋଇ ହେ । ରାଜନ । ଶୁଣି ମନ୍ଦୋଦରୀ ରାଣୀ ।

ବେନି ନୟନୁ ବହଇ ପାଣି । ବିକଳ ହୋଇଣ ବିଳାପ କହଇ ଉଚ୍ଚେ ମୟଦୈତ୍ୟର ଦୁଲଣୀ ସେ । ସୁନ୍ଦରୀ । ଦେବ ଏବେ ମୋ ଅଙ୍କ ତେଜିଲ । ଆସି ଭୂମିରାଣୀକି ଭଜିଲ । ଶଠବୋଲି ହଂସତୁଲିତୁଳିକ ମୁଞ୍ଚି ଧୂଳିକି ସୁଖ ପାଇଲ ହେ । ରାଜନ ।। ମୋତେ ବସାଇ ପୁଷ୍ପକବିମାନ । ବୁଲୁଥାଅ ଚଉଦଭୁବନ । ଯେଉଁ ଭୁବନେ ଯେଉଁ ଦ୍ରବ୍ୟ ଅପୂର୍ବ ତାହା ଦେଇ ତୋଷ ମୋର ମନ ହେ । ରାଜନ ।। ତୁମ୍ଭ ସ୍ନେହ ପ୍ରିୟା ମୁହିଁ ରାଣୀ । ମୋର ବିକଳ କଥା ନଶୁଣି । ଭୂମି ସପତ୍ନୀ ଅଙ୍ଗରେ ଶୋଇଣ ମୋତେ କଥା କହୁ ନାହିଁ ବାଣୀ ହେ । ରାଜନ ସୀତା ସ୍ନେହ କଲ ଯେଉଁଦିନ । ମୁହିଁ ବିଚାରୁଥାଇ ମୋ ମନ । ରାବଣ ରାମଙ୍କୁ ବଳିଷ୍ଠ ଦେଖନ୍ତେ ତେଣୁ କରି କଲେଟି ଏସନ ହେ । ରାଜନ ।। ଯୁଦ୍ଧେ ମରନ୍ତି ନାହିଁକି ବୀର । ମତି କଳଙ୍କ ହେଲା ତୁମ୍ଭର । ବୋଲିବେ ରାବଣ ସୀତା ସ୍ନେହ କଲା ତେଣୁ ମାଇଲେଟି ରଘୁବୀର ହେ । ରାଜନ ।। ହିତ କହିଲେ ମଣିଲ ଖଳ । ବିଭୀଷଣର ନ କଲ ବୋଲ । ନିର୍ଜୀବୀ ହେବାକୁ ବର ପାଇଥିଲ ସୀତା ହରଣ କପାଁଇ କଲ ହେ । ରାଜନ ।। ଦୋଷ ଅନୁରୂପେ ଦେଲେ ଦଣ୍ଡ । ତୁମ୍ଭ ପ୍ରାଣ ନେଲା ରାମ କାଣ୍ଡ । ଆହେ ଲଙ୍କନାଥ ଆମ୍ଭଙ୍କୁ ଅନାଥ କରି ବସାଇ ଗଲ ଏ ଦାଣ୍ଡ ହେ । ରାଜନ ।। ତୁମ୍ଭ ତନୁ କାଣ୍ଡେ ଅଛି ଛାଇ । ଆଲିଙ୍ଗନକୁହିଁ ଠାବ ନାହିଁ । ସକଳ ଲୋକେ ଦେଖୁଛନ୍ତି ଆମ୍ଭଙ୍କୁ ତୁମ୍ଭେ କଥା ନ କହ କପାଁଇ ହେ । ରାଜନ ।। ଶୁଣି ମନ୍ଦୋଦରୀର କାରୁଣ୍ୟ । ଶୋକେ ଶୋକୀ ହୋଇ ବିଭୀଷଣ । ଭ୍ରାତାର ଗୁଣମାନ ଗୁଣି ରୋଦନ ଉଚ୍ଚେ କରଇ ଯେ ପୁଣ ପୁଣ ସେ । ରାଜନ ।। ମୋର ହିତ ବଚନ ନ କଲ । କ୍ରୋଧେ ବାହାର କରିଣ ଦେଲେ । ଭ୍ରାତୃ ପୁତ୍ର ନାତି ଜ୍ଞାତି ପରିଜନ ସଙ୍ଗେ ଶମନଭବନ ଗଲ ହେ । ରାଜନ ।। ଏକା ରହିଲି ମୁହିଁ ଜୀବିତେ । ଥିଲେ ଯାଇଥାନ୍ତି ବା ସଙ୍ଗତେ । ଉକ୍ଷବାନର ତୁମ୍ଭର ନାରୀଗଣ ଜୁର କରି ଲଙ୍କାରୁ ନିଅନ୍ତେ ହେ । ରାଜନ ।। ବିଭୀଷଣ କରନ୍ତେ କାରୁଣ୍ୟ । ଶୁଣିଥିଲେ ଋକ୍ଷ କପିଗଣ । ବୋଲେ ବସି ରାମ ଶୁଣିଣ ତାହାଙ୍କୁ ବୋଲେ ବହୁ ପ୍ରବୋଧ କରିଣ ସେ । ଶ୍ରୀରାମ ।।

— —

## ୭୧ତମ ଛାନ୍ଦ ବିଭୀଷଣ ଅଭିଷେକ

ରାଗ—କୁମ୍ଭକାମୋଦୀ

ରାମ ଆଜ୍ଞା ଦେଲେ ବିଭୀଷଣ ତୁମ୍ଭେ ଛାଡ଼ର କାରୁଣ୍ୟ । ଦହନ କରି ଏ ରାବଣ ପିଣ୍ଡକୁ ସନ୍ତୋଷ ହୋଇଣ ।। ରାମ ଆଜ୍ଞା ଶୁଣି ଯୋଡ଼ି ବେନିପାଣି କହେ ବିଭୀଷଣ । ଦହନ କରିବାକୁ ଯୋଗ୍ୟ ନୁହଇ ପାପୀ ଏ ରାବଣ ।। କେବଳ ଲୋକ ବଚନକୁ ମୋ ଦେବ କଲି ମୁଁ କାରୁଣ୍ୟ ।

ବୋଲିବେ ଭାଇ ମରାଇଣ ବିଳାପ ନ କର ଦାରୁଣ ॥ ଶ୍ରୀରାମ ସନ୍ତୋଷେ ଆଜ୍ଞା ଦେଲେ ଶୁଣ ଲଙ୍କାରାଣ । ତୁମ୍ଭର ଜ୍ୟେଷ୍ଠ ବଡ଼କୁଳେ ଜନମ ହୋଇଛି· ରାବଣ । ବହୁତ ଯାଗମାନ ସେହୁ କରିଛି କର ହେ ଦହନ । ଜୀବନ ଥିବାଯାଏ ତାଠାରେ ମୋର ଥିଲା କୋପମନ ॥ ଏମନ୍ତ ଶ୍ରୀମୁଖଁ ଶୁଣି ବିଭୀଷଣ ଗଲାକ ବହନ । ଦହନ କରିବା ନିମିତ୍ତ ଅଣାଇ ସେହୁ ଶ୍ରୀଚନ୍ଦନ ॥ ହୋମଦରି ମନ୍ଦରୁ ଅନଳ ଅଣାଇ କଲେକ ସ୍ଥାପନ । ମନ୍ତ୍ର ପଢ଼ି ଗବ୍ୟଘୃତରେ ଆହୁତି ଦେଲେକ ବହନ ॥ ଦଶଗ୍ରୀବକୁ ସେ ସ୍ନାନ କରାଇଣ ବାସ ପିନ୍ଧାଇଲେ । ବିବିଧ ଭୂଷଣ କୁସୁମ ଚନ୍ଦନ ଲଗି କରାଇଲେ । କଟିରେ ଉଲୁଖଳକୁ ବାନ୍ଧିଣ ଶିକଟରେ ଲମ୍ବିଲେ । ନାମ ଧରି ରାଇ ସର୍ବ ଦିଗପାଳମାନଙ୍କୁ ବନ୍ଦିଲେ ॥ ଚନ୍ଦନ ଅଗୁରୁ କମଳ କାଠରେ ଅନଳ ଲଗାଇ । ରାବଣ ପିଣ୍ଡକୁ ତହିଁର ମଧ୍ୟରେ ନେଇଣ ଶୁଆଇ ॥ ଗବ୍ୟ ଘୃତମାନ ଢାଳନ୍ତେ ଅନଳ ପ୍ରଚଣ୍ଡ ଜଳିଲା କ୍ଷଣକ ଭିତରେ ଗିରି ସମ ପିଣ୍ଡ ଦହନ ହୋଇଲା ॥ ବିଭୀଷଣ ସହିତରେ ଭୁବି ନାରୀ କଲେକ ଯେ ସ୍ନାନ । ସମସ୍ତ ନାରୀଙ୍କି ପ୍ରବୋଧନ କରି ନେଲେକ ସଦନ ॥ ଅନ୍ତଃପୁରେ ଗୃହ ବିଭୀଷଣ ରାମ ଛାମୁକୁ ଅଇଲେ । ସୁଗ୍ରୀବଙ୍କୁ ରାଇ ଯୁଦ୍ଧର ପ୍ରସଙ୍ଗମାନ କହୁଥିଲେ ॥ ବିଭୀଷଣଙ୍କୁ ଶ୍ରୀଣ୍ଡ଼ୁଦୂରୁ ଦେଖିଣ ରାଇଲେ ପାଖକୁ । ଲଙ୍କାରେ ଆଉ ରାକ୍ଷସ ତ ନାହାନ୍ତି ଆମ୍ଭ ବିନାଶକୁ ॥ ଏବେ ରାବଣ ସିଂହାସନେ ବସିଣ ଅଭିଷେକ ହୁଅ । ଆଉ ଅବା କସ ଜଣାଇବ ତାହା ଏକ୍ଷଣି କହ । ଶୁଣି ବିଭୀଷଣ ଭୂଇଁ ଛୁଇଁ ଶିରେ ଲଗାଇଲେ କର । ଆଉ କସ ଜଣାଇବ ଅନ୍ତର୍ଯ୍ୟାମୀ ତ୍ରୈଲୋକ୍ୟ ଈଶ୍ୱର ॥ ରାମ ଆଜ୍ଞା ଦେବେ ଲକ୍ଷ୍ମଣଙ୍କୁ ଘେନଯାଅ ଲଙ୍କେଶ୍ୱର । ରାବଣର ସିଂହାସନେ ବସାଇଣ ଅଭିଷେକ କର ॥ ରାମ ଆଜ୍ଞା ପାଇ ଲକ୍ଷ୍ମଣ ତତ୍କ୍ଷଣ ବିଭୀଷଣେ ନେଲେ । ରାବଣ ସିଂହାସନେ ବିଭୀଷଣଙ୍କୁ ଅଭିଷେକ କଲେ ॥ ସମସ୍ତ ପାତ୍ର ଅମାତ୍ୟ ତାହାଙ୍କର ଚରଣେ ଲୋଟିଲେ । ଯେତେ ଅସୁରେ ପଳାଇ ଯାଇଥିଲେ ସେମାନେ ଭେଟିଲେ ॥ ଲକ୍ଷ୍ମଣ ତାହାଙ୍କୁ ଅଭିଷେକ କରି ବାରତା କହିଲେ । ବୋଲେ ବିଶି ରାମ ଲଙ୍କା ଜୟ କରି ବିଭୀଷଣେ ଦେଲେ ॥

—×—

## ୭୨ତମ ଛାନ୍ଦ

ରାଗ—କାଫି

ଶ୍ରୀରାମ ଆଜ୍ଞା ଦେଲେ ହନୁକୁ ତୁହିଁ । ଦଶଗ୍ରୀବ ବଧ ବାରତା ହେ ସୀତାଙ୍କୁ କହ ଯାଇଁ ॥ ଲଙ୍କାପତିଙ୍କି ମୋର ଆଜ୍ଞା କହିବ । ବାରତା ଦେଇଛନ୍ତି ବୋଲିଣ ହେ ଅଶୋକବନ ଯିବ ॥ ଶୁଣି ମାରୁତି ଅତି ଆନନ୍ଦେ

ଗଲେ । ଦେଖିଣ ଲଙ୍କାବାସୀ ଓଳଗି ଯେ ପଥ ଛାଡ଼ିଣ ଦେଲେ ॥ ହନୁକୁ ଦେଖିଣ ସକଳ ଅସୁର । ଯେ ଯାହା ଅନୁରୂପରେ ମାନ୍ୟ ହେ ତାଙ୍କୁ କଲେ ଅପାର ॥ ବିଭୀଷଣ ଦେଖି ଆଲିଙ୍ଗନ କଲେ । ରାମ ଆଜ୍ଞା ଦେବାର କହିଣ ସେ ଅଶୋକ ବନ ଗଲେ ॥ ଦେଖିଲେ ବସିଛନ୍ତି ଭୂମିକୁମାରୀ । ବେଢ଼ିଣ ବସିଛନ୍ତି ତାହାଙ୍କୁ ଯେ ସହସ୍ରେକ ଅସୁରୀ ॥ ଦୂରରୁ ଦେଖି ହନୁ ପ୍ରଣାମ କଲେ । ହନୁକୁ ଦେଖି ଦେବୀ ସଂଶୟ ଯେ ପାଞ୍ଚ ମଉନ ହେଲେ ॥ ହନୁ ଜଣାନ୍ତି ଶୁଣ ଜଗତମାତ । ଶ୍ରୀରାମ ନାରାଚରେ ରାବଣ ଯେ ଏବେ ହୋଇଲା ହତ ॥ ପେଷିଲେ ତୁମ୍ଭ ପାଶେ ରାମ ଗୋସାଇଁ । ଆଜ୍ଞା ଦେଲେ ବାରତା କହିବ ହେ ହନୁ ସୀତାଙ୍କୁ ଯାଇ ॥ ବିଭୀଷଣଙ୍କୁ କଲେ ଲଙ୍କେ ନୃପତି । ଆଜହୁଁ ଗଲା ଦୁଷ୍କୃତି ଗୋ ହୁଅ ଆନନ୍ଦମତି ॥ ହନୁ ମୁଖରୁ ଦେବୀ ଏମନ୍ତ ଶୁଣି । ଆନନ୍ଦ ଲଭି ମୂକ ହୋଇଲେ ଯେ ମୁଖୁ ନଇଲା ବାଣୀ ॥ ହନୁ ଜାଣନ୍ତି କମ୍ପି ହେଲେ ମଉନ । କି ବୋଲି କି କହିବି ତୁମ୍ଭରେ ଗୋ ଆଜ୍ଞା ଦିଅ ବଦନ ॥ ଦେବୀ ବୋଲନ୍ତି କସ କହିବି ତୋତେ । ବଧାଇ ମୁଁ କି ଦେବି ମହୀରେ ହେ କିଛି ନ ଦିଶେ ମୋତେ ॥ ଏଣୁ କରି ସଙ୍କୋଚେ ହେଲି ମଉନ । ଶ୍ରୀମୁଖ ଦର୍ଶନକୁ ଉତ୍ସୁକ ହେ ଏବେ ହେଉଛି ମନ ॥ ହନୁ ବୋଲନ୍ତି ତୁମ୍ଭ ସନ୍ତୋଷ ଧନ । ପାଇଣ ଆନନ୍ଦ ମୁଁ ହୋଇଲି ଗୋ ଥିବାଯାଏ ଜୀବନ ॥ ତୁମ୍ଭରେ ମାଗ ମାଗୁଛି ମୁଁ ଏତେ । ଏ ଅସୁରୀଙ୍କି ବଧ କରିବି ଗୋ ଆଜ୍ଞା ଦିଅ ମୋତେ ॥ ଶୁଣିଣ ଠାକୁରାଣୀ ହନୁ ବଚନ । ବୋଲନ୍ତି ଏହାଙ୍କର କି ଦୋଷ ହେ ଏତ ସେବକଜନ ॥ ରାଜା ଯାହା ବୋଲଇ ତାହା କରନ୍ତି । ମୋର ସେବକା ପ୍ରାୟ ହୋଇ ତ ହେ ମୋତେ ଜଗିଥାନ୍ତି ॥ ଏମନ୍ତ ଶୁଣି ହନୁ ପ୍ରଣାମ କଲେ । ମେଲାଣି ହୋଇ ରାମ ତୁମ୍ଭକୁ ଯେ ଶୀଘ୍ର ହୋଇ ଅଇଲେ ॥ ଦର୍ଶନ କରି ହନୁ କହେ ଉଦନ୍ତ । ଶ୍ରୀମୁଖ ଦର୍ଶନକୁ ଉତ୍ସୁକ ହେ ହେଉ ଅଛନ୍ତି ମାତ ॥ ଶୁଣି ଶ୍ରୀରାମ ହେଲେ ବହୁ ହରଷ । ପିଇବ ଏ ଧ୍ୟାନ ବିଶି ନରତେ ହେ ରାମ ରସ ପୀୟୂଷ ॥

—×—

## ୭୩ତମ ଛାନ୍ଦ—ରାମ ସୀତାଙ୍କ ସାକ୍ଷାତ

ରାଗ—କୌଶିକ

ମହା ସମ୍ପଦରେ ଲଙ୍କେ ବିଭୀଷଣ ରାଜ ଅଭିଷେକ ହୋଇଲେ । ବହୁତ ଭୂଷଣ ଆନନ୍ଦ କରିଣ ଯୂଥପତିଙ୍କି ବାଣ୍ଟି ଦେଲେ । ବହୁ ଦ୍ରବ୍ୟରେ । ଯୁହାଇ ଅମୂଲ୍ୟ ପଦାର୍ଥ । ଶ୍ରୀରାମ ତୁମ୍ଭରେ ସମସ୍ତ ବାଟିଣ ମନ୍ତ୍ରକେ ଦେଲେ ବେନି ହାତ ॥ ଦେଖି ଶ୍ରୀରାମ ଅଙ୍ଗୀକାର ନ କରି ଭକ୍ଷଦ୍ରବ୍ୟମାନ

ରଖିଲେ । ବିଭୀଷଣ ମନ ଆନନ୍ଦ ନିମିତ୍ତ ଯୂଥପତିମାନଙ୍କୁ ଦେଲେ । ରତ୍ନ-ବସନ । ଭୂଷଣ ସବୁତେ ନ ନେଲେ । ସୁଗ୍ରୀବ ଆଦି ସେନାପତିମାନଙ୍କୁ ଦେବାର ଉଚିତ ବୋଇଲେ ॥ ଅସୁରମାନଙ୍କୁ ବିନାଶି ଏମାନେ ତୁମ୍ଭଙ୍କୁ ଲଙ୍କା-ପୁର ଦେଲେ । ଏମାନଙ୍କୁ ତୁମ୍ଭେ ଏ ଦ୍ରବ୍ୟ ଦେଇଣ ସନ୍ତୋଷକରାଅ ବୋଇଲେ । ଲଙ୍କା ରାଜନ । ଶୁଣିଣ ଶ୍ରୀରାମ ବଚନ । ସୁଗ୍ରୀବ ଆଦି ସେନାପତିମାନଙ୍କୁ ଦେଲେ ଭୂଷଣ ବାସମାନ ॥ ସବୁରି ମନ ତୋଷିଣ ଲଙ୍କରାଃ ରାମ ଛାମୁରେ ଉଭାହେଲେ । ଜନକ ସୁତାଙ୍କୁ ସୁବେଶ କରି ଛାମୁକୁ ଆଣିଅ ବୋଇଲେ । ରାମ ଆଜ୍ଞାରେ । ସତ୍ୱରେ ଗଲେ ବିଭୀଷ । ଅମୂଲ୍ୟ ବସନ ଭୂଷଣ ଘେନାଇ ମଧୂବନ ଗଲେ ଆପଣ ॥ ଦୂରରୁ ପ୍ରଣାମ କରି ସୀତାଙ୍କୁ ତ୍ରିଜଟାଙ୍କୁ ସବୁ କହିଲେ । ସୁବେଶ ହୋଇଣ ଦର୍ଶନ କରିବେ ଶ୍ରୀରାମଚନ୍ଦ୍ର ଆଜ୍ଞା ଦେଲେ । ଶୁଣି ତ୍ରିଜଟା । ସୀତାଙ୍କ ଛାମୁରେ କହିଲେ । ଶୁଣିଣ ଦେବୀ ସୀକାର ନ କରି ଏହିରୂପେ ଯିବେ ବୋଇଲେ ॥ ମଣିମୟ ଶିବିକା ବିମାନେ ବସାଇ ରହିଲେ ସମସ୍ତ ଅସୁରୀ । ସମସ୍ତ ଜନଙ୍କୁ ଆଡ଼ କରାଇଣ ଆସନ୍ତି ପରମ ସୁନ୍ଦରୀ । ଲୋକେ ଧାଆନ୍ତି । ସୀତାଙ୍କୁ ଦେଖିବା ନିମନ୍ତେ । ବିଭୀଷଣ ଜନ ନିରୋଧ କରନ୍ତି ପଛ ଆଗ କରି ଅଗ୍ରତେ ॥ ଲୋକଙ୍କୁ ନିରୋଧ କରିବାର ନୟନେ ଦେଖି ରଘୁପତି । ଆଜ୍ଞା ଦେଲେ ଆମ୍ଭ ଛାମୁକୁ ଚାଲି ଆସନ୍ତୁ ଜନକ ଦୁହିତା । ରିକ୍ଷ କପିଙ୍କୁ । କିମ୍ପାଇଁ କରୁଛ ନିରୋଧ । ସମସ୍ତେ ଦେଖନ୍ତୁ ତାହାଙ୍କ ନିମିତ୍ତ ଯୁଦ୍ଧରେ ହେଉଥିଲେ ବଧ ॥ ରାମ ଆଜ୍ଞା ପାଇ ବିମାନୁ ଓହ୍ଲାଇ ଛାମୁକୁ ଚାଲିଣ ଆଇଲେ । ଶ୍ରୀମୁଖକୁ ଚାହିଁ ଶିରେ କର ଦେଇ ହେଟ ବଦନେ ଉଭା ହେଲେ । ଦେଖି ଅଛନ୍ତି । ପଛ ଆଗ କରି ସକଳ । ବୋଲେ ବିଶି ତାଙ୍କୁ ଅନାଇଣ ଶୋକ କଲେ କ୍ରୋଧ ହେଲା ପ୍ରବଳ ॥

—*—

## ୬୪ତମ ଛାନ୍ଦ—ସୀତାଙ୍କ ଅଗ୍ନି ପରୀକ୍ଷା

### ରାଗ—ରାଜବିଜେ ମଙ୍ଗଳ ଶୋକବରାଡ଼ି

ସୀତାଙ୍କୁ ଦେଖି ରଘୁନନ୍ଦନ । ରାମ କହେ ନିଷ୍ଠୁର ବଚନ । ଆଗୋ ଜାନକୀ ଏବେ ଯହିଁକି ଇଚ୍ଛା ତହିଁକି କର ଗମନ ଗୋ । ସୀତେ ॥ ଜନ-ଅପବାଦରୁ ବଞ୍ଚିଲୁ । ଏହା ଆପଣା ମନେ ପାଞ୍ଚିଲୁଁ । ରାବଣ ସଂହାରି ତୁମ୍ଭଙ୍କୁ ଆଣିଲୁଁ ଯଶ ମହୀରେ ରଖିଲୁଁ ଗୋ । ସୀତେ ॥ ଭରତ ଶତ୍ରୁଘ୍ନ ସୁଗ୍ରୀବରେ । ଅବା ଏହିଁ ସୁମିତ୍ରା କୁମର । ଶରଧା ହୋଇଲେ ଏମାନଙ୍କୁ ତୁମ୍ଭେ ସ୍ୱଇଚ୍ଛାରେ ବରଣ କର ଗୋ । ସୀତେ ॥ ରଘୁ କୁଳେ ଆମ୍ଭେ ଯେଣୁ ଜାତ ।

ତେଣୁ ନିର୍ମଳ ହୁଏ ବଖାଣ । ତେଡ଼େ କୁଳେ ତୁମ୍ଭ ନିମିତ୍ତ କଳଙ୍କ ଦେବାର ନୁହେ ଉଚିତ ଗୋ । ସୀତେ ॥ କାନ୍ତ ମୁଖରୁ ଏମନ୍ତ ଶୁଣି । ସେ ଯେ ଜନକରାଜ ଦୁଲଣୀ । ଜଣାଇଲେ ଅନ୍ୟ ଯୁବତୀ ପରାୟେ ମଣିଛ କି ରଘୁମଣି ହେ । ଦେବ ॥ ବାଳକାଳୁ ଧରି ତୁମ୍ଭ ପାଣି । ଭୂମିସୁତା ମୁଁ ନିର୍ଦ୍ଦୋଷ ପ୍ରାଣୀ । ପ୍ରଭୁ ହୋଇ ଅକାରଣେ କୋପ କଲେ କିପାଇଁ ଥିବ ଧରଣୀ ହେ । ଦେବ ॥ ଯେବେ ଏମନ୍ତ ବିଚାରିଥିଲ । ହନୁମୁଖେ ବାରତା ନ ଦେଲ । ସେତୁବନ୍ଧ ଘୋର ଅସୁର ନିପାତ କିଷଣ ଏତେ ସମ୍ବଳ ହେ । ଦେବ ॥ ମୋର କାଶ୍ଚିକ ବାଚିକ ମନ । ତୁମ୍ଭ ବିନା ଥିବଯେବେ ଆନ । ତେବେ ମୋର ଅଙ୍ଗ ଦହନ କରିବେ ନିଶ୍ଚୟେ ହବ୍ୟବାହନ ହେ । ଦେବ ॥ ସଉମିତ୍ରୀ ମୁଖ ଦେଖି ଚାହିଁ । ବାକୁ ଅନଳ ଦିଅ ଲଗାଇ । ହବ୍ୟବାହନ ମୋର ତନୁ ଦହିବ ବିଳମ୍ବ କର କିପାଇଁ ହେ । ବତ୍ସ ॥ ମୋର ଆଜ୍ଞା ବାକୁ ବେଗେ କର । ତୁମ୍ଭେ ମନରେ ଆନ ନ ଧର । ଅନଳ ମୋ ତନୁ ଦହନ ନ କଲେ ଅପବାଦୁ ହେବି ପାର ହେ । ବତ୍ସ ॥ ରାମ ଇଙ୍ଗିତ ଲକ୍ଷ୍ମଣ ଜାଣି । ଅଗ୍ନି ଲଗାଇଲେ ସେହିକ୍ଷଣି । କୋଦଣ୍ଡହସ୍ତେ ବେନିପାଣି ଦେଇଣ ଉଭାଛନ୍ତି ରଘୁମଣି । ଦେବୀ କାନ୍ତ ପ୍ରଦକ୍ଷିଣ ସାରି । ପୁଣି ଅଗ୍ନି ପ୍ରଦକ୍ଷିଣ କରି । ଅନଳ ଭିତରେ ଝସାଇ ପଶିଲେ ହାହା କଲେ ନରପୁରୀ ସେ । କାଳେ ॥ ଅଗ୍ନି ଭିତରେ ଦେବୀ ରହିଲେ । ଚାହୁଁ ଚାହୁଁ ଅଦୃଶ୍ୟ ହୋଇଲେ । ହବ୍ୟବାହନ ଦେଇଣ ବହୁପୂଜା ତାଙ୍କୁ କଲେ ହେ । ଜନେ ରାମ ହୋଇଣ ଆତଙ୍କ ମନ । ନୀର ପୂରିଲା ବେନି ନୟନ । ଚକିତ ହୋଇଣ ଦଶଦିଗ ଚାହିଁ ପୁଣ ହେଲେ ଛନ୍ନ ଛନ୍ନ ସେ । ରାମ ଦେବ ଦାନବ ଋଷି ମର୍କଟ । ହା ହା ସବୁରି ମୁଖେ ପ୍ରକଟ । ବୋଲନ୍ତି ଶ୍ରୀରାମ କି କଲେ କି କଲେ ବିନା ଦୋଷେ ଏଡ଼େ ରୁଷ୍ଟ ହେ । ରାମ ॥ ସର୍ବେ ହୋଇଲେ ଆକୁଳମନ । କହିବାକୁ କେ ନାହିଁ ଭାଜନ । ବୋଲେ ବଶି ରାମ ଅନୁକୂଳ ଚାହିଁ ନେତ୍ର କଲେ ଥନଥନ ସେ । ରାମ ॥

---

## ୭୫ତମ ଛାନ୍ଦ

## ରାମଚନ୍ଦ୍ର ସହିତ ଦେବଗଣଙ୍କ ସମ୍ଭାଷ

ରାଗ—କାନଡ଼ା

ଶିବ ବିରଞ୍ଚି ଶକ୍ରଆଦି ସମସ୍ତେ ରହି ଆକାଶେ ଦେଖୁଥିଲେ । ରାମ ଘ୍ରମୁକୁ ବୋଲି ସେ ଅଇଲେ । ରାମ ଦେଖି ଧନୁଶରପାଣି କୃତ କରଅଞ୍ଜଳି ହୋଇଲେ ସେ ଶ୍ରୀରାମ । ହସି ବୋଲନ୍ତି ବିରଞ୍ଚି । ହେ ରାମ । ବିନା ଦୋଷେ

କଲ କଥା ଏ କର୍ମ । ତୁମ୍ଭେ ନାରାୟଣ ସେତେ ମହାଲକ୍ଷ୍ମୀ ପାଶେ ଶିଳ ନିଜ ନାମ କି । ଶ୍ରୀରାମ ॥ ରାମ ବୋଲନ୍ତି ଶୁଣ ହେ ପିତାମହ ମୁଁ ତ ଦଶରଥ ନନ୍ଦନ । ତୁମ୍ଭେ କଥା କହୁଅଛ ଏମାନ । ସମସ୍ତେ ଶୁଣନ୍ତୁ ମୋହର ଚରିତ କହ କହ କଞ୍ଜାସନ ହେ । ବିରଞ୍ଚି ॥ ଶୁଣି ପୁଣ କହନ୍ତି ସେହି ଧାତା । ତୁମ୍ଭେ ଅଖିଳ ବ୍ରହ୍ମାଣ୍ଡ କରତା । ଆଦି ଅଚ୍ୟୁତ ଅବିନାଶୀ ସକଳଦେବଙ୍କ ପିତା ହେ ଶ୍ରୀରାମ ॥ ରାବଣବଧ କାରଣେ ଆହେ ଦେବ ବୈକୁଣ୍ଠ ତେଜି ଅବତାର । ତୁମ୍ଭେ କପଟେ ମାନବ ଶରୀର । ଆମ୍ଭମାନଙ୍କ ହିତରେ ଅବତାରେ ହରିଲ ଭୂମିର ଭାର ହେ । ଶ୍ରୀରାମ ॥ ଏତେ କହିଣ କଲେ ସ୍ତବରାଜ । ରାମ ମନ ତୋଷିଲେ କୁଟଧ୍ୱଜ । ଶୁଣିଣସମସ୍ତେ ଯେ ଯାହା ଇଚ୍ଛାରେ ପାଇଲେ ମନରେ ନିଜ ସେ । ବାନରେ ॥ ଧାତାମୁଖରୁ ଏମନ୍ତ ଶୁଣି ହବ୍ୟବାହନ ପରମ ସନ୍ତୋଷ । କରି ସୀତାଙ୍କୁ ସେ ହବ୍ୟସୁବେଶ । ଅନଳ ଦେବତା ଅନଙ୍କୁ ବାହାର ଦେଖୁଛନ୍ତି ଚତୁର୍ଦ୍ଦଶ ସେ । ଅନଳ ॥ କୋଳେ ଘେନି ବୋଲନ୍ତି ଧନଞ୍ଜୟ । ରାମ ତୁମ୍ଭ ବନିତା ତୁମ୍ଭେ ନିଅ । ନିର୍ଦ୍ଦୋଷ ଅଟନ୍ତି ଋଷିତନୟା ଏହାଙ୍କୁ ସଦୟ ହୁଅହେ । ଶ୍ରୀରାମ ॥ ଦେଖି ଶ୍ରୀରାମ ଶ୍ରୀକରଁ ବଢ଼ାଇଣ ବୈଶ୍ୱାନର କୋଳୁଁ ଆଣିଲେ । ସୀତା ନିର୍ଦ୍ଦୋଷ ବୋଲି ଜଣାଇଲେ । ଯେସନେ କାଞ୍ଚନ ଦହନ କରି ଟି କଷଟିରେ କଷାଇଲେ ହେ । ସୁଜନେ ॥ ଶିବ ବୋଲନ୍ତି ଶୁଣ ହେ ରାଘବ । ଆସିଛନ୍ତି ତୁମ୍ଭଠାକୁ ବାସବ । ତୁମ୍ଭ ପିତା ଦଶରଥହିଁ ଅଛନ୍ତି ତାଙ୍କ ସଙ୍ଗେ ଭେଟ ହେବ ହେ । ଶ୍ରୀରାମ ॥ ଦଶରଥଙ୍କୁ ଦେଖିଣ ଦାଶରଥି ଚରଣ ଛୁଇଁ ଓଳଗିଲେ । ଲକ୍ଷ୍ମଣହିଁ ପାଦତଳେ ପଡ଼ିଲେ । ବେନିପୁତ୍ରଙ୍କୁ ଆଲିଙ୍ଗନ କରିଣ ମୁଖରେ ଚୁମ୍ବନ ଦେଲେ ସେ । ରାଜନ ॥ ତନୁ ପୁଲକ ହୋଏ ଘନ ଘନ । ଆନନ୍ଦରେ ଅଶ୍ରୁ ହୋଏ ପତନ । ବୋଲନ୍ତି ଜୀବନ କୃତାର୍ଥ ହୋଇଲି ଦେଖିଲି ତୁମ୍ଭ ବଦନ ହେ । ଶ୍ରୀରାମ ॥ ଇକ୍ଷ୍ୱାକୁ ବଂଶ ଉଦ୍ଧାର କରିବାକୁ ମୋକୁଳେ ହୋଇଅବତାର । ଉଶ୍ୱାସିଲ ଏ ପୃଥିବୀର ଭାର । ଏବେ ଯାଇ ଅଯୋଧ୍ୟାରେ ଅଭିଷେକ ହୁଅ ରଘୁକୁଳ ବୀର ହେ । ଶ୍ରୀରାମ ॥ ମୋତେ ସ୍ୱର୍ଗ ଭୋଗହିଁ ନ ରୁଚଇ । ତୁମ୍ଭ ଦରଶନ ଲୋଭ ବଢ଼ଇ । ଧନ୍ୟ ପୁତ୍ରବତୀ ଧନ୍ୟ ସେ କୌଶଲ୍ୟା କେତେ ତପ କଲେ ନାହିଁ ସେ । ସୁନ୍ଦରୀ ॥ ଜାନକୀ ଓଳଗି ହେବାର ଦେଖିଣ କଲେ ତାଙ୍କୁ ବହୁ ସାମ୍ୟ । ତୁମ୍ଭ ହିତରେ କଲେ ଏତେ ରାମ । ତୁମ୍ଭେ ଏ କଥାକୁ ଆନ ବିଚାର ମୋ କୁଳର ଅଭିରାମ ଗୋ । ଜାନକୀ । ତୁମ୍ଭେ ପୃଥିବୀସୁତା ପତିବ୍ରତା । ସବୁକାଳରେ ଶ୍ରୀରାମ-ବନିତା । ପୃଥିବୀ ନିମନ୍ତେ ଜନମ ହୋଇଛ ଇନ୍ଦିରା ଲୋକଙ୍କ ମାତା ଗୋ ।

ଜାନକୀ ॥ ଲକ୍ଷ୍ମଣଙ୍କୁ ଗୁହିଁ ଅନେକ ପ୍ରଶଂସା କଲେ ଅଯୋଧ୍ୟା ମହୀପାଳ । ବାବୁ ଅଟ ତୁମ୍ଭେ ଭ୍ରାତୃବତ୍ସଳ । ଶ୍ରୀରାମଙ୍କୁ ତୁମ୍ଭେ ବହୁସେବା କଲ ଯଶ ରଖିଲ ଭୂତଳ ହେ । ଲକ୍ଷ୍ମଣ ॥ ପୁଣି ଶ୍ରୀରାମଙ୍କୁ କରି ଆଲିଙ୍ଗନ । ବାବୁ ଯାଅ ତୁମ୍ଭେ ଏଥୁଁ ବହନ । ତୁମ୍ଭଙ୍କୁ ବହୁତ ପ୍ରଶଂସା କରନ୍ତି ହେଉଛି ପାକଶାସନ ହେ । ଶ୍ରୀରାମ ॥ ବାସବ ବୋଲନ୍ତି ଆହେ ରାମଚନ୍ଦ୍ର କଲ ବହୁତ ଉପକାର । ଦୈତ୍ୟ ନାଶିଲ ମହାବୀର । ଆମ୍ଭର ବଚନ ବ୍ୟର୍ଥ ନୁହଇ ମାଗ ତୁମ୍ଭେ ଏବେ ବର ହେ । ଶ୍ରୀରାମ ॥ ରାମ ବୋଲନ୍ତି ଯେବେ ବର ଦେବ । ଋକ୍ଷକପି ମୋହର ଜୀଆଇବ । ନିଦ୍ରା ଗଲା ପ୍ରାୟ ସମସ୍ତେ ଉଠିବେ କାହୁଁହିଁ ବ୍ରଣ ନ ଥିବଟି ହେ । ବାସବ ॥ ରାମଆଜ୍ଞାରେ ଅମୃତ ଘେନି ଶକ୍ର ଯୁଦ୍ଧଭୂମିରେ ବୃଷ୍ଟି କଲେ । ଋକ୍ଷ କପିଯାକ ଜୀଇଁ ଉଠିଲେ । ଯାହା ରାମ କଲେ କେହ୍ବ ତ ଏମନ୍ତ ସୃଷ୍ଟିରେ କରି ନ ଥିଲେ ହେ । ସୁଜନେ ॥ ଦେବେ ମେଲାଣି ମାଗି ସ୍ବର୍ଗ ଗଲେ । ଦେଖି ସମସ୍ତେ ଚକିତ ହୋଇଲେ । ବୋଲେ ବାଶି ଶ୍ରୀରାମଙ୍କ ସେବା କରି ମଲା ଲୋକହିଁ ଜୀଇଁଲେ । ହେ ସୁଜନେ ॥

— — —

## ୭୭ତମ ଛାନ୍ଦ

ରାଗ ଘାର୍ଘ କନଡ଼ା

ବିଭୀଷଣ କରି ଯୋଡ଼ି ଜଣାଇଲେ ମାର୍ଜନା ହୁଅ ହେ ଦେବ ହେ । ସକଳ ସାମଗ୍ରୀ ତୁମ୍ଭକୁ ଆଣିଛି ମୋଠାରେ କରୁଣା ହେବ ହେ । ହେ ଦେବ । ଶୁଣି ବୋଲନ୍ତି ରଘୁନନ୍ଦନ । ଦଣ୍ଡେ ନ ରହିବି ଯିବୁ ବହନ । କେତେବେଳେ ଯାଇ ଭରତ ଦେଖିବୁ ପଥ ବହୁତ ଦୁର୍ଗମ ହେ ॥ ଶୁଣି ବିଭୀଷଣ ବୋଇଲେ ହେ ଦେବ ଅର୍ଦ୍ଧଦିନେ ଘେନିଯିବ ହେ । ଆଜ୍ଞା ହୋଇଲେ ପୁଷ୍ପକ ରଥବର ତୁମ୍ଭକୁ ଘେନି ଆସିବ ହେ । ହେ ଦେବ । ଶୁଣି ଶ୍ରୀରାମ ବୋଲନ୍ତି ଆଣ ବିଳମ୍ବରେ କେଉଁଣ କାରଣ । ଆଜ୍ଞା ପାଇ ଅଶ୍ବ ଯୋଚି ଦେବଯାକ ଆଣିଲେକ ସେହିକ୍ଷଣ ସେ ॥ ଦିବ୍ୟ ମଣିମୟ ବହୁପୁରମାନ କଳଶ ପତାକା ଶୋଭା ହେ ତହିଁ ବସିଲେ କ୍ଷୁଧା ତୃଷା ହରଇ ଜନନେତ୍ର କରେ ଶୋଭା ହେ । ସୁଜନେ । ଯେହ୍ନ ଚଉଦ ଲୋକ ଭ୍ରମଇ । ଯହିଁ ମାନସ ତହିଁକି ଯାଇ ହେ । ମାତ୍ର ରଥବର ମାନସେ ସୂଚନା କଲା ମାତ୍ରକେ ଗମଇ ସେ ॥ ଦେଖି ଦାଶରଥି ବହୁ ହୃଷ୍ଟ ହୋଇ ସୁଗ୍ରୀ ବିଭୀଷଣେ ଗୁହିଁ ହେ । ବୋଲନ୍ତି ଆମ୍ଭେ ମେଲାଣି ହେଉଅଛୁ ବିମାନରେ ବସୁ ଯାଇ ହେ । ସୁଗ୍ରୀବ । ତୁଂଭେ କିଷ୍କିନ୍ଧ୍ୟାକୁ ବିଜେ କରି ।

ମୋତେ କଲ ବହୁ ଉପକାର । ଲଙ୍କାପତି ଲଙ୍କାପୁର ଭୋଗ କର ସର୍ବଦା ତୁମ୍ଭେ ଆନନ୍ଦିହେ ।। ଶୁଣି ସୁଗ୍ରୀବ ବିଭୀଷଣ ଜଣାନ୍ତି ଭୋଦେବ ସଙ୍ଗତେ ଯିବୁ ହେ । ଅଯୋଧ୍ୟାପୁର ଦେଖିଣ ଆମ୍ଭେମାନଙ୍କ ନେତ୍ର କୃତାର୍ଥ କରିବୁ ହେ । ହେ ନାଥ । ପ୍ରଭୁ ଏହି ଅନୁଗ୍ରହ କର । ଭ୍ରାତାଙ୍କୁହିଁ ଦେଖିବୁ ତୁମ୍ଭର । ଅଭିଷେକ ଆମ୍ଭେ ଦର୍ଶନ କରିଣ ଆସିବୁ ଯେ ଯାହା ପୁର ହେ ।। ଶୁଣିଣ ରାଘବ ପରମ ସନ୍ତୋଷ ହୋଇଣ ବୋଲନ୍ତି ଆସ ହେ । ଏହିରୂପେ ତୁମ୍ଭମାନଙ୍କର ସ୍ନେହ ନଷ୍ଟେ ଆମ୍ଭ ପାଶ ହେ । ରାଜନ । ଆସି ଅବଲମ୍ବେ ଯାନେ ବସ । ପରିଜନେ ଖଟିଥାନ୍ତି ପାଶ । ଆମ୍ଭର ଭକତ ହେବାରୁ ମହୀରେ ପାଇଲ ବହୁତ ଯଶ ହେ ।। ବିମାନ ଉପରେ ଶ୍ରୀରାମ ସୀତାଙ୍କୁ ଘେନିଣ ବିଜୟ କଲେ ହେ । ଲକ୍ଷ୍ମଣ କପିପତି ବିଭୀଷଣଙ୍କୁ ଦିବ୍ୟପୁରମାନ ଦେଲେ ହେ । ସୁଜନେ । ଦେଖି ବହୁତ ଆନନ୍ଦ ହେଲେ । ମହାସୁଖେ ସମସ୍ତ ବସିଲେ । ଶ୍ରୀରାମ ଠାକୁରେ ଲଙ୍କାଜୟ କରି ବାହୁଡ଼ା ବିଜୟ କଲେ ହେ ।। ଶୁଭ୍ର ମେଘ ପ୍ରାୟ ପୁଷ୍ପକବିମାନ ଆକାଶେ ଶୋଭା ଦିଶିଲା ହେ । ପୃଥିବୀ ଇତର ପ୍ରାୟେକ ଦିଶିଲା ସ୍ୱର୍ଗପୁର କି ଖସିଲା ହେ । ସୁଜନେ । ବାଦ୍ୟନାଦେ ଆକାଶ ପୂରିଲା । ସମସ୍ତଙ୍କର ସନ୍ତୋଷ ହେଲା । ବୋଲଇ ବିଶି ଜାନକୀ ମନ ଦୁଃଖ ସୁଖସିନ୍ଧୁରେ ବୁଡ଼ିଲା ହେ ।।

---

## ୭୭ତମ ଛାନ୍ଦ—ରାମ ସୀତାଙ୍କ ପୂର୍ବପରିଚିତ ସ୍ଥାନମାନଙ୍କ ନିର୍ଦ୍ଦେଶ

ନନ୍ଦାବାଇ ଚଉତିଶା ବାଣୀ

ଜାନକୀଙ୍କ ସଙ୍ଗେ ରାମ ପୁଷ୍ପକଯାନେ ବସି କହନ୍ତି ମନ୍ଦ ହସି । ଯେଉଁ ସ୍ଥାନରେ ଆମ୍ଭେ ଯେମନ୍ତ କରିଥାଇଁ ଦେଖାଇ ଦେବା ଶୁଭ୍ରକେଶି ଗୋ । ଆଗୋ ସଖି । ଦେଖିଣ ଥାଆନ୍ତି ଏମାନ । ତୁମ୍ଭଙ୍କୁ ହେବ ଏ ସ୍ୱପନ । ଆମ୍ଭେ ଦେଖାଉଥିବା ଚିଳକୁ ମାତ୍ର ତୁମ୍ଭେ ହୋଇଣ ଥିବ ସାବଧାନ ।। ଦେଖରେ ବିଶାଳାକ୍ଷି ଦେଖ ୨ ଏ ଲଙ୍କା ଏଠାରେ ମାଇଲୁ ରାବଣ । ଏଠାରେ ମନ୍ଦୋଦରୀ ସହସ୍ରେ ନାରୀ ଘେନି କରୁଣ ଥିଲେଟି କାରୁଣ୍ୟ ଗୋ । ଆଗୋ ସଖି । ଏଠାରେ କୁମ୍ଭକର୍ଣ୍ଣ ମଲା । ଏଠାରେ ଇନ୍ଦ୍ରଜିତ ମଲା । ଏଠାରେ ଆମ୍ଭଙ୍କୁ ନାଗପାଶରେ ଇନ୍ଦ୍ରଜିତ ବନ୍ଧନ କରିଥିଲା ।। ଏଠାରେ ସଖି ଆରେ ବହୁଯୁଦ୍ଧହୋଇଲା କୁମ୍ଭନିକୁମ୍ଭ ମହୋଦର । ମହାପାର୍ଶ୍ୱ, ଶୁକ, ସାରଣ, ଅକମ୍ପନ, ମନ୍ତ୍ରୀରାବଣ, ବଜ୍ରଦଂଷ୍ଟ୍ର ଗୋ । ଆଗୋ ସଖି । ଏମାନେ ହୋଇଲେଟି ହତ । ବିଦ୍ୟୁଜିହ୍ୱ ବଜ୍ରମୁଷ୍ଟିତ । ବିରୂପାକ୍ଷ ଯେ ଜିହ୍ମପାକ୍ଷ କେତେ ସୈନ୍ୟ ପଡ଼ିଣ ଅଛନ୍ତି ବହୁତ ।। ଏଠାରେ ସୀତେ ଆଗୋ

ଲକ୍ଷ୍ମଣ ଶକ୍ତିଭେଦ ଏଠି ଆମ୍ଭ ସୁବଳଗିରି । ଏଠି ଜଳଧି ସେତୁବନ୍ଧ ବାନ୍ଧିକରିଛି ତୁମ୍ଭ ନିମନ୍ତେ ହେଲୁ ପାରି ଗୋ । ଆଗୋ ସଖି । ଶରଣ ଗଲେ ବିଭୀଷଣ । ଦର୍ଶନ କରିଲେଟି ବରୁଣ । ଦେଖ ଏ ମାଲ୍ୟବନ୍ତ ଏଥିରେହିଁ ତୁମ୍ଭର ବିରହେ କଲୁଟି କାରୁଣ୍ୟ । ଦେଖରେ ଚନ୍ଦ୍ରମୁଖି ଏ ଋଷ୍ୟମୂକ ଗିରି ଏଥି ସୁଗ୍ରୀବ ହେଲେ ମିତ । ଏଠି ଦୁନ୍ଦୁଭି ଅସ୍ଥି ପାଦରେ ଫିଙ୍ଗି ସପ୍ତତାଳ କଲି ହତ ଗୋ । ଆଗୋ ସଖି । ଏଠାରେ ବାଳିକି ମାଇଲୁ । ଏଠାରେ ତାରକୁ ବୋଧିଲୁଁ । ଏଠି କିଷ୍କିନ୍ଧ୍ୟାପୁର ଦିଶଇ ନା ସୁନ୍ଦର ସୁଗ୍ରୀବେ ଏଥି ରାଜା କଲୁଁ । ଶୁଣି ଜନକତନୟା ଜଣାଇଲେ ହେ ଦେବ ଏଠାରେ ଯାନ ରୁହାଇବା । ତାରା ରୁମା ସହିତେ ସମସ୍ତ କପିନାରୀ ଅଯୋଧ୍ୟା ସଙ୍ଗେ ନେଇ ଯିବା କି । ଶୁଣି ରାମ । ସେଠାରେ ରୁହାଇଲେ ଯାନ । ଆଜ୍ଞା ଦେଲେ ସୁଗ୍ରୀ ରାଜନ । ତୁମ୍ଭର ତାରା ରୁମା ଯୂଥପତିଙ୍କ ବାମା ଅଯୋଧ୍ୟା ଯିବେ ବସି ଯାନ ॥ ଆଜ୍ଞା ମାତ୍ରେ ସୁଗ୍ରୀବ ତାରା ରୁମାଙ୍କୁ ନେଇ ବିମାନ ଉପରେ ବସିଲେ । ବାନର ସେନାମାନେ ନାରୀମାନଙ୍କୁ ନେଇ ଆନନ୍ଦେ ଯାନ ଆରୋହିଲେ ସେ । ଆଜ୍ଞା ପାଇ । ଆକାଶେ ପୁଷ୍ପଯାନ ଗଲେ । ବାତେ କି ମେଘମାଳା ଚଳେ । ମଇଥିଳୀଙ୍କି ରାମ ପମ୍ପା-ସରୋବରକୁ ଦେଖାନ୍ତି ପ୍ରେମ କୁତୁହଳେ ସେ ॥ ଏଠାରେ ଜାନକୀ ଗୋ ତବ ବିରହେ ଏହି ପମ୍ପା ତଟରେ ରୋଦନ କଲୁଁ । ଏଠାରେ ତନୁ ଦହି ସ୍ୱର୍ଗଭୁବନ ଗଲା ଶବରୀ ଗୋଟିଏ ଦେଖିଲୁଁ ଗୋ । ଏଠାରେ ଗୋ । ଯୋଜନବାହୁ ଦୈତ୍ୟ ଥିଲା । ଆମ୍ଭହାତେ ମୃତ୍ୟୁ ପାଇଲା । ଯେଉଁ ପ୍ରକାରେ ଆମ୍ଭେ ସୁଗ୍ରୀବେ ମିତ୍ରହେଲୁ ସମସ୍ତ ବୁଦ୍ଧିମାନ ହେଲା ସେ ॥ ଦେଖରେ କୃଶୋଦରୀ ଏଠାରେଟି ଜଟାୟୁ ରାବଣ ସଙ୍ଗେ ଯୁଦ୍ଧ କଲେ । ଏଠାରେଟି ଆମ୍ଭଙ୍କୁ ବାରତା କହି ମଲେ ଏଠାରେ ଦହନ ହୋଇଲେ ଗୋ । ଦେଖ ସଖି । ଏଠି ଆମ୍ଭର ପର୍ଣ୍ଣଶାଳା । ତୁମ୍ଭଙ୍କୁ ରାବଣଟି ନେଲା । ଏହିଠାରେ ଆମ୍ଭେ ମାୟାମୃଗ ମାରନ୍ତେ ମାରୀଚ ଶରୀର ଧରିଲା ଗୋ ॥ ଦେଖରେ ପଙ୍କଜାକ୍ଷି ଏ ଗୋଦାବରୀ ନଦୀ ଦେଖ ଏ ପଞ୍ଚବଟୀ ବଟ । ଧୂମ ଚିହ୍ନ ଦିଶୁଛି ଅଗସ୍ତିଙ୍କ ଆଶ୍ରମ ଏବେ ହୋଇଛି ପରକଟ ଗୋ । ଆଗୋ ସଖି । ଦେଖ ସୁତୀକ୍ଷ୍ଣ ଆଶ୍ରମ । ଆତ୍ରେୟ ଋଷିଙ୍କ ଆଶ୍ରମ । ଏଠାରେ ତୁମ୍ଭଙ୍କୁ ଅନସୂୟା ଶରଧା କରିଣ ଦେଲେ ଆୟୁମାନ ସେ । ଏ ସରୋବରର ଋଷିମଣ୍ଡଳୀ କ୍ରୀଡା କରେ ଏଠି ଶରଭଙ୍ଗ ଆଶ୍ରମ । ଏହାଙ୍କ ପାଶକୁଟି ଶକ୍ର ଆସିଣ ଥିଲେ ଏଠି କଲେ ଅକୃତକର୍ମ ଗୋ । ଏଠାରେ ଗୋ । ବିରାଧ ଦୈତ୍ୟ ହତ ହେଲା । ମରନ୍ତେ ଗନ୍ଧର୍ବ ହୋଇଲା । ଦେଖ ଏ ଚିତ୍ରକୂଟ ପର୍ଣ୍ଣଶାଳା ନିକଟ ବକୁଳ ପରିକା ଦିଶିଲା ଗୋ ॥ ଏଠାରେ ଆରେ ସଖି ଆମ୍ଭ ରହିବା ଦେଖି

ଋଷିମାନେ ବିଚାର କଲେ । ଆମ୍ଭଙ୍କୁ ନ କହିଣ ଠପଠର ହୋଇଣ ଅଗମ୍ୟ ବନରେ ପଶିଲେ ଗୋ । ଦେଖ ସଖି । ଏହି ଆଂଭର ଚିତ୍ରକୂଟ । ଏଥିରେ ବାଲ୍ମିକ ପ୍ରକଟ । ଦେଖ ଗଙ୍ଗା ଯମୁନା ନଦୀ ଏ ସରସ୍ୱତୀ ଦେଖାଇଛନ୍ତି ମୋକ୍ଷ ବାଟ ଗୋ ॥ ଏହି ଆଗୋ ସୁନ୍ଦରୀ ଭରଦ୍ୱାଜଙ୍କ ପୁରୀ ଏହାକୁ ଦର୍ଶନ କରିବା । ଅଯୋଧ୍ୟାର ମଙ୍ଗଳ ଭ୍ରତ ଶତ୍ରୁଘ୍ନଙ୍କ କୁଶଳ ବାରତା ପାଇବା ଗୋ । ଆଗୋ ସଖି । ଏଠାକୁ ଅଯୋଧ୍ୟା ନିକଟ ଏ ଶୃଙ୍ଗବେର ନଦୀ ତଟ । ଏତେ ବୋଲିଣ ଯାନ ରୁହାଇଲେ ସେ ସ୍ଥାନ ବସି ଭଣଇ ରଘୁଶ୍ରେଷ୍ଠ ହେ ॥

---

## ୭୮ତମ ଛାନ୍ଦ—ଅଯୋଧ୍ୟାରେ ରାମଙ୍କର ବିଜୟବାର୍ତ୍ତା

ରାଗ—କାଳୀ

ଭରଦ୍ୱାଜଙ୍କ ଦୁଆରେ ଯାନୁଁ ଓହ୍ଲାଇଲେ ଶ୍ରୀରାମ । ସଙ୍ଗେ ଲକ୍ଷ୍ମଣ ଜାନକୀ ଘେନି କଲେକ ସେ ପ୍ରଣାମ । ଆନନ୍ଦେ ଋଷି କଲ୍ୟାଣ କରି କଲେକ ଆଲିଙ୍ଗନ । ଆଜ ଦେଖିଲୁଁ ନେତ୍ରପଥରେ ରଘୁକୁଳ ନନ୍ଦନ ॥ ତୁମ୍ଭର ଯେତେ ବିପତ୍ତି ମାନ ସମସ୍ତ ଜାଣୁ ଆମ୍ଭେ । ଅସୁର ନାଶ କରିଣେ ସିନା ଜାତ ହୋଇଛ ତୁମ୍ଭେ । ଆଂଭେ ତୁଂଭଙ୍କୁ ପ୍ରସନ୍ନ ହେଲୁ ମାଗ ଆଂଭଙ୍କୁ ବର । ରାମ ବୋଲନ୍ତି ଯାହା ମାଗିବୁ କରିବ ସୀଊକାର ॥ ଏହା ମାଗୁଛୁ ହେ ମୁନିବର ଏମନ୍ତ ବର ଦେବ । ତୁଂଭ ମଠରୁ ଅଯୋଧ୍ୟା ଯାଏ ବିବିଧ ତରୁ ହେବ । ସୁପକ୍ୱଫଳେ ଭୂମିକି କରୁଥିବେ ଯେ ଆଲିଙ୍ଗନ । ସମସ୍ତ ଋକ୍ଷକପି ଖାଇଣ ହୋଇବେ ହୃଷ୍ଟମନ । ଶୁଣିଣ ମୁନି ବୋଲନ୍ତି ଅସ୍ତୁ ଯେମନ୍ତ କରି ବାଞ୍ଛା । ଖାଇବେ କପି ବିବିଧ ଫଳ ଯାହାର ଯେତେ ଇଚ୍ଛା । ଭ୍ରତର ସବୁ କୁଶଳଟିକ ପୁଚ୍ଛନ୍ତି ରାମ ହସି । ଜନନୀମାନଙ୍କର କୁଶଳ । କ୍ଷମ ଅଯୋଧ୍ୟା ବାସୀ ॥ ମୁନି ବୋଲନ୍ତି ଶୁଣ ହେ ରାମ ସମସ୍ତଙ୍କ କୁଶଳ । କେବଳ ଭ୍ରମ ତବ ବିରହେ କଷ୍ଟେ ବଞ୍ଚଇ କାଳ । ବାନ୍ଧିଣ ଜଟ ଅଜିତ ପିନ୍ଧେ ପତ୍ର କରଇ ପାନ । କେବଳ ତବ ପାଦୁକା ପୂଜି ରଖିଅଛୁ ଜୀବନ ॥ ଶୁଣିଣ ରାମ ସମସ୍ତ ସେନାମୁଖକୁ ଅନାଇଲେ । ଅଞ୍ଜନାସୁତ ମୁଖକୁ ଚାହିଁ ରାମହିଁ ଆଜ୍ଞା ନେଲେ । ଯାଅ ହେ ହନୁ ଭରତ ପାଶେ ଆଂଭର ବିଜେ କହ । କାହା ମୁଖରୁ କି ଅବା ଶୁଣି ହେଉ ଯେ ଥିବ ମୋହ । ଭ୍ରତ ହରଷ ବିରଷ ଅନାଇବ ମୁଖକୁ ଚାହିଁ । ତାର ବିରସ ଦେଖିଲେ ମୁହିଁ ଅଯୋଧ୍ୟା ଯିବି ନାହିଁ ॥ ଶୃଙ୍ଗବେରରେ ଶବରନୃପତିକି କହିଣ ଯିବ । ସର୍ବଜନନୀମାନଙ୍କୁ ଆଂଭବିଜୟ ଜଣାଇବ ॥ ମନୁଷ୍ୟରୂପ ଧରିଣ ହନୁ ପବନୁ ବେଗେ ଗଲେ । ଶୃଙ୍ଗବେରର

ବାରତା କହି ନନ୍ଦୀଗ୍ରାମରେ ହେଲେ । ଦେଖିଲେ ଭରତ ପାଦୁକା ପୂଜା ସାରି ଅଛନ୍ତି ବସି । ରାମଙ୍କ ପ୍ରାଏ ଜଟା ବକଳ ଦେଖିଣ ପରଶଂସି ॥ ମାନ୍ୟ କରିଣ ଭରତକୁ ହନୁ କହିଲେ ବଳେ କଥା । ଶୁଣି ଭରତ ଆନନ୍ଦ ହୋଇ ମନୁ ତେଜିଲେ ବ୍ୟଥା । ମୁହୂର୍ତ୍ତିଯାଏ ଆନନ୍ଦଭରେ ଅଚେଷ୍ଟ ସେ ହୋଇଲେ । ହନୁକୁ ଆଲିଙ୍ଗନ କରିଣ ଅବଲମ୍ବେ ଗୁଡ଼ିଲେ ॥ ବଧାଇ କରି ଦେଲେକ ତାଙ୍କୁ ଲକ୍ଷେ ଦୁହାଁଳ ଗାବ । ଶତେକ ରାମା ଶତେ ସୁବର୍ଣ୍ଣ ବାଛିଣ ଦେଲେ ଦ୍ରବ୍ୟ । ରତ୍ନଭୂଷଣ ପୁଷ୍ପ ଚନ୍ଦନ କଲେକ ଆଭରଣ । ବାରତା ପାଇ ବାସ ଭୂଷଣ ଦେଲେକ ମାତାଗଣ ॥ ରାମଙ୍କ ସବୁ ବୃତ୍ତାନ୍ତମାନ ଭରତେ କହି ହନୁ । ଆନନ୍ଦେ ଅଶ୍ରୁ ନୟନୁ ବହେ ପୁଲକ ହୁଏ ତନୁ । ପୁଣ ହନୁକୁ ପୁଚ୍ଛନ୍ତି ତୋଷେ ରାମ ଚରିତମାନ । ବୋଲଇ ବଶି ଶ୍ରବଣେ ଶୁଣି ଆନନ୍ଦ କରେ ମନ । ୧୨ ।

—❋—

## ୭୭ ତମ ଛାନ୍ଦ

## କୌଶଲ୍ୟାଦି ସହ ଭ୍ରାତଙ୍କର ରାମଙ୍କ ପଥ ଅନ୍ୱେଷଣ

ରାଗ—କାଫି

ହନୂ ମୁଖରୁ ରାମ ବିଜୟ ଶୁଣି । ଆନନ୍ଦ ହେଲେ ଭରତ ସହିତେ ଯେ କଉଶଲ୍ୟାଦି ରାଣୀ ॥ ଉତ୍ସବ କରାଇଲେ ଅଯୋଧ୍ୟା ପୁର । ମଣ୍ଡନ କରାଇଲେ ସମସ୍ତେ ଯେ ନନ୍ଦୀଗ୍ରାମ ଆବର ॥ ଭରତ ଶତ୍ରୁଘ୍ନ ପାଦୁକା ଘେନି । ଆବର ବାଲ୍ମୀକି ଜାବାଲୀ ସେ ସଙ୍ଗେ ବଶିଷ୍ଠ ମୁନି ॥ ସୁମନ୍ତ ସହିତରେ ସଚିବମାନେ । ବାହାର ହେଲେ ସୈନ୍ୟ ଘେନିଣ ସେହି ଆନନ୍ଦ ମନେ ॥ କଉଶଲ୍ୟାଙ୍କୁ ଘେନି ସର୍ବ ଜନନୀ । ଶିବିକାମାନ ଚଢ଼ି ବାହାରି ଯେ ଶୋଭା ଦିଶେ ମେଦିନୀ ॥ ରାମ ବିଜୟପଥେ ବିଜେ ଭରତ । ପଟ୍ଟ ଆରି କରିଣ ଚଳନ୍ତି ଯେ ହନୁର ଧରି ହସ୍ତ ॥ କେତେହେଁ ଦୂର ଯାଏଁ କଲେ ଗମନ । ନ ଦେଖିଣ ହନୁକୁ ପୁଚ୍ଛନ୍ତି ଯେ ହୋଇ ବିକଳ ମନ ॥ ପୁଣି ପୁଚ୍ଛନ୍ତି ହନୁ ସତ କି କହ । ଶ୍ରୀରାମ ଶ୍ରୀଚରଣ ନ ଦେଖି ଯେ ମୋର କାତର ଦେହ ॥ କେଉଁଠାବରେ ଗୁଡ଼ି ଅଇଲୁ ହନୂ । ସତ କରିଣ ମୋତେ ସମ୍ଭାଷ ହେ କଷ୍ଟ ତେଜିବ ମନୁ ॥ ବୋଲନ୍ତି ଦେବ ପୁଷ୍ପକଯାନେ ଏହିକ୍ଷଣି ବିଜୟ କରିବେ ହେ ଦେଖିବଟି ନୟନେ ॥ ଆକାଶ ମାର୍ଗରେ ଏବେ ଲକ୍ଷ୍ୟ କର । ବାରବାଦ୍ୟମାନ ଶୁଭୁଛି ହେ ଅଇଲେଟି କୁମର ॥ ଏମନ୍ତ ଶୁଣି ଊର୍ଦ୍ଧ୍ୱେ ଦେଲେକ ଦୃଷ୍ଟି । ଧୀରେ ଧୀରେ ବିମାନ ଖସିଲା ହେ ଶୋଭା ଦିଶିଲା ସୃଷ୍ଟି ॥ ଦେଖିଣ ଜୟ ଜୟ ଶବଦ କଲେ । ଆନନ୍ଦ-

ଜଳଧିରେ ବୁଡ଼ିଣ ହେ ସର୍ବେ ମଗ୍ନ ହୋଇଲେ ॥ ନନ୍ଦିରେ ବିଜେ କଲା ପୁଷ୍ପକ ଯାନ । ଧନୁଶର ଧରିଣ ବିଜୟ ହେ ରଘୁକୁଳନନ୍ଦନ ॥ ଶ୍ୱେତଛତ୍ର ତଳରେ ପାଦୁକା ଥୋଇ । ଭୂମିରେ ଦଣ୍ଡବତ କଲେକ ଯେ ଭରତ ସାଷ୍ଟାଙ୍ଗ ହୋଇ ॥ ଶତ୍ରୁଘନହିଁ କଲେ ଦଣ୍ଡପ୍ରଣାମ । ଯାନୁ ଓହ୍ଲାଇ ଭରତ ଚରଣେ ଯେ ଲକ୍ଷ୍ମଣହିଁ ପ୍ରଣାମ ॥ ଶତ୍ରୁଘନ ଲକ୍ଷ୍ମଣେ ମାନନ କଲେ । ଟେକଲେ ବସାଇ ରାମ ଭରତଙ୍କୁ ଯେ ଆଲିଙ୍ଗନ ତ କଲେ ॥ ଭରତ ଶତ୍ରୁଘ୍ନଙ୍କୁ କୋଳେ ବସାଇ । ମାନ୍ୟ ତ କଲେ ଏକାବେଳକେ ହେ ମାତାମାନଙ୍କ ଗୁହିଁ ॥ ବଶିଷ୍ଠ ଆଦି ପୁରୋହିତ ସକଳ । ମାନ୍ୟତ କଲେ ରାମ ତାହାଙ୍କୁ ହେ ଯୋଡ଼ି କରଯୁଗଳ ॥ ସୁଗ୍ରୀବ ସଙ୍ଗରେ ସେନା ସକଳ । ରାମ ଚାହାନ୍ତେ ପ୍ରତି ଜଣକେ ହେ ଭରତ କଲେ କୋଳ ॥ ବିଭୀଷଣଙ୍କୁ ପଛେ ଚାହାଇ ଦେଲେ । ରାମ ଆଜ୍ଞା ପାଇଣ ତାହାଙ୍କୁ ଯେ ଆଲିଙ୍ଗନ ତ କଲେ ॥ ନନ୍ଦୀଗ୍ରାମେ ପ୍ରବେଶି ଯାନ ତେଜିଲେ । ବିଭୀଷଣଙ୍କୁ ଗୁହିଁ ରାଘବ ଯେ ଏମନ୍ତ ଆଜ୍ଞା ଦେଲେ ॥ କୁବେର ଯାନ ଏବେ ନେଇ କୁବେରେ । ବଳେ ଛଡ଼ାଇ ଆଣିଥିଲା ଯେ ଅସୁର ଦଶଶିର ॥ ଯାନକୁ ଆଜ୍ଞା ଦେଲେ ରଘୁ-ନନ୍ଦନ । ସର୍ବଦା କୁବେରଙ୍କୁ ବହିବ ହେ ଯାଅ କୁବେର ସ୍ଥାନ ॥ କୁବେରପୁର ଗଲା ପୁଷ୍ପକଯାନ । ଭଣଇ ବିଶି ଆଜ୍ଞାଦେଲେକ ହେ ତାକୁ ରଘୁନନ୍ଦନ ॥

---

## ୮୦ତମ ଛାନ୍ଦ—ରାମାଭିଷେକର ଅଧିବାସ

ରାଗ—ବିପ୍ରସିଂହା

ଭରତପୁର ନନ୍ଦୀଗ୍ରାମ, ବିଜେ କଲେ ତହିଁ ରାମ, ସୁଗ୍ରୀ ବିଭୀଷଣ ଘେନ ସଙ୍ଗେ । ବିଜେ କରି କଲେ ସଭା, କରଯୋଡ଼ି ସର୍ବେ ଉଭା; ଭରତ ଜଣାଇ କଥା ପ୍ରସଙ୍ଗେ ହେ । ରଘୁବୀର । ଅଯୋଧ୍ୟାରେ ହୁଅ ଅଭିଷେକ । ଘନ ଦେଖିଲେ ଚାତକ, ପ୍ରାପ୍ତେକ ଅଯୋଧ୍ୟା ଲୋକ, ତୁମ୍ଭଙ୍କୁ ଦେଖି ରଘୁନାୟକ ॥ ଶୁଣିଣ ରଘୁନନ୍ଦନ, ଭରତେ ଶୁଣ ବଚନ, ବୋଲନ୍ତି ତୁମ୍ଭେ ସିନା ରାଜନ । ପାଳି ପିତାର ବଚନ, ପୃଥିବୀ କର ପାଳନ; ତୁମ୍ଭେ ଆମ୍ଭେ ନୋହୁ ଭିନ୍ନାଭିନ୍ନ ହେ । ଭରତବୀର । ରାଜା ହୋଇ କର ତୁମ୍ଭେ ଭୋଗ । ଆମ୍ଭର ବଚନ କର ମନରେ ଆନ ନ ଧର, ତୁମ୍ଭଠାରେ ଆମ୍ଭର ଅନୁରାଗ ହେ ॥ ଶୁଣିଣ କୈକେୟୀ ସୁତ, କରଯୋଡ଼ିଣ ଭରତ, ଜଣାଇଲେ ଶ୍ରୀରାମ ଶ୍ରୀମୁଖରେ । ଯହିଁ ଉଦେ ପୂର୍ଣ୍ଣଶଶୀ, ଶୁଦ୍ଧ କି ତା ଆଗେ ବସି, ଅନୁଗ୍ରହ କର

ମୋହଠାରେ ହେ । ରଘୁବୀର । ପିତା ଯେବେ ମୋତେ ଦେଲେ ରାଜ୍ୟ । ମୁଁ ତାହା ତୁମ୍ଭଙ୍କୁ ଦେଲି, ତୁମ୍ଭର ସେବକ ହେଲି, ମୋଠାରେ ହୁଅ ସଦୟ ହୃଷ୍ଟ ହେ ।। ଯେଉଁ ଖର ମଣ୍ଡଳଶ, ପୃଷ୍ଠରେ ପାରଇ ଧର, ସେ ଖର କି ବହଇ ଗଯୂଳ । ରାଜ୍ୟକୁ ନୁହଇ ଯୋଗ୍ୟ; ତୁମ୍ଭଙ୍କର ପାର ଶ୍ଳେଗ, ସିଂହବଳ ଭକ୍ଷେ କି ଶୃଗାଳ ହେ । ରଘୁବୀର । ମୋର ମନୋରଥ ପୂର୍ଣ୍ଣ କର । ଦେଖିଣ ସକଳ ଲୋକ, ହରନ୍ତୁ ସକଳ ଶୋକ, ପୃଥିବୀରେ ହୁଅ ଦଣ୍ଡଧର ହେ ।। ରାମ ସୀଉକାର କଲେ ଭରତ ସୁଗ୍ରୀବେ କହିଲେ, ଗୃହ ସମୁଦ୍ର ଅଣାଅ ଜଳ । ଏହା ଶୁଣି କପିପତି, ପେଷିଲେ ସେ ଋକ୍ଷପତି, ସୁଷେଣ ବେଗ ଦରଶୀ ମାଳ ସେ । ରାବଣାରି । ଭରତରେ ଅନୁଗ୍ରହ କଲେ । ପମାର ଲାଗି କରାଇ, ଜଟାମାନ ଉପୁଡାଇ, ମାର୍ଜ୍ଜନା ତାହାଙ୍କୁ କରାଇଲେ ସେ ।। ମାର୍ଜ୍ଜନା ହେଲେ ଲକ୍ଷ୍ମଣ. ଶତ୍ରୁଘନ ହେବ୍ଭୀଷଣ, ଭରତ ସଙ୍ଗେ ହୋଇଲେ ସୁବେଶ । ସୁଗ୍ରୀ ବିଭୀଷଣ ନେଇ, ପମାର ଲାଗି କରାଇ, ତଦନ୍ତେ ମୁଞ୍ଚିଲେ ଯତିବେଶ ସେ । ରାବଣାରି । ଶ୍ରୀମୁଖେ ହେଲେ ପମାର ଲାଗି । ଦାଢ଼ି ନଖାନ୍ତ ପକାଇ, ନିମୁଣ୍ଡ ଜଟା ଫେଡାଇ, ଭିନ ଭ୍ରାତ କରଉ ଉଲଗି ସେ ।। ସୁବାସ ଜଳରେ ସ୍ନାନ, କ୍ଷୀନବସନେ ପୋଛିଣ; ନିମୁଣ୍ଡ ସେ ପୁଣ ଶୁଖାଇଲେ । ସାଜିଲେ କୁସୁମ ଚୂଳ; ପିନ୍ଧିଲେ ପୀତ ଦୁକୂଳ; ମୁକୁଟ କୁଣ୍ଡଳ ଲାଗି ହେଲେ ସେ । ରାବଣାରି । ଲାଗି ହେଲେ ତଡ଼ାଉ ରହର । କଣ୍ଠେ ଗୃପସରି ହାର; ସୁପଦକ ଶୋହେ ଉର; କରେ କଟକୀ ବାହୁଟୀ ହାର ସେ ।। ଶ୍ରୀରତ୍ନ ମୁଦ୍ରିକାବର; ଶୋଭା ଦଶଅଙ୍ଗୁ କର; ଶ୍ରୀଚରଣେ ସୁରତ୍ନ ନୂପୁର ହୋଷଡ ଏ ପୀତାମ୍ବର; ଅଙ୍ଗେ ଚନ୍ଦନ କର୍ପୂର; ଅଧିବାସ ବୀରବରଙ୍କ ସେ । ରାବଣାରି । ଧନୁଶର ଧରି ବିଶି ବୀରହିଁ ସାଜେ ସେ । ୯ ।

---

## ୮୧ ତମ ଛାନ୍ଦ—ଅଯୋଧ୍ୟା ନାରୀଙ୍କର ବର୍ଣ୍ଣନ

ରାଗ—ପୂର୍ବୀ

ରାମ ଆଗମନ ଶୁଣି; ଅଯୋଧ୍ୟାପୁର ତରୁଣୀ; ଏକ ଆତଙ୍କରେ ଧାଇଁଲେ ଯେ । ଗୁଡ଼ ସୁତ ବନ୍ଧ ଘର; ବସନେ ଯେ ତତପର; ଲାଜଭୟକୁ ଗ୍ରୁଡ଼ିଲେ ଯେ । ଚନ୍ଦ୍ରବଦନୀ । ଦେଖିଲେ ଶ୍ରୀରାମଙ୍କ ମୁଖ । ରତି ଘେନ୍ତା କି ମଦନ, ଚଢ଼ିଣ ଆସଇ ଯାନ; ବନ୍ଧିଲେ ସୁନ୍ଦରବଣୀଖ ସେ ।। କେ ବୋଇଲା ଥିଲା ଦାଡି ଶୋଭା ଦିଶୁଥିଲା ବେଢ଼ି; କେ ବୋଲଇ ଥିଲା ଜଟ ଗୋ । ଧରିଛନ୍ତି

ଧନୁର୍ବାଣ; ଏହି ମାଇଲେ ରାବଣ, ତ୍ୟଜିଲେ ଅଜନପଙ୍କ ଗୋ । କେ ଟିବୋଲେ ଅପୂର୍ବ ଶୋଭା, ମାନସ କରଇ ଲୋଭା, କେ ବୋଲଇ ନବଯୁବା ଗୋ । କେ ବୋଲଇ କି ମଘବା, ଶଚୀଙ୍କି ଘେନି କୋଳେ ବା, ଅଯୋଧ୍ୟା ସୈନ୍ୟ କି ଅବା ଗୋ ।। କେ ବୋଲଇ ମହାବାହୁ—ଯୁଗେ ଯୁଗେ ରାଜା ହେଉ, ଆମ୍ଭଙ୍କୁ ସେ ସୁଖ ଦେଉ ଗୋ । ଏମନ୍ତ ବୋଲି ତରୁଣୀ, ଏକେ ଆରକେ ଭାଷିଣୀ, ବଣି ବୋଲେ ଦୁଃଖ ଦହୁ ଗୋ । ୫ ।

---

## ୮୨ ତମ ଛାନ୍ଦ—ରାମଙ୍କ ଅଯୋଧ୍ୟାନଗରକୁ ବିଜୟ

ରାଗ—ମଙ୍ଗଳଗୁଜ୍ଜରୀ

ହେମ ରତ୍ନବର ଚଢ଼ି ରଘୁକୁଳ ଧୀର । ବାମକରେ କୋଦଣ୍ଡ ଦକ୍ଷିଣ କରେ ଶର ।। ବେନିପାଶେ ଶୋଭା ଦିଶୁଅଛି ଗୁଣଭର । ଜନକନନ୍ଦିନୀ ବିଜେ ବାମପାରଶ୍ୱର ।। ଶ୍ୱେତଛତ୍ର ଧରିଛନ୍ତି ଶତ୍ରୁଘ୍ନ ବୀର । ଭରତ ରଥ ବାହାନ୍ତି ସଧୀର ସଧୀର ।। ବେନିପାର୍ଶ୍ୱେ ଲକ୍ଷ୍ମଣ ବିଭୀଷଣ ବେନି । ବେନି ଶ୍ୱେତଚାମର ଢାଳନ୍ତି କରେ ଘେନି ।। ମହାଗଜ ଆରୋହଣ କରି କପିପତି । ପଛୁଆର କରି ଆଗେ ଚଳାଉ ଅଛନ୍ତି ହନୁ ଅଙ୍ଗଦ ଜାମ୍ବବ ସୁଷେଣ ଯେ ନୀଳ । ଗଜୋପରେ ଚଢ଼ିଛନ୍ତି ବିଶାଳ ବିଷାଳ ।। ଏହିରୂପେ ଗଜ ଚଢ଼ି ଯୁଥପତିମାନେ । ଅଶ୍ୱ ସୁଖାସନେ ବସିଛନ୍ତି ଆଉମାନେ ।। ମଣିମୟ ଆଭରଣେ ଦିଶୁଛନ୍ତି ଘୋର । ଶଙ୍ଖ ସଙ୍ଗେ ବହୁତ ଦେବତା ଥିଲ ପର ।। ଅଗ୍ରେ ଦ୍ୱିଜମାନେ କରୁଛନ୍ତି ବେଦଧ୍ୱନି । ଦଧି ସର ମୋଦକ କେ କରେ ଛନ୍ତି ଘେନି ।। ମଙ୍ଗଳ ଅଷ୍ଟକ ପଢ଼ୁଛନ୍ତି ଜଉତଷେ । ଭାଟ କଏବାର କରୁଅଛନ୍ତି ବିଶେଷେ ।। ଗଣିକାଏ ପଛୁଆର ନୃତ୍ୟ କରୁଛନ୍ତି । ଚତୁରଙ୍ଗ ବଳ ଧୀରେ ଧୀରେ ଚଳିଯାନ୍ତି ।। ବିବିଧ ଛତ୍ର ବିବିଧ ପତାକା ସୁନ୍ଦର । ବିବିଧ ବାଦ୍ୟ ନାଦରେ ପୂରେ ସୁରପୁର ।। ଶ୍ରୀଜଗନ୍ନାଥ କି ନବଦିନ ଯାତ୍ରା ସାର । ନନ୍ଦିଘୋଷେ ଚଢ଼ି କି ବାହୁଡ଼ା ବିଜେ କରି ।। ରାବଣ ସହାରି ଜୟ ଲକ୍ଷ୍ମୀ ଘେନି ଅବା । ରାମଚନ୍ଦ୍ର ଦିଶୁଛନ୍ତି ସେହି ରୂପେ ଶୋଭା । ରାମଚନ୍ଦ୍ର ଦେଖିଣ ଅଯୋଧ୍ୟା ପୁରବାସୀ । ଆନନ୍ଦ ହୋଇଣ ମହାଗହଳରେ ପଶି ।। କେ ବୋଲଇ ବରି କି ଆସଇ ବସୁନ୍ଧରୀ । ଆଉ ଥରେ ବିଭା ଅବା କରିବା କୁମାରୀ ।। ପ୍ରବେଶ ହୋଇଲେ ଯାଇ ଅଯୋଧ୍ୟା କଟକେ । ଶଙ୍କର ତ୍ରିଭୁବନ ପ୍ରାୟେ ଦିଶଇ ଛଟକେ ।। ଦ୍ୱାରେ ଦ୍ୱାରେ ରମ୍ଭାବୃକ୍ଷ ହେମ ପୂର୍ଣ୍ଣକୁମ୍ଭ । ସମସ୍ତ ପୁର ମଣ୍ଡିତ ଦିଶଇ ଆରମ୍ଭ । ରାମ ପୂର୍ଣ୍ଣଚନ୍ଦ୍ର ଦେଖି ଅଯୋଧ୍ୟାନଗର । ଉତ୍ସୁକରେ ଉଚ୍ଛୁଳୁଛି କି ଅବା ସାଗର । ସିଂହଦ୍ୱାର ଦେଖି

ଓହ୍ଲାଇଲେ । ନଗର ଭିତରକୁ ବିଜୟ କରି ଗଲେ ॥ ସୀତାଙ୍କୁ ଘେନିଣ ଗଲେ ପ୍ରିୟ ସଖୀଗଣେ । ବହୁତ ଆନନ୍ଦ ହୋଇଲେ ସର୍ବ ରାଣୀମାନେ । ବିଜେ କଲେ ଶ୍ରୀରାମ ସୁବର୍ଣ୍ଣ ସିଂହାସନେ । ସୁଗ୍ରୀବଙ୍କୁ ବସା ଦେଲେ ଆପଣା ଭବନେ ॥ ବିଭୀଷଣ ରହିଲେ ଲକ୍ଷ୍ମଣଙ୍କର ପୁର । ଋକ୍ଷ କପି ରାକ୍ଷସେ ପାଇଲେ ଦିବ୍ୟଘର ॥ ଜଣ ଜଣକେ ଚରଣ କଲେ ଭରତବୀର । ଦିବ୍ୟ ଆସନମାନଙ୍କେ ପୂରିଲା ନବର । ମହା ଆନନ୍ଦେ ରହିଲେ ଚତୁରଙ୍ଗବଳ । ବଶି ମତ୍ତ ରାମ ପାଦକମଳେ ଭ୍ରମର । ୫ ।

---

## ୮୩ତମ ଛାନ୍ଦ—ଶ୍ରୀରାମଙ୍କ ଅଭିଷେକ

ରାଗ — ମଙ୍ଗଳଧନାଶ୍ରୀ

ଏଥୁ ଅନନ୍ତରେ ଶୁଣ ରସ । ଶ୍ରୀରାମଙ୍କ ଚରିତ ପିୟୂଷ । ଅଧିବାସ ମଣ୍ଡପମଣ୍ଡଣି । ତହିଁ ଅଧିବାସ ରଘୁମଣି ॥ ଅଧିବାସ କଲେ ତୀର୍ଥଜଳ । ନୃତ୍ୟ ଗୀତେ ରଜନୀ ତହଲ । ପ୍ରାତୁ ଶୀଘ୍ରେ ଶ୍ରୀରାମ ମାଜଣା । ତତ୍ତାଉ ଲାଗି ରାବଣଜଣା ॥ ମୁକୁଟ କୁଣ୍ଡଳ ବୀରଚୂଳ । ହୃଦରେ ପଦକ ପଦ୍ମମାଳ । କଣ୍ଠେ ଗୃପସରି ହୃଦେ ହାର ॥ ବାହୁବନ୍ଧ ଶୋହେ ସୁବାହୁର ॥ ମଣିବନ୍ଧେ କଙ୍କଣ କଟକି । ସୁରତ୍ନ ମେଖଳା ଶୋହେ କଟି । ଶ୍ରୀପଦ୍ମରେ ତତ୍ତାଉ ନୂପୁର । ମୁଦ୍ରିକା ମଣ୍ଡିତ ଅଙ୍ଗୁଳିର । ହେମ ସମ ବିଚିତ୍ର ଅମ୍ବର । ଲାଗି ହୋଇଲେ ସୁନ୍ଦର ବର ॥ ଖଣ୍ଡା ଯମଦାଢ଼ କଟିଦେଶ । ବେନି ତୂଣୀରର ବେନି ପାଶ । ବାମେ କୋଦଣ୍ଡ ଦକ୍ଷିଣେ ଶର । ଘେନି ଅଛନ୍ତି ସେ ବୀରବର ॥ ଉଚ୍ଚ କନକ ବେଦିକା ପୁର । ନବରତ୍ନ ମଣ୍ଡପ ସୁନ୍ଦର ରତ୍ନକଳସୀ ପରେ ପତାକା । ବୀରମାନଙ୍କ ବିଜେ କି ଏକା ॥ ଚଉପାଶେ ଶୋହେ ଦିବ୍ୟପୁର । ମେଳ କାଠେ ମଣ୍ଡଣି ଅପାର ॥ ସେ ବେଦିକାପରେ ସିଂହାସନ । ତହିଁ ବିଜେ ଶ୍ରୀରାମ ରାଜନ । ସୁବେଶ ହୋଇ ଜନକ-ଜେମା । ରାମ ବାମପାଶେ ବିଜେ ରାମା । ବିଭୀଷଣ ସୁଗ୍ରୀବ ଏ ବେନି । ଗ୍ରାମରେ ଗ୍ରାମରେ ଛନ୍ତି ଘେନି । ବେନିପାଶେ ବିଞ୍ଚେ ଧୀରି ଧୀରି । ଶ୍ୱେତଛତ୍ର ଶତ୍ରୁଘ୍ନ କରି ॥ ଭରତ ଲକ୍ଷ୍ମଣ ବେନି ପାର୍ଶ୍ୱେ । ତୀର୍ଥଜଳ ଘେନିଣ କଳସେ । ବଶିଷ୍ଠାଦି ପୁରୋହିତ ମିଳି । ଜଳ ଢାଳିଲେ ରାମ ମଉଳି । ତଦନ୍ତରେ ପୁଣି ଦ୍ୱିଜମାନେ । ଅଭିଷେକ କଲେ ଯାବଧାଠନ ॥ ତଦନ୍ତେ ଭରତ ଲକ୍ଷ୍ମଣ ବେନି । ଅଭିଷେକ କଲେ ଜଳ ଘେନି ॥ ତଦନ୍ତେ କ୍ଷତ୍ରିୟ ଯୋଦ୍ଧା ବୀରେ । ଅଭିଷେକ କଲେ ରାମଶିରେ । ତଦନ୍ତରେ ଦିବ୍ୟ ନାରୀକୁଳ । ଅଭିଷେକ କଲେ ଶିରେ ଜଳ ॥ ତଦନ୍ତରେ ମନ୍ତ୍ରୀ-

ମାନେ ମିଳି । ଅଭିଷେକ ଯେ କଲେ ମଙ୍ଗଳ । ତଦନ୍ତେ ବୈଶ୍ୟା ଅଯୋଧ୍ୟାବାସୀ । ଅଭିଷେକ କଲେ ଜଳରାଶି ॥ ପୁଷ୍ୟା ନକ୍ଷତ୍ର, କର୍କଟା ଶଶୀ । ପୁଷ୍ୟା ପୂର୍ଣ୍ଣିମୀରେ ଗୁରୁ ମିଶି । ସେ ଦିନ ଶ୍ରୀରାମ ଅଭିଷେକ । ଖ୍ୟାତ ହୋଇଲା ସକଳ ଲୋକ ॥ ବାଜଇ ବିବିଧ ବାଦ୍ୟମାନ । ଶୁଭୁଅଛୁ ଶଙ୍କର ଭୁବନ । ଜାଣି ଶକ୍ର ଅଭିଷେକ କାଳ । ଦେଲେ ଦେବ ଦିବ୍ୟ ରତ୍ନମାଳ । ମାଳେ ତହୁଁ ଅଙ୍ଗେ ଲାଗି ହେଲେ । ଆଉ ମାଳ ଜାନକୀଙ୍କି ଦେଲେ । ଆକାଶେ ମିଳି ଅମରଲୋକ । ରାମେ କଲେ ପୁଷ୍ପ ଅଭିଷେକ ॥ ଋକ୍ଷ ରାକ୍ଷସ ବାନର ନର । ପଞ୍ଚୁଆରେ ରହିଛନ୍ତି ଦୂର । ନୃତ୍ୟ କଲେ ବାରନାରୀ ଗଣ । ସୁସଙ୍ଗୀତ ଶାସ୍ତ୍ରର ପ୍ରମାଣ ॥ ଅଭିଷେକ ଯେଣୁ ହୁଏ ଶେଷ । ଶ୍ରୀରାମ ସୁଗ୍ରୀବ ରାଇ ପାଶ । ଦେଲେ ତାହାଙ୍କୁ ଗଳାର ହାର । ପଞ୍ଚରତ୍ନ କଲେକ ଅପାର । ଅଙ୍ଗଦକୁ ଦେଲେ ଅଙ୍ଗଛନ୍ଦ । ହୋଇଲା ସେ ବହୁତ ପ୍ରମୋଦ ॥ ହନୁକୁ ଦେଲେ ମୁକ୍ତାମାଳା । ଦେଲେ ମାଳା ବିଭୀଷଣ ଗଳା ॥ ଯୂଥପତି ସମସ୍ତେ ପାଇଲେ । ବିସ୍ତୁ ହୃଷ୍ଟ ଋକ୍ଷପତି ହେଲେ । ସୀତା ହେଲେ ହନୁବାରେ ହାର । ଲମ୍ବାଇଲେ ହନୁ ତାହା ଉର ॥ ଦେଇ ଦେବୀ ସନ୍ତୋଷ ହୋଇଲେ । ଯେଉଁମାଳା ଶକ୍ର ଦେଇ-ଥିଲେ । ହନୁକୁ ରାଇଣ ଦେବୀ ପାଶ । ଦେଲେ ସେ ମାଳା ତା ଗ୍ରୀବା ଦେଶ ॥ ଦେଖି ତା ରାଘବ ହେଲେ ତୋଷ । ଆଜ୍ଞା ଦେଲେ ହନୁ ଆସ ଆସ । ତୁମ୍ଭଙ୍କୁହିଁ ଆମ୍ଭେ ବର ଦେବା । ସବୁଦିନେ କରୁଥିବ ସେବା । ଯେତେ ଦିନ ରାମ ନାମ ଥିବ । ତେତେ ଦିନ ଅମର ହୋଇବ । ତୁମ୍ଭଙ୍କୁ ସେବିବ ଯେଉଁ ନର । କାର୍ଯ୍ୟ ସିଦ୍ଧି ହୋଇବ ତାହାର ॥ ଯେଉଁ ବନେ ତୁମ୍ଭେ କପି ଥିବ । ସେ ବନେ ସମସ୍ତ ଫଳ ହେବ । ବର ପାଇଣ ମାରୁତି ହୃଷ୍ଟ । ଶୁଣି ସର୍ବ କପି ହେଲେ ତୁଷ୍ଟ ॥ ଶୁଣି ବିଭୀଷଣ କପିବଳ । ମେଲାଣି ମାଗିଲେ ସେହିକାଳ । ତାର ରୋମା ସୁଗ୍ରୀବଙ୍କ ରାଣୀ । ବସ୍ତ୍ର-ଅଳଙ୍କାର ଦେଲେ ଆଣି ॥ ରାମ ତହୁଁ ପାଇ ପଞ୍ଚରତ୍ନ । ବସାକୁ ଗଲେ ହୋଇ ହରଷ । ରାମ ସୁମନ୍ତକୁ ରାଇ ଲକ୍ଷ୍ମଣ । ବୋଲନ୍ତି ହେବର ମନ୍ତ୍ରୀପଣ ॥ ଲକ୍ଷ୍ମଣ ସୀକାର ନ କଲେ । ମନରେ ଏମନ୍ତ ବିଚାରିଲେ । ଯମତ୍ତେ ବୋଲିବେ ମନ୍ତ୍ରୀ ହେଲେ । ଏଥକୁଟି ସଙ୍ଗେ ଯାଇଥିଲେ ॥ ଲକ୍ଷ୍ମଣର ନାସ୍ତିକଲ ଜାଣି । ଭରତକୁ ରାଇଣ ରଘୁମଣି । ଦେଲେ ତାଙ୍କୁ ମନ୍ତ୍ରୀ-ପଣେ ଶାଢ଼ୀ । ଭରତ ଜଣାଇଲେ କରଯୋଡ଼ି ॥ ଅଷ୍ଟମନ୍ତ୍ରୀ ସୁମନ୍ତ ପ୍ରଭୃତିଙ୍କର । ଏମାନଙ୍କୁ ଶାଢ଼ୀ ଆଜ୍ଞା କର । ଶୁଣି ରାମ ଦେଲେ ଶାଢୀମାନ । ଅଭିଷେକ ହୋଇଲା ସମ୍ପୂର୍ଣ୍ଣ ॥ ସୀତା ଘେନି ଦିବ୍ୟପୁରରେ ବିଜେ । ସମସ୍ତେ ରହିଲେ

ଯେଷ୍ଠା କାର୍ଯ୍ୟ । ଯୁଦ୍ଧକାଣ୍ଡ ହୋଇଲା ସମ୍ପୂର୍ଣ୍ଣ । ରାମ ପାଦେ ଦୀନ ବଶି ମନ ।

## ଲଙ୍କାକାଣ୍ଡ ସମାପ୍ତ

—×—

# ଉତ୍ତର କାଣ୍ଡ

## ୧ମ ଛାନ୍ଦ—ରାମଙ୍କ ନିକଟେ ଅଗସ୍ତିଙ୍କ ପ୍ରବେଶ

ରାଗ—ମଙ୍ଗଳ ଗୁର୍ଜ୍ଜରୀ

ଅଭିଷେକ ଆରମ୍ଭନ ଦେବ ରାବଣାରି । ସୁଗ୍ରୀ ବିଭୀଷଣ ଭ୍ରାତ ଯେନ ସଙ୍ଗ କରି ॥ ବଶିଷ୍ଠ ଜାବାଲି ପୁରୋହିତ ମନ୍ତ୍ରୀମାନେ । ମହା ରାଜାମାନେ ଛନ୍ତି ଶ୍ରୀରାମ ଆସ୍ଥାନେ । ଏମନ୍ତ ସମୟେ ଦ୍ୱାରୀ ଜଣାଇଲା ଯାଇଁ । ଅଗସ୍ତି ଅଛନ୍ତି ସିଂହଦ୍ୱାରେ ଉଭା ହୋଇ ॥ ସମସ୍ତ ଋଷିମାନଙ୍କୁ ସଙ୍ଗତେ ଘେନି । ଏମନ୍ତ ଜଣାଇ ଶିରେ ଦେଲା କର ବେନି ॥ ରାମ ଆଜ୍ଞା ପାଇ ଦ୍ୱାରପାଳ ବେଗେ ଚଳିଗଲା । ବହୁ ପୂଜା କରି ତାଙ୍କୁ ଗୃହମୁକୁ ଆଣିଲା । ଦେଖି ରାମ ସିଂହାସନୁ ବେଗେ ଉହ୍ଲାଇଲେ । ଚରଣ ଛୁଇଁଣ ତାଙ୍କୁ ନମସ୍କାର କଲେ ॥ ଜଣ ଜଣକରେ ତାଙ୍କୁ ପୂଜାମାନ୍ୟ କଲେ । ସୁବର୍ଣ୍ଣ ଆସନମାନ ସମସ୍ତଙ୍କୁ ଦେଲେ ॥ ଅଗସ୍ତି ବୋଲନ୍ତି ରାମ ଥିଲ ଘୋର ବନେ । ଅଭିଷେକ ଶୁଣି ଆସିଅଛୁ ହୃଷ୍ଟମନେ ॥ ଦେବତା ଋଷି ମାନଙ୍କୁ ଦେଲ ହେ ଅଭୟ । ରାବଣକୁ ମାରି ଯାହା ଲଙ୍କା କଲ ଜୟ ॥ ଭାଗ୍ୟବଳେ ନେତ୍ରେ ଆମ୍ଭେ ଦେଖିଲୁଁ ତୁମ୍ଭଙ୍କୁ । ମହାସୁଖୀ କରାଇଲୁଁ ନୟନ ମନକୁ ॥ ରାବଣ କୁମ୍ଭକର୍ଣ୍ଣଙ୍କୁ ଯାହା ନିବାରିଲ । ମହୀରେ ଅଶ୍ରୁତ ଅଲୌକିକ କର୍ମ କଲ ॥ ଏଥୁ ଅତ୍ୟନ୍ତ ନିଃସହ ରାବଣିର ବଧ । ଦେଖି ଚକିତ ହୋଇଲେ ସକଳ ବିବୁଧ ॥ ରାମ ସମ୍ଭାଷିଲେ ଯେ ରାବଣ ମହାବୀର । ତାଙ୍କୁ କିପାଁ ପ୍ରଶଂସା ନ କଲ ମୁନିବର । ଯେବେ ମୁହିଁ ଶୁଣିବାକୁ ହୋଇବି ଭାଜନ । ମୋତେ ସମସ୍ତ କହିବ ତପୋଧନ ॥ ମୁନି ବୋଲନ୍ତି ସମସ୍ତ କଥା ଜାଣୁ ଆମ୍ଭେ । ସାବଧାନ ହୋଇଣ ଶୁଣିବ ଏବେ ତୁମ୍ଭେ ॥ ବ୍ରହ୍ମାଙ୍କର ନନ୍ଦନ ପୁଲସ୍ତି ମୁନିବର । ସମସ୍ତେ ଯେ ବୋଲନ୍ତି ଦ୍ୱିତୀୟ କୁଶଧର ॥ ତପ କରିବାକୁ ମେରୁ ପାଶକୁ ଯେ ଗଲେ । ତୃଣବିନ୍ଦୁ ମଠ କଚ୍ଛ ଦୂରରେ ଦେଖିଲେ ॥ ମନୋରମ ସ୍ଥାନ ମେରୁପାଶେ ଦେଖି

ମୁନ । ବେଦାଧ୍ୟୟନ କରନ୍ତି ଦିବସ ରଜନୀ ॥ ଋଷିକନ୍ୟାମାନେ ସେଠାବରେ ଭ୍ରାନ୍ତ ହୋଇ । କ୍ରୀଡା କଲେ ସେ ଋଷିଙ୍କ ଖଣ୍ଡେଦୂରେ ଥାଇ ॥ କେ ବୀଣା ବାଦ୍ୟ ବଜାଇ କେ ଗାବନ୍ତି ଗୀତ । ଉନ୍ମତ୍ତେ ସକଳ କନ୍ୟା ହୋଇଥାନ୍ତି ମତ୍ତ ॥ ସେ କନ୍ୟାଙ୍କ ମୁଖରବ ଦେବଙ୍କ ନରୋଧ । ଏମନ୍ତ ଜାଣିଣ ମୁନ କଲେ ମହାକ୍ରୋଧ ॥ ସେ କନ୍ୟାମାନଙ୍କୁ ମୁନ ରାଇ ଆଜ୍ଞା ଦେଲେ । ଏଠାକୁ ଅଇଲେ ଗର୍ଭ ହୋଇବ ବୋଇଲେ ॥ ଆଜକ ମାନ୍ଧକ ଦୋଷ କଲୁ ଆମ୍ଭେ କ୍ଷମା । କାଲି ଅଇଲେ ଯେ ଗର୍ଭ ହେବ ସର୍ବବାମା ॥ କନ୍ୟା ମାନେ ନବର୍ତ୍ତିଲେ ଋଷିବାକ୍ୟ ଶୁଣି । ତୃଣବିନ୍ଦୁ ନନ୍ଦନୀ ନ ଥିଲେ ତାହା ଜାଣି ॥ ଆରଦିନ ଖେଳବାକୁ ଗଲେ ସେ ସୁମୁଖୀ । ସଖୀମାନଙ୍କୁ ନ ଦେଖି ହୋଇଲେ ସେ ଦୁଃଖୀ ॥ ଋଷିଙ୍କ ଆଜ୍ଞାରୁ ସେ ସୁନ୍ଦରୀ ଗର୍ଭ ହେଲେ । ତୃଣବିନ୍ଦୁ ଋଷି ଯୋଗବଳରେ ଜାଣିଲେ । କନ୍ୟାକୁ ଘେନିଣ ପୁଲସ୍ତିଙ୍କ ପାଶେ ଗଲେ । ଦୁହିତାର କର ଧରି ସମର୍ପିଣ ଦେଲେ ॥ ହେ ମୁନ ତୁମ୍ଭଙ୍କୁ ସେବା କରୁ ତପସ୍ଥାନେ । ତୁମ୍ଭଙ୍କୁ ଏ ଦୁହିତାକୁ ଦେଲି ତୋଷମନେ ॥ ଶୁଣିଣ ପୁଲସ୍ତି ତାଙ୍କୁ ଅଙ୍ଗୀକାର କଲେ । ଆପଣା ଶାପରୁ ଗର୍ଭ ହୋଇଛି ଜାଣିଲେ ॥ ବୋଲନ୍ତି ଦେବାଧ୍ୟୟନ ହେଲା ତୋର ଗର୍ଭ । ଏଥୁ ଯେଉଁ ପୁତ୍ର ହେବ ହୋଇବ ଦୁର୍ଲ୍ଲଭ ॥ ଏମନ୍ତେ କେତେ ଦିନାନ୍ତେ ହୋଇଲା ଜନମ । ବିଶ୍ରବା ଋଷି ବୋଲିଣ ଦେଲେ ତାର ନାମ ॥ ଦ୍ୱିତୀୟ ବ୍ରହ୍ମା ପ୍ରାୟ ବିଶ୍ରବା ମହାଋଷି । ବହୁ ତପ କଲେ ମେରୁ ଉତ୍ତରରେ ବସି ॥ ଭରଦ୍ୱାଜ ମୁନଙ୍କ ଜେମାକୁ ବିଭା ହେଲେ । ପୁତ୍ର କାମନା କରିଣ ପୁଣି ତପ କଲେ ॥ ବିଶ୍ରବାଋଷିରୁ ବୈଶ୍ରବଣ ହେଲେ ଜାତ । ସୁଲକ୍ଷଣ ବୋଲି କୋଳେ ଘେନି ଜଗନ୍ନାଥ ॥ ଦିଗପାଳ କରିବେ ବୋଲିଣ ବିଚାରିଲେ । ସେ ବଇଶ୍ରବଣ ବହୁ ତପ ଆଚରିଲେ । ସହସ୍ର ବରଷଯାଏ କଲେ ଅମ୍ବୁ ପାନ । ସହସ୍ର ବରଷ କଲେ ପବନ ଅଶନ । ପୁଣି ସହସ୍ରେ ବରଷ କିଛି ନ ଖାଇଲେ । ଏଣୁକରି ଧାତାତାଙ୍କୁ ପ୍ରସନ୍ନ ହୋଇଲେ ॥ ସେ ବଇଶ୍ରବଣକୁ ଦେଲେ କୁବେର ପଣ । ଦିଗପାଳ ହୋଇଲେ ଖଟିଲେ ଯକ୍ଷଗଣ ॥ ଧାତା ନିର୍ମାଣ କରି ଦେଲେ ପୁଷ୍ପକଯାନ । ମନୋରଥ କଲେ ବୁଲେ ଚଉଦ ଭୁବନ ॥ ତାଙ୍କ ବରକୁ ପାଇଣ ପିତାଙ୍କୁ କହିଲେ । କୁବେର କରିଣ ମୋତେ ସ୍ଥାନ ତ ନ ଦେଲେ ॥ ପିତା ଆଜ୍ଞା ଦେଲେ ଲଙ୍କାପୁର ଭୋଗ କର । ଶୂନ୍ୟ ହୋଇଅଛି ପୂର୍ବେ ଥିଲେକ ଅସୁର ॥ ପିତା ଆଜ୍ଞା ପାଇ ଲଙ୍କାପୁରୀ କଲେ ସ୍ଥାନ । ପ୍ରତ୍ୟକ୍ଷ ଯାଇଁ ତାଙ୍କୁ କରନ୍ତି ଦର୍ଶନ ॥ ରାମ ପଚାରନ୍ତି ପୂର୍ବେ ଲଙ୍କେ ଦୈତ୍ୟ ଥିଲେ । କେତାହାଙ୍କୁ ମାଇଲେ ସେମାନେ

କେଣେ ଗଲେ ॥ ଏ କଥା ବିସ୍ତାରି ମୋତେ କହ ମୁନିବର । ଭଣେ ବିଶି ଅଧିନ ଶ୍ରୀରାମ ପୟର । ୪୫ ।

—x—

## ୨ୟ ଛାନ୍ଦ—ଯକ୍ଷରାକ୍ଷସଙ୍କ ଜନ୍ମ

ରାଗ—ମୁନିବର ବାଣୀ

କହନ୍ତି କୁମ୍ଭକୁମର । ଶୁଣି ଆହେ ରଘୁବୀର । ପଚାରିଲ ତୁମ୍ଭେ ଯାହା । କହିବା ତାହା ଯେ ॥ ପଦ୍ମଯୋନି ଜନ୍ମ ହେଲେ । ଆଗେ ଜଳ ଜାତ କଲେ । ପଛେ ସ୍ରୁଷ୍ଟେକ ଜାତ । କଲେକ ତାତ ଯେ ॥ ଆଜ୍ଞା ଦେଲେ ତାଙ୍କୁ ଚାହିଁ । ଏ ଜଳ ରଖିବ ଯାଇଁ । ଆଜ୍ଞା ପାଇଣ ସେ ଗଲେ । ଜଳ ରଖିଲେ ଯେ ॥ କେତେହେକ କାଳ ଅନ୍ତେ ॥ ଜଳ ସେହି ରଖିଯାନ୍ତେ । କ୍ଷୁଧା ତୃଷାରେ ଆକୁଳ । ହେଲେ ସକଳ ଯେ ॥ ଥୋକେ ଲୋକେ ମନ କଲେ । ଜଳ ପିଇବା ବୋଇଲେ । ଥୋକେ କଲେ ତାହା ନାହିଁ ; ସଭୟ ହୋଇ ଯେ ॥ ତାହିଁ ଯେଉଁ ମାନେ କଲେ । ସେମାନେ ରାକ୍ଷସ ହେଲେ । ପିଇବ ଯେତେ ବୋଇଲେ । ଯକ୍ଷ ହୋଇଲେ ଯେ ॥ ରାକ୍ଷସ କୁଳରେ ଜାତ । ହେତି ପ୍ରହେତି ବିଖ୍ୟାତ । ପ୍ରହେତି ବିଭା ନୋହିଲା । ହେତି ହୋଇଲା ଯେ ॥ କାଳଭଗ୍ନୀ ସର୍ବନାଶୀ । ହେଲା ତାରି ମନୋହାରୀ । ରସିଣ ସର୍ବାର ସଙ୍ଗେ । ବିବିଧ ରଙ୍ଗେ ଯେ ॥ ସେ ଜନ୍ମ କଲା କୁମର । ମହାକନ୍ଦର ଉପର । ପକାଇ ତାହାକୁ ଗଲା । ସେହି ରୋଧିଲା ଯେ ॥ ଭ୍ରମନ୍ତେ ଶିବଗଉରୀ । ରୋଦନ ଶୁଣି ତାହାରି । ପୁତ୍ର ପ୍ରାୟ ତାଙ୍କୁ କଲେ । ସୁବର ଦେଲେ ଯେ । ନାମ ଦେଲେ ବିଦ୍ୟୁତକେଶ । ବର ପାଇ ସେ ହରଷ । ପିତାଙ୍କ ସନ୍ନିଧେ ଗଲା । ସବୁ କହିଲା ସେ ॥ ଶାଳକଣ୍ଟାକଣ୍ଟୀ ନାରୀ । ତାଙ୍କୁ ପିତା ବିଭା କରି । ତହିଁରୁ ଜାତ ସୁକେଶ । ମହା ରାକ୍ଷସ ଯେ ॥ ଏକ ଯକ୍ଷରୁ କୁମାରୀ । ସୁକେଶକୁ ବିଭା କରି । ତହୁଁ ଜାତ ତିନି ପୁତ୍ର । ସେ ବଳବନ୍ତ ଯେ ॥ ମାଲ୍ୟବନ୍ତ ତାଙ୍କ ଜ୍ୟେଷ୍ଠ । ମାଳୀ ସୁମାଳୀ କନିଷ୍ଠ । ବହୁକାଳ ତପ କଲେ । ବର ପାଇଲେ ଯେ ॥ ସେ ମାଳୀ ସୁମାଳୀ ଦୁଷ୍ଟ । ମାଲ୍ୟବନ୍ତ ଧର୍ମନିଷ୍ଠ । ଯାଗ ମାନ କଲେ ନଷ୍ଟ । ବେନି ପାପିଷ୍ଠ ଯେ ॥ କନକ ଲଙ୍କାଭୁବନ । ପୂର୍ବେ ଯେ ଶକ୍ରଙ୍କ ସ୍ଥାନ । ଦେବତା ତହିଁରେ ଥିଲେ । ପଳାଇ ଗଲେ ଯେ ॥ ହେ ମାଳୀ ସୁମାଳୀ ବେନି । ମାଲ୍ୟବନ୍ତ ସଙ୍ଗେ ଘେନି । ସେ ଲଙ୍କେ କଲେ ନିବାସ । ଭୁମେ ତ୍ରିଦଶ ଯେ ॥ ରାକ୍ଷସେ ରୁଣ୍ଡ ହୋଇଲେ । ସ୍ୱର୍ଗପୁର ଜୁରି କଲେ ।

ଶକ୍ର ସଂଗ୍ରାମେ ସାରିଲେ । ପଳାଇ ଗଲେ ସେ ॥ ଧାତାଙ୍କୁ କଲେ ଗୁହାରି ।
ଶୁଣି ବୋଲେ କୁଶଧାରୀ । ଶିବଙ୍କୁ କହ ହେ ଯାଇଁ । ନିର୍ଭୟ ହୋଇ ସେ ॥
ଶୁଣି କୈଳାସ ଗଲେ । ଶିବଙ୍କୁ ଗୁହାରି କଲେ । ଶିବ ସେମାନଙ୍କ ବାଣୀ ।
ବୋଲନ୍ତି ଶୁଣି ସେ ॥ ଆମ୍ଭେ ବିଦ୍ୟୁତ୍କେଶ ବଂଶ । କେମନ୍ତେ କରିବୁ ନାଶ ॥
ଯାଅ ତୁମ୍ଭେ ବିଷ୍ଣୁପାଶ । କରନ୍ତୁ ନାଶି ସେ ॥ ଶିବମୁଖୁଁ ଏହା ଶୁଣି । ବାହୁଡ଼େ
କୁଳିଶପାଣି । ବିଷ୍ଣୁ ସନ୍ନିଧିକୁ ଗଲେ । ଗୁହାରି କଲେ ସେ ॥ ଅନାଦି ଦେବ ।
ଅଚ୍ୟୁତ । ସର୍ବପ୍ରାଣୀ ପଞ୍ଚଭୂତ । ରାମ ସଦ୍‌ଗୁ ପାଦେ ଚିତ୍ତ । ବଶୀ ରଚିତ
ସେ । ୨୩ ।

---

## ଷଷ୍ଠ—ଛାନ୍ଦ ମାଲୀବଧ ବର୍ଣ୍ଣନା

ରାଗ—ବଙ୍ଗଳାଶ୍ରୀ

ଶୁଣ ହେ ରାଘବ ଘେନି ସର୍ବଦେବ ବିଷ୍ଣୁ ଛାମୁରେ ବାସବ । ବେନି କରଯୋଡ଼ି ବହୁ ସ୍ତୁତି କଲେ ହୋଇଣ ଭକତି ଭାବ ॥ ମାଳୀ ସୁମାଳୀ ମାଲ୍ୟବନ୍ତ ଭୟରେ ସ୍ୱର୍ଗେ ନ ପାରିଲୁଁ ରହି । ସବୁଦିନେ ବିଷ୍ଣୁ ଦେବ ଦୟା କର ଛାମୁକୁ ଅଇଲୁଁ କହି ॥ ଶୁଣି ବିଶ୍ୱନାଥ ଆଜ୍ଞା ଦେଲେ ତୁମ୍ଭ ସ୍ୱର୍ଗକୁ ଯେବେ ଆସିବେ । ସେକାଳେ ତୁମ୍ଭ ଦୂତ ଆସି କହିଲେ ତହିଁର ଦଣ୍ଡ ପାଇବେ ॥ ଏହା ଶୁଣି ବହୁ ଆନନ୍ଦ ହୋଇଣ ଦେବତା ସ୍ୱର୍ଗକୁ ଗଲେ । ଏ ବାରତା ପାଇ ମାଲ୍ୟବନ୍ତ ବେନି ଭାଇଙ୍କି ରାଇ କହିଲେ । ଶୁଣ ହେ ବାପୁ ଦେବତାଙ୍କ ଚରିତ ଆମ୍ଭଙ୍କୁ ମାରିବା ପାଇଁ । ଶକ୍ର ସହିତ ସକଳ ଦିଗପାଳେ ଧାତାଙ୍କୁ କହିଲେ ଯାଇଁ ॥ ଧାତା ବୋଇଲେ ଶିବଙ୍କ ପାଶେ ଯାଅ ଶୁଣି ଶିବପାଶେ ଗଲେ । ସଦାଶିବ ଆମ୍ଭଙ୍କୁ ଦୟା ବହିଣ ସ୍ୱୀକାର ସେ ନ କଲେ ॥ ବିଷ୍ଣୁଙ୍କୁ କହିଲେ ବିଷ୍ଣୁ ଏବେ ତାଙ୍କ ହୋଇ ଅଛନ୍ତି ସପକ୍ଷ । ତୁମ୍ଭେମାନେ ଏବେ ଦୁଷ୍ଟପଣ ଛାଡ଼ି ନୋହିଲେ ପ୍ରାଣ ମୁରୁଛ ॥ ସେ ବିଷ୍ଣୁ ଟି ଆମ୍ଭ ଅସୁରମାନଙ୍କ ପୂର୍ବେ କରିଅଛି ନାଶ । ତାହାଙ୍କ ସଙ୍ଗେ ସମର କଲେ ଆମ୍ଭେ ନ ପାଇବା କିଛି ଯଶ ॥ ମାଳୀ ସୁମାଳୀ ମାଲ୍ୟବନ୍ତ ମୁଖରୁ ଏମନ୍ତ ଶୁଣିଣ କହେ । ମର୍ତ୍ତ୍ୟମଣ୍ଡଳରେ ଜାତ ହୋଇ କେକ ମରିବାକୁ ଭୟ ହୋଏ । ସଂଗ୍ରାମ କରି ମରିବା ଖାଇବାକୁ ହୋଇବା ଯେବେ ନସତ । ଆଉ ବେଳେ ଆମ୍ଭେ ସ୍ୱର୍ଗ ଜୟ କରି ମାରିବା କି ପୁରୁହୂତ । ଏତେ ବିଚାରି ରାକ୍ଷସମାନେ ଘେନି ଲଙ୍କାରୁ ହେଲେ ବାହାର । ବିବିଧ ପରି ଯାନମାନ ଚଢ଼ିଣ ପ୍ରବେଶ ଅମରପୁର ॥ ଶକ୍ର ଦେଖିଲେ ସ୍ୱର୍ଗପୁରେ ପ୍ରବେଶ ହୋଇଲେ ସର୍ବ ରାକ୍ଷସ । ସତ୍ୟରେ ସଂଗ୍ରାମକୁ ହେଲେ ବାହାର ଦୂତ ପେଷି ବିଷ୍ଣୁ ପାଶ ? ଅଇରାବତ ଚଢ଼ିଣ ବଜ୍ର ଘେନି ଅଇଲେ ଅମରପତି । ସମସ୍ତ ଦେବତାମାନେ ଯୁଦ୍ଧ

କଲେ ବେଢ଼ି ତାଙ୍କ ଚଉକଡ ॥ ଯୁଦ୍ଧବୃତ୍ତାନ୍ତ କହିଲେ ଦୂତମାନେ ବିଷ୍ଣୁ ଦେବଙ୍କ ସମ୍ମୁଖରେ । ଶୁଣି ଗରୁଡ଼ ଆରୋହି ନାରାୟଣ ମିଳିଲେ ଆସି ସତ୍ୱରେ ॥ ଶଙ୍ଖ ଚକ୍ର ଗଦା ଶାରଙ୍ଗ ଘେନିଣ ବିଜୟ୍ ଦେବାଧିଦେବ । ଦେଖିଣ ରାକ୍ଷସ ବେଢ଼ିଣ ତାହାଙ୍କୁ ଯୁଦ୍ଧ କଲେ ଅସମ୍ଭବ ॥ ସମସ୍ତ ରାକ୍ଷସ ସମସ୍ତ ଆୟୁଧ ଧରି ପରେ ବୃଷ୍ଟି କଲେ । ସେ ଆୟୁଧମାନ ଶ୍ରୀଅଙ୍ଗେ ପଡ଼ିନ୍ତେ ଚକ୍ରେ ତାହା ନିବାରିଲେ ॥ ବଜ୍ରସମ ଗଦା କରେ ଧରି ମାଳୀ ହରି ସମ୍ମୁଖେ ରହିଲା । ଗରୁଡ଼ ମୁଖରେ ପ୍ରହାର କରନ୍ତେ ବୈନତେୟ ଘୁଞ୍ଚିଗଲା ॥ ମହା ପୀଡ଼ା ପାଇ କଶ୍ୟପନନ୍ଦନ ଆରକୁ ନ କଲା ମୁଖ । ତାହା ଦେଖିଣ ଦଇତ୍ୟାରି ମନରେ ହୋଇଲେ ବହୁତ ଦୁଃଖ ॥ ବକ୍ର ମୁଖ ହୋଇ ଚକ୍ର ଘେନି ହରି କାଟିଲେ ମାଳୀ ମସ୍ତକ । ପୁଣି ହିଁ ଶାରଙ୍ଗ କରେ ଧରି ପ୍ରଭୁ ମାଇଲେ ସୈନ୍ୟ ଅନେକ ॥ ସୁମାଳୀ ମାଲ୍ୟବନ୍ତ ବେନି ପଳାଇ ରସାତଳରେ ପଶିଲେ । ଏକା ହୋଇ ହରି ଗୋଡ଼ାଇ ଲଙ୍କାରେ ସର୍ବରାକ୍ଷସ ନାଶିଲେ ॥ ସେ ଲଙ୍କାଗଡ଼ ଶୂନ୍ୟ ଦେଖି ବିଶ୍ରବାନନ୍ଦନକୁ ତାହା ଦେଲେ । ବୋଲେ ଋଷି ବଇଶ୍ରବଣ ଯେ ସେହିକାଳରୁ ତହିଁ ରହିଲେ । ୨୦ ।

-*-

## ୪ର୍ଥ ଛାନ୍ଦ—ରାବଣେଶ୍ୱର କୁମ୍ଭକର୍ଣ୍ଣାଦିଙ୍କ ଜନ୍ମ

### ରାଗ—ତୋଡ଼ି

ଶୁଣସି ରଘୁନନ୍ଦନ ହେ । ଗଲା କେତେହେଁକ ଦିନ । ସୁମାଳୀ ସୁନ୍ଦରି ଦୁହିତାକୁ ଦେଖି ମନେ ବିଚାରି ଏସନ ଯେ ॥ କେତେ କାଳ ଲୁଚିଥିବ ଯେ । ପୃଥିବୀକି ଏବେ ଯିବ । ବଳବନ୍ତ ଦେଖି ଦୁହିତା ଗୋଟିକି ନେଇ ପ୍ରଦାନ କରିବ ଯେ ॥ ଏମନ୍ତ ଭାଳି ଅସୁର ଯେ । ଧରି କୁମାରୀର କର । ରସ ତଳୁଁ ବେଗେ ବାହାର ହୋଇଲା କେବଳ ବିଷ୍ଣୁର ଡର ଯେ ॥ ଦେଖିଲା ତା ଲଙ୍କାପୁର ଯେ । ରହିଅଛନ୍ତି କୁବେର । କୁମାରୀକି ଦେଖାଇଣ ସେ ବୋଇଲା ଏ ପୁର ଥିଲା ଆମ୍ଭର ଯେ ॥ ଏହି ସମୟେ କୁବେର ଯେ । ଚଢ଼ି ପୁଷ୍ପ ରଥବର । ପିତାଙ୍କୁ ଦର୍ଶନ କରିବା ନିମନ୍ତେ ଲଙ୍କାରୁ ହେଲେ ବାହାର ଯେ ॥ ଗନ୍ଧର୍ବ ଗାବନ୍ତି ଗୀତ ଯେ । ଅପସରୀ କରେ ନୃତ୍ୟ । ଛତ୍ର ଚାମର ଆଲଟ ଆଦି ଘେନି ଖଟିଛନ୍ତି ଯକ୍ଷଭୃତ୍ୟ ଯେ ॥ ଗଗନେ ପୁଷ୍ପବିମାନ ଯେ । ସୁମାଳୀ କହେ ବଚନ । ଦେଖ ଗୋ ଦୁହିତା ଏହି ଧନପତି ବିଶ୍ରବାଋଷିନନ୍ଦନ ଯେ ॥ ପୁତ୍ର ତାର କୋଳେ ବେନି ଯେ । ପୁନି ତାର କୋଳେ ତିନି । ତୁ ଏବେ ଏ ପତି ବରି ମୋର କୁଳ

ଉଦ୍ଧର ଜଗନ୍ମୋହନ ଗୋ ॥ ଯାହାର ଥାଇ ଦୁହିତା ଯେ । ସେ ହୁଏ ଅତି ସୁମାତା । ସେହି କନ୍ୟାମାନେ ପିତୃକୁଳ ସହିତେ ଭୂଷଣ କରନ୍ତି ପିତା ଗୋ ॥ ତୁ ଏବେ ମୋ ବୋଲ କର ଯେ । ବିଶ୍ରବାଋଷିଙ୍କ ବର । ଦେଖିଲୁଟି କି ବାମାନେ ଯାଉଥିଲ ଯାହା ପୁତ୍ର ଧନେଶ୍ୱର ଗୋ ॥ ଏମନ୍ତ କହନ୍ତେ ତାତ ଯେ । କନ୍ୟା କଲେକ ସମ୍ମତ । କୁବେର ବାହୁଡ଼ି ଦେଖି ଋଷି କୁଟୀପାଶେ ମିଳିଲେ ଉଚିତ ଯେ ॥ ଅସ୍ତ ହୁଏ ଅଂଶୁମାଳୀ ଯେ । ମଠ ସନ୍ନିଧିରେ ମିଳି । ଋଷି ମଠ ଏହି ଯାଅ ବୋଲି ତାକୁ ଦେଖାଇ ଦେଲା ସୁମାଳୀ ଯେ ॥ ପିତାର ବଚନ କରି ଯେ । ମଠେ ପ୍ରବେଶ ସୁନ୍ଦରୀ । ଉମା ଉଷା ରତି ପ୍ରାୟେକ ବିଶଇ ମୋହୁଅଛି ନରପୁରୀ ଯେ ॥ ସାୟଂକାଳର ଆହୁତି ଯେ । ଦେଇଣ ବିଶ୍ରବା ଯତି । ଯାଗଶାଳ୍କୁଁ ହୋମୁଁ ବାହାରି ଦେଖିଲେ ଉଭା ହୋଇଛି ଯୁବତୀ ଯେ ॥ ହୋଇଅଛି ହେଠମୁଖ ଯେ । ଭୂମି ତରେ ପଦ ନଖ । ମୁନି ଗୃହୁଁ ବୋଲେ କାହୁଁ ଏ ଅଇଲା କାମମୋହିନୀ ବିଶିଖ ଯେ ॥ ବୋଲନ୍ତି କାହାର ନାରୀ ଗୋ । କାହାର ଅଟୁ କୁମାରୀ । କି କାର୍ଯ୍ୟେ ଆମ୍ଭର ମଠକୁ ଆସିଛ କହ ଆମ୍ଭଙ୍କୁ ସୁନ୍ଦରୀ ଗୋ । ଶୁଣି ବୋଲେ ବାରନାରୀ ଯେ । ପିତାଙ୍କ ଆଜ୍ଞାକୁ କରି । ତୁମ୍ଭର ଗୃହକୁ ଅଇଲି ମୁଁ ମୁନି ମୁହିଁ ଅବିବାହିତା ନାରୀ ହେ ॥ ତୁମ୍ଭେ ମନକଥା ଜାଣ ହେ । କହିବାର କି କାରଣ । ତୁମ୍ଭର ଦର୍ଶନ ପ୍ରସନ୍ନେ ଯୁବତୀମାନେ ହୁଅନ୍ତି କାରଣ ଯେ ॥ ଏତେ ବୋଲି ହେଲା ତୁନି ଯେ । ଧ୍ୟାନରେ ଜାଣିଲେ ମୁନି । ସୁମାଳୀ ଆମ୍ଭର ଗୃହକୁ ପେଷିଣ ଦେଇ ଅଛଇ ନନ୍ଦନୀ ଯେ ॥ କରିଣ ପୁତ୍ର କାମନା ଯେ । ଆସି ଅଛଇ ଅଙ୍ଗନା । ଏମନ୍ତ ବିଚାରି ପୁଲସ୍ତିଙ୍କ ସୁତ ହୋଇଲେ ସଦୟମନା ଯେ ॥ ତା କର କରେ ଧଇଲେ ଯେ । ମାନସିକେ ବିଭା ହେଲେ । ମଠ ଭିତରକୁ ନେଇଣ ତାହାକୁ ବିବିଧ ସୁରତି କଲେ ଯେ ॥ ଉପଗତ ସନ୍ଧ୍ୟାକାଳେ ଯେ । ହୋଇଣ ହରଣ ଡ଼ୋଳେ । ମହାଭୟଙ୍କର ପୁତ୍ର ଉପୁଜିବ ଜଣିବ ସେ ଆଖଣ୍ଡଳେ ଗୋ ॥ ପ୍ରଥମ ଜାତ କୁମର ଯେ । ଦଶମୁଖ ବିଂଶକର । ଦ୍ୱିତୀୟ ପୁତ୍ର ଜାତ ପୁଣ ହୋଇଲା ଶ୍ରବଣ କୁମ୍ଭ ଆକାର ହେ ॥ ତୃତୀୟ ପୁତ୍ର ହୋଇଲା ଯେ । ଶାନ୍ତ ଗୁଣକୁ ବହିଲା । ଚତୁର୍ଥେ ଦୁହିତା ଗୋଟିଏ ହୋଇଲା ସୂର୍ପ କାର ନଖ ହେଲା ଯେ ॥ ଲୋକେ କେଶ ସମାନ ହେଲେ ଯେ । ରୂକ୍ଷ ପୁତ୍ର ପୁତ୍ରୀ ହେଲେ । ବୋଲେ ବଶୀ ଏହା ଦେଖିଣ ସକଳ ଦେବତା ଭୟ ପାଇଲେ ଯେ । ୨୨ ।

—x—

## ୫ମ ଛାନ୍ଦ—ରାବଣାଦିଙ୍କର ତପସ୍ୟା

ରାଗ—କଳଶା

ଶୁଣ ରାଘବ ରାବଣର ଜନ୍ମ ଚରିତ । ପୃଥିବୀରେ ହେଲା ବହୁ ଉତପାତ ଜାତ ଯେ । ଦଶଶିର ବଂଶକର ପିଙ୍ଗଳ ତା କେଶ । କଜ୍ଜଳ ବରନ ତନୁ ଦର୍ଶନ ଭବଧ୍ୟ ଯେ ॥ ତା ସାନୁଜ ପିଙ୍ଗଳ ମୂରତି ଯେ ପ୍ରଚଣ୍ଡ । ମହା ଉଚ ଚଡ଼ିତ ତା କେଶ ବାହୁଦଣ୍ଡ ଯେ । ତା ସାନୁଜ ମେଘାକାର କରାଳ ତା ମୁଖ । ଭଗ୍ନି ହୋଟାକ୍ଷୀରଂ ସୂର୍ପ ପ୍ରାୟ ସବ ନଖ ହେ ॥ କୁମ୍ଭ ପ୍ରାୟ କର୍ଣ୍ଣ ଦେଖି କୁମ୍ଭକର୍ଣ୍ଣ ଦେଲେ । ତୃତୀୟ ପୁତ୍ରକୁ ବିଭୀଷଣ ନାମ କଲେ ଯେ । ସୂର୍ପନଖ ଦେଖି ସୂର୍ପଣଖା ନାମ ଦେଲେ । ବନେ ବନେ ଖୋଜି ମୃଗ ଜୀବକୁ ଖାଇଲେ ଯେ । ଦଶଗ୍ରୀବ ଦେଖି ଦଶଗ୍ରୀବା ଯେ ବୋଇଲେ ॥ ସିଂହ ଶାର୍ଦ୍ଦୂଳ ଭୟରେ ପଳାଇଣ ଗଲେ ହେ । କୁମ୍ଭକର୍ଣ୍ଣ ସ୍ୱର୍ଗେ ଅପସରାଙ୍କୁ ଖାଇଲେ । ନନ୍ଦନବନ ଭାଙ୍ଗନ୍ତେ ଶକ୍ର କୋପ କଲେ ଯେ ॥ ଦୈତ୍ୟ ହୃଦେ ବଜ୍ର ଶକ୍ର ବୁଲାଇ ମାଇଲା । ହସି କରି ଦୈତ୍ୟ ଗଜଦନ୍ତକୁ ଧଇଲା ଯେ ॥ ଉପାଡ଼ିଣ ଦନ୍ତ ଶକ୍ର ହୃଦରେ ତାଡ଼ିଲେ । ମୋହେ ଶଚୀପତି ଗଜ ଉପରେ ପଡ଼ିଲେ ଯେ ॥ ଶକ୍ର ଜିଣି କୁମ୍ଭକର୍ଣ୍ଣ ଯେ ଘେନ ଅଇଲେ । ସେହିଦିନୁ ମହାଭୟ ସୁରେ ତ ପାଇଲେ ହେ । ଦର୍ଶନେ କୁବେର ପିତା ପାଶକୁ ଅଇଲେ । ଭାଇ ଭଗ୍ନୀ ମାତା ତାକୁ ସହିତେ ଦେଖିଲେ ଯେ ॥ ବହୁ ସଂକୋଚରେ ତାତ କିଛି ନ କହିଲେ । ନନାଙ୍କୁ ଓଳଗି ହେ ରାବଣି ମାତା ବୋଲେ ଯେ । ତିନି ସହସ୍ର ବରଷ ଏହି ତପ କଲେ । କୋଳେ ଧରି ଧାତା ଧନପତି ପଦ ଦେଲେ ସେ ॥ ପାରିଲେ ତପସ୍ୟା କର ତପୁଁ ବଡ଼କାହିଁ । ତପବଳେ ଅବଳା ବିଭୂତି ଭୋଗ ହୋଇ ଯେ । ମାତାଙ୍କ ବଚନେ ଅସୁରଙ୍କ ଛଳ ହେଲା । ମେଲାଣି ମାଗି କୁବେର ନିଜପୁର ଗଲା ହେ ॥ ଦଶଗ୍ରୀବ ବୋଲେ ଭାଇ ତପ ଯେ କରିବା । ଧାତାଙ୍କୁ ଦେଖିଲେ କାହ କୁହିଁ ନ ଡରିବା ହେ । ତିନିଭ୍ରାତ ବଗୃହରଣ ବାହାର ହୋଇଲେ । ତପ କରିବାକୁ ବନେ ପ୍ରବେଶ ହୋଇଲେ ହେ ॥ ପାଦ ଛନ୍ଦି ପାଦକେ ସେ ଅଧୋମୁଖ ହେଲା । ଦଶମୁଣ୍ଡ ମୋଡ଼ି ଅଗ୍ନି କୁଣ୍ଡେ ପକାଇଲା ସେ । ସହସ୍ର ବରଷେ ମୁଣ୍ଡ ମୋଡ଼ଇ ଅବଶ୍ୟ । ଏହିରୂପେ ଗଲା ଦଶସହସ୍ର ବରଷ ଯେ ॥ କୁମ୍ଭକର୍ଣ୍ଣ ପଞ୍ଚାଗ୍ନି କରି ନିଦାଘ ନାଳେ । ଶୀତରେ ଶିଶିରେ ରହେ ଘନକାଳେ ଜଳେ ଯେ । ବିଭୀଷଣ ଊର୍ଦ୍ଧ୍ୱ ମୁଖେ ପାଦକେ ରହିଲେ । ତିନିସହସ୍ର ବର୍ଷ ସେ ଯେ ଅନ୍ନ ନ ଖାଇଲେ ହେ ॥ ମହାଘୋର ତପେ ବେଦପତି ହୋଇ ତୋଷ । ସକଳ ଅମର ଘେନି ପାଶରେ ପ୍ରବେଶ ସେ । ଦେବତାଙ୍କୁ ବୋଲନ୍ତି ଏହାଙ୍କୁ ବରଦେବା । ଅହନିଶି ବସି ରାମ ପାଦେ କରେ ସେବା ହେ । ୧୨ ।

---

# ଷଷ୍ଠ ଛାନ୍ଦ—ରାବଣର ଲଙ୍କା ଅଧିକାର

ରାଗ—ସିନ୍ଧୁଡ଼ା

ମଙ୍ଗଳ ଆରୋହି ସକଳ ଦେବତାମାନଙ୍କୁ ବିରଞ୍ଚି ଘେନି । ରାବଣ ସନ୍ମୁଖେ ଉଭାହୋଇ ବୋଲେ କପଟୀ ମୋଡ଼ଲ ମୁର୍ଦ୍ଧନ୍ୟ ହେ । ଆସିଣ ମାଗ ବର । ମନବାଞ୍ଛା ଏବେ ପୂର୍ଣ୍ଣକରିବି ହେ । ଶିରମାନ ଲଗନ୍ତୁ ତୋହର ହେ ॥ କର ଯୋଡ଼ିଣ ଦଶଗ୍ରୀବ ବୋଲଇ ଦିଅ ମୋତେ ଦେବ ବର । ଦେବ ଦାନବ ଗନ୍ଧର୍ବ ବିଦ୍ୟାଧର ଯକ୍ଷ ନାଗାଦି କିନ୍ନର ହେ । ଏହାଙ୍କ କରେ ମୃତ୍ୟୁ ନ । ନୋହିବଟି ଦେବ କୁଶକେତୁ ହେ । ପିତାମହ ଆଜ୍ଞାଦେଲେ ଅସ୍ତୁ ହେ ॥ ଦେବେ କହିଲେ ପିତାମହ ଦେବେ ସେ କୁମ୍ଭକର୍ଣ୍ଣକୁ କି ବର । ବର ନ ପାଉ ଅପସରି ଖାଇଣ ଶକ୍ରେ ସେ କଲା ସମର ହେ । ତାକୁ କପଟ କର । ବର ଶାପ ପ୍ରାପ୍ତ ହେବ ତାର ହେ । ସରସ୍ୱତୀ ବସୁ କଣ୍ଠେ ତାର ହେ ॥ କୁମ୍ଭକର୍ଣ୍ଣକୁ ବର ଦେଲେ ବିଧାତା ମାଗ ପୁତ୍ର ମୋତେ ବର । ନିଶ୍ଚିନ୍ତ ହୋଇ ସୁଖେ ନିଦ୍ରା ଯିବି ମୁଁ ଆଜ୍ଞା ହେଉ କୁଶଧର ହେ । ଧାତା କଲେ ସ୍ୱୀକାର । ବିଭୀଷଣେ ବୋଲେ ମାଗ ବର ହେ । ଜାଣି ମାଗେ ବିଷ୍ଣୁ ଭକ୍ତି ମୋର ହେ ॥ ଅସ୍ତୁ ଅସ୍ତୁ ହୋଇ ଚିରଜୀବ ହୋଇଣ ବିଷ୍ଣୁଙ୍କୁ କରିବ ସେବା । ଏ ବର ଦେଇ ବାହୁଡ଼ିଲେ ବିରଞ୍ଚି ଘେନିଣ ସକଳ ଦେବା ସେ । ବର ପାଇ ରାବଣ । ନିଦ୍ରା ଘେନି ମଧ୍ୟାହ୍ନ ଅରୁଣ ସେ । ଭେଟିଲେ ଅଜା ଯାଇକଗଣ ସେ । ଅସୁରଗଣ ଭେଟିଣ ରାବଣକୁ ବୁଦ୍ଧିପଣ ଶିଖାଇଲେ । ଆମ୍ଭର ଲଙ୍କା କୁବେର ନେଇଅଛି ତାହାକୁ ମାଗ ବୋଇଲେ ସେ । ତାହା ଶୁଣି ରାବଣ । ନାସ୍ତି କଲା ଛୁଇଁଣ ଶ୍ରବଣ ସେ । ଆମ୍ଭ ନନା ବୋଲି କି ନ ଜାଣ ହେ ॥ ମାତୁଳ ବୋଇଲେ ଦେବତା ଦାନବେ ଅଟନ୍ତି ବେନି ଭାଇ । ଦେବତାମାନେ ଅମୃତ ଭୋଗ କଲେ କପଟ କରିଣ ଯାଇ ସେ । ଭାଇ ସିନା ଭଗାର । କୁବେରଟି ତୁମ୍ଭର ଦାଇଦ ହେ । ତୁମ୍ଭେ ନ ଦେଖିବ ତାଙ୍କ ଶିରୀ ହେ ॥ ମାତୁଳ ମୁଖୁଁ ଏସନ ବାଣୀ ଶୁଣି ଦୂତେ କହେ ଦଶାନନ । ନନାଙ୍କୁ କହିବ ଆଜହୁଁ ଆମ୍ଭଙ୍କୁ ଛାଡ଼ିବେ ଲଙ୍କା ଭୁବନ ହେ । ସେ ତ ନୋହେ ତୁମ୍ଭର । ସବୁଦିନେ ସେ ପୁର ଆମ୍ଭର ହେ । ତୁମ୍ଭେ ନ ଦେଲେ ସଂଗ୍ରାମ କର ହେ ॥ ରାବଣ ଆଜ୍ଞା ପାଇଣ ଦୂତ ଯାଇ କୁବେର ଆଗେ କହିଲେ । ରାବଣ ତୁମ୍ଭ ଭ୍ରମୁକୁ ପେଷି ଲଙ୍କା ମାଗଇ ପଠିଆଇଲେ ହେ । ତାଙ୍କ ଅଜାଙ୍କ ପୁର । ତୁମ୍ଭେ ଏବେ ସିନା କଲ ଘର ହେ । କାହି ନ ଦେବା ଦେବା ବିଚାର ହେ ॥ କୁବେର ବୋଲନ୍ତି ପିତା ସିନା ମୋତେ ଦେଇଛନ୍ତି ଲଙ୍କା-ପୁର । ତାହାଙ୍କ ଆଜ୍ଞା ହେଲେ ମୁଁ ଏଥୁ ଯିବି ପରୀରବା ଯାଏ କର ହେ (

ଯେବେ ମାଗିଲ ମୋତେ । ଛାଡ଼ି ଯିବଇଁ ପିତା ଅଗ୍ରତେ ହେ । କିଛି ନ ବିଚାରିବ ସୁଚରିତେ ହେ ॥ ଏମନ୍ତ ଶୁଣି ସେ ଦଶଗ୍ରୀବ ଦୂତ ଦଶଗ୍ରୀବକୁ କହିଲେ । ସକଳ ଅସୁର ସହିତେ ରାବଣ ଶୁଣିଣ ହରଷ ହେଲେ ସେ । ପୁଷ୍ପକଯାନେ ବସି ଧନପତି ପିତ ପାଶେ ଆସି ସେ । କର ଯୋଡ଼ି ବହୁ ସ୍ତୁତି ଭାଷି ସେ ॥ କୁବେର ଜଣାଏ ଦଶଗ୍ରୀବ ଦୂତ ମୋତେ ଜଣାଇ ବାରତା । ଲଙ୍କା ଛାଡ଼ିଯିବ ନଗଲେ ଯୁଝିବ କି କରିବି ଏବେ ପିତା ହେ । ଶୁଣି ସେ ମୁନିବର । ବୋଲନ୍ତି ଦୁଷ୍ଟ ସ୍ୱଭାବ ତାର ହେ । ଆମ୍ଭ ଶାପକୁଁ ନ କଲା ଡର ହେ ॥ ଏକେ ଅସୁର ଦୁଲେ ବର ପାଇଲା ଜିଣିଲେ ସଚରାଚର । ଋଷିଙ୍କୁ ଖାଇ ଯାଗମାନ ଭାଙ୍ଗିଲା ପାପକୁ ନାହିଁ ବିଚାର ହେ । ଲଙ୍କା ଛାଡ଼ିଣ ଯାଅ । କଇଲାସେ ଘର କରି ରହ ହେ । ତାର ଚରିତ ମୋତେ ନ କହ ହେ ॥ ପିତା ଆଜ୍ଞା ପାଇ ଧନପତି ଲଙ୍କା ତେଜି କଇଲାସେ ଗଲେ । ଶିବ ସଙ୍ଗେ ସଖା ହୋଇଣ ତହିଁରେ ବଟଏପୁରେ ରହିଲେ ହେ । ରାବଣ ନେଲା ଲଙ୍କା । ତାହା ଶୁଣି ଦେବେ କଲେ ଶଙ୍କା ହେ । ଜିଣିବ ବୋଲି କଲେ ଆଶଙ୍କା ହେ ॥ ମହାପାର୍ଶ୍ୱ ମହୋଦର ମାରୀଚ ଶୁକ ସାରଣ ପ୍ରହସ୍ତ । ତ୍ରିଶିରା ଖରଦୂଷଣ ମନ୍ତ୍ରୀମାନେ ମିଳିଲେ ଆସି ବହୁତ ହେ । ଖଟି ରାବଣ ପାଶ । ତାର ହେଲେ ଅତ୍ୟନ୍ତ ବିଶ୍ୱାସ ଯେ । ଭଣି ଅଟଇ ରାମଙ୍କ ଦାସ ସେ । ୨୦ ।

---

## ୭ମ—ଛାନ୍ଦ ରାବଣକର୍ତ୍ତୃକ କୈଲାସଉତ୍ପାଟନ

### ରାଗ—କଳସା

ଶୁଣ ହେ ରାମ ରାବଣ ହୋଇଲା ପ୍ରତାପୀ । ଶଯ୍ୟାରୁ ନ ଉଠିଲା ସେ କୁମ୍ଭକର୍ଣ୍ଣ ପାପୀ । ଏମନ୍ତ ଦେଖି ରାବଣ ଧାତାଙ୍କୁ କହିଲା । ଛ ମାସେ ଉଠିବ ନିର୍ବନ୍ଧ କରି ଅଇଲା ॥ ଭ୍ରମନ୍ତେ ରାବଣ ସଙ୍ଗେ ମନ୍ତ୍ରୀଗଣ ଘେନି । ଦେଖିଲେ ମୟଦୈତ୍ୟର ସଙ୍ଗତେ ନନ୍ଦନୀ । ସୁନ୍ଦରୀପଣେ ନିପୁଣ ଯଉବନବତୀ । ଦେଖିଲେ ଭୟ କରିବେ ରମ୍ଭା ଶଚୀପତି ॥ ମୟଦୈତ୍ୟକୁ ଦେଖିଣ କହଇ ରାବଣ । କନ୍ୟା ଗୋଟିଏ ଘେନିଣ ଭ୍ରମୁଛ ଆପଣ । ମୟଦୈତ୍ୟ ବୋଲେ ସେ ଦୁହିତା ମନ୍ଦୋଦରୀ । ସୁବର ପାଇଲେ ମୁଁ ଦେବଇଁ ବିଭା କରି ॥ ରାବଣ ମନ୍ତ୍ରୀ କହିଲା ରାବଣକୁ ବର । ବିଶ୍ରବା ନନ୍ଦନ ଜ୍ୟେଷ୍ଠ ଭାଇଟି କୁବେର । ଶୁଣି ମୟଦୈତ୍ୟ ତାହା ସ୍ୱୀକାର କଲା । ବିଭା କରିଣ ଦୁହିତା ରାବଣକୁ ଦେଲା ॥ ଯଉତୁକ କରି ଦେଲା ଆମୋଦ ଶକତି । ଲଙ୍କାକୁ ନେଲା ରାବଣ ପାଇ ପ୍ରିୟବତୀ । ସୁବୁଦ୍ଧି ଦେଖିଣ ତାଙ୍କୁ କଲେ ପାଟରାଣୀ । ବୈବନଭାଇ ଭଗ୍ନୀ ବିଭା କଲେ ବହ୍ନି

ଜାଣି ॥ ମନ୍ଦୋଦରୀ ଗର୍ଭେ ହେଲା ମେଘନାଦ ଜାତ । ବହୁକାଳ ତପ କଲା ରାବଣର ସୁତ । ଦୁଃସହ ତପ ଦେଖିଣ ଧାତା ବର ଦେଲେ । ତେଣୁ କରି ତାକୁ କେହି ଜିଣନ୍ତା ନୋହିଲେ ॥ ଶୁଣ ହେ ଶ୍ରୀରାମ ଏଥୁଅନନ୍ତରେ ରସ । ନନ୍ଦନବନ ରାବଣ କଲାକ ବିନାଶ । ଗନ୍ଧର୍ବଙ୍କୁ ଜିଣି ଅପସରାଙ୍କି ଆଣିଲା । ଏହା ଶୁଣିଣ କୁବେର ବିସ୍ମୟ ହୋଇଲା ॥ ଦୂତିଙ୍କୁ ଡାଇ ବୋଇଲା ଲଙ୍କାକୁ ଯେ ଯିବ । ଆମ୍ଭ ଆଜ୍ଞା ବୋଲି ଦଶଗ୍ରୀବକୁ କହିବ । ବୋଲିବ ସ୍ୱର୍ଗରେ ବହୁ ଅନାୟତ କଲ । ସଭିଙ୍କ ମୁଖରେ ଏବେ ଅକୀର୍ତ୍ତି ପାଇଲ ॥ ଦେବତା ବ୍ରାହ୍ମଣେ ଏବେ ଅନ୍ୟାୟ ନ କର । ଏଣୁ କହିଲୁଟି ଯେଣୁ ସୋଦର ଆମ୍ଭର । ଅଧର୍ମ କଲେ ଯେ ଅଳ୍ପ ଦିନେ ନାଶ ଯାଇ । ଧର୍ମକଲେ ସଭିଙ୍କ ମୁଖରେ ଯଶ ପାଇ ॥ ଦୂତକୁ କହିଲା କଇଲାସର ବୃତ୍ତାନ୍ତ । ପାର୍ବତୀ ମହେଶ ହୋଇଥିଲେ ଯେ ଏକାନ୍ତ । ମୁଁ ବୋଇଲି ଦେଖିବା ଏ କେବଣ ବୃତ୍ତାନ୍ତ । ପାର୍ବତୀ ପରେ ପଡ଼ିଲା ମୋ ବାମ ନେତ୍ରାନ୍ତ ॥ ପାର୍ବତୀଙ୍କ ଅଙ୍ଗେ ଯେଉଁ ନୟନ ପଡ଼ିଲା । ସେହି ନୟନକୁ ମୋର କିଛୁ ନ ଦିଶିଲା । ତପ ଦେଖି ସଦାଶିବ ମୋତେ ଦୟା କଲେ । ବହୁ ପ୍ରୀତି କରି ମୋର ସଙ୍ଗେ ସଖା ହେଲେ ॥ ଏମନ୍ତ କହିବୁ ଯାଇ ଦଶଗ୍ରୀବ ପାଶ । ଅଧର୍ମ କରଣ କେହି ପାଇନାହିଁ ଯଶ । ଏ ସନ୍ଦେଶ ଘେନି ଦୂତ ଲଙ୍କାକୁ ଚଳିଲା ରାବଣର ପାରଶ୍ୱରେ ଯାଇଣ ମିଳିଲା ॥ କୁବେର ଦୂତ ବୋଲନ୍ତେ ଜଳା ପଉରୁଷ । କୁଶଳ ବାରତା ପୁଚ୍ଛି ହେଲା ହସ ହସ । ଦୂତ କର ଧରିଣ ଏମନ୍ତ ପଚାରିଲା । କି କାରଣରେ ତୁମ୍ଭଙ୍କୁ ପେଷିଲେ ବୋଇଲା ॥ ଦୂତ ଜଣାଇଲା ଅପକୀର୍ତ୍ତିମାନ ଶୁଣି । ଏଥିକୁ କୁବେର ପେଷିଛନ୍ତି ବଂଶପାଣି । ଆଜ୍ଞା ଦେଲେ ଗନ୍ଧର୍ବମାନେ କଲେ କି ଦୋଷ । ଋଷିପୁତ୍ର ହୋଇ ଋଷି ଯାଗ କଲ ନାଶ ॥ ଅଧର୍ମ କଲେ ଅଧର୍ମେ ଯାଇ ବାକୁ ନାଶ । ଧର୍ମକଲେ ଧର୍ମରେ ପ୍ରାପତ ବହୁଯଶ କିଞ୍ଚିତ ଦୋଷରେ ମୋର ନେତ୍ର ଗଲା ନାଶ । ଅବଲୋକନେ ପାର୍ବତୀ କଲେ ମୋତେ ରୋଷ ॥ ବହୁ ତପ ଦେଖି ମୋତେ ଶିବ ଦୟା କଲେ । ବହୁ ପ୍ରୀତିରେ ମୋହର ସଙ୍ଗେ ସଖା ହେଲେ । ତ୍ରିଭୁବନେ ଜନେ ଯାହା ପାଦରେ ଶରଣ । ଯାହା ନେତ୍ରାନଳେ ଭସ୍ମ ହେଲା ପଞ୍ଚବାଣ ॥ ଏମନ୍ତ ଶୁଣି ରାବଣ ବହୁ କୋପ କଲା । ଏ ବାରତାମାନ ମୋତେ ଦେଇଛୁ ବୋଇଲା । ଶିବ ମୋର ସଖା ହେଲା ପାଇଲ ମୁଁ ଯଶ । ଅଧର୍ମ କରୁଛୁ ତୁହି ହୋଇବୁ ବିନାଶ ॥ ଏମନ୍ତ ବାରତା ଏବେ ଦେଇଅଛୁ ମୋତେ । ଜାଣିବି ତାହାର ଅଙ୍ଗେ ବଳ ଅଛୁ କେତେ । ଏମନ୍ତ ବୋଲିଣ କରେ ଖଡ଼ଗ ଧଇଲା । କ୍ରୋଧଭରେ ସେ ଦୂତକୁ ବେନି ଖଣ୍ଡ କଲା ॥ ସାଜିଲାକ ଗଜ ଅଶ୍ୱ ଚତୁରଙ୍ଗ

ବଳ । ବାରତା ପାଇଣ ଭୟ କଲେ ଦିଗପାଳ । କୁବେର ନଗରେ ଯାଇ ପ୍ରବେଶ ହୋଇଲା । ମଣିଗ୍ରୀବ ସଙ୍ଗତରେ ବହୁ ରଣ କଲା ॥ ରାବଣ ହାତରେ ମଣିଗ୍ରୀବ ମନ୍ତ୍ରୀ ମଲା । ଏମନ୍ତ ଦେଖି କୁବେର ଅନ୍ତର ହୋଇଲା । ସଂଗ୍ରାମେ ରାବଣ ବହୁ ଯକ୍ଷଗଣ ନାଶେ । ଏକା ହୋଇଣ କୁବେର ପୁରେ ଯାଇଁ ପଶେ ॥ କୁଟୁମ୍ବ ବୋଲି ସୁବର୍ଣ୍ଣମାନଙ୍କୁ ନ ନେଲା । ପୁଷ୍ପକନାମରେ ଯାନ ତା ପୁରେ ଦେଖିଲା । ବଳେ ଘେନି ଅଇଲା ସେ ପୁଷ୍ପକବିମାନ । ତହିଁ ଆରୋହି ଭ୍ରମିଲା ସକଳ ଭୁବନ ॥ ଆକାଶେ ବିମାନ ଘେନି ଯାନ୍ତେ ନ ଚଳିଲା । ଏ କେଉଁ ବୃତ୍ତାନ୍ତ ବୋଲି ମନ୍ତ୍ରୀଙ୍କି ପୁଚ୍ଛିଲା । ମନ୍ତ୍ରୀ ବୋଲନ୍ତି କି ଅବା କୁବେର ଶାପ ସେ । ଏମନ୍ତ ବୋଲନ୍ତେ ନନ୍ଦୀ ମିଳିଲା ତା ପାଶେ ॥ ନନ୍ଦୀ ବୋଲେ ଆରେ ଏହି କଇଳାସ ଗିରି । ବିଜୟ କରିଅଛନ୍ତି ଶଙ୍କର ଗଉରୀ । ଏ ଗିରି ଉପରେ ଉଡ଼ି ନ ଉଡନ୍ତି ପକ୍ଷୀ । ଦେବ ଦାନବେ ଆସନ୍ତି ବିମାନ ଉପେକ୍ଷି ॥ କେମନ୍ତେ ହୋଇ ବିମାନ ଚଳିବ ତୋହର । ଏଡେ ଗର୍ବ କପାଇଁ କରୁଛୁ ଦଶଶିର । ନନ୍ଦୀର ମୁଖରୁ ଶୁଣି ଏମନ୍ତ ବଚନ । କ୍ରୋଧେ ପ୍ରଜ୍ୱଳିତ ହୋଇ କହେ ଦଶାନନ ॥ ମୁଖ ହଲାଇ ବାନର କହୁ ମୋତେ କଥା । ଏହିକ୍ଷଣି ଛେଦନ କରିବି ତୋର ମଥା । ଈଶ୍ୱର ପାର୍ବତୀର ସହିତେ କଇଳାସ । ଉପାଡ଼ି ପକାଇ ଦେବି ଯିବ ସର୍ବେ ନାଶ ॥ ରାବଣ ମୁଖରୁ ନନ୍ଦୀ ଏ ବଚନ ଶୁଣି । ବୋଇଲେ ରେ ଆମ୍ଭଙ୍କୁ ଖତାଉ ବଂଶଘାଣି । ଆମ୍ଭ କପିଙ୍କର ହସ୍ତେ ହୋଇବୁ ବିନାଶ । ଶାପ ଦେଇ ବାହୁଡ଼ିଣ ଗଲେ କଇଳାସ ॥ ଯେଣୁ ଆକାଶେ ସ୍ଥଗିତ ହୋଇଲାକ ଯାନ । ମହାକ୍ରୋଧ କରି ଓହ୍ଲାଇଲା ଦଶାନନ । କଇଳାସ ଉପାଡ଼ିବି ବୋଲି ବିଚାରିଲା । ଆକର୍ଷିଣ ବିଂଶଭୁଜେ ଗିରିକି ଧଇଲା ॥ ଉପାଡ଼ନ୍ତେ କଇଳାସ ହେଲା ଟଳମଳ । ଗିରିଜା ସଦାଶିବଙ୍କୁ ଉଡ଼ି କଲେ କୋଳ । ଶିବ ବିଚାରିଲେ କମ୍ପା କମ୍ପିଲା ପର୍ବତ । ଯୋଗରେ ଜାଣିଲେ ଉପାଡ଼େ ବିଶ୍ରବାସୁତ ଏମନ୍ତ ଜାଣି ପାଦ ଅଙ୍ଗୁଷ୍ଠି ଦେଲେ ମାଡ଼ି । ମାଡ଼ିଣ ପଡ଼ିଲା ଗିରି କଲା ଘୋର ରଡ଼ି । ସହସ୍ର ବରଷ ଯାଏ ରଡ଼ି ଛାଡ଼ିଥିଲା । ମହାପୀଡ଼ା ପାଇ ମର୍କଟ ପ୍ରାୟ ହସିଲା ॥ ମନ୍ତ୍ରୀମାନେ ବୋଇଲେ କପାଇଁ ରଡ଼ି ଛାଡ଼ । ଏହି ରଡ଼ି ଶବଦରେ ଶିବସ୍ତବ ପଢ଼ । ଏମନ୍ତ ଶୁଣି ରାବଣ ଶିବସ୍ତବ ପଢ଼େ । ଧାନ ବିଶିମନ୍ତ ରାମ ଚରଣ ନ ଛାଡ଼େ । ୩୦ ।

———

# ୮ମ ଛାନ୍ଦ—ରାବଣର ଦିଗ୍‌ବିଜେ

ରାଗ—ଗଡ଼ମାଳଆ

ଶୁଣ ହେ ରାମ ରାଜନ । ଅତି ରହସ୍ୟ ବଚନ । ରାବଣ ସ୍ତବ କରନ୍ତେ ସଦାଶିବ ତାଙ୍କୁ ହୋଇଲେ ପ୍ରସନ୍ନ ଶୁଣ ହେ ରାମ ॥ ଗିରିରୁ ବାହାର କଲେ, ରାବଣ ନାମଟି ଦେଲେ । ତାର ଦୁଃଖ ଦେଖି ସେ କ୍ରୋଧ ଉପେକ୍ଷି ବହୁ ଦୟା ତାଙ୍କୁ କଲେ । ଶୁଣ ହେ ରାମ ॥ ଶିବ ଚରଣେ ପଡ଼ିଲା । ବିମାନ ବୁଲାଇ ନେଲା ହିମାଚଳେ ବେଦମତୀ ତପସ୍ଥାନେ ଯାଇଣ ପୁଣ ହୋଇଲା । ଶୁଣ ହେ ରାମ ॥ ସୁନ୍ଦରୀ ନାରୀ ଦେଖିଲା । ତାଙ୍କୁ ଆକର୍ଷଣ କଲା । ସତୀ ନିଜ କରେ ନିଜ କେଶ କାଟି ଏମନ୍ତ ଶାପଟି ଦେଲା । ଶୁଣ ହେ ରାମ ॥ ମୋର ଯୋଗୁଁ ହେବୁ ନାଶ । ନ ରହିବ ତୋର ବଂଶ । ଏତେ ବୋଲି ଅଗ୍ନି ଜଳାଇ ପଶିଲେ ନିଜ ତନୁ କଲେ ନାଶ । ଶୁଣ ହେ ରାମ ॥ ସେଠାରୁ କଲା ଗମନ । ପବନ ପ୍ରାୟେ ତା ଯାନ ଯା ଦେଖିବାକୁ ପ୍ରବେଶ ହୋଇଲା ମରୁତରାଜ ଭୁବନ । ଶୁଣ ହେ ରାମ ॥ ସକଳ ଦେବତା ଥିଲେ । ଦଶମୁଖକୁ ଦେଖିଲେ । ନାନା ରୂପମାନ ଅମରେ ଧରିଣ ପଳାଇ ସେଠାରୁ ଗଲେ । ଶୁଣ ହେ ରାମ ॥ ଶକ୍ର ହୋଇଲା ମୟୂର । ସରଟ ହେଲେ କୁବେର । ଯମ ହୋଇଲେ କାକ ହଂସସ୍ୱରୂପ ହୋଇଲା ବରୁଣଙ୍କର । ଶୁଣ ହେ ରାମ । ରାଜା ଯାଗ କରୁଥିଲେ । ହାରୀ ଯାଇଁ ଜଣାଇଲେ । ରାବଣ ଆସିଣ ସଂଗ୍ରାମ ମାଗୁଛି ଶୁଣି ସେ ବାହାର ହେଲେ । ଶୁଣ ହେ ରାମ ॥ ପୁରୋହିତ ରୁଣ୍ଡ ହୋଇ । ରାଜାଙ୍କୁ କହିଲେ ଯାଇଁ । ସଂକଳ୍ପ ଭୂମିର ଭଗ୍ନ ସିନା ହେବ ଯୁଦ୍ଧ କରି ନ ଯୋଗାଇ । ଶୁଣ ହେ ରାମ ॥ ଧାତା ଦେଇଛନ୍ତି ବର ହୋଇଣ ଥିବ ଅମର । ହାରିଲୁଁ ବୋଇଲେ ବାହୁଡ଼ିଣ ଯିବ ଏଥକୁ କି କୋପ କର ଶୁଣ ହେ ରାମ । ରାଜା ସ୍ୱୀକାର କଲେ । ହାରିଲୁଁ ବୋଲି ବୋଇଲେ । ମରୁତ ହାରିଲା ବୋଲିଣ ରାବଣ ବିମାନେ ଉଠି ହେଲେ । ଶୁଣ ହେ ରାମ ॥ ରାବଣ ଯିବା ଦେଖିଣ । ନିଜରୂପେ ଦେବଗଣ । ଯେ ଯେଉଁ ରୂପ ଧରିଥିଲେ ତାହାଙ୍କୁ ବର ଦେଲେ ସେହିକ୍ଷଣ । ଶୁଣ ହେ ରାମ ॥ ମୟୂରକୁ ବର ଦେଲେ । ସହସ୍ର ଲୋଚନ କଲେ । ହଂସକୁ ବରୁଣ ଗାତ୍ର ଶୁଭ୍ର କରି ଜଳେ ନ ବୁଡ଼ ବୋଇଲେ । ଶୁଣ ହେ ରାମ ॥ ଦେଲେ ଧନପତି ବର । ସରଟ ତୋର ଶରୀର । ସୁବର୍ଣ୍ଣ ପ୍ରାୟେ ତୋହର ଛବି ହେମ ମୁକୁଟ ହେବ ତୋ ଶିର । ଶୁଣ ହେ ରାମ ॥ ଯମ କାକେ ବର ଦେଲେ । ଅମର ତାହାଙ୍କୁ କଲେ । ଏ ତୋର ଇଚ୍ଛାଏ ନ ମରିବୁ କେହି ମାଇଲେ ମରି ବୋଇଲେ । ଶୁଣ ହେ ରାମ ॥

ରାବଣ ଭ୍ରମଣ କଲା । ମହାରାଜାଙ୍କୁ ଜିଣିଲା ବୋଲେ ଯାନ ବସି ବିମାନ ଆରୋହି ଅଯୋଧ୍ୟା ପ୍ରବେଶ ହେଲା । ଶୁଣ ହେ ରାମ ॥



## ୯ମ—ଛାନ୍ଦ

( ବଉଳ ବୃତ୍ତ )

ଶୁଣ ରଘୁବୀର ହେ । ବିଶ୍ରବା କୁମର । ଅଯୋଧ୍ୟା ପ୍ରବେଶ ହୋଇଲା ହେ । ରାଘବ ମାଗିଲା ସମର ହେ ॥ ଅରଣ୍ୟ ରାଜନ ହେ । ଶୁଣି ତା ବଚନ । ଯାନ ଚଢ଼ି ସଂଗ୍ରାମକୁ ହେ । ରାଘବ । ଆଇଲେ ବହନ ହେ ॥ ବହୁଯୁଦ୍ଧ କଲେ ହେ । ବହୁ ସୈନ୍ୟ ମଲେ । ରାବଣ ସେ ନୃପତିଙ୍କି ହେ । ରାଘବ । ଗଦାରେ ମାଇଲେ ହେ ॥ ଅଯୋଧ୍ୟା ରାଜନ ହେ । ତେଜନ୍ତେ ଜୀବନ କ୍ରୋଧେ ତାଙ୍କୁ ବୋଇଲା ହେ । ରାଘବ । ଏମନ୍ତ ବଚନ ହେ ॥ ମୋ କୁଳେ ଜନମ ହେ । ହୋଇବେ ଶ୍ରୀରାମ । ସଗୋତ୍ର ମାରିବେ ତୋର ରେ । ରାବଣ । ସଂଗ୍ରାମ କରିଣ ରେ ॥ ଶାପ ଦେଇ ମଲେ ହେ । ସ୍ୱର୍ଗପୁର ଗଲେ । ଏହା ଶୁଣି ସ୍ୱର୍ଗରେ ହେ । ରାଘବ । ଦୁନ୍ଦୁଭି ବୋଇଲେ ହେ ॥ ତହୁଁ ବାହୁଡ଼ିଲା ହେ । ଆକାଶେ ଗମିଲା । ନାରଦ ମହାଋଷି ହେ । ରାଘବ । ପଥରେ ଭେଟିଲା ହେ ॥ ମାନ୍ୟ ତାଙ୍କୁ କଲା ହେ । ତା ମୁଖୁଁ ଶୁଣିଲା । ପୁଣି ପୁଣି ତାହାଙ୍କୁ ହେ । ରାଘବ । ସବୁ ପଚାରିଲା ହେ ॥ ସେ ବୋଇଲେ ନର ହେ । କେତେକ ମ ତେର । ପାଡ଼ିଲେ ଯମକୁ ଜିଣି ହେ । ରାବଣ । ବୋଲେ ମୁନିବର ହେ ॥ ସେଠି ଜନ୍ତୁପତି ହେ । ଅଚଳ ବିଭୂତି । ଜଗତଜନ୍ତୁ ଯାହାକୁ ହେ । ରାଘବ । କରୁଥାନ୍ତି ଖ୍ୟାତି ହେ ॥ ମୁନି ମୁଖ ଶୁଣି ହେ । କେପେ ବଂଶପାଣି । ଜନ୍ତୁପତି ପୁରକୁ ହେ । ରାଘବ । ଗଲା ସେହିକ୍ଷଣି ହେ ॥ ତା ପୁରେ ପଶିଲା ହେ । ନିର୍ଭୟ । ହୋଇଲା । ନାରକୀଯମାନଙ୍କୁ ହେ । ରାଘବ । ଛଡ଼ାଇଣ ଦେଲା ॥ ଦେଖିଣ ଶମନ । ହେଲା କୋପମନ । ରାବଣ ସମ୍ମୁଖେ ଆସି ହେ । ରାଘବହୋଇଲା ବହନହେ ॥ କଲେ ଘୋର ରଣ ହେ । ଷଣ୍ଢୀ ବେନିଜଣ । ବରଷେ ଯୁଝନ୍ତେ ଧାତ ହେ । ରାଘବ । ଅଇଲେ ଆପଣ ॥ ପୁଲସ୍ତିଙ୍କନାତି ହେ । ହେନିଲାଶକତି । କାଳ-ଦଣ୍ଡ ପାଶକରେ ହେ । ରାଘବ । ଧରେ ଜନ୍ତୁପତି ॥ ଦେଖି ପଦ୍ମାସନ ହେ । କଲେ ସନମାନ । ଜନ୍ତୁପତି ହାରିଲା ହେ । ରାଘବ । ବୋଇଲେ ବଚନ ହେ ॥ ତହୁ ବାହୁଡ଼ିଲା ହେ । ପାତାଳକୁ ଗଲା । ଦନୁଜଙ୍କ ସଙ୍ଗରେ ହେ । ରାଘବ । ବହୁ ରଣ କଲା ହେ ॥ ବଳିକି ଦେଖିଲା ହେ । ନମସ୍କାର କଲା । ତାଙ୍କ

କୋଳେ ବସିଣ ହେ । ରାଘବ । ପ୍ରଶଂସା ପାଇଲା ॥ ବରଷେ ରହିଲା ହେ । ନିକୁଜ ମୋଇଲା । ଜୟ କରି ପାତାଳରୁ ହେ । ରାଘବ । ରାମାଙ୍କୁ ଆଣିଲା ହେ ॥ ପୁଣି ଚଢ଼ି ଯାନ ହେ । ବିଶ୍ରବାନନ୍ଦନ । ଜିଣିବି ବୋଲି ଗଲା ହେ । ରାଘବ । ବରୁଣଭୁବନ ହେ ॥ ବରୁଣ ଦ୍ୱାରୀ ହେ । ଦ୍ୱାରନ୍ତି ଅଁବୋଇ । ବୋଲେ ବରୁଣ ଗଲା ହେ । ରାଘବ । ସୁନାଶିର ପୁରୀ ହେ ॥ ତା ମୁଁ ଖୁଁ ଶୁଣିଲା ହେ । ବାହୁଡ଼ି ଅଇଲା । ସ୍ୱର୍ଗେ ଶକ୍ର ସଙ୍ଗର ହେ । ରାଘବ ବହୁରଣ କଲା ହେ ॥ ଶକ୍ରକୁ ଜିଣିଲା ସେ । ବାନ୍ଧି ଘେନିଗଲା । ପିତାମହ ଆସିଣହେ । ରାଘବ । ତାକୁ ମାଗିନେଲା ହେ ॥ ଯେତେ ୨ ବୀର ହେ । ଥିଲେ ନରପୁର । ସମସ୍ତଙ୍କୁ ଜିଣିଲା ହେ । ରାଘବ । ପ୍ରତାପୀ ଅସୁର ହେ ॥ ପୁତ୍ର ମେଘନାଦ ହେ । ଶକ୍ରେ କଲା ବାଦ । ବହୁବାର ଜିଣିଲା ହେ । ରାଘବ । ଶକ୍ରାଜିତ ପଦ ହେ ॥ ଦଶଭୁଜେ ଧନୁ ହେ । ଦଶଭୁଜେ ଶର । ତ୍ରିଭୁବନ ବୁଲଇ ହେ । ରାଘବ । । ପୁଷ୍ପ ରଥବର ହେ ॥ ଏ ରୂପେ ରାବଣ ହେ । ଦାସ ଯେ ଭ୍ରମିଣ । ଅହର୍ନିଶିରେ ବସି ହେ । ରାଘବ । ଭଜେ ଶ୍ରୀଚରଣ ହେ । ୨୬ ।

---

## ୧୦ମ—ଛାନ୍ଦ

ରାଗ—ମୁନିବର ବାଣୀ

ବଦନ୍ତି ଅଗସ୍ତ୍ୟ ଯତି । ଶୁଣ ଆହେ ରଘୁପତି । ରାବଣ ଜିଣି ନୃପତି ଆନନ୍ଦ ମତି ହେ ॥ ଲଙ୍କାରେ ହେଲା ପ୍ରବେଶ । ଦେଖି ସକଳ ରାକ୍ଷସ । ଦର୍ଶନ କରି ହରଷ । ଉଭା ତା ପାଶ ହେ ॥ କହିଲେ ରାବଣ ଆଗ । ମେଘନାଦ କଲେ ଯାଗ ॥ ନିକୁମ୍ଭିଳା ବଟ ଲାଗେ । ଦିବସ ଭାଗେ ହେ । ଶୁଣି କ୍ରୋଧ ଦଶାନନ । ପୁତ୍ରରେ କୁପିତ ମନ । ଦେବତାଙ୍କୁ ହବିର୍ଦାନ । ଦେଲା ଅଜ୍ଞାନ ହେ ॥ ମୁଁ ଯାଗ କରଇ ନଷ୍ଟ । ଯାଗକରେ ସେ ପାପିଷ୍ଟ । ହବି ପାଇ ସୁରେ ଦୁଷ୍ଟ । ହୋଇବେପୁଷ୍ଟ ହେ ॥ ରାବଣକୁ ଭୟ କଲା । ତେଣୁ ସେ ଯାଗ ମୁଞ୍ଚିଲା । ପୂର୍ଣ୍ଣ ଆହୁତି ନ ଦେଲା । ରଣେ ହାରିଲା ହେ ॥ ଜଣାଇଲା ବିଭୀଷଣ । ଶୁଣ ହେ ଦେବ ରାବଣ । ମଧୁଦୈତ୍ୟ ଆସି ପୁଣି । କଲାକ ରଣ ହେ । ରାକ୍ଷସଙ୍କୁ ଜୟ କଲା । ବଳେ ବହେଣୀକି ନେଲା । ଶିବ ତାକୁ ଶୂଳ ଦେଲା । ଅଭୟ ହେଲା ହେ ॥ ଶୁଣି ପୁଣି କ୍ରୋଧ କଲା । ରାକ୍ଷସଙ୍କୁ ଗାଳି ଦେଲା । ପୁଷ୍ପରଥ ଆରୋହିଲା । ବାହାର ହେଲା ହେ ॥ କୋପେ ଗଲା ମଧୁପୁର । ଦେଖି ମଧୁ ଦୈତ୍ୟବୀର । ଶୂଳର ପ୍ରତାପେ ତାର । ହେଲା କାତର ହେ ॥ ପଚେ ଭଗ୍ନୀ ଜଣାଇ ଥିଲା । ତେଣୁ ଉପରୋଧ କଲା । ଶୂଳ ତାକୁ ନ ମାଇଲା । ପୀରତି ହେଲା ହେ ॥ ଶୁଣି ବୋଲେ ରଘୁବୀର

ଶୁଣ ଆହେ ମୁନିବର । ସେ କାଳେ ନ ଥିଲେ ସାରଙ୍ଗୀ କ୍ଷିତି ଭିତରି ହେ ॥ ରାବଣ ସର୍ବ ଜିଣିଲା । ପରାଜୟ ନ ପାଇଲା । ମନେ ଆନନ୍ଦ ହୋଇଲା । ନିର୍ଭୟ ହେଲା ଶୁଣହେ ସାର ରାଘବ । ରାବଣର ପରାଭବ । ନଦୀତଟରେ ଦଶଗ୍ରୀବ । ପୂଜନ୍ତି ଶିବ ହେ ॥ ସହସ୍ରାର୍ଜ୍ଜୁନ ସାର । କରଇ ଜଳବିହାର । ସମସ୍ତ ଯୁବତୀ ତାର । ଜଳଭିତର ହେ ॥ ସହସ୍ରେକ ଭୁଜଛନ୍ଦ । ବାହୁବନ୍ଧେ ଜଳରୁନ୍ଧ । ନର୍ମଦା ହୋଇଲା ବନ୍ଦୀ । ନ ପାଇ ସ୍କନ୍ଧ ହେ ॥ ବହନ୍ତେ ନଦୀ ଉଜାଣି । ବିପରୀତ ହେଲା ପାଣି । ପଚାରଇ ବଂଶପାଣି । ମନ୍ତ୍ରୀଙ୍କି ପୁଣି ହେ ॥ କହନ୍ତି ଯେ ମନ୍ତ୍ରୀଗଣ । ଶୁଣ ହେ ଦେବ ରାବଣ । ସସ୍ରାର୍ଜ୍ଜୁନ ବାହୁଗୁଣ । ଦେଖ ହେ ପୁଣ ହେ ॥ ସହସ୍ର ଯୁବତୀ ସଙ୍ଗେ । ଜଳ କେଳି କରେ ରଙ୍ଗେ । ତେଣୁ ଲେଉଟି ତରଙ୍ଗ । ବାଜି ତା ଅଙ୍ଗେ ହେ ॥ ଏହା ଶୁଣି ଦଶାନନ । ଚଢ଼ିଣ ପୁଷ୍ପକ ଯାନ । ମିଳିଣ ତାର ସଦନ । କହେ ବଚନ ଯେ ॥ ନୃପତିଙ୍କ କହ ଯାଇଁ । ଆସିଛୁ ସମର ପାଇଁ । ଜିଣି ବାହୁଡ଼ି ଯିବଇଁ । କହ ତୁ ଯାଇଁ ରେ ॥ ଶୁଣି କହେ ଦ୍ଵାରପାଳ । ନୋହେ ସେ ସଂଗ୍ରାମ କାଳ । ଜଳକ୍ରୀଡ଼ା କୁତୁହଳ । କରେ ଭୂପାଳ ସେ ॥ ଏହା ଶୁଣି କୋପ କଲା । ଦ୍ଵାରୀ ସୈନ୍ୟ ସଂହାରିଲା । ସେମାନଙ୍କୁ ମାରିଲା । ରାଜା ଶୁଣିଲା ହେ ॥ ଜଳୁ ହୋଇଲା ବାହାର । ନାରୀ ଗଲେ ଅନ୍ତଃପୁର । ବେଷ ହୋଇ ସାରବର । ହେଲା ବାହାର ହେ ॥ କଷ୍ଟିତ ସମର କଲା । ବଳେ ତାହାକୁ ଧଇଲା । ବନ୍ଧନ କରି ଆଣିଲା । ବନ୍ଦୀରେ ଦେଲା ହେ ॥ ବର୍ଷେ କଲା ବନ୍ଧନ । ନ ଦେଲା ଜଳଅଶନ । ହୋଇଣ ବିକଳ ମନ । ଥିଲା ସଦନ ହେ ॥ ଜାଣି ଆସେ ପଉଲସ୍ତି । ସୂର୍ଯ୍ୟ ପ୍ରାୟ କରି ଗତି । ଦେଖି ତାଙ୍କୁ ମହୀପତି । କଲା ଭକତି ହେ ॥ କରି ତାଙ୍କୁ ଦିବ୍ୟପୂଜା । ପଚାରେ ସହସ୍ରଭୁଜା । କିମର୍ଥେ ଆଗତ ଦ୍ଵିଜ । ବ୍ରହ୍ମତନୁଜ ହେ ॥ ଶୁଣି ବୋଲେ ମୁନିବର । ରାବଣ ନାତି ଆମ୍ଭର । ଅପରାଧ କ୍ଷମାକର । ହେ ସାରବରି ହେ ॥ ଦେବୁ ତ ତାହାକୁ ମୋତେ । ପ୍ରାର୍ଥନା ମୋହର ଏତେ । ହାରିଲା ନିଶ୍ଚେ ସେ ତୋତେ । ଦିଅ ସୁଚିତ୍ତେ ହେ । ଶୁଣି ରାଜା ତୋଷ ହେଲା ରାବଣକୁ ଆଣି ଦେଲା । ବହୁ ପୂଜ୍ୟ ସାର୍ଥ କଲା । ଋଷି ଭଣିଲା ହେ । ୩୧ ।

---

୧୪ଶ ଛାନ୍ଦ

ରାଗ—ନଳିନୀଗୌଡ଼ା ମୁନିବର ବାଣୀ

କହେ କୁମ୍ଭଋଷି ବାଳି । ଶୁଣହେ ନୃପଶାର୍ଦ୍ଦୂଳ । ରାବଣ କିଷ୍କିନ୍ଧ୍ୟା ଗଲା । ତା ଦ୍ଵାରେ ହେଲା ଯେ ॥ ଦ୍ଵାରେ ଦେଖି କପି ତାର । କହଇ ରାବଣ

ବୀର । ବାଳିକି କହ ତୁ ଯାଇ । ଯୁଝିବି ମୁହିଁ ହେ ।। ହାସି ବୋଇଲା ବଚନ । ଶୁଣ ଅସୁରରାଜନ । ବାଳିସଙ୍ଗେ ଯେ ଯୁଝଇ । ପ୍ରାଣ ନ ପାଇ ହେ ।। ଅସ୍ଥି କୁଡ଼ କୁଡ ହୋଇ । ପଡ଼ିଛି ଦେଖ ତୁ ଯାଇ । ତୋହର ପ୍ରାୟେ ଅଇଲେ । ଅସ୍ଥି ହୋଇଲେ ହେ ।। ବାଳି ନାହିଁ ଆଜ ପୁର ନଷ୍ଟେ ଁ ଅଛି ଅଛି ତୋର । ଦକ୍ଷିଣ ସିନ୍ଧୁର ପାଶେ । ତର୍ପଣ ଆଶେ ହେ ।। ଗୃହ ସାଗରେ ତର୍ପଣ । ନଚ୍ଚେ କରେ କପିଗଣ । ନମିଷ ଭିତରେ ଆସେ । ନବରେ ପଶେ ହେ ।। ଶୁଣିଣ ତାର ବଚନ । ଚଢ଼ିଣ ପୁଷ୍ପକଯାନ । ଦକ୍ଷିଣ ସିନ୍ଧୁକୁ ଗଲା । ବାଳି ଦେଖିଲା ହେ ।। ହେମଗିରି ପ୍ରାୟେ ଶୋଭା । ମୁଖ ବାଳଭାନୁ ଆଭା । ମୁକୁଟ କୁଣ୍ଡଳ ତାର । କଙ୍କଣ ହାର ହେ ।। ବାହୁଟି ବାହୁମୂଳରେ । ନୁପୁର ଶୋଭେ ପୟରେ । ପିନ୍ଧିଅଛି ପୀତାମ୍ବର । କ ସୁନାସୀର ହେ ।। ରାବଣ ଏହା ଦେଖିଲା । ଏଥୁ ବେଗେ ଉତ୍ତରିଲା । କଜ୍ଜଳଗିରି ତ କାୟେ । ପାଶକୁ ଯାଏ ହେ ।। ବାଳି ଜପ କରୁଥିଲା ରାବଣ ତା ପାଶେ ହେଲା । ଧରିବାକୁ କଲା ମନ । ସେ ଦଶାନନ ହେ ।। ଧରନ୍ତେ ଅସୁରମଣି । ବାଳି ତା ଇଙ୍ଗିତ ଜାଣି । ବାମବାହୁ ବୁଲାଇଲା । କାଖେ ଯାକିଲା ହେ ।। ପଶ୍ଚିମ ସାଗରେ ଗଲା । ତହିଁ ସନ୍ଧ୍ୟା ସ୍ନାନ କଲା । ଉତ୍ତରସିନ୍ଧୁକୁ ଗଲା । ତର୍ପଣ କଲା ଯେ ।। କାମୋଡ଼ଇ ବଂଶପାଣି । ନଖେ ବିଦାରଇ ପୁଣି । ତହୁଁ ବାଳି ତରତର । ଯାକ କାଖର ହେ ।। ପକ୍ଷୀ ଯହିଁରେ ନବଶେ । ସେମାର୍ଗେ କ୍ଷେପିଣ ଆସେ । ପୂର୍ବସାଗରେ ପ୍ରବେଶ । ହୋଇ ରାକ୍ଷସ ହେ ।। ପ୍ରଶସ୍ତ ଶୁକ୍ର ସାରଣ । ଗୋଡ଼ାନ୍ତେ ସେ ତିନିଜଣ । ବାଳିକି ନ ପାଇ ଭେଟ । ରହିଲେ ବାଟ ଯେ ।। ପୂର୍ବସିନ୍ଧୁରେ ତର୍ପଣ । କଲେ କପିକୁଳରାଣ । ସୂର୍ଯ୍ୟ ଉଦୟ ଭିତରେ । ଆସେ ମନ୍ଦିରେ ହେ ।। ଯେଉଁରୂପେ ପ୍ରତିଦିନ । ତହିଁରୁ ନୋହିଲେ ଆନ । କେବଳ ତନୁ ଫୁଟିଲା । ଯେଣୁ ସେ ଥିଲା ହେ ।। ତୋଟା ପୁରେ ଯାଇ ହେଲା । ବାହାରୁ ଛାଡ଼ିଣ ଦେଲା । ଦେଖିଣ ରାବଣେଶ୍ୱର । କହେ ଉତ୍ତର ହେ ।। କହ ତୁ କାହୁଁ ଅଇଲୁ । ବାହୁ ଭିତରେ କି ଥିଲୁ । କହ ତୋର ନାମ କିସ । କେବଣ ଦେଶ ଯେ ।। ରାବଣ କହେ ଉତ୍ତର । ଦେବ ମୁଁ ଅସୁରେଶ୍ୱର । ଯୁଦ୍ଧ କରି ତ ଅଇଲି । ଦଣ୍ଡ ପାଇଲି ହେ ।। କପିପତି ଦୟା କର । ଆଜକୁ ଲଙ୍କା ତୁମ୍ଭର । ଯେତେ ଦିନ ଥିବ ପ୍ରାଣ । ତୁମ୍ଭର ଜାଣ ଏ ।। ଅଗ୍ନି ସ୍ଥାପି ସାକ୍ଷୀ କଲା ବାଳିସଙ୍ଗେ ମିତ୍ର ହେଲା । ବୋଲେ ସୁତ ହାର ତୋର । ନୋହେ ମୋହର ଯେ ।। ରାବଣକୁ ଗଉରବ । କଲେକ ତାରବଲ୍ଲଭ । ପୁରକୁ ତାହାକୁ ନେଲେ । ବେଭାର କଲେ ଯେ ।। ଅଇଲେ ତା ମନ୍ତ୍ରୀଗଣେ । ହୋଇଣ ପୁଷ୍ପକଯାନେ । ବସାଇ

ତାକୁ ଆଣିଲେ । ମେଲାଣି ଦେଲେ ହେ ॥ ଶୁଣ ହେ ନୃପଶାର୍ଦ୍ଦୂଳ । ବାନର ଯେତେକ ବଳ । ସେ ବାନର ଭୁମ୍ଭ ବାଣ । ନେଲ ପରାଣ ହେ ॥ ଶୁଣି ରାମ ସହ ହସ । ହୋଇଲେ ପରମତୋଷ । ସେ ରାମ ବେଣି ଚରଣ ॥ ବଶିଶରଣ ହେ । ୨୫ ।

## ୧୨ଶ ଛାନ୍ଦ—ହନୁମାନ ଜନ୍ମ ବୃତ୍ତାନ୍ତ

ରାଗ—ଶ୍ରୀ

ବାନର ପ୍ରସଙ୍ଗ ଶୁଣି, ଆଜ୍ଞା ଦେଲେ ରଘୁକୁଳମଣି, ଆମ୍ଭ ହନୁମନ୍ତ ବାଳୀଙ୍କ ଠାରୁ ବଡ଼ । ସୀତା ଖୋଜିଣ ସେ ଗଲେ, କପିମାନେ ସଙ୍ଗେ ଥିଲେ, କେହି ଯାଇ ନ ପାରିଲେ ସେ ଲଙ୍କାଗଡ଼ । ଜଳନିଧି ଶତେ ଯୋଜନ । କ୍ଷେପାକେ ଡେଇଁଲେ ଏ ମରୁତ ନନ୍ଦନ ॥ ଏକା ହୋଇ ଲଙ୍କେ ପଶି, ଅସୁର ବଳ ବିନାଶି, ଅକ୍ଷୟକୁମାରକୁ ତାହାର ମାଇଲେ । ନାଗପାଶରେ ରାବଣ, ପୁଣ, ତହୁଁ ଖସିଣ ତାହାର ଲଙ୍କା ଦହିଲେ । ସୀତା ଠାବ କରି ଅଇଲେ । ପୁଣି ଶତେକ ଯୋଜନ ସିନ୍ଧୁ ଡେଇଁଲେ ॥ ସୁଗ୍ରୀଠାରେ ସ୍ନେହ ଯେତେ; ଆମ୍ଭେ ତା କହିବା କେତେ, ବାଳିକି ମାରି ସୁଗ୍ରୀବଙ୍କୁ ଦେଅନ୍ତେ ରାଜ୍ୟ । କଳି ନୋହେ ହନୁବଳ ଯେସନେ ଜଳଧିଜଳ, ମହା ବଳବନ୍ତ ଏ ମରୁତଆତ୍ମଜ । ଏହାଙ୍କର ଯେତେ ପ୍ରାକର୍ମ । ଆପଣେ ନ ଜାଣି ସିନା ହୋଇଲେ ଭ୍ରମ ॥ ଆମ୍ଭଠାରେ ଅନୁରାଗ, କରିଣ ପବନ ବେଗ, ଔଷଧି ନିମିତ୍ତ କ୍ଷୀରସିନ୍ଧୁକୁ ଗଲେ । ଗିରି ଉପାଡ଼ି ଆଣିଲେ, ଭିତରେ ପ୍ରବେଶ ହେଲେ, ବହୁ ଅଲୌକିକ କର୍ମମାନ ତ କଲେ । ଏହାଙ୍କର ଜନ୍ମ ଚରିତ । କହ ଆମ୍ଭ ଆଗେ ମୁନିବର ଭରିତ ॥ ଶୁଣି କହେ ମୁନିବର, ଶୁଣ ଦେବ ରଘୁବୀର କେଶରୀଙ୍କ ବନିତା ଅଟନ୍ତି ଅଞ୍ଜନା । ଋତୁମତୀ ସ୍ନାନ କରି, ଉଭା ହୋଇଥିଲେ ଥିରି, ଦେଖିଲେ ମରୁତ ଦେବ ଦିବ୍ୟ. ଅଞ୍ଜନା । ରମିଲେ ସେ ଦିବ୍ୟ ସୁନ୍ଦରୀ । ମରୁତ ସକାଶୁଁ ଗର୍ଭ ହେଲେ ସେ ନାରୀ ଜନ୍ମ କରିଣ ଏ ବାଳ, ମାତା ଖୋଜି ଗଲେ ଜଳ, ହନୁ ଗୁହିଁଲେ ଉଦୟ ହୋଏ ଅରୁଣ । ଫଳ ପ୍ରାୟେକ ଦେଖିଲେ, ଆକାଶମାର୍ଗେ ଖେପିଲେ, ଅନଳ ସଲିଳ ସିଞ୍ଚୁଥିଲେ ଆପଣ । ସୂର୍ଯ୍ୟରଥ ପରେ ବସିଲେ । ହିତକରି ଜାଣିଣ ବଧନ ନ କଲେ ॥ ରାହୁ ଥିଲା ତାଙ୍କ ପାଶ, କରନ୍ତା ଉଦୟ ଗ୍ରାସ ପଳାଇ ଯାଇଣ ସେ ଶକ୍ରକୁ କହିଲା । ଛଡ଼ାଇଣ ମୋର ଗ୍ରାସ, ଆଉ, ରହୁଏ ତା ପାଶ, ଉଦୟ ଦେଖିଣ ସେ ସୂର୍ଯ୍ୟଙ୍କୁ ଧଇଲା । ଆହେ ଦେବ ବିଗ୍ରହ କର । ତୁମ୍ଭେ ସିନା ଦେଇଥିଲ ମୋତେ ଆହାର ॥ ଶୁଣି ଶକ୍ର କୋପ କରି

ଅନିରବିଚ ଆରେଷ୍ଣ, ରହୁ ଆଗେ ଆସନ୍ତେଣ ପଛେ ଅଇଲେ । ଦେଖି ଗେଡ଼ାଇଣ ହନୁ ପଳାଇ ସିଂହିକାସୂନୁ, ବାସବର ପୃଷ୍ଠରେ ଶରଣ ପଶିଲେ । ଏହା ଦେଖି ସେ ପୁରନ୍ଦର । ବଜ୍ର ବୁଲାଇ ମାଇଲେ ହନୁ ହୃଦର ॥ ପଡ଼ିଲା ଏ ହନୁବୀର, ଉଦୟପର୍ବତ ପର, ଦେଖିଣ ପବନ ବହୁ କୁପିତ ହେଲା । ନିରୋଧ କଲା ଜଗତ, ରୁଦ୍ଧ ହୋଇଲେ ସମସ୍ତ, ଚଉଦ ଲୋକଙ୍କୁ ବହୁ ବିପତ୍ତି ଦେଲା । ସର୍ବଦେବ ଏକତ୍ର ହେଲେ । ପିତାମହ ପାରୁଶରେ ଗୁହାରି କଲେ । ବୋଲନ୍ତି କମଳାସନ ଶୁଣ ହେ ପାକଶାସନ ରହୁ ବୋଲେ ମରୁତପୁତ୍ରକୁ ମାଇଲେ । ଏତେ ବୋଲି ପଦ୍ମଯୋନି, ସକଳ ଦେବଙ୍କୁ ଘେନି, ମରୁତ ସନ୍ନିଧିକି ଯେ ବେଗେ ଅଇଲେ । ଅଙ୍ଗେ ଘେନିଛନ୍ତି ବାଳୁତ । ମହା ଚିନ୍ତା କରି ବସିଛନ୍ତି ମରୁତ ॥ ପିତାମହ ଦେଖି ବାତ, ପୁତ୍ରକୁ ଘେନି ତ୍ୱରିତ, ଚରଣେ ପଡ଼ି ବୋଇଲେ ମଲା ଏ ବାଳ ॥ ଛୁଅନ୍ତେ ସେ ପିତାମହ, ହୀଧ ଚେତିଲାକ ମୋହ, ବହିଲା ସମସ୍ତ ପ୍ରାଣୀଙ୍କର ଅନିଳ । ଧାତା କହେ ସର୍ବ ଦେବଙ୍କୁ । ଜଣାଜଣକରେ ବରଦିଅ ଏହାଙ୍କୁ । ଶଚୀପତି ଦେଲେବର, ବୋଇଲେ ବଜ୍ରଶରୀର ହୋଇବୁ ଆମ୍ଭର ବଜ୍ରେ ନୋହିବୁ ନାଶ । ନାମ ତୋର ହନୁମନ୍ତ, ଆଜହୁଁ ହେବ ବିଦିତ, ସବୁଠାରେ ସବୁକାଳେ ପାଇବୁ ଯଶ । ଏହା ଶୁଣି ବୋଇଲେ ଭାନୁ । ଏ ଆମ୍ଭର ତେଜ ବହିଥିବ ହେ ହନୁ ॥ ବରୁଣ ଦେଲେକ ବର ବୋଇଲେ ଆମ୍ଭ ଜଳର, ନ ବୁଡ଼ିବୁ ନ ମରିବୁ ଆମ୍ଭର ପାଶେ । ଯମ ବୋଇଲେ ଅମର, ହେବ ମରୁତ କୁମର, ବଧ ନୋହିବ ଆମ୍ଭ କାଳଦଣ୍ଡ ପାଶେ । ବୈଶ୍ୱାନର ଏ ବର ଦେଲେ । ଆମ୍ଭ ତେଜରେ ଦହ୍ୟ ନୋହିବୁ ବୋଇଲେ ॥ କୁବେର ଦେଲେକ ବର, ବୋଇଲେ ହେ କପିବୀର, ଯେଉଁରୂପ ଚିନ୍ତିବୁ ସେ ରୂପ ହୋଇବୁ । ମରୁତ ଦେଲେକ ବର, ବୋଇଲେ ମୋର କୁମର, ମୋହରି ପ୍ରାୟକ ପରାକ୍ରମ ବହିବୁ । ବିରଞ୍ଚିଦେବ ବର ଦେଲେ । ଆମ୍ଭ ବ୍ରହ୍ମଅସ୍ତ୍ରେ ନ ମରିବ ବୋଇଲେ ॥ ପବନ ଘେନି ନନ୍ଦନ, ଅଇଲେ ତାଙ୍କ ସଦନ, ପୁତ୍ର ଦେଇ ଅଞ୍ଜନାକୁ ସବୁ କହିଲେ । ଆପଣା ସ୍ଥାନେ ମରୁତ, ଗମନ କଲେ ତ୍ୱରିତ, ଦିନକୁ ଦିନ ହନୁ ତେଜୋବନ୍ତ ହେଲେ । ଅଙ୍ଗେ ହୋଇଲା ବହୁ ବଳ । ଋଷି କୁଟୀମାନ ଭାଙ୍ଗି କଲେକ ଗୋଳ ॥ ପୁଲସ୍ତି ଯେ ଶୀଘ୍ର କୋପ, କରିଣ ଦେଲେକ ଶାପ, ବୋଇଲେ ତୋହର ବଳ ନ ଜାଣ ତୁହି । ଦେବକାର୍ଯ୍ୟ ଯେବେ ହେବ, ପ୍ରାକର୍ମ ତୋହର ହେବ, ତେତେକାଳ ଯାଏ ତୁହି ହୋଇବୁ ମୋହି । ତେଣୁ ହନୁ ବାଳ ବୟସରେ । ବଳ ନ ଜାଣି ଲୁଚିଲେ ସୁଗ୍ରୀ ସଙ୍ଗରେ ॥ ହନୁର ଶୁଣିଣ

ଯଶ, ରାଘବ ହୋଇଲେ ତୋଷ, ଶୁଣିଲେ ନର, ରାକ୍ଷସ ଋକ୍ଷ ବାନର । ସାଧୁ ସାଧୁ ସର୍ବେ କଲେ, ମାରୁତିଙ୍କ ପ୍ରଶଂସିଲେ, ଶୁଣି ସନ୍ତୋଷ ହେଲେ ଅଞ୍ଜନାକୁମର । ଶ୍ରୀରାମଙ୍କ ପାଦକମଳ । ଧ୍ୟାନ କରି ମତ୍ତ ଅହର୍ନିଶି ଭ୍ରମର ।



## ୧୩୮ଶ ଛାନ୍ଦ—ସୁଗ୍ରୀ ବିଭୀଷଣାଦି ବିଦାୟ

ରାଗ—ମୁଖାରୀ

କୁମ୍ଭଋଷି ସୂତ କଥା ଶେଷ । ଶୁଣି ସମସ୍ତେ ହେଲେ ହରଷ । ରାମଚରିତ ଅମୃତ ରସ । ଶୁଣି ପଶୁହେଁ ହୋଇବେ ବଶ ॥ ରାମ ଋଷିଙ୍କୁ ମେଲାଣି ଦେଲେ । ଯେଝା ମଠକୁ ସେମାନେ ଗଲେ । ମାତୁଳଗଣେ ମେଲାଣି ଦେଲେ । ଭ୍ରାତାମାନେ ତାଙ୍କ ସଙ୍ଗେ ଗଲେ ॥ ରାଜାମାନେ ମେଲାଣି ହୋଇଣ । ଯେଝା ଦେଶକୁ କଲେ ଗମନ । ପାଇ ରଥଗଜ ଅଶ୍ୱଗଣ । ହୃଷ୍ଟ ହୋଇଲେ ସେ ଜଣେ ଜଣ ॥ ଭ୍ରାତାମାନେ ଅଜୀଧରେ ଥିଲେ । କଣ୍ଟୁଦନେ ତହୁଁ ବାହୁଡ଼ିଲେ । ବହୁ ଦ୍ରବ୍ୟ ଅଶ୍ୱତ ଆଣିଲେ । ଆନନ୍ଦେ ଜଣ ଜଣକେ ଦେଲେ ॥ ସ୍ୱଦେଶେ ଗଲେ ଯେତେ ନରେଶ ପଠାଇ ଦେଲେ ରତ୍ନକୋଷ । ରାମ ଦେଖିଣ ହେଲେ ହରଷ । ରଖାଇଲେ ଭଣ୍ଡାରେ ସର୍ବସ୍ୱ ॥ କଣ୍ଟୁଦନେ ସେ ପୁଷ୍ପବିମାନ । ବାହୁଡ଼ିଲା ରାମ ସନ୍ନିଧାନ । କର ଯୋଡ଼ିଣ କହେ ବଚନ । ଦେବ ଗଲି କୁବେର ଭୁବନ ॥ ମୋତେ ଅଙ୍ଗୀକାର ସେ ନ କଲେ । ବାହୁଡାଇଣ ତୁମ୍ଭଙ୍କୁ ଦେଲେ । ଜାଣି ନେଲେକ ତୋତେ ଶ୍ରୀରାମ । ମୋର ରଖିବାର ନୋହେ ଧର୍ମ ॥ ଶୁଣି ବୋଲନ୍ତି ରଘୁନନ୍ଦନ । ଯାଅ ଯାଅ ଶୂନ୍ୟଭୁବନ । ଆମ୍ଭେ ମାନସ କଲେ ଆସିବ । ଏତେ ବୋଲି ପୂଜିଲେ ରାଘବ ॥ ରାମ ଆଜ୍ଞା ପାଇ ଯାନ ଗଲେ । ଏହା ଶୁଣି ଭରତ ଜଣାଇଲେ । ତୁମ୍ଭେ ରାଜା ହେବାର ରାଘବ । ଦେଖୁଅଛୁ ଅତି ଅସମ୍ଭବ ॥ ଯାନ ପ୍ରତ୍ୟକ୍ଷେ କହିଲା କଥା । ବୃଦ୍ଧମାନେ ହେଲେ ସାମରଥା । ଜାତ ହେଲେ ଅନେକକୁମର । ଅକାଳମୃତ୍ୟୁ ନୋହେ କାହାର ॥ ଶଙ୍କ ପାଳନ୍ତି ଯେ ଯାହା କାଳେ । କେହି ନ ଦେଖନ୍ତି ତାଙ୍କୁ ବେଳେ । ଉପୁଜିଲେ ଜନ୍ତୁ ଶସ୍ୟଫଳେ । ମନ୍ଦ ଗନ୍ଧ ଶୀତଳ ଅନଳେ ॥ ପୃଥ୍ୱୀ ହେଲେ ବହୁ ଶସ୍ୟଦାୟୀ । ବହୁ କ୍ଷୀରବର୍ଷି ଧେନୁ ହୋଇ । ରୋଗ ସନ୍ତାପ ତେଜିଲେ ଜନେ । ଦୟାଧର୍ମ ସବୁଙ୍କର ମନେ ॥ ଶୁଣି ଶ୍ରୀରାମ ହେଲେ ପ୍ରମୋଦ । ଇନ୍ଦୀବର ସେ ଯେହ୍ନେ କୁମୁଦ । ଭୋଗ କଲେ ବିପୁଳ ସମ୍ପଦ । ପାଶୋରିଲେ ଗତିର ବିପଦ ॥ ସୁଗ୍ରୀ ବିଭୀଷଣ ସ୍ନେହବଶେ ।

ଅଯୋଧ୍ୟାରେ ସେ ରହିଲେ ମାସେ । ତଦନ୍ତରେ ମାଗିଲେ ମେଲାଣି । ରାମ ସ୍ୱୀକାର କଲେ ଜାଣି ॥ ସୁଗ୍ରୀବଙ୍କୁ ବସାଇ ଗ୍ରୁମୁରେ । ହନୁ ଅଙ୍ଗଦ ବେନି ପାଶରେ ॥ ମିତ୍ର ପୁତ୍ର ତୁମ୍ଭର ଅଙ୍ଗଦ । ଏହା ଠାରେ ନ କରିବ ଭେଦ ॥ ହନୁ-ବୀର ତୁମ୍ଭେ ମନ୍ତ୍ରିରାଜ । ଏହା ବିଚୂରେ କରିବ କାର୍ଯ୍ୟ । ଏତେ କହି କର ଦେଲେ ହାର । ଆଲିଙ୍ଗନ କଲେ ରଘୁବୀର ॥ କଣ୍ଠୁ କାଢ଼ିଣ ବେଢ଼ୂର୍ଯ୍ୟମାଳା । ପୁଣି ଦେଲେ ସେ ଅଙ୍ଗଦ ଗଳା । ତାଙ୍କୁ ସୁଗ୍ରୀବେ ସମରପିଲେ । ବେନିଭୁଜେ ଆଲିଙ୍ଗନ କଲେ ॥ ପୁଣ ହନୁକୁ କଲେକ କୋଳ । ଆଉଁ ମାନେ ମଣ୍ଡିଲେ ତା ଗଳ । ଏହିରୂପେ ସେନାପତିକୁଳ । ସ୍ନେହ କଲେ କଉଶଲ୍ୟାବାଳ ॥ ମେଲାଣି ହେଲେ କିଷ୍କିନ୍ଧ୍ୟାପୁର । ରାଜା ସଙ୍ଗତରେ ସବୁ ବୀର । ଏହିକାଳେ ବିଭୀଷଣ ବୀର । ଜଣାଇଲେ ଯୋଡ଼ି ବେନିକର ॥ ଆଜ୍ଞା ଦେଲେ ଯିବ ଲଙ୍କାପୁର । ଶୁଣି ଦରହାସ ରଘୁବୀର । ନିଜ ଉରୁ କାଢ଼ି ହାରବର । ଦେଲେ ବିଭୀଷଣଙ୍କ ଗ୍ରୀବାର ॥ ବେନି ଭୁଜେ ଆଲିଙ୍ଗନ କଲେ । ରାଜନୀତି ତାଙ୍କୁ ଶିଖାଇଲେ । ଲଙ୍କପତି ମେଲାଣି ହୋଇଲେ । ବସି କୋଳେ ଲଙ୍କା ପ୍ରତି ଗଲେ । ୨୧ ।

—×—

## ୧୪ଶ ଛାନ୍ଦ—ସୀତାଙ୍କ ବିହାର

ରାଗ ଆହାରୀ

ଦିନ ଅନ୍ତରେ । କଲେ ହୃଷ୍ଟ ମନରେ । ରାମ ସୀତା ବିହାର ନିଶି ନିରନ୍ତରେ ॥ ରାମ ରାଜନ । ଚନ୍ଦ୍ରଶାଳା ଭୁବନ । ପଲ୍ୟଙ୍କ ଅଙ୍କେ ବସାଇ ରାମାରତନ ॥ ରମ୍ଭାଜଘନା ॥ ହୋଇ ରଞ୍ଜିତମନା । ଦୃଢ଼େ ଆଲିଙ୍ଗନେ ମିଶି ବପୁ-ସ୍ତନା । ବର ତରୁଣୀ । ଶୋଭା ଦିଶେ କି ଜାଣି । ହେମ ସୂତ୍ରେ ରହିଲ କି ମର୍କତମଣି ॥ ସେ ବେନି ଜନେ । ଆନନ୍ଦ ନିଧୁବନେ । କାମଶାସ୍ତ୍ର ଆଚରନ୍ତି ଚତୁରେ ମନେ ॥ ଫିଟିଲା ବେଣୀ । ରସେ ସୁମନାଶ୍ରେଣୀ । ହେମ-କୁମ୍ଭୁ ବାହାର କି କଳା ନାଗୁଣୀ ॥ ଉରଜୁ ହାର । ଫିଟି ପଡ଼େ ଭୂମିର । ଏହା ଦେଖିଣ ଖସିଲା କଟି ଅମ୍ବର ॥ କଟୀତ କ୍ଷୀଣ । କସ୍ତ୍ର ଅଟଇ ଝୀନ । ବିପୁଳ କୁଚୁ ହୋଉଛି ହାର ପତନ ॥ ଏହି ବିଚାର । ମନେ ଧରିଲା ବର । ନିଜେ ସଙ୍ଗ କରିଣ ଚଢ଼ିବା ଭୂମିର ॥ ତାଟଙ୍କ ଚଳେ । ସ୍ୱେଦ ଅଙ୍ଗରୁ ଗଳେ । କେବଳ ନୂପୁର ଧ୍ୱନି କରେ ଆକୁଳେ ॥ ବେଶ ବିଭଙ୍ଗ । ରାମର ଲୁବଧ ଅଙ୍ଗ । ପୂର୍ଣ୍ଣଶଶୀ ହୋଉଛି କି ରାହୁ ସଂଯୋଗ ॥ ବାହୁବନ୍ଧନ । ପ୍ରତି ଚୁମ୍ବନ ଦାନ । କାମ ଦେଖାଉଛି କି ତା ମୁକତି ସ୍ଥାନ ॥ ଚନ୍ଦ୍ରସରୋଜ ।

ପଯୁର ତେଜ ଆଜ । ଏକମୁଖ କଲ ବାମା ମକରଧ୍ୱଜ । କଟି ରସନା । ହୋଇଥିଲ ବମନା । ବପରୀତେ ଧ୍ୱନି କଲ ହୋଇ ସୁମନା । ମୁଞ୍ଚନ୍ତେ ରେତ । ନିଜ ବାସ ସଙ୍ଗତ । ବୋଲେ ବଶି ଆଚ୍ଛାଦିଲ ଆସି ଭରତ ॥

—×—

## ୧୪ଶ ଛାନ୍ଦ

ରାଗ—ଚକ୍ରକେଳି

ଏକଦିନେ ରାମ ମନେ ପାଞ୍ଚିଲେ । ଦିବ୍ୟ ବନକା ଗୋଟିଏ ରଚିଲେ ॥ ନାନା ତରୁମାନଙ୍କରେ ଶୋଭନ । ହେମ ତଡ଼ଗମାନ ବିତପନ । କେଉଁ ତରୁ ଦିଶଇ ହେମବର୍ଣ୍ଣ । କେହ୍ଵ ଦିଶଇ ମାଣିକ୍ୟ ସମାନ ॥ କେଉଁ ତରୁ ଦିଶଇ ମରକତ । କେଉଁ ତରୁ କାନ୍ତି ଦିଶେ ଅସିତ । କେହ୍ଵ ଶୁକଳ ନୀଳ ନାନା ରଙ୍ଗ । ତହିଁ କ୍ରୀଡ଼ନ୍ତି ସମସ୍ତ ବିହଙ୍ଗ ॥ ଆମ୍ବ ପଣସେ ପୁନ୍ନାଗ କେଉଟ । ବେଲ ବରୁଣ କପିତଥ ପ୍ରକଟ ॥ ରମ୍ଭା ନାରିକେଳ ତାଳ ଖର୍ଜ୍ଜୁରୀ । ନରକୋଳି ଜମ୍ବୁ ନିମ୍ବ ବଦରୀ ॥ ବୈଭ ଜମ୍ବୀର ଲେମ୍ବୁ କମଳା । କରମଙ୍ଗା ଗୁଆକୋଳି ଅଁଳା ॥ ଦେବଦାରୁ ଗରୁ ଦିବ୍ୟ ଅଗର । ଦିବ୍ୟ ଚନ୍ଦନ କର୍ପୂର ତଗର ॥ ଅଳାଇଚ ଲବଙ୍ଗ । ଲତା ମାଧବୀ ପଲ୍ଲବ ସୁରଙ୍ଗ ॥ ଜାତିଫଳ ତରୁକୁଳ ମରୀଚ । ଦିଶୁଛନ୍ତି ତରୁମାନେ ସୁସଞ୍ଚ ॥ ଲୁଣିଅନା କଦମ୍ବ ନାଗେଶ୍ୱର । ଚମ୍ପା ବକୁଳ କେତକୀ ମନ୍ଦାର ॥ ଶ୍ୱେତ ଲୋହିତ କଞ୍ଚନ ଅଶୋକ । କୁନ୍ଦମୁକୁନ୍ଦ ପାଟଳି କନକ ॥ ରଙ୍ଗ ଅଁଳା କସ୍ତୁରୀ ପଟୋଳ । ଜାତି ଯୁଥି ମାଳତୀ ମଲ୍ଲୀକୁଳ । କାଠବାଣ ନୀଳବାଣ ଅଁଳା । କୁରୁବେଲ ନଆଳୀ ସୁପିଯୂଳା ॥ କଆ କୁନ୍ଦବଲ୍ଲୀ କାଠରଙ୍ଗିଣୀ । ବେନ ସେବତୀ ସୁବଧୁଲି ଶ୍ରେଣୀ ॥ କର୍ଣ୍ଣିକାର କୁଟଜ ସୁତରଟ । ଦିବ୍ୟ ଦୟଣା ମରୁଆ ପ୍ରକଟ ॥ ପାରିଜାତକ କୁସୁମ ସ୍ୱର୍ଗର । ରାମ ରୋପିଣ ଅଛନ୍ତି ଅପାର ॥ ପୁଷ୍ପବନରେ ମଧୁକରବୃନ୍ଦ । ଧ୍ୱନି କରନ୍ତି ପିଇ ମକରନ୍ଦ ॥ ଶୁକ ପିକ ସାରିକାର ସୁସ୍ୱନ । ଶୁଣି ଆନନ୍ଦ ହୁଏ ରାମ ମନ ॥ ତହିଁ ମଧ୍ୟରେ ଦିବ୍ୟ ସରୋବର । ଚଉପାଶେ ପାବଚ୍ଛ ସ୍ଫଟିକର ॥ ତହିଁ କ୍ରୀଡ଼ା କରେ ନୃତ୍ୟ ବିହଙ୍ଗ । ନୀଳ ଉତ୍ପଳ କୋକନଦ ରଙ୍ଗ ॥ ଫୁଟିଛନ୍ତି କମଳ ପୁଣ୍ଡରୀକ । ନୀଳକୁମୁଦ କମଳ ଅନେକ ॥ ଦିବ୍ୟ ଚନ୍ଦନକାଷ୍ଠ ଯୂପ ଶୋଭା । ତହିଁ ମଣ୍ଡପ କାମରଥ ଅବା ॥ ଜଳ ମଧ୍ୟେ ଜଳଜନ୍ତୁ ଅନେକ । ଦିଶେ ଦିବ୍ୟରାଗ ପୁଷ୍ପସ୍ୱରୂପ ॥ ହେମକାଳଶେ ସୁକେତ ପତାକା । କି ବାସବର ପୁରର ଅଳକା ॥ ସରୋବର ବେଢ଼ିଣ ତରୁ ଶୋଭା । ଫଳ କୁସୁମେ ମନ କରେ ଲୋଭ ॥ କେଉଁଠାବରେ ସୁବର୍ଣ୍ଣ ବେଦିକା । କେଉଁ

ବେଦିକା ସ୍ଫଟିକରେ ଏକା ॥ କେଉଁ ବେଦିକା ମରକତ ଶିଳା । କେଉଁ ବେଦୀ କେବଳ ମାଣିକ ମାଳା ॥ କେଉଁ ବେଦିକା ମାଣିକ୍ୟ ବିହିତ । କେଉଁ ବେଦିକା ଅଟଇ ରଜତ ॥ ରତ୍ନପୁରମାନ ଠାବ ଠାବରେ । ଶୋଭା ଦିଶନ୍ତି ଆରାମ ଭିତରେ ॥ ତାକୁ ବେଢ଼ିଣ ପାଷାଣ ପ୍ରାକାର । ବହୁ କାଙ୍ଗୁଲିମାନଙ୍କେ ସୁନ୍ଦର । ଦିବ୍ୟଚୂନରେ ଭୂମି ଦିଶେ ଶୋଭା ॥ କିବା ଚନ୍ଦ୍ରକିରଣର ଏ ପ୍ରଭା । ସ୍ୱର୍ଗ ଅଇଲି କି ନନ୍ଦନ ବନ । ଯେହ୍ନମନ୍ତ ବନିକା ଶୋଭାବନ ॥ କୁବେରଙ୍କ ଚଇତ୍ର ରଥ ଅବା । ଚଉପାଖକୁ ଦିଶୁଅଛି ଶୋଭା ॥ ଷଡ଼ଋତୁ ଯେଉଁଣ ତହିଁ କାମ । କରିଅଛନ୍ତି ତୋଟାରେ ବିଶ୍ରାମ ॥ ତହିଁ ଜାନକୀ ସଙ୍ଗେ ରଘୁବୀର । ନାନା-ରଙ୍ଗରେ କରନ୍ତି ବିହାର ॥ ନିତ୍ୟ କରନ୍ତି ରାମ ରାଜନୀତି । ସୀତା ସଙ୍ଗେ ମଧ୍ୟାହ୍ନେ ବିହରନ୍ତି । ସଭା କରନ୍ତି ପ୍ରହରେକ ନିତି । ଏହିରୂପେ ବଞ୍ଚିଲେ ଦିବା ରାତି ॥ ପ୍ରଜା ପାଳନ୍ତି ପୁତ୍ରର ସମାନ । ଧର୍ମ ବ୍ୟତୀତ ନ ଜାଣନ୍ତି ଆନ ॥ ସୀତା ସୁବେଶ ହୋନ୍ତି ଦିନ ଶେଷ । ନିଶି ରାମ ସନ୍ନିଧିରେ ପ୍ରବେଶ ॥ ଯେହ୍ନେ ଶଚୀ ଖଟନ୍ତି ଶକ୍ର ପାଶେ । ସେହିରୂପେ ରାମ ସୀତା ପାରୁଶେ ॥ ଏହିମତେ ଦଶସହସ୍ର ବରଷ । ସୀତା ସଙ୍ଗରେ ରଜନୀ ଦିବସ ॥ ତଦନ୍ତରେ ଜାନକୀ ଗର୍ଭବାସ । ରାମ ଦେଖିଣ ପରମ ସନ୍ତୋଷ ॥ ହସି ସୀତାଙ୍କୁ କହନ୍ତି ବଚନ । କେଉଁ କଥକୁ ହେଉଅଛି ମନ ॥ ତାହା ଦେବି ଆଣି ନାଶିରଧନ । ଶୁଣି ବୋଲେ କୁହ ସତ୍ୟ ବଚନ ॥

---

## ୧୭୩ ଛାନ୍ଦ—ସୀତା ବନବାସ

ରାଗ—ଆଷାଢ଼ ଶୁକ୍ଳବାଣୀ

ରାଘବ ଅଙ୍କେ ବସିଣ ସୁନ୍ଦରୀ । କାନ୍ତକୁ କହନ୍ତି ଯେ ସ୍ନେହ କରି । ତପୋବନ ଦେଖିବାକୁ ମୋ ମନ । ଋଷିପତ୍ନୀଙ୍କି କରିବି ଦର୍ଶନ । ଫଳ ମୂଳ ଦେବି । ବସନ ଭୂଷଣ ଦେଇ ଆସିବି ॥ ଶୁଣି ରାଘବ ହୋଇ ହସ ହସ । ଆଜ୍ଞାଦେଲେ ଯିବ ତାଙ୍କର ପାଶ । ଋଷିମାନଙ୍କ ମଠ ଦେଖାଇବା । ତୁମ୍ଭର ମନୋରଥ ପୂରାଇବା । ତୋଷିବାକୁ ମନ । ବାହାରେ ମଣ୍ଡପେ କଲେ ଆସ୍ଥାନ ॥ ଦିବ୍ୟ ମଣ୍ଡପ ରତ୍ନବେଦୀ ପର । ତହିଁ ବିଜୟ କଲେ ରଘୁବୀର । ଏହି କାଳରେ ବୟସ୍ୟମାନେ । ପ୍ରବେଶ ହେଲେ ରାମ ସନ୍ନିଧାନେ । ସେମାନଙ୍କୁ ଦେଖି । ତାଙ୍କୁ ଦେଖି ପରିଜନ ଉପେକ୍ଷି ॥ ଶ୍ରୀରାମ ତାଙ୍କୁ ପରିହାସ କଲେ । ଶୁଣି ସେମାନେ ପ୍ରତିଭାଷ ଦେଲେ ॥

ଉପୁଜନ୍ତି ତହିଁ ବହୁତ ହାସ । ଜାଣନ୍ତି ସେମାନେ କଥାର ରସ । ସେମାନଙ୍କ ସଙ୍ଗେ । କଉତୁକ କଥା କହନ୍ତି ରଙ୍ଗେ ॥ ରାମ ବୋଲନ୍ତି ଶୁଣ ଦ୍ୱିଜମାନେ । ଆମ୍ଭଙ୍କୁ କି ବୋଲନ୍ତି ପୁରଜନେ । ନିନ୍ଦା ସ୍ତୁତି ଆମ୍ଭ ତୁମ୍ଭମୁରେ କହ । ଯଥାର୍ଥ କଥାରେ ଭୟ ନ ପାଅ । ଶୁଣିଲେ କୀର୍ତ୍ତି । ଅକୀର୍ତ୍ତିରେ ନ ବଳାଇବା ମତି ॥ ବୋଲନ୍ତି ହେ ଦେବ ତୁମ୍ଭ ଚାରିତ । ଚନ୍ଦ୍ରକର ପ୍ରାୟେ ମଣ୍ଡିଲା କ୍ଷିତି । ସ୍ୱୟମ୍ଭୁବନ ସନ୍ତାପ ଖଣ୍ଡିଲ । ଜାନକୀଛଳେ ରାବଣ ଦଣ୍ଡିଲ । ସିନ୍ଧୁ ବନ୍ଧାଇଲେ । ଅଲୌକିକ କର୍ମମାନ ତ କଲ ॥ ପର୍ଶୁରାମଙ୍କୁ ଦେବ କଲ ଜୟ । ସେହିକୁ ଦୁଷ୍ଟ ହୋଇଲେ ସଭୟ । ଯେଉଁ ଲଙ୍କାଗଡ଼ ଦେବେ ଅଜୟ । ବାନରଙ୍କୁ ଘେନି କଲ ତା ଜୟ ॥ କି ବୋଲିବେ ଜନେ । ପ୍ରଶଂସା କରନ୍ତି ସ୍ୱୟମ୍ଭୁବନେ ॥ ପୁଣି ବୋଲନ୍ତି ଶ୍ରୀରାମ ରାଜନ । ତୁମ୍ଭେମାନେ ଭୟ ନ କର ମନ । ତଥାପି ଆମ୍ଭର କି ଅବଗୁଣ । କାହା ମୁଖରୁ କାହିଁ ଅବା ଶୁଣ । ଶୁଣି ନିବର୍ତ୍ତିବା । ଧର୍ମ କଥାରେ ସିନା ପ୍ରବର୍ତ୍ତିବା ॥ ଭଦ୍ରମୁଖ ନାମେ ଏକ ବ୍ରାହ୍ମଣ । କର ଯୋଡ଼ିଣ ବୋଲେ ଦେବ ଶୁଣ । ସବୁରି ମୁଖରେ ତୁମ୍ଭର କୀର୍ତ୍ତି । ଏକା କଥାଏ ମାତ୍ର ଅପକୀର୍ତ୍ତି । ଶୁଣଇ ମୁଁ ଯାହା । ବଚନେ ଦେବ କହି ନୁହେଁ ତାହା ॥ ରାମ ବୋଲନ୍ତି ହେ ଭୟ ନ କର । ନିର୍ଭୟ ହୋଇ ଜଣାଅ ତୁମ୍ଭର । ଏହା ଶୁଣି ଦ୍ୱିଜ କହେ ଉତ୍ତର । ଶୁଣ ଦେବ ତୁମ୍ଭର ନଗର ନର । ଏମନ୍ତ ବୋଲନ୍ତି । ଏଡ଼େ ଅନୀତି କଲେ ରଘୁପତି ॥ ରାବଣ ଯାହାକୁ ହରାଇ ନେଲା । ବରଷେ ଯାଏ ଘରେ ରଖିଥିଲା । ତାହାକୁ ଆଣି କଲେ ପ୍ରିୟବତୀ । ନ ମିଳନ୍ତା କିବା ଅନ୍ୟ ଯୁବତୀ । ଏମନ୍ତ ବଚନ । କହନ୍ତି ଦେବ ଅଯୋଧ୍ୟାର ଜନ ॥ ଯେଉଁ ନୃପତି ଯେଉଁ ଧର୍ମ କରେ । ସେ ଦେଶ ଜନେ ତାର ଅନୁସାରେ । ଆମ୍ଭ ଭାରଯା ଯେବେ ନେବେ ଆନ । ତାହାଙ୍କୁ ତେବେ ଆଣିବ ସଦନ । ଯା କଲେ ନରେଶ । ଆମ୍ଭେମାନେ କଲେ ହେବ କି ଦୋଷ ॥ ଏହା ଶୁଣି ଜଣାଇଲି ତୁମ୍ଭର । ମୋ ଦୋଷ ନା ଧର କୋଦଣ୍ଡଧର । ଶୁଣି ଶ୍ରୀରାମ ଅରୁଣ ନୟନ । ଭୂମିକି ହେ କଲେ ଅବଲୋକନ । ତେଜି ଖରଶ୍ୱାସ । ମହାକ୍ରୋଧ ମନେ ହେଲା ପ୍ରବେଶ । ବ୍ରାହ୍ମଣମାନଙ୍କୁ ଦେଲେ ମେଲାଣି । ସେମାନଙ୍କ କଥା ମନରେ ପୁଣି । ଜନ ଅପବାଦ ହୋଇବା ଜାଣି । ବସ୍ତୁ ହୋଇଲେ କୋଦଣ୍ଡ-ପାଣି । ଗୀତ ବଣି ଭଣି । ରାମ ପାଦ ଭବସିନ୍ଧୁ-ତରଣୀ ॥

---

## ୧୬ଶ ଛାନ୍ଦ

ରାଗ—ମଙ୍ଗଳଗୁଜ୍ଜରୀ

ଭଦ୍ରମୁଖଁ ଏସନ ଶୁଣି ରଘୁମଣି । ମହାକ୍ରୋଧ ଜାତ ହୋଇଲା ସେହିକ୍ଷଣି ॥ ହୃଦୟଦେଶ ତାଙ୍କର ହୋଇଲା ଆକୁଳ । ବେନି ନୟନେ ପୂରିଲା ଲୋତକଜଳ ॥ ଆଜ୍ଞା ଦେଲେ ଦ୍ୱାରୀକି ଅଣାଅ ଲକ୍ଷ୍ମଣ । ପେଷିବି ବନକୁ ସୀତା ମୁଁ ତତକ୍ଷଣ ॥ ଆଜ୍ଞା ପାଇ ଦ୍ୱାରୀ ବେଗେ ଚଳିଣ ଗଲା । ଭରତ ଶତ୍ରୁଘ୍ନ ଲକ୍ଷ୍ମଣଙ୍କୁ ଆଣିଲା ॥ ଦ୍ୱାରେ ତାଙ୍କୁ ରଖି ଜଣାଇଲା ଛାମୁରେ । ସେ ଦେବ ଆଣିଲି ଉଭା କରିଛି ଦ୍ୱାରେ ॥ ଆଜ୍ଞାଦେଲେ ବେଗେ ଆମ୍ଭ ଛାମୁକୁ ଆଣ । ଦ୍ୱାରେ କାହିଁ ରଖିଲ ସେ ଆମ୍ଭର ପ୍ରାଣ ॥ ଆଜ୍ଞା ପାଇଣ ଛାମୁରେ କଲେ ପ୍ରବେଶ । ଦର୍ଶନ କରିଣ ଉଭା ହୋଇଲେ ପାଶ ॥ ଦେଖିଲେ ନୃପତି ମୁଖ ଦିଶେ ବିରସ । ଯେସନେ ପୂର୍ଣ୍ଣଚନ୍ଦ୍ର ଦିଶେ ରଜନୀ ଶେଷ ॥ ଲକ୍ଷ୍ମଣଙ୍କୁ ସ୍ୱାମୀ ଆଜ୍ଞାଦେଲେ ରାଜନ । ତୁମ୍ଭେ ସିନା ଜାଣ ଲଙ୍କା ବୃତ୍ତାନ୍ତମାନ ॥ ଯେଉଁରୂପେ ସୀତା ଅଗ୍ନି ପରୀକ୍ଷା ଦେଲେ । ଯେଉଁରୂପେ ଆସି ପିତାମହ କହିଲେ । ଦେଖିଲ ତ ତାତ ଶମ୍ଭୁ ସଙ୍ଗତେ ଆସି । ବୋଇଲେ ଅଟନ୍ତି ବାବୁ ସୀତା ନିର୍ଦ୍ଦୋଷୀ ॥ ତେଣୁ କରି ତାଙ୍କୁ ଆମ୍ଭେ ଗ୍ରହଣ କଲୁଁ । ଏବେ ଜନମୁଖେ ଅପବାଦ ପାଇଲୁ ॥ ଜନ ଅପବାଦ ନାଶ କରେ ସୁକୀର୍ତ୍ତି । ଏଣୁ କରି ତହିଁକି ମୁଁ କରଇ ଭୀତି । ଜନ ଅକୀର୍ତ୍ତିରେ ଅଧୋଗତି ଲଭନ୍ତି । ଜନ ପ୍ରଶଂସିଲେ ସ୍ୱର୍ଗପୁରେ ବସନ୍ତି ॥ ଅପବାଦ ଶୁଣି ଅଣାଇଲୁଁ ତୁମ୍ଭଙ୍କୁ । ଏ କଥାରେ ବଳାଇବ ନାହିଁ ଆମ୍ଭଙ୍କୁ ? ଆମ୍ଭର ଚରଣ ଛୁଇଁ କର ଶପଥ । ଆମ୍ଭ ଆଜ୍ଞା ନ ଭାଙ୍ଗି କରିବ ତୁରିତ ॥ ସୀତାଙ୍କୁ ନେଇଣ ତୁମ୍ଭେ ବନେ ନିବେଶ । ଗଙ୍ଗାତୀରେ ବାଲ୍ମୀକି ଆଶ୍ରମ ପାଶ ॥ ଋଷିକୁଟୀ ଦେଖିବାକୁ ତାଙ୍କର ମନ । କଇତବେ ନେଇ ଆସ ବହନ ॥ ଏମନ୍ତ ଶୁଣିଣ ଭ୍ରାତମାନେ ଆକୁଳ । ସବୁଙ୍କର ନୟନରୁ ଗଳିଲା ଜଳ ॥ ରାମ ଆଜ୍ଞା ଦେଲେ ଲକ୍ଷ୍ମଣଙ୍କୁ ଅନାଇ । ସୀତାଙ୍କୁ ନେଇଣ ଯିବ ରଥେ ବସାଇ ॥ ସୁମନ୍ତ୍ର ସାରଥି ହୋଇ ରଥ ବାହିବ । ନିଶି ଥାଉଁ ଥାଉଁ ତାଙ୍କୁ ନେଇଣ ଯିବ ॥ ଆଜ୍ଞା ପାଇ ଲକ୍ଷ୍ମଣ ସ୍ୱୀକାର କଲେ ॥ ଓଳଗି କରି ମେଲାଣି ରାମସ୍ଥେ ହେଲେ ॥ ଏଥୁ ଅନନ୍ତରେ ନିଶି ହୁଅନ୍ତେ ଶେଷ । ସୁମନ୍ତ୍ର ରଥ ଆଣିଲେ ଲକ୍ଷ୍ମଣ ପାଶ ॥ ଅନ୍ତଃପୁରେ ଲକ୍ଷ୍ମଣ ହୋଇଲେ ପ୍ରବେଶ । ଦରଶନ କଲେ ଯାଇଁ ଜାନକୀ ପାଶ ॥ ଋଷିପତ୍ନୀ ଦେଖିବାକୁ ଶ୍ରଦ୍ଧା ତୁମ୍ଭର । ଆଜ୍ଞା ମୋତେ ଦେଇଛନ୍ତି କୋଦଣ୍ଡଧର ॥ ଶୁଣିଣ ଜାନକୀ ବହୁ ଆନନ୍ଦ ହେଲେ । ଦ୍ରବ୍ୟ ରତ୍ନ ଅଲଙ୍କାର ବସ୍ତ୍ର ନେଲେ ॥ ଋଷି କାମିନୀମାନଙ୍କୁ ଦେବାର ପାଇଁ

ସେମାନେ ଯେବେ ବସିଲେ ରଥରେ ଯାଇଁ ॥ ଲକ୍ଷ୍ମଣ ସବ୍ସତେ ବସିଲେ ମନ୍ତ୍ରୀବର । ପ୍ରବେଶ ହୋଇଲେ ଯାଇଁ ନଦୀର ତୀର ॥ ସୀତା ବୋଲନ୍ତି ଶୁଣ ହେ ଲକ୍ଷ୍ମଣ ବୀର । ଅମଙ୍ଗଳମାନ ତ ହେଉଛି ମୋହର ॥ ଦକ୍ଷିଣ ବାହୁ ଦକ୍ଷିଣ ନେତ୍ର ସ୍ଫୁରଇ । ତନୁ କମ୍ପେ ହୃଦୟ ଆକୁଳ ହୁଅଇ ॥ କହୁ କହୁ ଗଙ୍ଗାତୀରେ ପ୍ରବେଶ ହେଲେ । ସେଠାରୁ ଲକ୍ଷ୍ମଣ ମହାଶୋକୀ ହୋଇଲେ ॥ ଜାନକୀ ବୋଲନ୍ତି ଭ୍ରାତ ପାଦକମଳ । ଦିନେ ନ ଦେଖି ହେଉଛ ଏତେ ବିକଳ ॥ ପ୍ରାଣପତି ଅଟନ୍ତି ମୋ ପ୍ରାଣ ପୁରୁଷ । ମୋହର ହେଉଛି ତୁମ୍ଭ ପ୍ରାୟୁ ବିରସ ॥ ଜାହ୍ନବୀ ସନ୍ନିଧେ ନିତ୍ୟକର୍ମ ସାରିଲେ । ଜାନକୀ ଯେବେ ଲକ୍ଷ୍ମଣ ନାବେ ବସିଲେ ॥ ସୁମନ୍ତ୍ର ରଥ ଯେବଣ କୂଳେ ରହିଲେ । ଲକ୍ଷ୍ମଣ ଋଷି ଆଶ୍ରମ ଦେଖାଇ ଦେଲେ ॥ ନାବୁଁ ଓହ୍ଲାଇଣ ଗଙ୍ଗାତଟରେ ବସି । ସାନୁଜ କାରୁଣ୍ୟ କରୁଛନ୍ତି ବିଶେଷି ॥ ବୋଲନ୍ତି ଏ କାର୍ଯ୍ୟକୁ ପେଷିଲେ ଭୂପାଳ । ଛେଦନ କିମ୍ପା ନ କଲେ ଏ ମୋର ବାଳ ॥ ବୋଲନ୍ତି ଜାନକୀ କିମ୍ପା କହ ଏମାନ । ବାହୁଡ଼ି ଯିବାକୁ ହେଉଅଛି ମୋ ମନ ॥ କେବଳ ମାତ୍ର ରହିବା ଆଜର ଦିନ । ସମସ୍ତ ଋଷିମାନଙ୍କୁ କରି ଦର୍ଶନ ॥ ଶୁଣିଣ ଲକ୍ଷ୍ମଣ ପାଦେ ପଡ଼ି ରହିଲେ । ମୋର ଅପରାଧ ନ ଘେନିବ ବୋଇଲେ ॥ ଜନମୁଖେ ରାମ ତୁମ୍ଭ ଅକୀର୍ତ୍ତି ଶୁଣି । ତେଜିଲେ ଏବେ ତୁମ୍ଭଙ୍କୁ କୋଦଣ୍ଡ ପାଣି ॥ ଶୁଣିଣ ଜାନକୀ ମୂର୍ଚ୍ଛା ଯାଇ ପଡ଼ିଲେ । କେତେହେଁକ ବେଳେ ଚେତା ଜ୍ଞାନ ପାଇଲେ ॥ ବୋଲନ୍ତି ମୋହର ଏତେ ମନ୍ଦ କରମ । ବିଧିତା ଦୁଃଖ ଦେବାକୁ କଲା ଜନମ । ପ୍ରାଣ ଛାଡ଼ନ୍ତି କୁଳକୁ କଳଙ୍କ ହେବ । ପ୍ରାଣପତିଙ୍କି ମୋହର ଦୋଷ ଲଗିବ ॥ ବିଚାରିବେ ଯୁବତୀମାନେ ଯେ ଆମ୍ଭଙ୍କୁ । ପ୍ରାଣନାଥ କି ଦୋଷେ ଛାଡ଼ିଲେ ତୁମ୍ଭଙ୍କୁ ॥ କି ବୋଲିବି ମୋତେ ସେହି ନ ଦିଶେ ବୁଦ୍ଧି । ବିନା ଦୋଷେ ତ୍ୟାଗ କଲେ କରୁଣାନିଧି ॥ ଏମନ୍ତ ବୋଲିଣ ଉଚ୍ଚେ କଲେ ରୋଦନ । ବୋଲେ ବିଶି ଚିନ୍ତା କର ପଦ୍ମଲୋଚନ ॥

—୦—

## ୧୮ଶ ଛାନ୍ଦ—ବାଲ୍ମୀକି ଆଶ୍ରମରେ ସୀତାଙ୍କ ପ୍ରବେଶ

ରାଗ—ମଙ୍ଗଳଗୁର୍ଜ୍ଜରୀ

ସୀତା ଶୋକ ଦେଖି ଲକ୍ଷ୍ମଣ ଶୋକ କଲେ । ଶୋକ ସମ୍ଭାଳି ନ ପାରି ପଡ଼ିଆଇଲେ ॥ ଲକ୍ଷ୍ମଣ ଅଦୃଶ୍ୟଯାଏ ଅନାଇ ଥିଲେ । ମନେ ବିଚାରିଲେ ମୋତେ ନିଷ୍ଠେ ତେଜିଲେ । ଗଙ୍ଗା ପାରି ହୋଇ ରଥେ ବସିଲେ ବୀର । ମହାଶୋକେ ନୟନରୁ ବହଇ ନୀର ॥ ଲକ୍ଷ୍ମଣଙ୍କୁ ନ ଦେଖିଣ ତରୁଣୀବୀର ॥

ନିଜ ଭର୍ତ୍ତା ବିଚ୍ଛେଦରେ ହେଲେ କାତର ॥ ବହୁ ବିଳପନ୍ତେ ଉଚ୍ଚେ ବରତରୁଣୀ । ବାଲ୍ମୀକି ଶିଷ୍ୟମାନେ ଶ୍ରବଣେ ଶୁଣି ॥ ଦେଖିଲେ ଯୁବତୀବର କରେ ରୋଦନ । ଗୁରୁଙ୍କ ସମ୍ମୁଖରେ ଜଣାଇଲେ ବଚନ ॥ ହେ ଦେବ ସ୍ୱର୍ଗୁଁ ଅଇଲା ପ୍ରାୟେକ ଦିଶେ । କେବଣ ନୃପତି ବରବନିତା କି ସେ ॥ ଆମ୍ଭର ମଠ ନିକଟେ ଗଙ୍ଗାର ତଟେ । ରୋଦନ କରୁଛି ଦେଖି ଅଇଲୁଁ ବାଟେ ॥ ଧ୍ୟାନରେ ଜାଣିଲେ ମୁନି ଅଇଲେ ସୀତା । ଦଶରଥଙ୍କ ବଧୂ ଶ୍ରୀରାମ ବନିତା ॥ ଏମନ୍ତ ବିଚାରି ପୂଜାଦ୍ରବ୍ୟମାନ ଘେନି । ବନ ଭିତରେ ପ୍ରବେଶ ହୋଇଲେ ମୁନି ॥ ଋଷିଙ୍କି ଦେଖିଣ ସତୀ ତେଜି କାରୁଣ୍ୟ । ଶିର ଲଗାଇଲେ ତାଙ୍କ ବେନି ଚରଣ ॥ ଋଷି ବୋଲେ ଆମ୍ଭ ପୂଜା ଘେନ ଗୋ ମାତ । ଯୋଗବଳେ ଆମ୍ଭେମାନେ ଜାଣୁ ସମସ୍ତ । ଦଶରଥ-ବଧୂ ତୁମ୍ଭେ ଜନକସୁତା । ଶ୍ରୀରାମଙ୍କ ପାଟରାଣୀ ଅଟ ଗୋ ସୀତା ॥ ଆମ୍ଭ ମଠ ତୁମ୍ଭ ଅନ୍ତଃପୁର ସମାନ । ଏ କଥାକୁ ମାତ ମନେ ନ ଧର ଆନ । ଶୁଣି ଜାନକୀ ବୋଲନ୍ତି କହିଲ ସତ । ମହର୍ଷି ଅଟ ନିଶ୍ଚୟେ ଜନକ ତାତ ॥ ଅର୍ଘ୍ୟ ଦେଇ ବାଲ୍ମୀକି ଆଗ ହୋଇଲେ । ସୁତା ପ୍ରାୟେ ସୀତା ପଛେ ଗମନ କଲେ । ମଠ-ପାଶେ ତପସ୍ୱିନୀମାନଙ୍କ ସ୍ଥାନ । ସେଠାବକୁ ବାଲ୍ମୀକି କଲେ ଗମନ । ତାହାଙ୍କୁ ବୋଇଲେ ଏହି ଜନକସୁତା । ଏହାଙ୍କର ତୁମ୍ଭେମାନେ ହୋଇବ ମାତା ॥ ଏତେ କହି ସେମାନଙ୍କୁ ସମର୍ପି ଦେଲେ । ସେମାନେହେଁ ତାଙ୍କୁ ପୂଜା କରିଣ ନେଲେ ॥ ତପସ୍ୱିନୀ ପ୍ରାୟେ ହେବ ରାମ ବନିତା । କେତେବେଳେ କି ଅବା ନ କରେ ବିଧାତା । ସୁମନ୍ତ୍ର ସଙ୍ଗେ ଲକ୍ଷ୍ମଣ ରଥରେ ବସି । 'ସେବଦନ ନଦୀ-କୂଳରେ ହୋଇଲେ ଆସି ॥ ଲକ୍ଷ୍ମଣ ଶୋକ ଦେଖିଣ ସେ ମନ୍ତ୍ରୀବର । ଗୁଢ଼ କରି କହନ୍ତି ତାହାଙ୍କୁ ଉତ୍ତର ॥ ପୂର୍ବେ ମୁହିଁ ଏ ଚରିତ୍ର ଅଛଇ ଶୁଣି । ତୁମ୍ଭକୁଂହିଁ ତେଜିବେଟି କୋଦଣ୍ଡପାଣି । କାହାକୁହିଁ ନ କହିବ ଗୁପତବାଣୀ । ଦୁର୍ବାସାଙ୍କ ମୁଖରୁ ମୁଁ ଅଛଇ ଶୁଣି ॥ ଏକଦିନେ ଦୁର୍ବାସା ଅଯୋଧ୍ୟା ଅଇଲେ । ତୁମ୍ଭ ତାତ ବହୁ ତାଙ୍କୁ ଭକତି କଲେ ॥ ପଚାରିଲେ ଏ ମୋହର ଚାରିକୁମର ॥ ଏହାଙ୍କର ଯଶ କି ହୋଇବ ମୋହର ॥ ମୁନି ବୋଇଲେ ଶୁଣ ହେ ନୃପ-ଶାର୍ଦ୍ଦୂଳ । ଉଦ୍ଧରିଲେ ରାମଚନ୍ଦ୍ର ତୁମ୍ଭର କୁଳ ॥ ରାମ ନାରାୟଣ ଏହି ନାହିଁଟି ଭେଦ ॥ କେବଳ ବନିତା ସଙ୍ଗ ହେବ ବିଚ୍ଛେଦ ॥ ଦେବାସୁର ଯୁଦ୍ଧ ହୋଇଲା ଯେଉଁ କାଳେ । ଦେବତାଏ ଅସୁରଙ୍କୁ ମାରିଲେ ବଳେ ॥ ଅସୁର ଆସିଲା ଭୃଗୁ ବନିତା ପାଶେ । ଶରଣ ପଶିଲେ ତାଙ୍କ ଜୀବନ ଆଶେ । ତାହାଦେଖି ବିଷ୍ଣୁ ତାଙ୍କୁ କୋପ କରିଲେ । ଚକ୍ର ଘେନି ଋଷିପତ୍ନୀ ଶିର ଛେଦିଲେ । ଏମନ୍ତ ଦେଖିଣ ଭୃଗୁ

ଦେଲେକ ଶାପ । ବିଷ୍ଣୁ ଅକାରଣେ କଲ ଏତେକ ପାପ ॥ ମାନବ ନୃପତିପୁରେ ଜାତହୋଇବ । ଘରଣୀ ବିଚ୍ଛେଦ ମହାକଷ୍ଟ ପାଇବ ॥ ମାନବ ତନୁ ଧରଣ ହେବ ଅଜ୍ଞାନ । ତେଣୁ ଅଜ୍ଞାନରେ ଏହା କଲ ବିଧାନ ॥ ସେହି ବିଷ୍ଣୁ ଟି ତୁମ୍ଭର ରାମ ନନ୍ଦନ । କେବଳ ବନତା କଷ୍ଟେ ବଞ୍ଚିବେ ଧନ ॥ ଏ ରାମଙ୍କ ହୋଇବେଟି ବେନି କୁମର । ବଂଶ ବୃଦ୍ଧି ବହୁତ ହୋଇବ ତୁମ୍ଭର ॥ ଭ୍ରାତା ମାନଙ୍କୁହିଁ ତ୍ୟାଗ କରିବେ ରାମ । ଏମନ୍ତ କହିଣ ଗଲେ ମୁନି ଉତ୍ତମ ॥ ଆହେ ଲକ୍ଷ୍ମଣ ଏଥିକୁ କପାଇଁ ଭାଳ । କାହାକୁହିଁ ନ କହିବଟି ଚିରକାଳ ॥ ଏମନ୍ତ ଶୁଣି ଲକ୍ଷ୍ମଣ ହୋଇଲେ ତୋଷ । ଅଯୋଧ୍ୟା କଟକେ ଆସି ହେଲେ ପ୍ରବେଶ ॥ ଶ୍ରୀରାମଙ୍କ ଚରଣ ଅମଳକମଳ । ଘାନବଶି ବୁଦ୍ଧିତହିଁ ହେଲା ଭ୍ରସଳ ॥

---

## ୧୯ଶ ଛାନ୍ଦ -ନୃଗ ନିମି ପ୍ରଭୃତିଙ୍କ ଉପାଖ୍ୟାନ

ରାଗ—ଆହାରି

ଶ୍ରୀରାମ ପାଶ । ଲକ୍ଷ୍ମଣ ପରବେଶ । ଦେଖିଲେ ନୃପତିମୁଖ୍ୟ ହରଷେ ବିରସ ମନରେ ଦୁଃଖ । କରି ଭୂମିକି ମୁଖ । ଝୁରୁଛନ୍ତି ବସି ତେଜି ସକଳସୁଖ ॥ ଲକ୍ଷ୍ମଣବୀର । ଶିରେ ଦେଇଣ କର । ଦର୍ଶନ କରି ଜଣାନ୍ତି ଅଳ୍ପ ମଧୁର ॥ ନେଲି କପଟେ । ଛାଡ଼ିଲି ଗଙ୍ଗାତଟେ । ବହୁ ବିଳପିଲେ ମୁନି ମଠ ନିକଟେ ॥ ଯାହା ହୋଇବ । ଲେଖି ଅଛଇ ପୂର୍ବ । ଏବେ ଭେ ଦେବ ଖାଳିଲେ କିସ ହୋଇବ ॥ ଛାଡ଼ିଲେ ଶୋକ । ପୁଣି ହେଲେ ବିବେକ । ଗୃହେହୀନ ରହିଲି କି ବୋଲିବେ ॥ ଲୋକ ॥ ଆହେ ଲକ୍ଷ୍ମଣ । ସର୍ବ ଚରିତ ଶୁଣ । କେବଳ ଦୁଃଖର ହେତୁ ନୃପତି ପୁଣ ॥ ପୂର୍ବର ରୀତି । ନୃଗ ନାମେ ନୃପତି । କୋଟି ଧେନୁ ଦାନରେ ପାଇଲେ ବିପତ୍ତି ॥ ଗୋବହି କିଣି । ଦାନି ହଅନ୍ତେ ପୁଣି । ଦାନ ଧେନୁ ଦାନ କଲା ଚିହ୍ନି ନ ଜାଣି ॥ ସେ ଦ୍ୱିଜବରେ । ଧେନୁକୁ ଅନୁସରେ । ଅନ୍ୟ ଗ୍ରାମେ ଦେଖିଲା ସେ ବ୍ରାହ୍ମଣପୁରେ ॥ ନାମେ ଡାକିଲା । ମାହକେ ସେ ଅଇଲା । ସେ ଧେନୁ ଆଣନ୍ତେ ପଥେ ଦ୍ୱିଜ ଧଇଲା । ଏ ବୋଲେ ମୋର । ସେହି ବୋଲେ ମୋହର । କଳି କରି ଗଲେ ନୃପତି ସିଂହଦ୍ୱାର ॥ ସେ ବେନି ଦ୍ୱିଜ । ମନେ ପାଇଲା ଲଜ । ବୋଲନ୍ତି ନୃପତି ମନ ଜାଣିବା ଆଜ ॥ ଦ୍ୱାରେ ରହିଲେ । ଦ୍ୱାରପାଳେ କହିଲେ । ଗୁହାରି କରି ଆସିଛୁଁ ବୋଲି ବୋଇଲେ ॥ କହେ ଦୁଆରୀ । ଦେବ ଦ୍ୱିଜ ଗୁହାରି । ନ ଶୁଣିଲା ପ୍ରାୟୁ ହେଲେ ସେ ଦଣ୍ଡଧାରୀ ॥ ଦେବ ଦ୍ୱିଜେ କୋପ । କରି ଦେଲେକ ଶାପ । ବୋଇଲେ ସରଟ ହୁଅ ଅର୍ଜିଲୁ ପାପ ॥ ପଥରେ ଥିବ । ଚିରକାଳ ଜୀଇବ । ଦ୍ୱାପରେ ଶ୍ରୀକୃଷ୍ଣ ଦେଖି ମୁକତି

ହେବ ।। ନୃପତିମଣି । ବ୍ରାହ୍ମଣ ଶାପ ଜାଣି ।। ଜ୍ୟେଷ୍ଠପୁତ୍ରକୁ ନୃପତି କଲେକ
ଆଣି । ଶିଳ୍ପୀ ଆଣିଲ । ବହୁପ୍ରଶସ୍ତ କଲ । ଚଉପାଶେ ବନରୋପି ଏଣ୍ତୁଅ ହେଲ ।।
ଆହେ ଲକ୍ଷ୍ମଣ । ପୂର୍ବ କଥାଟି ଶୁଣ । ନିମି ରଜା କଲେ ବଶିଷ୍ଠଙ୍କୁ ବରଣ ।।
କରିବ ଯାଗ । ମୋର ବରଣ ହେବ । ସେ ବୋଇଲେ ପୂର୍ବରୁ ବରିଛି ବାସବ ।।
ସେ ଯାଗ ସାରି । ଆସିବୁ ତୁମ୍ଭ ପୁରୀ । ସୁରପୁର ଗଲେ ମୁନି ନିର୍ଣ୍ଣୟ କରି ।।
ଦେଖି ବିଳମ୍ବ । ଯାଗ କଲେ ଆରମ୍ଭ । ବାଲ୍ମୀକି ଋଷିଙ୍କୁ କଲେ ଅବଲମ୍ବ ।।
ଯେ ମୁନି ଜାଣ । ଆଣିଲ ରଜାଗଣ । ପୁରୋହିତ ହୋଇ ତୁମ୍ଭେ ହୁଅ ବରଣ ।।
କରାଇ ତୋଷ । ତାଙ୍କୁ ଆଣି ହରଷ । ଯୋଗ ଆରମ୍ଭିଲେ ଦୀର୍ଘସହସ୍ର ବରଷ ।।
ବଶିଷ୍ଠ ଋଷି । ଯାଗ କରିଣ ଆସି । ଦ୍ୱାରୀ ଆଗେ କହି ସିଂହଦ୍ୱାରରେ ବସି ।।
ଜ୍ଞାତ ନ କଲେ । ରଜା ପହୁଡ଼ିଥିଲେ । ବଶିଷ୍ଠ କୋପ କରି ତାଙ୍କୁ ଶାପ ଦେଲେ ।।
ଅଜ୍ଞାନ ହୁଅ । ବାୟୁଶରୀର ବହ । ଏବେ ମତ୍ତଗର୍ବେ ଯେବେ ହୋଇଲ ମୋହ ।।
ଶାପ ବଚନ । ଶୁଣି ସକ୍ରୋଧ ମନ । ବଶିଷ୍ଠଙ୍କୁ ସେହି ଶାପ ଦେଲେ ବହନ ।।
ବିକଳ ମୁନି । ବାୟୁ ଶରୀର ଘେନି । ବ୍ରହ୍ମଲୋକେ ଯାଇ ଦେଖିଲେ ପଦ୍ମଯୋନି ।।
ଜାଣିଲେ ପିତା । ନିମି ଶାପ ବାରତା । ବଶିଷ୍ଠଙ୍କୁ ଶାପ ଦେଲେ ଅଖିଳ ପିତା ।।
ବରୁଣ ରେତ । ହେବ କୁମ୍ଭରୁ ଜାତ । ସୂର୍ଯ୍ୟବଂଶେ ତୁମ୍ଭେ ହୋଇବ ପୁରୋହିତ ।।
ଶୁଣି ସେ ଋଷି । ବରୁଣପୁରେ ଆସି । ଉର୍ବଶୀ ସେ ଦିନ ବରୁଣପାଶେ ବସି ।।
କାମେ ଅବଶ । ଉର୍ବଶୀ ଦେଖି ତୋଷ । ଆଜ ମୋର ଭାର୍ଯ୍ୟା ତୁ ହୁଅ ଗୋ
ଆସ କରି ଯୋଡ଼ଣ । ରାମ କହେ ବଚନ । ପୂର୍ବରୁ ବରିଣଛନ୍ତି ପିତା ବରୁଣ ।।
ତାଙ୍କର ଅଙ୍ଗ । ଭାବ ତୁମ୍ଭର ସଙ୍ଗ । ଏମନ୍ତ କରିଣ ପଛେ କରିବ ଭଙ୍ଗ ।।
ସ୍ୱଭାବ ବସ । ଦେଖି ବରୁଣ ପାଶ । ତନୁ ମିତ୍ରାବରୁଣରେ କଲ ପ୍ରବେଶ ।। ସେ
କୋପ କଲେ । ଭାବ ଦେଲୁ ବୋଇଲେ । ତାର ଅଙ୍ଗ ଆଉ ସେ ସ୍ପର୍ଶ ନ
କଲେ ।। ବରୁଣ ଦେବ । ତାର ଘେନିଣ ଭାବ । ମଦନ ଆରତେ ରେତ ହେଲ
ସମ୍ଭବ ।। ରେତ ଘେନିଣ । କୁମ୍ଭରେ ସେ ବରୁଣ । ବଶିଷ୍ଠ ପ୍ରବେଶ ସେ କୁମ୍ଭେ
ସେହିକ୍ଷଣ ।। କୁମ୍ଭରେ ଥିଲ । ବେନି ଭାଗ ହୋଇଲ । ପ୍ରଥମେ କୁମ୍ଭରୁ ଜାତ
ଅଗସ୍ତି ହେଲ ।। ବ୍ରହ୍ମାର ସୁତ । ପଛେ କୁମ୍ଭରୁ ଜାତ । ଇକ୍ଷ୍ୱାକୁ ବଂଶରେ ସେ
ହେଲେ ପୁରୋହିତ ।। ନିମି ଯେ ଥିଲେ । ଋଷିମାନେ ଅଇଲେ । ନେତ୍ର ନିମିଷ
କରି ତାକୁ ବରଦେଲେ ।। ନିମିର ପିଣ୍ଡ । ରଖିଲେ ତୈଳଭାଣ୍ଡ । ଯାଗଶାଳରେ
ମନ୍ଥନ କଲେ ତା ପିଣ୍ଡ ।। ତହୁଁ ବାଳକ । ଋଷି ହେଲେ ଜନକ । ମିଥିଳା
ତେଣୁ ବୋଲନ୍ତି ସକଳ ଲୋକ ।। ବିପ୍ରେନ୍ଦ୍ରି ଦେବ । ତାଙ୍କ ଶାପ ପ୍ରମାଦ । ବୋଲି
ବିସ୍ମି ରାମ କହି ହେଲେ ବିଷାଦ ।।

## ୨୦ଶ ଛାନ୍ଦ—ଯଯାତି ପ୍ରଭୃତିଙ୍କ ଉପାଖ୍ୟାନ

ରାଗ—କାଳୀ

ଲକ୍ଷ୍ମଣ ବୋଲନ୍ତି ଆହେ ଦେବଋଷି ତିଶାପ ଦେଲେ । ନୃପତି ଦେବା ଉଚିତ ନୋହେ ଅମ୍ଭତ କପା କଲେ ॥ ରାମ ବୋଲନ୍ତି ତାମସ ରଜାମାନେ କରନ୍ତି କୋପ । ଏକା ମାନବକ ଯଯାତି ଦେବ ବହିଲେ ଗୁରୁ ଶାପ । ଶୁଣ ଲକ୍ଷ୍ମଣ ତହିଁ ବୃତ୍ତାନ୍ତ ଯଯାତି ମହାରାଜା । ଭାର୍ଯ୍ୟା ହୋଇଲେ ଦେବଯାନିକ ଦେ ତ ଗୁରୁ ତନୁଜା ॥ ବୃଷପର୍ବାଙ୍କ ଦୁହିତା ନାମ ଅଟଇ ଶରମିଷ୍ଠା । ଦ୍ୱିତୀୟେ ଭାର୍ଯ୍ୟା ହେଲେ ତାହାଙ୍କୁ ନୃପତିକୁଳ ଶ୍ରେଷ୍ଠା ॥ ଦେବଯାନୀର ଯଦୁକୁମର ଅଟଇ ସେ ଦୁର୍ଭାଗା । ଶର୍ମିଷ୍ଠାଙ୍କର କୁମର ପୁରୁ ଅଟଇ ସେ ସୁଭାଗା । ଅନେକ ଦେବ ଯାନୀଙ୍କି ଯଦୁ କହିଲେ କଟୁବାଣୀ । ତୁମ୍ଭର ଦୁଃଖ ତନୁ ନ ସହେ ମରିବ ଏହି କ୍ଷଣି ॥ ପୁତ୍ର ବଚନ ଶୁଣିଣ ଜନନୀ ବହୁତ ଶୋକ କଲେ । ପିତାଙ୍କୁ ଚିନ୍ତା କଲ ମାନବକେ ପିତା ପ୍ରବେଶ ହେଲେ । ବୋଇଲେ ସୁତେ କପା ରୋଦନ କରୁଛ ସୁତ କେନ । ଦୁର୍ଭାଗା କଲ ତୁମ୍ଭଙ୍କୁ ରଜା ମୋ ବଚନ ନ ଘେନ ॥ ସୁତା ନାତିର କଷ୍ଟ ଦେଖିଣ କଲେକ ଗୁରୁ କୋପ । ଜରା ହୁଅ ତୁ ବୋଲିଣ ଯଯାତିଙ୍କୁ ସେ ଦେଲେ ଶାପ । ଗୁରୁଙ୍କ ଶାପ ଜାଣିଣ ନୃପ ଯଦୁଙ୍କୁ ରାଇ ପାଶ । ଶୁଣ ଆମ୍ଭଙ୍କୁ ଶାପ ବହିଲେ ନ କଲୁ ଆମ୍ଭେ ଦୋଷ ॥ ଥୋକାଏ ଦିନ ତୁମ୍ଭେ ଆମ୍ଭର ବୃଦ୍ଧ ଶରୀର ଘେନ । ଯୁବା ଶରୀର ଘେନିଣ ଭୋଗ କରେ ଥୋକାଏ ଦିନ । ଯଦୁ ବୋଇଲେ ସୁଭାଗା ସୁତ ଅଟଇ ତୁମ୍ଭ ପୁରୁ । ବହୁତ ଅନୁରାଗ ତାହାଙ୍କୁ ସେ ତୁମ୍ଭ ଆଜ୍ଞା କରୁ ॥ ମୁହିଁ ତୁମ୍ଭର ଜ୍ୟେଷ୍ଠ କୁମର ମୋଠାରେ ନାହିଁ ସ୍ନେହ । ସୁଭାଗା ସୁତ ଆଗରେ ଶାପ ଯାଇ ତୁମ୍ଭର କହ । ଶୁଣି ରାଜନ ଯଦୁବଚନ ପୁରୁ ପାଶକୁ ଗଲେ । ନିଜ ବୃତ୍ତାନ୍ତ କହି ତାଙ୍କୁ ତ ଜରା ଘେନ ବୋଇଲେ ॥ ଶୁଣି ସାନନ୍ଦ ହୋଇଣ ପୁରୁ ବୋଇଲେ ଦେବ ଦିଅ । ବୃଦ୍ଧ ଶରୀର ଦେଇଣ ମୋତେ ଯୁବା ଶରୀର ବହ ॥ ଶୁଣି ନୃପତି ଆନନ୍ଦ ହୋଇ ବୃଦ୍ଧ ଶରୀର ଦେଲେ । ଯୁବା ଶରୀର ବହିଣ ବହୁ ଭୋଗମାନ ତ କଲେ ॥ ଦଶସହସ୍ର ବରଷ ରଜା କଲେକ ରତିଭୋଗ । ବୃଦ୍ଧ ଶରୀର ଘେନି ପୁରୁ କଲେକ ଅନୁରାଗ ॥ ଆନନ୍ଦ ହୋଇ ନୃପତିବର ପୁରୁଙ୍କୁ ଆଜ୍ଞା ଦେଲେ । ତୁମ୍ଭଠାରୁ ତୁମ୍ଭ ବଂଶରେ ରଜା ହୁଅ ବୋଇଲେ ॥ ଯଦୁର ବଂଶେ ଅବତରିଣ କେହି ନୋହିଲେ ରଜା । ନୃପତି ହୋଇ କୁମ୍ଭ ବଂଶରେ ପାଇବେ ଦିବ୍ୟ ପୂଜା ॥ ଯଦୁକୁମରେ ଏମନ୍ତ ଶାପ ଦେଲେକ ମହାରଜା । ଆମ୍ଭର ଆଜ୍ଞା ଅବଜ୍ଞା କଲୁ ହୋଇ ଆମ୍ଭ ଆତ୍ମଜା ॥

ଏମନ୍ତ ଶାପ ଯଯାତି ଭୂପ କୋପ କରିଣ ଦେଲେ । ସେହିନୁ ଯଦୁବଂଶରେ ଦୁଷ୍ଟ ହୋଇ ଅବତରିଲେ ॥ ଏମନ୍ତ କହି ଶ୍ରୀରାମଚନ୍ଦ୍ର ହେଲେ ସୁଅବକାଶ । ଦ୍ୱାରୀ ଜଣାଏ ଏହି ସମୟେ ଶୁଣିବା ନୃପଈଶ ॥ ଚ୍ୟବନ ଋଷି ଅନେକ ଋଷି ସଙ୍ଗରେ ଛନ୍ତି ଘେନି । ସିଂହଦୁଆରେ ରହି ସେ କରୁଅଛନ୍ତି ବେଦଧ୍ୱନି । ଶୁଣି ଶ୍ରୀରାମ ବୋଇଲେ ବେଗେ ତାହାଙ୍କୁ ଘେନି ଆସ । ଆଜ୍ଞା ପ୍ରମାଣେ ଦ୍ୱାରୀ ମିଳିଲା ଋଷି ମାନଙ୍କ ପାଶ ॥ ଆଜ୍ଞା ହୋଇଲା ଛାମୁକୁ ଯିବ ବୋଲିଣ ଘେନି ଆସେ । ସମସ୍ତ ଋଷି ଭେଟି ହୋଇଲେ ଯାଇଁ ଶ୍ରୀରାମ ପାଶେ । ଦେଖି ଶ୍ରୀରାମ ମାନ୍ୟ କରିଣ କଲେ ତାହାଙ୍କୁ ପୂଜା । ଅର୍ଘ୍ୟ ଆସନ ଦେଇ ତାହାଙ୍କୁ ପୁଚ୍ଛନ୍ତି ରାମରାଜା ॥ କି ଭାଗ୍ୟ ଆଜ ମୋର ଭୁବନେ ବିଜୟ ସର୍ବଋଷି । ଆଜ ମୋ ନେତ୍ର ସଫଳ ହେଲା ଦେଖି ଯମୁନାବାସୀ । ମୋର ଜୀବନ-ସ୍ୱରାଜ୍ୟ ବିତ୍ତ ଅଟଇ ଏ ତୁମ୍ଭର । ଯାହା ଆମ୍ଭଙ୍କୁ ଆଜ୍ଞା କରିବ କର ହେ ମୁନିବର ॥ ଶୁଣି ଶ୍ରୀରାମ ଛାମୁରେ କହେ ଚ୍ୟବନ ତପୋବନ୍ତ । ତୁମ୍ଭ ସମାନ ନାହିଁ ମହୀରେ ଆଉ ତ ବଳବନ୍ତ ॥ ଅସୁର ମାରି ଉଶ୍ୱାସ କଲ ମହୀର ଭାରଭର । ସକଳ ଦେବତାଙ୍କୁ ଅଭୟ ଦେଲ ହେ ରଘୁବର ॥ ଏଣୁ କି ଆମ୍ଭେ ତୁମ୍ଭର ଆଶ୍ରେ ଅଛୁ ସକଳ ଜନେ । ବୋଲଇ ବାଣୀ ଶୁଣି ତା ରାମ ହେଲେ ସଙ୍କୋଚ ମନେ ।

—X—

## ୧୨ଶ ଛାନ୍ଦ—ଚ୍ୟବନ ଋଷି ଓ ରାମଙ୍କ କଥୋପକଥନ

ରାଗ—କୌଶିକ

ଚ୍ୟବନ ବୋଲନ୍ତି ଶୁଣ ହେ ଶ୍ରୀରାମ ମଧୁଦନୁନୁଜ ନାମେ ବୀର । ମହାତପ ସେ ଶିବଠାରେ କଲାକୁ ଦେଲେ ତାହାଙ୍କୁ ହର ବର । ଆହେ ରାଘବ ଶୂଳନ୍ତୁ ଶୂଳ ଜାତ କଲେ । ଶୂଳ ଥିଲେ ତୁ ତ୍ରିଭୁବନ ଜିଣିବୁ ବୋଲିଣ ତାର କରେ ଦେଲେ ॥ ସେ ବୋଇଲା ହେବ ମୋର ପୁତ୍ର ନାତି ଏହି ଶୂଳେ ଜୟ କରିବେ । ତୁମ୍ଭ ପ୍ରସନ୍ନେ ମୋର ଶତ୍ରୁମାନଙ୍କୁ କଣ୍ଟକ ରଣେ ସଂହାରିବେ । ଆହେ ରାଘବ । ହେଉ ବୋଲି ହର ବୋଇଲେ । ଦେବତା ବ୍ରାହ୍ମଣେ ଭକତି କରିବୁ ବୋଲି . ମଧୁକୁ କହିଲେ । ଏମନ୍ତ ଶୁଣିଣ ମୁହଁ ଥିବାଯାଏ ହୋଇଣ ଥିଲା ଭଲ ଗତି । ମଧୁବନ ଲଗି ମଧୁପୁର କରି ଭୁଞ୍ଜିଲା ନିଶ୍ଚିନ୍ତା ବିଭୂତି । ଆହେ ରାଘବ ; ତାର ପୁତ୍ର ହେଲା ଲବଣ । ମହାଦୁଷ୍ଟପଣେ କାହାକୁ ନ ମାନି ପୃଥିବୀ ଜିଣିଲା ରଣେ ॥ ଶୂଳ ତାର ନିଜପୁରରେ ରଖିଣ ପ୍ରତିଦିନ ତା ପୂଜା କରେ । ଖାଇବା ନିମନ୍ତେ ପ୍ରତି ଦିବସରେ ଦଶ ସହସ୍ର ଜୀବ ମାରେ । ଆହେ ରାଘବ ! ତାକୁ ବେଗେ ତୁମ୍ଭେ ସଂହାର । ଶୁଣିଣ ରାଘବ ମୁନିଙ୍କ ବଚନ

କଲେକ ତାହା ସ୍ୱୀକାର ॥ ଭରତ ଶତ୍ରୁଘ୍ନଙ୍କୁ ଚାହିଁ ବୋଲନ୍ତି ଲବଣ ଦନୁଜକୁ ମାର । ଶୁଣି ଭରତ କର ଯୋଡ଼ି ମାରିବ ବୋଲିଣ ହେଲ ଅଗ୍ରସର । ଆହେ ରାଘବ । ତୁମ୍ଭ ଶ୍ରୀଚରଣ ପ୍ରସାଦେ । କଷ୍ଟଚରେ ମୁହିଁ ତାହାକୁ ମାରିଣ ଆସିବି ଦେବ ଅପ୍ରମାଦେ ॥ ଶତ୍ରୁଘ୍ନ ତାଙ୍କ ସ୍ୱୀକାର ଦେଖି କର ଯୋଡ଼ିଣ ଜଣାଇଲେ । କନିଷ୍ଠ ଥାଉଁ ଜ୍ୟେଷ୍ଠଭ୍ରାତା ଯିବାରି ଉଚିତ ନୁହଇ ବୋଇଲେ । ଆହେ ରାଘବ । ମୁଁ ଯାଇଁ ମାରିବି ରାବଣ । ମୁନିମାନଙ୍କୁ ଅଭୟ କରାଇବି ଶିରେ ଘେନି ତୁମ୍ଭ ଚରଣ ॥ ଶୁଣିଣ ଶ୍ରୀରାମ ଶତ୍ରୁଘ୍ନ ବଚନ ହୋଇଲେ ଯେ ଆନନ୍ଦମନ । ଆଜ୍ଞା ଦେଲେ ଏବେ ଅଭିଷେକ ହୋଇ ହୁଅ ମଧୁପୁର ରାଜନ । ଆହେ ସାନୁଜ । ଅଧିବାସ ଆଜ ତୁମ୍ଭର । ଶତ୍ରୁଘ୍ନ ବୋଲେ ନୃପତି ହେବାକୁ ଯୋଗ୍ୟ ନୁହେଁ ଦେବ ମୁଁ ସ୍ଥିର ॥ ରାମ ଆଜ୍ଞା ଦେଲେ ଆହେ ଶତ୍ରୁଘ୍ନ ଆମ୍ଭ ଆଜ୍ଞା ଭଗ୍ନ ନ କର । ଏଠାରେ ତୁମ୍ଭେ ଅଭିଷେକ ହୋଇଣ ପଛେ ଲବଣକୁ ସଂହାର । ଆହେ ସାନୁଜ । ମଧୁକଣ୍ଟକେ ରାଜା ହେବ । ଦୁଷ୍ଟ ଦନୁଜଙ୍କୁ ସଂହାରି ପରଜାମାନଙ୍କୁ ନିଶ୍ଚିନ୍ତେ ପାଳିବ । ଏମନ୍ତ ଆଜ୍ଞା ଦେଇଣ ଅଯୋଧ୍ୟାରେ ବଡ଼ ଉତ୍ସବ କରାଇଲେ । ଶତ୍ରୁଘ୍ନଙ୍କୁ ମଥୁରାରେ ନୃପତି କରିଣ ଅଭିଷେକ କଲେ । ଆହେ ସାନୁଜ । ଲବଣ ଯେମନ୍ତ ମରିବ । ସେ କଥା ଆମ୍ଭେ ତୁମ୍ଭଙ୍କୁ ଶିଖାଇବା ଆମ୍ଭ ଆଜ୍ଞା ନିଷ୍ଠେ କରିବ ॥ ଏକା ରଥେ ଚଢ଼ି ମଧୁପୁର ଯିବ ସୈନ୍ୟ ତୁମ୍ଭ ସଙ୍ଗେ ନ ଥିବେ । ରଥ ଗଜ ଅଶ୍ୱ ଅନେକ ପଦାତି ବୁଲିଣ ଅନ୍ୟ ବାଟେ ଯିବେ । ଆହେ ସାନୁଜ । ଭ୍ରମି ଯାଇଥିବ ଅସୁର । ଦ୍ୱାର ନିରୋଧି ତାର ସଙ୍ଗେ ଯୁଝିବ ପୁରାଇ ନ ଦେବ ଭିତର ॥ ପୁରେ ପଶିଲେ ସିନା ଶୂଳ ଘେନିଣ ତହିଁରେ ତୁମ୍ଭଙ୍କୁ ମାରିବ । ଶୂଳ ତା କରେ ନ ଥିଲେ ସେ ନିଶ୍ଚୟ ତୁମ୍ଭ ହାତେ ପ୍ରାଣ ହାରିବ । ଆହେ ସାନୁଜ ॥ ଆମ୍ଭେ ତୁମ୍ଭଙ୍କୁ ଦେବା ଶର । ତ୍ରିଭୁବନ ଜୟ କରିବା ନିମନ୍ତେ ଦେଇଅଛନ୍ତି କୁଶଧର ॥ ଏମନ୍ତ କହି ତୂଣୀରୁ ଶର କାଢ଼ି ଶତ୍ରୁଘ୍ନର କରେ ଦେଲୁ । ଏ ଶରେ ଲବଣକୁ ବଧ କରିବ ସଂଶୟ ନ କର ବୋଇଲେ । ଆହେ ସାନୁଜ । ଶସ୍ତ୍ରମାନ ଘେନିଯାଅ । ସ୍ଥାନରୁ ମେଲାଣି ହୋଇଣ ଆମ୍ଭର ଶୁଭ ବେଳରେ ତୁମ୍ଭେ ଯାଅ ॥ ଏମନ୍ତ ଶୁଣି ବୀରବେଶ ହୋଇଣ ସ୍ଥାନରେ ପ୍ରବେଶ ହୋଇଲେ । ପୁଣି ସେ ବୀର । ଭରତ ଲକ୍ଷ୍ମଣ ପାଦେ ପଡ଼ି । ଅନ୍ୟ ଅନ୍ୟ ବାଟେ ପେଷିଣ ସୈନ୍ୟଙ୍କୁ ଏକା ବଜାଯାଇ ରଥେ ଚଢ଼ି ॥ ସମସ୍ତ ଋଷିଙ୍କୁ ଆଗେ ପଠାଇ ଗଙ୍ଗା କୂଳରେ ପରବେଶ । ବାଲ୍ମିକି ମଠେ ଯାଇଣ ହୁଅନ୍ତେ ଦିବସ ହୋଇଲାକ

ଶେଷ । ସେହି ନିଶିରେ । ଜାତ ହୋଇଲେ ଲବକୁଶ । ବୋଲଇ ବିଶି ମୁଁ ନିରତେ ପିଇବି ଶ୍ରୀରାମଚରିତ ପୀୟୂଷ ॥



## ୧୨ଶ ଛାନ୍ଦ—ଲବକୁଶ ଜନ୍ମ

ରାଗ—ଚୋଖି

ବାଲ୍ମୀକ ମଠ ଦେଖି, ଶତ୍ରୁଘ୍ନ ହୋଇ ସୁଖୀ, ପଚାରନ୍ତି ମୁନିଙ୍କି ସେ ଆନନ୍ଦମନେ ॥ ବହୁତ ଭସ୍ମ ତ ଦିଶେ, ଯାଗ କରିଥିଲେ କେ ସେ, ବହୁ ହୋମକୁଣ୍ଡ ଅଛି ତୁମ୍ଭର ସ୍ଥାନେ । ଶୁଣି ବୋଲନ୍ତି ସେ ମହର୍ଷି । ସଉଦାସ ନୃପ ଯୋଗେ ଏମନ୍ତ ଦିଶି ॥ ମହାବଳିଷ୍ଠ ସେ ନୃପ, ତେଜରେ ସୂର୍ଯ୍ୟ ସ୍ୱରୂପ, ମୃଗୟାକୁ କରି ଅନେକ ଦୈତ୍ୟ ମାରିଲେ । ରଣେ ତାହାଙ୍କୁ ନ ପାରି, ଅସୁରେ ମାୟା ବିଚାରି, ବଶିଷ୍ଠେ ଦେଖି ବଶିଷ୍ଠ ରୂପ ଧରିଲେ । ଗଲେ ସଉଦାସର ପାଶ । ମାଗିଲେ ମାଂସ ଭୋଜନ ଦେବୁ ଅବଶ୍ୟ ॥ ରାଜା ସ୍ୱୀକାର କଲେ, ସୂପକାର ଅଣାଇଲେ, ଅସୁରେ ସୂପକାର ରୂପକୁ ଧରିଲେ । ରାଜା କହେ କର୍ଣ୍ଣପାଶ, ରାନ୍ଧଣ ଉତ୍ତମ ମାଂସ ବଶିଷ୍ଠେ ଦେଇ ସନ୍ତୋଷ କର ବୋଇଲେ । ରାନ୍ଧିଲେ ସେ ମନୁଷ୍ୟ ମାଂସ । ଭୋଜନ ନିମନ୍ତେ ଦେଲେ ବଶିଷ୍ଠ ପାଶ ॥ ବଶିଷ୍ଠ ସେ ମାଂସ ଦେଖି, କ୍ରୋଧରେ ତାହା ଉପେକ୍ଷି, ସଉଦାସ ରାଜାଙ୍କ ମୁଖକୁ ଚାହିଁଲେ । ତପିଷ୍ଠ ଏମନ୍ତ କଲୁ, ଅସୁର ଭୋଜନ ଦେଲୁ, ଆଜଠୁଁ ଅସୁର ତୁ ହୁଅ ହେ ବୋଇଲେ । ବୋଲେ ସଉଦାସ ନୃପତି । ବିଚାରିଣ ଶାପ ମୋତେ ଦିଅ ହେ ଯତି ॥ ପୁଣିହିଁ ବୋଲଇ ରାଜା, ଶୁଣ ହେ ବ୍ରହ୍ମତନୁଜା, ତୁମ୍ଭ ଆଜ୍ଞାରେ ତ ମାଂସ ଭୋଜନ ଦେଲି । ଅକାରଣେ ମୋତେ କୋପ, କିବଣ ଦେଲ ତା ଶାପ ଅପରାଧ ଆଉ କିବା ତୁମ୍ଭର କଲି । ତୁମ୍ଭେ ଯେବେ ଦେଲଟି ଶାପ । ମୁହିଁ ଶାପ ଦେବି ବୋଲି କଲିକ କୋପ ॥ ଧରିଣ ଜଳ ଅଞ୍ଜଳି, ଶାପ ଦିଅନ୍ତେ ସେ ତୋଳି, ରାଣୀ ଆସିଣ ତାହାଙ୍କ କର ଧରିଲେ । ଯେବେ ଗୁରୁ ଦେଲେ ଶାପ, ତାଙ୍କୁ ତୁମ୍ଭେ ପ୍ରତିଶାପ, ଦେବାର ତ ଉଚିତ ନୁହଇ ବୋଇଲେ । ଶୁଣି ରାଜା ଶାନ୍ତ ଭଜିଲେ । ସେ ଜଳ ଆପଣା ପଦରେ ପକାଇଲେ ॥ କାଳିମା ଦିଶିଲା ତନୁ, କଳୁଷ ଘୋଟିଲା ତେଣୁ । ବଶିଷ୍ଠ ଋଷିର ତାହା ଧ୍ୟାନେ ଜାଣିଲେ । ଅସୁରେ ମାୟା ରଚିଲେ, ଆମ୍ଭଙ୍କୁ ସେ ମାଂସ ଦେଲେ, ଏଥିରେ ରାଜାର ଦୋଷ ନାହିଁ ବୋଇଲେ । ଯେବେ ଆମ୍ଭେ କଲୁଟି କୋପ । କଳ୍ପିତ ଦିନେ ତୁମ୍ଭର ମୁଞ୍ଚିବ ପାପ ॥ ମୁନିଙ୍କର ସୁବଚନ, ଶୁଣି [illegible] ଶତ୍ରୁଘନ, ଅଗସ୍ତି ଋଷି ମଠରେ ପ୍ରବେଶ ହେଲେ ॥

କରିଣ ଦ୍ରବ୍ୟ ଭୋଜନ, ନିଶି କରନ୍ତେ ଶୟନ; ଲବ କୁଶ ଜନ୍ମିତ ବାରତା ଜାଣିଲେ । ପ୍ରଭାତେ ମୁନି ପାଦେ ପଡ଼ିଲେ । ମେଲାଣି ହୋଇଣ ନିଜ ଯାନେ ଚଢ଼ିଲେ ॥ ସୈନ୍ୟମାନେ ବୁଲିଗଲେ, ମଧୁପୁର ଲାଗେ ହେଲେ, ଚ୍ୟବନଙ୍କ ଆଶ୍ରମରେ ହୋଇ ପ୍ରବେଶ । ମୁନିଙ୍କ ଚରଣେ ପଡ଼ି, ଉଭାହେଲେ କରଯୋଡ଼ି; ମୁନି କଲ୍ୟାଣ କରିଣ ହେଲେ ହରଷ । ମୁନି ତାଙ୍କୁ କଲେକ ପୂଜା । ଦିନ ବଞ୍ଚି ରହିଲେ ଶର କୋଦଣ୍ଡଭୁଜା ॥

— — —

## ୨୩ଶ ଛାନ୍ଦ

### ରାଗ—ବରାଡ଼ି ଏକତାଳୀ

ଚ୍ୟବନ ବୋଲନ୍ତି ବୀର । ତୁମ୍ଭେ ଅତି ସୁକୁମାର । ମହା ବଳିଷ୍ଠ ଅସୁର । କେମନ୍ତେ ହେବ ସଂହାର ॥ ଶୁଣ ଆହେ ଶତ୍ରୁଘ୍ନ । ତାହାର ଚରିତମାନ । ନିତିନିତି ଶୂଳ ଘେନ । ଜିଣିଲା ସ୍ୱୟମ୍ଭୁବନ ॥ ମାନଧାତା ମହୀପତି । ଜିଣିଣ ସକଳ କ୍ଷିତି । ସ୍ୱର୍ଗକୁ କଲାକ ଗତି । ବସାଇଲେ ଶଚୀ ପତି ॥ ହିନେ ବୋଇଲେ ରାଜନ । ଶୁଣ ହେ ପାକଶାସନ । ତୁମ୍ଭେ ଆମ୍ଭେ ତ ଅଭିନ୍ନ । ଦେବତା କରନ୍ତି ଭିନ୍ନ ॥ ତୁମ୍ଭଙ୍କୁ ସେ ମାନ୍ୟ କଲେ । ମନ୍ତ୍ର ମନେ ଧଇଲେ । ଆମ୍ଭଙ୍କୁ ମାନ୍ୟ ନ କଲେ । ଆମ୍ଭଙ୍କୁ ମନୁଷ୍ୟ କଲେ ॥ ବୋଲନ୍ତି ଯେ ପୁରନ୍ଦର । ଶୁଣ ଆହେ ନୃପବର । ମହୀରେ ଲବଣାସୁର । ମାଇଲେ ମାନବାସୁର ॥ ଶୁଣି ରାଜା କୋପ କଲେ । ମଧୁପୁରକୁ ଅଇଲେ । ଲବଣ ସଙ୍ଗେ ଯୁଝିଲେ । ତା ଶୂଳେ ପ୍ରାଣ ହାରିଲେ ॥ ତୁମ୍ଭେ ଏବେ ବୁଝି ଯୁଝ । କରିବ ଲକ୍ଷ୍ମଣାନୁଜ । ରହନ୍ତେ ହରି ରାମରାଜ । ଯୁଗଳ ପଦ ସରୋଜ ॥

— — —

## ୨୪ଶ ଛାନ୍ଦ—ଲବଣାସୁର ବଧ

### ରାଗ—ଆଶାବରୀ

ଲବଣ ଦ୍ୱାର ଜଗାଇଣ ଶତ୍ରୁଘ୍ନ ଦିଶିଯିବା କୃତାନ୍ତ ପ୍ରାୟେ ଦିଶେ । ଦଶସହସ୍ର ପଶୁ ଘେନି ବନିଜ ଭାରକରି ସଭ୍ୟରେଣ ଆସେ ସେ । ତାହାକୁ ସେ ଦ୍ୱାର ନ ଛାଡ଼ିଲେ । ଆଜ ଆମ୍ଭଙ୍କୁ ସମର ଦେବୁ ବୋଲି ଗୁଣେ ଶର ସନ୍ଧି ଓଟାରିଲେ ସେ ॥ ବୋଲେ ଲବଣ ପୁରେ ପଶି ଆସେ ରହିଥାଅ ତୁମ୍ଭେ ଦଣ୍ଡେ ମାତ୍ର । ମୃଗୟା କମନ୍ତେ ଯାଇଥିଲି ସିନା ଆଣଇ ମୋହର ନିଜ ଶସ୍ତ୍ର ହେ । ତୁମର ଭୁଜର କି ସାମରଥ । ଏହିକ୍ଷଣି ତୋତେ କଣ୍ଟକ ଅସ୍ତ୍ରରେ ଦେଖାଇବି ମୁହିଁ ଯମପଥ ଯେ ॥ ଏମନ୍ତ କହନ୍ତେ ପଥ ନ ଛାଡ଼ନ୍ତେ ବେନି ଚକ୍ଷୁବର ଉପାଡ଼ିଲା । ବୁଲାଇ ବୁଲାଇ ଶତ୍ରୁଘ୍ନ ଅଙ୍ଗେ ନିଷାଧ ହୋଇ ଶୀଘ୍ର

କରୁଥିଲା ସେ । ଭୂମିରେ ବୀର ମୋହ ଗଲେ । ଚଳଯାନ୍ତେ ହ୍ୱାର ଶତ୍ରୁଘ୍ନ ଜ୍ଞାନ ପାଇଣ ତାହାକୁ ଉଗାଳିଲେ ସେ ॥ ପୁଣି ଲେଉଟି ଆସିଣ ସେ ଅସୁର ବୃକ୍ଷ ଧରିଣ ସମର କଲା । ଶତ୍ରୁଘ୍ନ ତା ହାତରୁ ତରୁ କାଟିବାରୁ ଶୂନ୍ୟ କର ହୋଇଗଲା ସେ ॥ ତା ସୈନ୍ୟଙ୍କେ ସୈନ୍ୟ ଭେଟ ହେଲେ । ମହାସଂଗ୍ରାମ କରିଣ ରାମସୈନ୍ୟ ମାରନ୍ତେ ଅସୁର ପଳାଇଲେ ସେ ॥ ଶ୍ରୀରାମ ଯେବଣ ଶର ଦେଇଥିଲେ ଗୁଣରେ ସେ ଶର ବସାଇଲେ । ଲବଣ ଉପରଙ୍କୁ ତାହା ପେଷିଣ ଶିର ଛେଦ ତାର ପ୍ରାଣ ନେଲେ ସେ । ଦେଖି ଦେବତାଏ ହୃଷ୍ଟ ହେଲେ । ସୁରପତି ପୁରେ ଦୁନ୍ଦୁଭି ବଜାଇ ଆକାଶୁଁ କୁସୁମ ବୃଷ୍ଟି କଲେ ସେ ॥ ଲବଣ ସଂହାରୀ ଦେବବର ପାଇ ଶତ୍ରୁଘ୍ନ ତହିଁ ରାଜା ହେଲେ । ପୁର ପ୍ରାପ୍ତ କରି ପରଜା ପାଳିଣ ମଧୁପୁର ସ୍ୱର୍ଗପୁର କଲେ ସେ । ତହିଁ ଦ୍ୱାଦଶ ବରଷ ଥିଲେ । ବୋଲେ ବଶି ରାମ ଦର୍ଶନ ନିମନ୍ତେ ଉତ୍ସାହୀ ହୋଇଣ ବିଜେ କଲେ ସେ ॥

—X—

## ୨୫୩ ଛାନ୍ଦ

### ରାଗ—ଧନାଶ୍ରୀ

ବାଜଇ ବିବିଧ ବାଜା, ସଙ୍ଗେ ଘେନି କ୍ଷତ୍ର ଭୁଜା, ବହୁରଥ ବହୁ ଗଜ ସେ, ମଧୁପୁରୀ, ଶତ୍ରୁଘ୍ନ ହୋଇ ରାଜା ॥ ଅଯୋଧ୍ୟା ବିଜେ ନୃପତି, ଶ୍ରୀରାମ ଦର୍ଶନେ ମତି, ଶୀଘ୍ର ହୋଇ କରେ ଗତି ॥ ଚତୁରଙ୍ଗ ବଳ ଗତି, କରନ୍ତେ କମ୍ପେ ଧରିତ୍ରୀ; ଶତ୍ରୁଘ୍ନ ଶତ୍ରୁଦ୍ୟୁତି ॥ ଭେଟି ବାଲ୍ମୀକି ମୁନି, ପାଦେ ଲଗାଇ ମୁର୍ଦ୍ଧନି, ରହି ମଠେ ସେ ରଜନୀ ॥ ଲବ କୁଶ ଭାଇ ବେନି, କରେ ରାମାୟଣ ଘେନି, ଶୁଆଇଲେ ତାଙ୍କୁ ମୁନି ॥ ସୁନ୍ଦର ବେନି କୁମର, ଗାଇଲେ ଅତି ମଧୁର, ଶୁଣି ନ ଆସେ ଉତ୍ତର ॥ ଜାଣିଲେ ରାମକୁମାର ମନରେ କଲେ ବିଚାର; ଶୋକେ ହେଲେ ଜରଜର ॥ ସେ ଦିନ ରଜନୀ ଶେଷ; ପଥରେ ଗଲେ ଦିବସ, ଅଯୋଧ୍ୟା ହେଲେ ପ୍ରବେଶ ॥ ଶ୍ରୀରାମ ପାଦ ସାରସ, ଶିରେ ଲଗାଇ ହରଷ ଶତ୍ରୁଘ୍ନ କରି ଯଶ ॥ ବୋଲନ୍ତି ରାମ ରାଜନ, ଶୁଣ ଆହେ ଶତ୍ରୁଘ୍ନ, କିପାଇଁ କଲ ଗମନ ॥ କ୍ଷତ୍ରି-ମାନଙ୍କର ମନ, ବୁଝିଥିବା ପ୍ରତିଦିନ, ଯାସୋରେ ନିଜ ସଦନ ॥ ଶତ୍ରୁଘ୍ନ ଯୋଡ଼ି କର, ବୋଲନ୍ତି ହେ ରଘୁବୀର, ନ ଦେଖିଲେ ଶ୍ରୀପୟର ॥ କି ହେବ ସମ୍ପଦ ସ୍ଥିର, ଦେଖୁଥିବି ଶ୍ରୀପୟର; ଏହି ଅନୁଗ୍ରହ କର ॥ ଶୁଣି ରାମ ବୋଲେ ଯାଅ ଏଠାରେ ଦିନେ ନ ଥାଅ, ଏ କଥା ମାନ ନ କହ ॥ ସମ୍ପଦରେ ନୋହି ମୋହ, ପରଜାରେ ଦୟାବହ, ରଖିଥିବ ନିଜ ଦେହ । ସାତଦିନ ଶତ୍ରୁଘ୍ନ

ରହି ଅଯୋଧ୍ୟା ଭୁବନ, ଭ୍ରାତାଙ୍କର ନେଲେ ମନ ॥ ବୋଲେ ବଶି ମଧୁବନ, ବାହୁଡ଼ି କଲେ ଗମନ, ପାଳଲେ ପରଜାମାନ ॥

— — —

## ୨୭ଶ – ଛାନ୍ଦ ମୃତ ବ୍ରାହ୍ମଣ ବାଳକର ଜୀବଦାନ

ରାଗ—ସିନ୍ଧୁଡ଼ା

ଏକ ବ୍ରାହ୍ମଣ ଘରେ ହତ ହୋଇଲା ପାଞ୍ଚବରଷର ବାଳକ । ଶ୍ରୀରାମଙ୍କ ସିଂହଦ୍ୱାରେ ଶ ଆଇ ଶୋଇଲା ଦବ୍ୟ ଟେଲେକ । ଶିର ହୋଇଣ କୋଡ଼ । ବେନି ନୟନରୁ ଅଶ୍ରୁ ପଡ଼ ସେ । ବକ୍ଷ ଉଚରେ କରଇ ରଡ଼ ସେ । ମୋହର ଆଜନ୍ମକାଳୁଁ ପାପ ନାହିଁ କପାଇଁ ମୋର ପୁତ୍ର ମଲା । ଏ କଥା ଦେଖିଲା ଶୁଣିଲା ନ ଥିଲା କ ପାପ ବା ରାଜା କଲା ହେ । ନୋହିଲେ କ ଏ ବାଳ । କପାଁ ହିଅନ୍ତା ଏହାକୁ କାଳ ହେ । ନଷ୍ଟେ ଜାଣିଲି ପାପୀ ଭୂପାଳ ହେ । କିନ୍ତା ବୋଲନ୍ତି ଏ ଧର୍ମଶୀଳ ହେ ॥ ରାମ ରାଜ୍ୟରେ ମୁଁ ଦଣ୍ଡେ ନ ରହିବି ଆନରାଜ୍ୟେ ପଛେ ଯିବି । ପୁତ୍ର ମୋର ନ ଜୀଇଁଲେ ମୁଁ ଅବଶ୍ୟ ରାଜା ଆଗରେ ମରିବି ହେ । ରାଜାମାନେ ନ ଥିଲେ । ଏଡ଼େ ଅଧର୍ମ କେହି ନ କଲେ ସେ । ପଞ୍ଚବରଷ ବାଳକ ମଲେ ସେ । ପୁତ୍ରଶୋକ ତ ହୋଇ ନ ଥିଲେ ସେ ॥ ବଶିଷ୍ଠ ବାମ-ଦେବାଦି ପୁରୋହିତ ନାରଦ କଣ୍ଠ ଅଙ୍ଗିରା । ସମସ୍ତ ଋଷି ପୁରୋହିତ ଅଇଲେ ଶ୍ରୀମୁଖୁ ହୋଇ ହକର ସେ । ରାଗ ମାନ୍ୟତ କଲେ । ବସିବାକୁ ଦବ୍ୟାସନ ଦେଲେ ସେ । ସଭା କରି ସେମାନେ ବସିଲେ ସେ । ଆଉ ଅନ୍ୟଜନେ ଉଭା ହେଲେ ସେ ॥ ରାମ ବୋଲନ୍ତି ଶୁଣ ହେ ସର୍ବ ମୁନି ବ୍ରାହ୍ମଣ ବାଳକୁମରେ । ସିଂହଦ୍ୱାରେ ଶବ ପକାଇ ଆମ୍ଭଙ୍କୁ ବହୁତ ଧିକ୍କାର କରେ ହେ । ଆମ୍ଭର କେଉଁ ଦୋଷ । କରୁଅଛି ଆମ୍ଭଙ୍କୁ ସେ ରୋଷ ହେ । କାହା ପାପେ ହୋଇଲା ସେ ନାଶହେ । ଏଥକୁ ଆମ୍ଭେ କରିବୁଁ କସ ହେ ॥ ନାରଦ ବୋଲନ୍ତି ଶୁଣ ରାମଚନ୍ଦ୍ର ବ୍ରାହ୍ମଣର ନାହିଁ ଦୋଷ । ପାଞ୍ଚବରଷ ପୁତ୍ର ତୁମ୍ଭ କାଳରେ ହୋଇଲା ଯେବେ ବିନାଶ ହେ । ତୁମ୍ଭେ ଜଗତଭୂପ । ଜଗତରେ ଜନେ କଲେ ପାପ ହେ । ରାଜା ଦଣ୍ଡ ଦଏ କରି କୋପ ହେ । ଏଥକୁ ଚିନ୍ତା ନ କର ଆପ ହେ । ସତ୍ୟଯୁଗେ ତପ ବ୍ରାହ୍ମଣ କରଇ ତ୍ରେତାଯୁଗେ କ୍ଷତ୍ରି କରେ । ଦ୍ୱାପର ବୈଶ୍ୟମାନେ ତପ କରନ୍ତି ଶୂଦ୍ର କଳରେ ଆଚର ସେ । ଧର୍ମ ହୋଇଛି ଲୀନ । ତପ କରନ୍ତେ ଏ ତିନି ବର୍ଣ୍ଣ ସେ । ଯେଣୁ ତ୍ୟାଗ ବର୍ଣ୍ଣ ଧର୍ମମାନ ସେ । ସତ୍ୟଯୁଗରେ ବ୍ରାହ୍ମଣ ତପ କରେ ଚାରିପାଦେ ଧର୍ମରହେ । ତ୍ରେତାଯୁଗରେଟି କ୍ଷତ୍ରୀ ତପ କଲେ ପାଦ ଧର୍ମ ଲୋପ ହୋଏ ହେ । ଦ୍ୱାପର ଯୁଗ ତପ । କଳି ଶୂଦ୍ରରେ ନିପଟ ଗୋପ୍ୟ ହେ ।

ଚ୍ଛନବର୍ଣ୍ଣେ ନ କରିବେ ତପ ହେ ।। ଦ୍ୱାପରେ କଳି ହୋଇ ନାହିଁ ପ୍ରବେଶ ।ଶୂଦ୍ର କରେ ଘୋର ତପ । ତେଣୁ ଏ ବ୍ରାହ୍ମଣ ପୁତ୍ର ନାଶଗଲା କାହାର ହେଲା ଏ ପାପ ଦୋ । ତୁମ୍ଭେ ଅଟ ରାଜନ । ଦଣ୍ଡଦାଅ ହୋଇ ସାବଧାନ ସେ । ନିଜଧର୍ମେ ଥିବେ ଗୃରବର୍ଣ୍ଣେ ହେ । ଏଥୁ ନୋହିବ ଯେ ଅନମାନ ହେ ।। ନାରଦ ମୁଖରୁ ଶୁଣିଣ ବୋଲନ୍ତି କାହିଁ ଜାଣିମା କେମନ୍ତେ । କେଉଁଠାବରେ ସେ ତପ କରୁଥିବ ରହିଣ ମହା ନଷ୍ଟିନ୍ତେ ସେ । ମୁନି ବୋଲେ ହେ ଯିବ ।। ଯେଉଁଠାରେ ଅଧର୍ମ ଦେଖିବ ହେ ।। ସେହି ନିକଟରେ ରହିଥିବ ହେ । ଶୁଣି ସାନନ୍ଦ ହେଲେ ରାଘବ ସେ ।। ଋଷିମାନଙ୍କୁ ମେଲଣି ଦେଇ ରାମ ପୁଷ୍ପକଯାନ ସୁମରେ । ମନେ ଚିନ୍ତିଲା ମାତ୍ରକେ ଦେବଯାନ ମିଳିଲା ଅତି ସତ୍ତ୍ୱରେ ସେ । ତହିଁବଜେ ଶ୍ରୀରାମ । ବୁଲି ଖୋଜନ୍ତି କାନନ ବନ ସେ । ଦେଖୁଛନ୍ତି ମୁନିଙ୍କ ଆଶ୍ରମେ ସେ । ଦେଖେ ଏକ ସ୍ଥାନରେ ଅଧର୍ମ ସେ ।। ସେହି ଘୋର ବନେ ବୁଲି ରାମଚନ୍ଦ୍ର ଦେଖିଲେ ତହିଁ ଭିତରେ । ଶୂଦ୍ର ଗୋଟାଏ ଉର୍ଦ୍ଧ୍ୱ ତପ କରଇ ପାଦକ ପାଦ ଉପରେ ସେ । ତାଙ୍କୁ ପୁଚ୍ଛନ୍ତି ରାମ । କସ ବର୍ଣ୍ଣ କସ ତୋର ନାମ ସେ । ଶୁଣି କହିଲା ତା ବର୍ଣ୍ଣ ନାମ ସେ । ପୁଣି ବୋଲନ୍ତି କଲୁ ଅଧମ ଯେ ।। ଖଡ୍ଗ ଧରି ତାର ଶିର ଛେଦନ୍ତେ ଜୀଇଁଲା ବ୍ରାହ୍ମଣର ସୁତ । ରାମକରେ ଦଣ୍ଡ ପାଇଣ ସେ ଶୂଦ୍ର ମରଣେ ହେଲା ମୁକତ ସେ । ପୁଷ୍ପକଯାନେ ବସି । ବାହୁଡ଼ନ୍ତେ ମୁନି ମଠ ଦିଶି ଯେ । ଭେଟ ହୋଇଲେ ଅଗସ୍ତି ଋଷି ଦୟେ । ରାମ ପାଦ ଶନ୍ତେ ଧ୍ୟାନ ବସି ସେ ।।

---

## ୨୭ଶ ଛାନ୍ଦ—ଦଣ୍ଡକାରଣ୍ୟ ବର୍ଣ୍ଣନା

ରାଗ କାମୋଦ

ରାମ ପୁଚ୍ଛନ୍ତି ବସି କହ ହେ ମହାଋଷି ଦଣ୍ଡକ ଅରଣ୍ୟର ନାମ । କପାଁ ଦଣ୍ଡକା ନାମ ହୋଇଲାକ ଉଦ୍ଧାମ କହ ମୁନି ମୋତେ ସେ ନାମ ହେ । ବୋଲେ ମୁନି । ସର୍ଯ୍ୟଭୂପଙ୍କ ବୋଲି ନାମ । ତା ପୁତ୍ର ଅଇଲକ ବୀରଗଣେ ତାହାକୁ କେହି ନୋହିଲେ ସରିସମ ହେ ।। ତାଙ୍କର ଶତେପୁତ୍ର ହେଲେ ଅତି ବଚାଚ ପ୍ରାନ୍ତ କୁମର ନାମ ଦଣ୍ଡ । ତାଦେଶ ବନ୍ଧ୍ୟତଟେ ବନ୍ଧ୍ୟଗିରି ନିକଟେ ଶତେ ଯୋଜନ ଭୂମିଖଣ୍ଡ ହେ । ଦାଶରଥି । ଶୁକ୍ରଙ୍କୁ ପୁରୋହିତ କରି । ନିଜ ବାହୁର ବଳେ ଶତ୍ରୁ ସଂହାରି । ହେଲେ ହେଲେ ମହୀରେ ଦଣ୍ଡଧାରୀ ସେ ।। ମୃଗୟା ପାଇଁ ରାଜା ଦେଖି ଶୁକ୍ର-

ତିନୁଜା ମଦନେ ହୋଇଲା ଅବଶ । ନାହିଁ ଯେ କରୁକରୁ ଅବବାହିତା ନାରୀ ବଳେ ରଚନ୍ତେ ରତିରସ ସେ । ନୃପସିଂହା ଧୂଳଧୂସର କନ୍ୟା ଅଙ୍ଗ । ତପକୁ ଯାଇଥିଲେ ଶୁକ୍ର ଆସି ଦେଖିଲେ ଦୁହିତା ହୋଇଛି ବଭଙ୍ଗ ହେ ॥ ପଚ୍ଚରିଲେସେ ଶୁକ୍ର ଏତେ ଗର୍ବ କାହାର କେ କଲା ଏମନ୍ତ ବୋଇଲେ । ଶୁଣି କହି କୁମାରୀ ଏହି ଯେ ଦଣ୍ଡଧାରୀ ବଳବନ୍ତେମୋତେ ହରିଲେ ହେ । ତାତ ଶୁଣ । ଶୁଣି ଦୁହିତାର ଉତ୍ତର । ଶିଷ୍ୟଙ୍କ ମୁଖ ଚାହିଁ କ୍ରୋଧେ ତନୁ କମ୍ପାଇ ବୋଲନ୍ତି କ କଲା ପାମର ସେ ॥ ବୋଇଲେ କୋପ ମନେ ଆଜହୁଁ ସାତଦିନେ ଭସ୍ମ ହେଉ ଏ ତୋର ପୁରୀ । ତୋର ଶତେ ଯୋଜନ ସ୍ଥିତ ଯେତେକ ଜନ ପଶୁ ଗାବ ବୃକ୍ଷାଦି କରି ହେ । ରାବଣାରି । ଭସ୍ମ ହୋଇଲା ତାର ପୁରୀ । କେ ଜାଣି ପଳାଇଲେ କେ ଭସ୍ମ ହୋଇଗଲେ ଦଗ୍ଧ ହେଲା ବନ ଗିରି ହେ । ଏକ ମାସକେ ରହି ଯୋଜନଜମ୍ବୁ ପୁରୀ ପୁଷ୍କରଣୀ ଏକ ରହିଲା । ତହିଁରେ ଶ୍ୱେତରାଜ ତପ କରଣ ନଜ ତନକୁ ଘେନ ସ୍ୱର୍ଗ ଗଲା । ରଘୁବୀର । ଶୁକ୍ର ଶାପରୁ ଏତେ ଦୂର । ଏଣୁ ଦଣ୍ଡକାରଣ୍ୟ ବୋଲନ୍ତି ତ୍ରିଭୁବନ ଯକ୍ଷମାନେ କଲେକ ପୁର ହେ ॥ ଏତେ କହିଣ ମୁନ ରାମଚନ୍ଦ୍ରଙ୍କୁ ଘେନ ସାୟଂକାଳରେ ସନ୍ଧ୍ୟା କଲେ । ଷଡ଼ରସ ଭୋଜନ କଲେ ତହିଁ ଆସନ ସେ ମନୋମିତ ନଦ୍ରା ଗଲେ ସେ । ସୀତାପତି । ଆନନ୍ଦେ ପୁହାଇଲେ ରାତି । ବୋଲଇ ଦାନ ବଶି ମେଲାଣି ଦେଲେ ଋଷି, ଅଯୋଧ୍ୟା ଗଲେକ ତତ୍‌କ୍ଷଣ ସେ ।

---

## ୨୮ଶ ଛାନ୍ଦ—ଅଶ୍ୱମେଧ ଯଜ୍ଞ

ରାଗ—ଚକ୍ରକେଳି

| | | |
|---|---|---|
| ଶୁଣ ସୁଜନେ ଶ୍ରୀରାମ ଚରିତ | । ଶୁଣି ହରିବ ସମସ୍ତ ଦୁରିତ | ॥ |
| ଅଯୋଧ୍ୟାରେ ପ୍ରବେଶ ରାବଣାରି | । ହକାରିଲେ ଦ୍ୱାରୁ ପଡ଼ିହାରୀ | ॥ |
| ଆଜ୍ଞାଦେଲେ ତୁ ପଡ଼ିହାରୀ ଯିବୁ | । ଭ୍ରାତ ଲକ୍ଷ୍ମଣଙ୍କୁ ଘେନ ଆସିବୁ | ॥ |
| ଆଜ୍ଞା ଘେନିଣ ପଡ଼ିହାରୀ ଗଲା | । ଭ୍ରାତ ଲକ୍ଷ୍ମଣଙ୍କୁ ଯାଇ କହିଲା | ॥ |
| ବାହୁଡ଼ା ବଜେ କଲେକ ରାଘବ | । ଆଜ୍ଞା ପ୍ରମାଣେ ଦ୍ୱାରୁକୁ ଆସିବ | ॥ |
| ଶୁଣି ଲକ୍ଷ୍ମଣ ବାହାର ହୋଇଲେ | । ଭ୍ରାତ ଚରଣେ ଗୁଳ ବଜେ କଲେ | ॥ |
| ହେଲେ ପ୍ରବେଶ ଶ୍ରୀରାମ ଦ୍ୱାରୁରେ | । ଭୂମି ନୁଇଁଣ କର ଦେଲେ ଶିରେ | ॥ |
| ରାମ ଦେଖିଣ ହସ ହସ ହେଲେ | । ବେନ ଭାଇଙ୍କି ଆଲିଙ୍ଗନ କଲେ | ॥ |
| ତୁମ୍ଭେ ଯେ ବେନଭାଇ ଅଟ ପ୍ରାଣ | । ଭୂତ ଭବିଷ୍ୟ ବର୍ତ୍ତମାନ ଜାଣ | ॥ |

ଏଣୁ କଥାଏ କହିବା ତୁମ୍ଭଙ୍କୁ । ଏହା ବିଚାରି କହିବ ଆମ୍ଭଙ୍କୁ ॥
ଆମ୍ଭେ ରାଜସୂ କରିବାକୁ ମନ । କରିଅଛଇଁତ ଅନ୍ୟ ଯାଗମାନ ॥
ଚନ୍ଦ୍ରଦେବ ରାଜସୂ ଯାଗ କଲେ । ତେଣୁ ସିନା ଚନ୍ଦ୍ରଲୋକ ପାଇଲେ ॥
ବରୁଣହିଁ କଲେ ସେ ରାଜସୂୟ । ତେଣୁ ବରୁଣଲୋକରେ ଅଭୟ ॥
ହରିଚନ୍ଦନ ରାଜସୂୟ କଲେ । ତେଣୁ ମହୀରେ ବିଜୟୀ ହୋଇଲେ ॥
ଏହା କରିବାକୁ ଇଚ୍ଛା ଆମ୍ଭର । ତୁମ୍ଭେ ବେନଭାଇ କହ କହ ବିଚାର ॥
ଭରତ ଜଣାନ୍ତି ଯୋଡ଼ି ବେନକର । ଏହି ଯଜ୍ଞକୁ ଯୋଗ୍ୟ ନୃପବର ॥
ଏକମାତ୍ରକେ ଏଥି ଅଛି ଦୋଷ । ରାଜାମାନେ ପାଇବେ ବହୁ ତ୍ରାସ ॥
ପ୍ରଜାମାନେ ବହୁପୀଡ଼ା ପାଇବେ । କ୍ଷତ୍ରିୟମାନେ ସଂଗ୍ରାମେ ମରିବେ ॥
ତୁମ୍ଭେ ଅଟ ସମରାଜ୍ୟପାଳକ । ମହୀପତିମାନେ ତୁମ୍ଭ ବାଳକ ॥
ତାଙ୍କୁ ବହୁ ଅପଘାତ ହୋଇବ । ଏହା ଶୁଣିଣ ହସିଲେ ରାଘବ ॥
ଚନ୍ଦ୍ର ନକ୍ଷତ୍ରଚୟ ନାଶ କଲେ । ବରୁଣହିଁ ବହୁଜୀବ ମାଇଲେ ॥
ହରିଚନ୍ଦନ କରି ଏହି ଯାଗ । ବହୁ ନୃପ ମାଇଲେ ମହାଭାଗ ॥
ଧାତା ପ୍ରାୟେ ତ ତୁମ୍ଭେ ମହୀପାଳ । ନାଶ କରିବ କେମନ୍ତେ ଭୂପାଳ ॥
ଶୁଣି ଶ୍ରୀରାମ ହରଷ ହୋଇଲେ । ବହୁ ପ୍ରଶଂସା କରି ଆଜ୍ଞାଦେଲେ ॥
ତୁମ୍ଭେ ଯଥାର୍ଥ କହିଲ ଆମ୍ଭଙ୍କୁ । ଏହି କାରଣେ ପୁଛିଲୁ ତୁମ୍ଭଙ୍କୁ ॥
ଏହି ସମୟେ ସୁମିତ୍ରାଙ୍କ ସୁତ । କରଯୋଡ଼ି ଜଣାଇଲେ ଭରତ ॥
ଦେବ ଅଶ୍ୱମେଧ ଯାଗ ଉତ୍ତମ । ଶକ୍ରକରି ଲଭିଲେ ବହୁକାମ ॥
ଶକ୍ର ବୃତ୍ରାସୁରକୁ ମାରିଥିଲେ । ଅଶ୍ୱମେଧ କରି ପାପ ମୁକ୍ତିଲେ ॥
ରାମ ଶୁଣିଣ ହୋଇଲେ ପ୍ରମୋଦ । ପାଦକମଳେ ବସି ଷଟପଦ ॥

---

## ୨୯ଶ ଛାନ୍ଦ

### ରାଗ—ଗୁଜ୍ଜରୀ ପଡ଼ିତାଳ

ଶୁଣ ହେ ସୁଜନ ଜନେ ଶ୍ରୀରାମ ଚରିତ । ଶ୍ରବଣେ ଶୁଣନ୍ତେ ହରେ ଅଶେଷ ଦୁରିତ । ଯଜ୍ଞ ବଢ଼ିଲା ବିଚାର । ଅଶ୍ୱମେଧ କରିବାରେ ହୋଇଲା ସ୍ୱୀକାର ॥ ବଶିଷ୍ଠ ସହିତେ ଅଣାଇଲେ ମନ୍ତ୍ରିଗଣ । ଅଶ୍ୱମେଧ କରିବାକୁ ଶୁଭ ସ୍ଥାନ ଗଣି । ନଦୀ ଗୋମତୀର କୂଳେ । ନୈମିଷାରଣ୍ୟେରେ ଋଷି-ମାନଙ୍କର ମେଳେ । ଆଜ୍ଞାଦେଲେ ଭରତକୁ ସାମଗ୍ରୀମାନ ଘେନ । ନୈମିଷା ଅରଣ୍ୟେ ନଦୀ ଗୋମତୀର କୂଳ । ତହିଁ କରି ଯାଗଶାଳା । ସମସ୍ତ ମାତାଙ୍କୁ ଘେନ ଯିବେ କଉଶଲ୍ୟା ॥ ସୁବର୍ଣ୍ଣ ସୀତା ଗୋଟିଏ ଗଢ଼ କରାଇବ । ସମସ୍ତ ରାଜାମାନଙ୍କ ପୁର ଭଆଇବ । ଋଷିମାନଙ୍କ ଆଶ୍ରମ । ବ୍ରାହ୍ମଣମାନଙ୍କ

ପୁର କରିବ ଉତ୍ତମ ॥ ତିଳ ତଣ୍ଡୁଳ ସୁବର୍ଣ୍ଣ ରଜତ ଭୂଷଣ । ରଥ ଗଜ ସହିତରେ ଘେନ ଧେନୁଗଣ । ସମସ୍ତ ସାମଗ୍ରୀ ନିଅ । ମାତାମାନଙ୍କୁ ଘେନିଣ ଆଗ ହୋଇ ଯାଅ ॥ ସମସ୍ତ ରାଜାମାନଙ୍କୁ ଦିଅ ନିମନ୍ତ୍ରଣ । ସୁଗ୍ରୀବ ସହିତରେ ଆସନ୍ତୁ ବିଭୀଷଣ । ଆଜ୍ଞା ଦେଲେ ନୃପବର । ବେନିଭାଇ ଆଜ୍ଞା ପାଇ ହୋଇଲେ ତତପର । ସମସ୍ତ ଦେଶମାନଙ୍କୁ ଦୂତ ବରଗିଲେ । ଆଜ୍ଞା ପାଇଣ ସମସ୍ତ ନୃପତି ଅଇଲେ । ସୁଗ୍ରୀବର ବିଭୀଷଣ ॥ ଏମାନେ ଅଇଲେ ସଙ୍ଗେ ଘେନି ନିଜ ଗଣ ॥ ସମସ୍ତ ଋଷିମାନେ ଶିଷ୍ୟମାନଙ୍କୁ ଘେନି । ପ୍ରବେଶ ହୋଇଲେ ତାଙ୍କୁ ଘେନି କୁମ୍ଭଯୋନି । ଅଶ୍ୱ ଘେନିଣ ଲକ୍ଷ୍ମଣ । ସେମାନଙ୍କୁ ଘେନିଣ କଲେକ ଗମନ ॥ ସମସ୍ତ ସାମଗ୍ରୀ ଭୃତ ଚଳାଇଣ ଦେଲେ ॥ ଜନନୀମାନଙ୍କୁ ଘେନି ଆଗେ ବିଜେ କଲେ । ନିର୍ମାଣିଲେ ବହୁ ପୁର । ଚତୁରଙ୍ଗ ବଳ ଘେନି ବିଜେ ରଘୁବୀର ॥ ସମସ୍ତେ ଗୋମତୀ ତୀରେ ହୋଇଲେ ଯାଇଁ ଜୁଣ୍ଡ । ଅରଣ୍ୟ ଉଦେଗିର କ ରାମ ମାରତଣ୍ଡ । ବହୁତ ବ୍ରାହ୍ମଣମାନେ । ପ୍ରବେଶହୋଇଲେ ଯାଗଶାଳ ସନ୍ନିଧାନେ ॥ ଯାଗଶାଳା ଦେଖି ରାମ ବହୁ ପ୍ରଶଂସିଲେ । ସମ୍ବତ୍ସର ପରଯନ୍ତେ ଯାଗ ଆରମ୍ଭିଲେ ॥ ବହୁ ହୋମ ଦେଲେ ଦାନ । ଯେ ଯାହା ମାଗନ୍ତି ତାହା ଦିଅନ୍ତି ବହନ ॥ ଲବ କୁଶଙ୍କୁ କହନ୍ତି ବାଲମିକ ଋଷି । ତୁମ୍ଭେ ରାଜା ଯାଗଶାଳା ସନ୍ନିଧିରେ ବସି । ଗାଇବ ଏ ରାମାୟଣ । ବୀଣା ବାଣୀ ତାଳ ଲୟ ସଙ୍ଗୀତ ଗାୟନ ॥ ରାଜା ଶୁଣି ଶୁଆଇଁଲେ ତୁମ୍ଭରେ ଗାଇବ । ବହୁତ ଦ୍ରବ୍ୟ ଯାଚିଲେ ଲୋଭ ନ କରିବ । ରାଜା ଯେବେ ପଚାରିବ । ଆମ୍ଭ ଶିଷ୍ୟ ବୋଲି ତାଙ୍କ ଛାମୁରେ କହିବ ॥ ଗୁରୁଙ୍କ ମୁଖରୁ ଶୁଣି ଏହା ରାମସୁତ । ସମସ୍ତ ସ୍ଥାନେ ଗାଇଲେ ରାମାୟଣ ଗୀତ । ଲୋକେ ଶୁଣିଣ ଚକିତ । ରାଜା ଶୁଣିଣ ତୁମ୍ଭଙ୍କୁ ରାଇଲେ ଭରତ ॥ ସମସ୍ତ ଋଷି ପଣ୍ଡିତ ଗୁଣିଙ୍କି ଅନାଇ । ଗୀତରେ କୁଶଳ ତାଳମାନଙ୍କୁ ବସାଇ । ରାଜାମାନେ ବସିଥିଲେ । ଲବ କୁଶ ରାମାୟଣ ସଭାଗେ ଗାଇଲେ । ରାମ ପଚାରନ୍ତେ ଏ ବେନି କୁମର ଦିଶନ୍ତି । ସଭାଜନେ ଚାହିଁ ମନେ ମନେ ବିଚାରନ୍ତି । କାହିଁ ଏ ଗ୍ରନ୍ଥ ଅଇଲା । ଏମନ୍ତ ଗାୟନମାନ ଶୁଣିବା ନ ଥିଲା ॥ ପ୍ରଥମ ଦିନ ରାମ କୋଡ଼ ସର୍ଗ ଶୁଣି । ଅଠର ସହସ୍ର ସୁବର୍ଣ୍ଣ ତ ଦେଲେ ଆଣି । ତାହା ଗ୍ରହଣ ନ କଲେ । ଆମ୍ଭେ ଏହା ଧନେ କିସ କରିବୁ ବୋଇଲେ ॥ କେ ତୁମ୍ଭର ପିତା କାହୁଁ ଆସି ବୋଇଲେ । ତୁମେ କେଉଁ ଋଷି ଶିଷ୍ୟ । ମନ ମୋହୁଅଛି ତୁମ୍ଭ ଦ[illegible] । କୁଶ ଜଣାଇଲେ ଆମ୍ଭ ଗୁରୁ ବାଲମିକ । ଶୁଣଅଛୁ ମାତାଙ୍କର ପିଅର ଜାନକୀ । ସାତକାଣ୍ଡ ରାମାୟଣ । ବାଲ୍ମିକ ଋଷି

କରିଅଛନ୍ତି ବଖାଣି ।। ରାମ ଆଜ୍ଞାଦେଲେ ଆଜ ଏଥିଠାରେ ଥିବ । କାଲି ଶୁଣିବା ଗ୍ରାମରେ ସମସ୍ତ ଗାଇବ । ଏତେ କହି ରାବଣାରି । ସଭା ଭାଙ୍ଗି ଯାଗ ଶାଳାରେ ବିଜୟ କରି ।। ଆରଦିନ ନିତ୍ୟକର୍ମ ସାରି ରଘୁବୀର । ସଭାକରି ଗ୍ରାମରେ ଗୁଆଇଲେ କୁମର । ସର୍ବେ ସାଧୁ ସାଧୁ କଲେ । ବିଶି ବୋଲେ ଶିରଧାରେ ଆଦ୍ୟରୁ ଗାଇଲେ ।।



## ୩୦ଂଶ ଛାନ୍ଦ—ଲବ କୁଶଙ୍କ ରାମାୟଣ ଗାନ

ରାଗ ବଙ୍ଗଳା

ଋଷ୍ୟଶୃଙ୍ଗ ଚରୁ ଦେବା, ରାମ ଜନମ ହୋଇବା, କଉଶିକ ମାଗି ଘେନିଯିବା । ପଥେ ତାଡ଼କା ମାରିବ, ମାରୀଚ ଉଡ଼ାଇଦେବା, ଯାଗ ରଖି ଅଭୟ କରିବା ସେ । ଯଜ୍ଞଜନ । ଶୁଣନ୍ତି ଆନନ୍ଦ ହୋଇ ମନ । ସଗରର ଅଶ୍ୱ ପତନ, ସ୍ବର୍ଗରେ ତନୁରୁହମାନ, ପୁଣି ତାଙ୍କ ଚରିତ୍ର ଗାୟନ ସେ ।। ତାରି ଗଉତମ ନାରୀ, ଜାହ୍ନବୀ ହୋଇଲେ ପାରି, ମିଥିଳାରେ କଲେ ଧନୁଭଙ୍ଗ । ଜାନକୀ ବିଭା ହୋଇବା, ବାହୁଡ଼ା ବିଜେ କରିବା, ପଥେ ଭେଟି ପରଶୁରାମ ସଙ୍ଗ ସେ ।। ଚୂର୍ଣ୍ଣକରି ତାଙ୍କ ଗର୍ବ, ଅଯୋଧ୍ୟା ପ୍ରବେଶ ସର୍ବ, ପିତାସତ୍ୟ ରଖି ବନେ ଗଲେ । କରିଣ ବିରାଧ ନାଶ, ବୁଲିଣ ତେର ବରଷ, ପଞ୍ଚବଟୀରେ ଆଶ୍ରମ କଲେ ସେ ।। ଛେଦି ଅସୁରୀ ଶ୍ରବଣ, ଖର ଦୂଷଣ ମରଣ, ମାୟାମୃଗ ଦେଖାଇ ରାବଣ । କଲକି ସୀତାହରଣ, ଜଟାୟୁ ହେଲା କାରଣ ସୁଗ୍ରୀବ ସଙ୍ଗରେ ମିତ୍ରପଣ ସେ ।। ସୁଗ୍ରୀବେ ପରୀକ୍ଷା ଦେବା, ସପତଶାଳା ଛେଦିବା, ବାଳି ମାରି ସୁଗ୍ରୀବ ସ୍ଥାପିବା । ହନୁ ସମୁଦ୍ର ଡେଇଁବା, ଲଙ୍କାରେ ସୀତା ଖୋଜିବା, ଲଙ୍କା ପୋଡ଼ି ଅକ୍ଷୟ ମାରିବା ସେ ।। ବାହୁଡ଼ି ଦେଲେ ବାରତା, ସୁଗ୍ରୀବ ରାମ କୁପିତା, ସାଗରେ ସେତୁ ବନ୍ଧନ କଲେ । ଋଷ କପି ଚଳିଗଲେ, ସୁବଳଗିରି ରହିଲେ, ଲଙ୍କାଗଡ଼ ବେଢ଼ିଣ ଯୁଝିଲେ ସେ ।। ହୋଇଲା ଅନେକ ରଣ, ମାଇଲେ ଅସୁରଗଣ, ପୁତ୍ର ଭ୍ରାତ ସହିତେ ରାବଣ । ଶାନ୍ତି ଦେଇ ବିଭୀଷଣ, ବାହୁଡ଼ିଣ ରାମଗଣ, ଅଯୋଧ୍ୟାରେ କଲେ ରାଜପଣ ସେ ।। ଜନମୁଖେ ଅପଯଶ, ଶୁଣି ସୀତାଙ୍କୁ ନିବାସ; ବାଲ୍ମୀକି ଆଶ୍ରମର ପାଶ । ଲବଣ ଅର୍ଥେ ବିଦେଶ, ଶତ୍ରୁଘ୍ନ ପରବେଶ, ସେ ନିଶି ଜନମ ଲବ କୁଶ ସେ ।। ଶୂଦ୍ରତପୀକି ମାରିବା, ଅଶ୍ୱମେଧ ତ କରିବା, ଆପଣା ଚରିତ ଗୁଆଇବା । ଲବ କୁଶ ତ ପାଇବା, ବଇଦେହୀ ଅଣାଇବା, ଦେବୀ ପୃଥ୍ୱୀରେ ଗୋପ୍ୟ ହୋଇବା ସେ ।। ମସ୍ତକ କରିଲେ କ୍ରୋଧ, ବୋଧିଲେ ସର୍ବବିବୁଧ, କାଳଦୂତେ ଆସି କଲା ଭେଦ । ଲକ୍ଷ୍ମଣଙ୍କ ଅପରାଧ

କରନ୍ତେ ନ କଲେ ବଧ, ତେଜନ୍ତେ ସେ ଗଲେ ବିଷ୍ଣୁପଦ ସେ ॥ ପୂର୍ବ ପଶ୍ଚିମ ଉତ୍ତର, ଦକ୍ଷିଣଦେଶ ଆବର, ପୁତ୍ରମାନଙ୍କୁ କଲେ ନୃପତି ॥ ଅଯୋଧ୍ୟାରେ ଯେତେ ନର, ବୃକ୍ଷ ପାଷାଣ ଆବର, ବଇକୁଣ୍ଠ ନେଲେ ରଘୁପତି ସେ ॥ ଏମନ୍ତ ରାମ ଚରିତ. ଗାଇ ଲବ କୁଶ ଗୀତ, ସଭାଜନେ ଶୁଣିଣ ଚକିତ । ଯା ନାମେ ହରେ ଦୁରିତ, ଅଦ୍ଭୁତ, ଏହି ଚରିତ, ଦ୍ୱିଜ ବଣି ଘୋଷେ ଅବିରତ ସେ । ୧୨ ।

—×—

## ୨୧ଶ ଛାନ୍ଦ ସୀତାଙ୍କର ଅଯୋଧ୍ୟା ଆଗମନ

### ରାଗ—ବିଚିତ୍ର ଦେଶାକ୍ଷ

ଲବ କୁଶଙ୍କର ଶୋଭା ଦେଖିଣ ରାମ । ବିଶ୍ୱଚିନ୍ତନ୍ତି ବେନି ସୁତେ ଦ୍ୱିତୀୟ କାମ । କଷାବାସ ପରଧାନ କଟିରେ ପଇତା । ଦୋସଡ଼ା କୃଷ୍ଣ ଅଜିନ ଦ୍ୱାଦଶ ଫିଟା ॥ ମଣ୍ଡିଅଛନ୍ତି ଗଳାରେ ରୁଦ୍ରାକ୍ଷମାଳ । ନେତ୍ର ବେନି ବାହା ଦୁଇ ବିଶେ ବିଶାଳ । ରାମାୟଣ ଶୁଣି ରାମଚନ୍ଦ୍ର ହରଷ । ବିସ୍ତାରିଲେ ବେନି ସୁତେ ପିତାଙ୍କ ଯଶ ॥ ପାଶକୁ ଆଣି ତାହାଙ୍କୁ କୋଳେ ଧଇଲେ । ଅତି ସ୍ନେହରେ ମୂର୍ଦ୍ଧ୍ନ ଆଘ୍ରାଣ କଲେ ॥ ହୃଦରେ ପ୍ରବେଶ ହେଲା ଶୋକ ବିବେକ ଦେଖୁଛନ୍ତି ସଭାରେ ସକଳ ଲୋକ ॥ ଆଜ୍ଞାଦେଲେ ଏ ବେନି ଆମ୍ଭର । ରହିଅଛନ୍ତି ଜାନକୀ ଋଷିଙ୍କ ପୁର ॥ ଏତେ କହି ଶତ୍ରୁଘ୍ନଙ୍କୁ ଅନାଇଲେ । କର ଯୋଡ଼ିଣ ସେହି ସମସ୍ତ କହିଲେ ॥ ଶୁଣିଣ ଆନନ୍ଦ ହେଲେ ଭରତ ଲକ୍ଷ୍ମଣ । ମନ୍ତ୍ରୀଗଣ ସହିତେ ସୁଗ୍ରୀ ବିଭୀଷଣ ॥ କୁମରଙ୍କୁ ଗ୍ରହି ବୋଲନ୍ତି ସର୍ବ ନୃପ । ଦେଖ ଏ ବେନିକୁମର ଶ୍ରୀରାମଙ୍କ ରୂପ ॥ ଶ୍ରୀରାମର କୋଳୁଁ ନେଇ ଭରତ ଲକ୍ଷ୍ମଣ । ଆଲିଙ୍ଗନ କରି ଶିରେ ଦେଲେ ଆଘ୍ରାଣ ॥ ସୁଗ୍ରୀ ବିଭୀଷଣ ଆଲିଙ୍ଗନ ତ କଲେ । ଆଉ ରାଜାମାନେ ଶିରେ କରକୁ ଦେଲେ ॥ ଭରତ ବିଭୀଷଣକୁ ଯେ ଠାରିଣ ଦେଲେ । ସେ ବେନି ନୃପତି ତାଙ୍କ ମନ ଜାଣିଲେ ॥ ସୁଗ୍ରୀ ବିଭୀଷଣ ଯୋଡ଼ିଣ ବେନିକର । ଭୟେ ତେଜି ଜଣାଇଲେ ରାମ ଛାମୁର ॥ ଠାକୁରାଣୀଙ୍କର ଦେବ ଅଛି କି ଦୋଷ । କିମ୍ପାଁ ତାଙ୍କୁ ଆଜ୍ଞା ହେଲା ବନେ ନିବାସ ॥ ଲଙ୍କାରେ ତ ଦେଖିଅଛ ପରୀକ୍ଷା ଦେଲେ । ଏବେ ପ୍ରଭୁଙ୍କୁ କେବଣ ଅପ୍ରାଧ କଲେ ॥ ଏବେ ସେହି ଅପରାଧ ଆମ୍ଭଙ୍କୁ ଦେବ । ଋଷିଙ୍କ ମଠରୁ ଘେନାଇଣ ଆସିବ ॥ ଶୁଣିଣ ଶ୍ରୀରାମ ତାହାଙ୍କର ବଚନ । ବୋଲନ୍ତି ଯେ ନିନ୍ଦା କଲେ ଅଯୋଧ୍ୟା ଜନ ॥ ତୁମ୍ଭର ଜଣାଇବାରୁ ସୀତା ଆସିବେ । କେବଳ ସେ ଆଉଥରେ ପରୀକ୍ଷା ଦେବେ ॥ ଏମନ୍ତ କହିଣ ଅଣାଇଲେ ଦୂଆରୀ । ଆଜ୍ଞାଦେଲେ ଶ୍ରୀମୁଖରେ କୋଦଣ୍ଡ

ଧାରା ।। ବାଲମୀକ ଆଶ୍ରମକୁ ତ୍ୱରିତେ ଯିବୁ । ଆମ୍ଭ ଆଜ୍ଞା ବୋଲଣ ତାହାଙ୍କୁ କହିବୁ । ବୋଲିବୁ ଏମନ୍ତ ଆଜ୍ଞା ଦେଲେ ନୃପତି । ସୀତାଙ୍କୁ ଘେନଣ ବିଜେ କରିବ ଯତି ।। ଆଜ୍ଞା ପାଇ ପଡ଼ିହାରୀ ତ୍ୱରିତେ ଗଲା । ବାଲମୀକ ଆଶ୍ରମରେ ପ୍ରବେଶ ହେଲା ।। ଜନକସୁତାକୁ ସେ ପ୍ରବୋଧି କହିଲେ । ରଘୁନାଥ ଆଜ୍ଞା ତୁମ୍ଭେ ଯିବ ବୋଇଲେ ।। ଆମ୍ଭର ସଙ୍ଗରେ ମା ଏ ଯାଗାକୁ ଯିବ । ଆଜ୍ଞା ଦେଇଣ ଅଛନ୍ତି ତୁମ୍ଭର ଧବ ।। ଦେଖିଣ ରାମ ତୁମ୍ଭଙ୍କୁ ହେବେ ହରଷ । ଦେଖିଣ ଦେବତାମାନେ ହୋଇବେ ତୋଷ ।। ଏତେ କହି ଜାନକୀଙ୍କୁ ସଙ୍ଗତେ ଘେନ । ବୋଲେ ବଶି ଅବଲମ୍ଭେ ବାହାର ମୁନ ।

---

## ୩୨୫ ଛାନ୍ଦ – ସୀତାଙ୍କ ପାତାଳ ପୁର ଗମନ

ରାଗ - ଚକ୍ରକେଳି ବାଣୀ

ସୀତାଙ୍କୁ ଘେନଣ ମୁନ ପ୍ରବେଶ । ମହୀ ଘେନ ଅଇଲେ କ ଉଦ୍ଦେଶ ।। ଆସନ ଦେଇ ରାମ ପୂଜା କଲେ । ଖଣ୍ଡେ ଦୂରେ ଜାନକୀ ଉଭା ହେଲେ ।। କରିଛନ୍ତି ବେନିକର ଅଞ୍ଜଳ । ମହୀକି ନୁଆଇଁଛନ୍ତି ମଉଳ ।। ହୋଏ କୋକନଦ ଦେଖା ଲପନ । ଦଶଅଛନ୍ତି ଦହିଲାସୁବର୍ଣ୍ଣ । ବାଲମୀକବୋଲନ୍ତି ହେ ଶ୍ରୀରାମ । କାହାମୁଖଁ ଶୁଣ କଲ ଏ କର୍ମ ।। ତୁମ୍ଭେତ ପଣ୍ଡିତ ମହା ଦର୍ଶାନ୍ତୁ । ଲୋକବାଦକୁ ହୋଇଲ ଭୟାନ୍ତୁ । ଆମ୍ଭେ ଜାଣୁ ତାଙ୍କର ନାହିଁ ଦୋଷ । କହିଛନ୍ତି ପୂର୍ବେ ଦବଓକସ ।। ତୁମ୍ଭ ଅନ୍ତପୁର ଆମ୍ଭ ଆଶ୍ରମ ।। ପୂର୍ବ ଅଟଇ ଅଭିନ୍ନ ହେ ରାମ ।। ଏ ତୁମ୍ଭର ବେନି ସୁତ ଯାମଳ । ବେଦବେଦାନ୍ତରେ ଏହି କୁଶଳ । ରାମାୟଣରେ ସମ୍ପୂର୍ଣ୍ଣ ଶୁଣିବ । ଭବିଷ୍ୟ ବୋଲଣ ତୁମ୍ଭେ ଜାଣିବ ।। ରାମ ବୋଲନ୍ତି ଶୁଣିବାକ ଋଷି । ଆମ୍ଭେ ଜାଣୁ ଆମ୍ଭ ସୀତା ନର୍ଦ୍ଦୋଷୀ ।ପ୍ରତ୍ୟେକ୍ଷ ଅଗ୍ନି ଭିତରୁ ଅଇଲେ । ନର୍ଦ୍ଦୋଷୀ ବୋଲଣ ତାତ ବୋଇର୍ଲେ ।। ଋକ୍ଷ ରାକ୍ଷସ ବାନର ଦେଖିଲେ । ନର୍ଦ୍ଦୋଷୀରେ ପିତା ତାଙ୍କୁ ଦେଖିଲେ ।। ତେଣୁ ଆମ୍ଭେ କଲୁ ଯେ ଅଙ୍ଗୀକାର । ଅଯୋଧ୍ୟା ଜନେ କଲେ ଅବଗ୍ଭର ।। ରାବଣପୁରୁଁ ସୀତାଙ୍କୁ ଆଣିଲେ ଲୋଭେ ତାହାଙ୍କୁ ତେଜ ନ ପାରଲେ ।। ଏବେକଲୁ ଅଶ୍ୱମେଧ ସମ୍ପୂର୍ଣ୍ଣ । ଆସିଅଛନ୍ତି ବହୁତ ରାଜନ ।। ସ୍ୱଦେଶୀ ବଦେଶୀ ଯେତେ ମନୁଷ୍ୟ । ଆସିଛନ୍ତି ନାନା ଜାତି ବଶେଷ ।। ସେମାନେ ପରୀକ୍ଷା ଅରେ ଦେଖିବେ । ସୀତା ନର୍ଦ୍ଦୋଷୀ ବୋଲି ପ୍ରତେ ଯିବେ । ତୁମ୍ଭେ ଏହି ବାଟେ କହିବ । ଯେମନ୍ତେ ପ୍ରତ୍ୟୟ ମନେ ହୋଇବ ।। ତାହା ଶୁଣି ବାଲମୀକ ଉଠିଲେ । ସୀତାଙ୍କ ସମ୍ମୁଖରେ ଯାଇଁ କହିଲେ ।। ଶୁଣି ଦେବୀ କ୍ରୋଧରେ ପ୍ରଜ୍ୱଳିତ ।।

ଶିର କମ୍ପାଇ କହନ୍ତ ଲଳିତ ॥ ଭୂମିକି ଗୁହାଁ ବୋଲନ୍ତ ଗୋ ମାତ । ରାମ ବିନୁ ଅନ୍ୟରେ ଯେବେ ରତ ॥ ତେବେ ମାତ ମୋତେ ଠାବ ନ ଦେବ । ନୋହିଲେ ମୋପାଇଁ ବଳ ହୋଇବ ॥ ଆଜ୍ଞା ପାଇ ବସୁଧା ଫାଟିଗଲେ । ସିଂହାସନେ ସୀତାଙ୍କୁ ବସାଇଲେ ॥ ଘେନାଇ ରସାତଳକୁ ଚଳିଲେ । ଦେଖି ରାମ ନେତ୍ରୁ ନୀର ତେଜିଲେ ॥ ଗୃହ୍ଣ ଗୃହ୍ଣ ଭୂମି ହୁଏ ସମାନ । ଦେଖିନ ଦେଖିଲା ପ୍ରାୟୁ ଲୋଚନ ॥ ଯାନ ମାନ ଯିବା ଗୃହ୍ଣ ଦେଖିଲେ । ଅବଶ ହୋଇ ଚେତନା ହାରିଲେ ॥ ବୋଲନ୍ତ କେଣେ ଗଲୁ ରେ ସୁମୁଖି । ଭଲ କରି ନ ପାରିଲି ମୁଁ ଦେଖି ॥ ଅଯୋନିସମ୍ଭୂତା ମୋର ବନିତା ॥ ବିଚ୍ଛେଦ କରାଇଲୁ ରେ ବିଧାତା ॥ ଏତେ ବୋଲି ପୃଥିବୀକି ଗୁହାଁଲେ ॥ ବୋଲେ ବଣି କ୍ରୋଧମନ ହୋଇଲେ ॥

---

## ୩୬ଶ ଛାନ୍ଦ

ରାଗ — ଶଙ୍କରାଭରଣ । ଏକତାଳୀ

ପଦ୍ମଲୋଚନ । ପ୍ରିୟାବଦନ । ନ ଦେଖି ଛନ୍ନ । କୁପିତମନ ॥ ବୋଲେ ମହୀରେ । ପ୍ରାଣସହୀରେ । ବଇଦେହୀରେ । ନେଲୁ କାହିଁରେ ॥ ମୋର କାନ୍ତାରେ । ତୋର ସୁତାରେ । ମୋତେ ଦିଅ ରେ । ଦଣ୍ଡ୍ୟନୁହରେ ॥ ଯେବେ ନ ଦେବୁ । ରୁଷ୍ଟ କରିବୁ । ଓଲଟାଇବି । ଶରେ ଦହିବି ॥ ରାମର କ୍ରୋଧ । ଦେଖି ବିବୁଧ । ଘେନି ସୁରେଶ । ମହୀ ପ୍ରବେଶ ॥ ଆସି ବିଧାତା । ହୋଇ ବିନୀତା । କହେ ବାରତା । ପୃଥିବୀ ମାତା ॥ କ୍ରୋଧ ସଂହର । କୋପ ନ କର । ବୈକୁଣ୍ଠପୁରୀ । ଗଲେ ସୁନ୍ଦରୀ ॥ ଭୁଂର ବାମା । ଅନୁଉପମା । ନିକଟେ ଧବ । ତାଙ୍କୁ ଦେଖିବ ॥ କହେ ବ୍ରଜେଶ । ଶୁଣ ନରେଶ । ନାରୀ ଅଦଣ୍ଡ୍ୟ । ତାଙ୍କୁ ନ ଦଣ୍ଡ ॥ ଶୁଣି ହରଷ । ତେଜ ବିରସ । ଧାତା କହିଲେ । ବୋଧ ହୋଇଲେ ॥ ଲବ କୁଶଙ୍କୁ । ରାଇ ପାଶକୁ । କୋଳେ ଧରିଲେ । ହୃଷ୍ଟ ହୋଇଲେ ॥ ଦେବ ମେଲାଣି । ସମୟ ଜାଣି । ଦେବୀ ପ୍ରବେଶ । ହୋଇହରଷ ॥ ସମସ୍ତ ଋଷି । କଲ୍ୟାଣ ଭାଷି । ମଠକୁ ଗଲେ । ମେଲାଣି ହେଲେ ॥ ବାନର ଈଶ । ସର୍ବ ନରେଶ । ରାମ ଦେଖିଲେ । ମେଲାଣି ହେଲେ ॥ ବିଭୀଷଣଙ୍କୁ । ରାଇ ପାଶକୁ । ମେଲାଣି ଦେଲେ । ସେ ଲଙ୍କା ଗଲେ ॥ ବହୁର ଗଲା । ଯାଗ-ସରିଲା । ବହୁତ ଧନ । ଦେଲେକ ଦାନ ॥ ତିନି ଭ୍ରାତଙ୍କୁ । ମାତାମାନଙ୍କୁ । ମନ୍ତ୍ରୀ ସହିତେ । ପୁତ୍ର ପ୍ରୋହିତେ ॥ ବାଦ୍ୟଙ୍ଗି ବଜେ । ରଜାଧିରାଜେ । ଅଯୋଧ୍ୟପୁରୀ । ବିଜୟ କରି ॥ ହେମ ପ୍ରତିମା ॥ ହୋଇଲା ବାମା । ପୂଜା କରନ୍ତ । ଧନ ହରନ୍ତ ॥



ପ୍ରଜାପାଳକ ।। ନିଜ ବାଳକ । ପ୍ରିତି ପାଳନ୍ତି । ଦୁଷ୍ଟ ମାରନ୍ତି । ନ ପାଇଁ ଦେଶ । ପୁର ପ୍ରବେଶ । ତାର ପ୍ରୋହିତ । ଋଷି ବଶିଷ୍ଠ ।। ରାମ ଜାଣିଲେ । ପାଶ୍ଚେ ଗଲେ । ତାଙ୍କୁ ଆଣିଲେ । ଲେଖ ଶୁଣିଲେ ।। ବହୁତ ଧନ । ବହୁ ବସନ । ବେଭାର କଲେ । ରାମଙ୍କୁ ନିଦେଲେ ।। ବାଜି ଶତକ । ଗଜ ବିଶେଷ । ଆଣିଣ ଥିଲେ । ରାମଙ୍କୁ ଦେଲେ ।। କେକୟ ଦେଶ । ଦେବ ନରେଶ । ଜଣାଉଛନ୍ତି । ଶୁଣ ନୃପତି ।। ସିନ୍ଧୁ ନଦୀର । ବେନି କୂଳର । ବହୁତ ଦେଶ । ଅଛି ବିଶେଷ ।। ତ୍ରିଶୟକୋଟି । ଗନ୍ଧର୍ବ ଘୋଟି । ତହିଁ ଅଛନ୍ତି । ରାଜ୍ୟ କରନ୍ତି ।। ତାଙ୍କୁ ସଂହାର । ହେ ନୃପବର । ରାଜ୍ୟ ଭୂମିର । ହେଉ ବିସ୍ତାର ।। ଭୃତଙ୍କୁ ପେଷ । ନୋହିଲେ ଆସ । ସାହା ହୋଇବା । ତାଙ୍କୁ ମାରିବା ।। ମାମୁଁ ବଚନ । ଶୁଣି ରାଜନ । ହୃଷ୍ଟ ହୋଇଲେ । ସେହୁ ବୋଇଲେ ।। ଭୃତଙ୍କୁ ପାଶ । ରାଇ ନରେଶ । ସବୁ କହିଲେ । ଯାଅ ବୋଇଲେ ।। ଗନ୍ଧର୍ବ ନାଶ । ନଦୀର ପାଶ । ତହିଁରେ ଦେଶ । ବସାଇ ଆସ ।। କୁମର ବେନି । ସଙ୍ଗରେ ଘେନି । ସେ ବେନିଦେଶ । କର ନରେଶ । ଶ୍ରୀରାମ ବାଣୀ । ଭରତ ଶୁଣି । ପାଦେ ପଡ଼ିଲେ । ମେଲାଣି ହେଲେ ।। ସୈନ୍ୟ ସହିତେ । ଘେନ ପ୍ରୋହିତେ । ବାହାର ହୁଏ । ହୟ ଗଜଚୟେ ।। ଦଶ ଦିବସେ ହେଲେ ସେ ଦେଶେ । ଗନ୍ଧର୍ବ ବଳ । ସଙ୍ଗରେ ଗୋଳ ।। ସାହା ମାତୁଳ । ଘେନିଣ ବଳ । ଯୁଦ୍ଧ ହୋଇଲା । ନାହିଁ ଦେଖିଲା ।। ପଡ଼ି ଶୋଣିତ । ହେଲା ସରିତ । ଶବ ବହୁତ । କବନ୍ଧ ନୃତ୍ୟ ।। କାଳ ଦଣ୍ଡରେ । ଖଣ୍ଡ ଖଣ୍ଡରେ ମଲେ ଗନ୍ଧର୍ବେ । ରଣରେ ସର୍ବେ । ଭୃତ ହାତରେ । ଦଣ୍ଡ ସାଥରେ । ମଲେ ତିନିକୋଟି । ଭୂମିରେ ଲୋଟି ।। ସେ ବେନି ଦେଶେ । ରହି ବରଷେ । ପୁର ତକ୍ଷକ । କଲେ ରକ୍ଷକ । ସାନ କୁମାର । ନାମ ପୁଷ୍କର । ବେନି ଦେଶରେ । ବେନି କୁମରେ ।। ହେଲେ ନୃପତି । ଭୁଞ୍ଜି ବିଭୂତି । ରାଜନ ଶ୍ରେଷ୍ଠ । ମାଇଲେ ଦୁଷ୍ଟ ।। କୈକେୟୀ ସୂନୁ । ରଖିଣ ସୁତ । ବାହୁଡ଼ି ଆସେ । ଅଯୋଧ୍ୟା ବାସେ ।। ଦର୍ଶନ କଲେ । ବହୁ କହିଲେ । ଶୁଣି ହରଷ । ରାମ ନରେଶ ।। ରାମ ଚରଣ । କଞ୍ଜ ଅରୁଣ । ବିଶି ଶରଣ । ଭଜୁଁ ଚରଣ । ୭୬ ।



## ଛାନ୍ଦ—ଲକ୍ଷ୍ମଣ ବେନନନ୍ଦନଙ୍କ ରାଜ୍ୟାଭିଷେକ

ରାଗ—ମଙ୍ଗଳଗୁଜ୍ଜରୀ

ରାମ ଆଜ୍ଞା ଦେଲେ ଆହେ ଶୁଣ ସଉମିତ୍ରେ । ମହାବଳସ୍ତ ଅଟନ୍ତି ତୁମ୍ଭ ବେନ ପୁତ୍ରେ ॥ ଉତ୍ତମ ଦେଶ ଖୋଜିକରି କରିବା ରାଜନ । ସେ ଦେଶ ଖୋଜି ତୁମ୍ଭମୁରେ ଜଣାଅ ବହନ ॥ ଶୁଣି ଭରତ ଜଣାଇଲେ ଶିରେ କର ଦେଇ । ବେନ ଦେଶ ଅଛି ତାହା ଶୁଣ ନୃପସାଇଁ । ଏକ ରାଜ୍ୟର ନାମ ଅଟଇ କାଲୁପଥ । ସେ ଦେଶ ନେବାକୁ ହୋଇଅଛି ମନୋରଥ ॥ ଲକ୍ଷ୍ମଣଙ୍କ ଜ୍ୟେଷ୍ଠପୁତ୍ର ଅଙ୍ଗଦକୁମର ସେ ଦେଶରେ ତାହାଙ୍କୁ କରିବା ନୃପବର ॥ ଚନ୍ଦ୍ରକାନ୍ତ ବୋଲଣ ଅଛଇ ଯେଉଁ ଦେଶ । ସେ ଦେଶରେ ଚନ୍ଦ୍ରଧ୍ୱଜ ହୋଇବ ନରେଶ ॥ ଶୁଣି ରାମ ଆଜ୍ଞା ଦେଲେ ଏହିରୂପେ କର । ଶୁଣିଣ ଭରତ ସେ ହୋଇଲେ ତତପର ॥ ଲକ୍ଷ୍ମଣ ସହିତେ ବେନ ପୁତ୍ର ସଙ୍ଗେ ନେଇ । ବେନ ଭାଇ ଆରୋହଣ କଲେ ରଥ ବେନି । ଚତୁରଙ୍ଗ ବଳ ତାଙ୍କ ସହିତରେ ଗଲେ । ଯେଉଁ ରୂପେ ରାମଚନ୍ଦ୍ର ଆଜ୍ଞା ଦେଇଥିଲେ ॥ ସେ ବେନ କଟକେ ଯାଇ ହେଲେ ପରବେଶ । ବହୁ ଯୁଦ୍ଧ କଲେ ଆସି ସେ ଦେଶ ନରେଶ । ସଂଗ୍ରାମରେ ସେ ବେନ ନୃପନ୍ତ ହେଲେ ହତ । ସେ ଦେଶର ରାଜା କଲେ ଲକ୍ଷ୍ମଣଙ୍କ ସୁତ ॥ ନାରଦ ସେ ଅଙ୍ଗଦକୁ କଲେ ଅଭିଷେକ ଚନ୍ଦ୍ରକାନ୍ତ ଦେଶେ ଚନ୍ଦ୍ରଧ୍ୱଜ ସେ ପାଳକ ॥ ଭୂମି ଜୟ କରି ତହିଁ ବରଷେ ରହିଲେ । ବାହୁଡ଼ିଣ ଅଯୋଧ୍ୟାରେ ପ୍ରବେଶ ହୋଇଲେ ॥ ରାମଙ୍କୁ ଦର୍ଶନ କରି ସମସ୍ତ କହିଲେ । ଶୁଣିଣ ରାଘବ ଯାହା ହରଷ ହୋଇଲେ । ନିତ୍ୟକର୍ମ ସାରି ରାମ ଭିତରକୁ ଗଲେ । ବୋଲେ ବଳି ସମସ୍ତେ ହେ ମେଲାଣି ହୋଇଲେ । ୧୬ ।

— X —

## ଆ୪ଶ ଛାନ୍ଦ – ଶ୍ୱାନ ସନ୍ନ୍ୟାସୀ ସମ୍ବାଦ

ରାଗ – ମଙ୍ଗଳଗୁଜ୍ଜରୀ

ଲକ୍ଷ୍ମଣ ଆସନ୍ତେ ଶ୍ୱାନ ରହିଛି ଦ୍ୱାରେ । ମୁଣ୍ଡ ଯାଏ ଫାଟି ରୁଧିର ଗଳଇ ଖରେ ॥ ଦେଖିଣ ତାହାଙ୍କୁ ପୁଛନ୍ତି ସୁମିତ୍ରାସୁତ । କ ଦୋଷେ କେହୁ ମାଇଲା କହ ତୁ ସତ ॥ ଲକ୍ଷ୍ମଣଙ୍କ ବଚନକୁ ପ୍ରତେ ନ ଗଲା । ରାଜାଙ୍କ ଛାମୁରେ ମୁଁ କହିବି ବୋଇଲା ॥ ବାହୁଡ଼ି ଲକ୍ଷ୍ମଣ ସିଂହଦ୍ୱାରେ ହୋଇଲେ । ଏକାନ୍ତରେ ଶ୍ରୀରାମ ଛାମୁରେ କହିଲେ ॥ ସିଂହଦ୍ୱାରେ ଶ୍ୱାନ ଦେବ କରେ ଗୁହାରି । ପୁଛିଲେ ସେ ନ କହିଲା ହେ ରାବଣାରି । ବୋଇଲା ରାଜାଙ୍କ ଯେବେ ପାଇବି ଭେଟ । ତେବେ ଜଣାଇବି ଯେତେ ମୋହର କଷ୍ଟ ॥

ଶୁଣିଣ ଶ୍ରୀରାମ ଶୀଘ୍ର ଉଠି ଅଇଲେ । ସିଂହଦ୍ୱାରେ ଶ୍ୱାନ ... ଉଭା ହୋଇଲେ ।। ଶ୍ରୀରାମଙ୍କୁ ଦେଖି ଶ୍ୱାନ କାନ୍ଦ ଗଡ଼ଇ । କରୁଣ ନିବେଦି ପୁଣ ପୁଣ ପଡ଼ଇ ।। ପଚାରନ୍ତି ରାମ ତୋତେ କେହୁ ମାଇଲା । କି ଦୋଷ କାହାର ଜଣା ଯାଇ ନୋହିଲା । ଶ୍ୱାନ ବୋଇଲା ଶୁଣ ଦେବ ମୁଁ ବୁଲୁଥାଇଁ । ଯାହା ଯହିଁ ପାଏ ତାହା ଗ୍ରାସ କରଇଁ ।। କେବଳ ଗିଜର୍ଣ୍ଣାଣ୍ଡରେ ଥାଏ ମୁଁ ପଡ଼ି । ଘରେ ଯେ ଦେଖିଲେ ମୋତେ ପଳାନ୍ତି ଛାଡ଼ି ।। ସନ୍ନ୍ୟାସୀ ଗୋଟିଏ ଦେବ ବୁଲୁ ଯେ ଥିଲା । ହାବୋଡ଼ଣ ମୋତେ ଦଣ୍ଡ ଘେନି ପିଟିଲା ।। ମୋହ ଥିଲେ ମୁହିଁ ଦେବ ଶୋଇ ଯେ ଥିଲି । ଆଜ୍ଞା ହେଉ ସନ୍ନ୍ୟାସୀର କି ଦୋଷ କଲି ।। ଆଜ୍ଞା ଦେଲେ ଭିକ୍ଷୁ ଘେନି ଆସ ଯେ ବେଗେ । ଶ୍ୱାନକୁ କିପାଇଁ ଦଣ୍ଡେ ପିଟିଲେ ରାଗେ । ଆଜ୍ଞା ପ୍ରମାଣେ ଭିକ୍ଷୁକୁ ଘେନି ଅଇଲେ । କିପାଁ ମାଇଲ ଏହାକୁ ରାମ ବୋଇଲେ ।। ଭିକ୍ଷୁକ ଜଣାଏ ମଠୁ ହେଲି ବାହାର । ଭିକ୍ଷା କରି ଯାଇଥିଲି ଅନେକ ଦୂର ।। ସେ କାଳରେ ପଥେ ଏହୁ ପଡ଼ି ଯେ ଥିଲା । ପଥେ ହାବୋଡ଼ନ୍ତେ ମୋର କ୍ରୋଧ ହୋଇଲା ।। କ୍ଷୁଧାରେ ମୁଁ ଦଣ୍ଡ ଶରେ କଲି ପ୍ରହାର । ଯାହା ଇଚ୍ଛା ତାହା କର କୋଦଣ୍ଡଧର ।। ଶୁଣିଣ ଶ୍ରୀରାମ ଶ୍ୱାନମୁଖ ଚାହିଁଲେ । କି ଦଣ୍ଡ ଏହାକୁ ଦେବା ବୋଲି ବୋଇଲେ ।। ଶ୍ୱାନ ଜଣାଇଲା ଶିବଥାନରେ ଦେବ । ତହିଁର ଚରଣ କର ନଷ୍ଟ ହେବ ଥିବ ।। ପୂର୍ବେ ଶିବଆଳେ ଥିଲା ମୋ ଅଧିକାର । କର୍ମରୁ ହେ ପୁଣ ଲଗି ହେଲି କୁକୁର ।। ଶୁଣିଣ ଶ୍ରୀରାମ ତଥାସ୍ତୁ ବୋଲି ବୋଇଲେ । ଶାଢ଼ୀ ଦେଇ ଗଜ ଚଢ଼ାଇ ବୁଲାଇଲେ ।। ହରିଣ ଜନେ ବୋଲନ୍ତି ଶୁଣ ଗୁହାରି । ଏତେ କାଳରେ ହୋଇଲା ଭିକ୍ଷୁକ ଶିଖ । ଶ୍ରୀରାମ ପାଦଯୁଗଳ ରଙ୍ଗକମଳ । ଧ୍ୟାନ ବସି ମତ୍ତ ତହିଁ ହେଉ ଭ୍ରମର । ୧୧ ।

—+—

## ୩୭ଶ ଛାନ୍ଦ—ଉଲ୍ଲୂକ ଗୃଧ୍ର ସମ୍ବାଦ

ରାଗ—କଲ୍ୟାଣ ଏକତାଳୀ

ଉଲ୍ଲୂକ ଗୃଧ୍ର ଗୁହାରି । ଦେବ ଦେବ ରାମଣାର । ଶୁଣନ୍ତୁ ପୁରୁ ବାହାର । କେଉଁ ପକ୍ଷୀଙ୍କ ଗୁହାରି । କୋଦଣ୍ଡପାଣି । ପ୍ରଭିହାରୀ ବଚନ ଶୁଣି । ହୋଇଣ । ମନେ ହସି ରଘୁମଣି । ଲକ୍ଷ୍ମଣ ପାଶରେ ପାଣି ।। ପାଦୁକା ଚଢ଼ି ଧାଇଁଣି । ବିଜେ କଲେ ସେହିକ୍ଷଣି ।। ସିଂହଦ୍ୱାରେ ହେବେ ଉଭା । ଦିଶିଲେ ତନୁ ଶୋଭା । ଘେନି କି ସକଳ ସେବା । ବିଜୟ କଲେ କ୍ଷଣେବା ।। ଦେଖି ବିଶାଳ ବିହଙ୍ଗ । ଉପୁନ କଲେ ସଫଳ । କ୍ରୋଧରେ

ମୋହନ ୭ । ପଡ଼ିଲେ ଧରଣୀତଳ ॥ ଗୃଧ୍ର କୁଁଉଟିକି ଗୃହ । ଆଜ୍ଞା ଦେଲେ ସାଙ୍ଗସାଇ । ଗୁହାରି କଲ କମ୍ପାଇ । ଶ୍ରୀମୁଖରେ କହ ବୁଝାଇ ॥ ଗୃଧ୍ର କହେ ମୋର ଘର । କରିଅଛି ତରୁପର । ଯେଉଁଦିନ ନୃପବର । ମାନେ ହୋଇଲେ ପ୍ରଚୁର । ଉଲ୍ଲୂକ କହିବାଲେ ବଚନ ଘେ ଦେବ ମୋର ସଦନ । ବୃକ୍ଷମାନ ଯେଉଁଦିନେ । ଉପୁଜିଲେ ଏ ଭୁବନେ ॥ ମନ୍ତ୍ରୀମାନଙ୍କୁ ଡକାଇ । ବୋଲନ୍ତି ବୁଝି ଗୁହାରି । ଏ ବସା ହେଲା କାହାରି । ଏ ବସା ହେଲା କାହାରି । କହ ସମସ୍ତେ ବିଚାରି । ମନ୍ତ୍ରୀମାନେ ଯୋଡ଼ିକର । ଜଣାଇଲେ ଯେ ଶ୍ରୀମୁଖ । ଦୂହେଁ ତ ବୋଲନ୍ତି ମୋର । ଶ୍ରୀମୁଖରେ ଆଜ୍ଞାକର । ଶୁଣି ଶ୍ରୀରାମ ହସିଲେ ॥ ଗୃଧ୍ର ହାରିଲା ବୋଇଲେ । ବୃକ୍ଷମାନ ଆଗ ଥିଲେ । ପଛେ ସେମାନେ ତ ହେଲେ । ଉଲ୍ଲୂକ ଘର ପାଇଲା । ଆକାଶ ବାଣୀ ହୋଇଲା । ଗୃଧ୍ରକୁ ଦଣ୍ଡ ନୋହିଲା । ପାପରୁ ମୁକତ ହେଲା ॥ ରାମଙ୍କୁ କରି ଦର୍ଶନ । ଆରୋହି ଆକାଶ ଯାନ । ସ୍ୱର୍ଗକୁ କଲା ଗମନ । ରାମପାଦେ ବଶି ମନ ॥

—×—

## ୩୭ଶ ଛାନ୍ଦ—ଶ୍ରୀରାମଙ୍କ ନିକଟରେ କାଳଦୂତର ପ୍ରବେଶ

ରାଗ—ଗୁର୍ଜ୍ଜରୀ

ଶ୍ରୀରାମଚନ୍ଦ୍ର ରାଜନ କରନ୍ତେ ଦିନେ ଆସ୍ଥାନ, ବଶିଷ୍ଠ ଋଷି ଜାବାଲି କଶ୍ୟପ ହେନ । ସୁମନ୍ତ୍ର ସୁଦର୍ଶନ, ଶୁଭଦ୍ର ଭଦ୍ର ପ୍ରସନ୍ନ; ଉଭା ହୋଇଅଛନ୍ତି ଯୋଡ଼ି କର ବେନି । ଏହି କାଳରେ କାଳଦୂତ । ସିଂହଦ୍ୱାରେ ପ୍ରବେଶ ହୋଇଲା ତ୍ୱରିତ ॥ ଦ୍ୱାରିକି କହେ ବଚନ, ଜଣାଅ ରାମରାଜନ, ବୋଲିବ ମହାମୁନିଙ୍କ ଶ୍ରୀମୁଖରୁ ଦୂତ । ଆଣି ଅଛଇ ଉଦନ୍ତ, କହିବ ସର୍ବ ବୃତ୍ତାନ୍ତ, ଦର୍ଶନ କରି ଶ୍ରୀମୁଖରେ ଯିବ ତ୍ୱରିତ । ଏହା ଶୁଣି ସେ ଦ୍ୱାରପାଳ । ଜଣାଇଲା ଶ୍ରୀରାମଙ୍କ ଆସ୍ଥାନ ତଳ ॥ ଆଜ୍ଞା ଦେଲେ ହେନ ଆସ, ଦୂତକୁ ଆମ୍ଭର ପାଶ, କେଉଁ ଋଷିଠାରୁ ଆସିଛନ୍ତି ଜାଣିବା । କେଉଁ କାରଣେ ଉଦନ୍ତ; ଦେଇଛନ୍ତି ତପୋବନ୍ତ ନିର୍ଣ୍ଣୟ କରିଣ ତାଙ୍କ ମୁଖରୁ ଶୁଣିବା । ଆଜ୍ଞା ପାଇ ଦୂତକୁ ନେଲେ । ଶ୍ରୀରାମ ଶ୍ରୀମୁଖରେ ନେଇ ଭେଟ କଲେ ॥ କାଳଦୂତ କହେ ବାଣୀ, ଶୁଣ ଦେବ ରଘୁମଣି, କହିବ ମୋ ସଙ୍ଗେ ତୁମ୍ଭେ କଲେ ନିର୍ବନ୍ଧ । ସ୍ଥାନ ହେଲେ ନିର୍ଜ୍ଜନ କହିବି ତାଙ୍କ ବଚନ, ସେ ସମୟେ ଯେ ଆସିବ କରିବ ବନ୍ଧ । ଶୁଣି ରାମ ନିର୍ବନ୍ଧ କଲେ । ଯେ ଆସିବ କଷ୍ଟେ ବଧ ହେବ ବୋଇଲେ । ଲକ୍ଷ୍ମଣଙ୍କୁ ଲକ୍ଷ୍ମଣ ଭାଇ, ଆଜ୍ଞା ଦେଲେ ରଘୁସାଇଁ; ଦୁଆରେ ରହି କାହାକୁ ଛାଡ଼ି ନ ଦେବ । ଶ୍ରୀମୁଖରେ କେହି ନ ଥିବେ କେହି ଆଜ ନ ଆସିବେ । ଯେବେ ଆସିବେ ସେ କଷ୍ଟେ ବଧ

ହୋଇବେ । ଆଜ୍ଞା ପାଇ ବୀର ଲକ୍ଷ୍ମଣ । ଜନ ନ ରୋଧିଲେ ଦ୍ୱାରେ [illegible] ଶୁଣି [illegible]ଙ୍କୁ ଘେନି ଏକାନ୍ତ, ହୁଅନ୍ତେ ଜାନକୀ କାନ୍ତ, ଦୂତ କହିଲା ପେଷିଲେ [illegible]ଆସନ । କରୁଛନ୍ତି ବହୁ ସ୍ତବ; ତୁମ୍ଭେ ଅଟ ଦେବ ଦେବ; ମହୀରେ ବିଜେ [illegible] ଅନେକ ଦିନ । ବଇକୁଣ୍ଠ ହୋଇଛି ଶୂନ୍ୟ । ଏ ସନ୍ଦେଶ ଶ୍ରବଣ ହୋଇଲା ସମ୍ପୂର୍ଣ୍ଣ ॥ ମୁହିଁ କାଳ ହୋଇ ଦୂତ, ଶ୍ରୀମୁଖରେ କହୁଛି ସତ, ବୈକୁଣ୍ଠକୁ ଏବେ ହେବ ବିଜୟ କର । ରାବଣ ହୋଇଲା ହତ, ଦୁଷ୍ଟଙ୍କୁ କଲ ନିପାତ, ରାମ ଅବତାର ଶେଷ ହେଲା ତୁମ୍ଭର । ଶୁଣି ରାମ ଦୂତ ବଚନ । ଆଜ୍ଞାଦେଲେ ଯିବ ବଇକୁଣ୍ଠ ଭୁବନ ॥ ଏକାଳେ ଦୁର୍ବାସା ଋଷି, ସିଂହଦ୍ୱାରେ ହେଲେ ଆସି, ଲକ୍ଷ୍ମଣଙ୍କୁ ଚାହିଁଣ ବୋଇଲେ ବଚନ । ଦେଖାଅ ରାମରାଜନ, କରିବୁଁ ଆମ୍ଭେ ଦର୍ଶନ, ନ ଦେଖିଲେ ଦହିବୁଁ ତୁମ୍ଭର ଭୁବନ । ତାହା ଶୁଣି ସୁମିତ୍ରାସୁତ । ବୋଇଲେ ଯାହା ମାଗିବ ଦେବା ତ୍ୱରିତ ॥ ଦର୍ଶନକୁ ଯାହା କହ, ମୁହୂର୍ତ୍ତେ ମାତ୍ରକ ରହ, ଠାକୁରଙ୍କ ଶ୍ରୀମୁଖକୁ ମୁଁ ଘେନାଇ ଯିବି । ନୋହିଲେ କହ ବୃତ୍ତାନ୍ତ, କହ ମୋତେ ତପୋବନ୍ତ; ଯାହା ଇଚ୍ଛା କର ତାହା ତ୍ୱରିତେ ଦେବି । ଶୁଣି ମୁନି ବୋଲେ ବଚନ । ରାମ ନ ଦେଖିଲେ ମୁଁ ଦହିବି ଭୁବନ । ଲକ୍ଷ୍ମଣ କଲେ ବିଚାର, ମହାକ୍ରୋଧୀ ମୁନିବର, ଏହା କ୍ରୋଧେ ସମସ୍ତେ ଯେ ହୋଇବେ ନାଶ । [illegible] ଏବେ ଶ୍ରୀମୁଖକୁ ଯିବି, ମୁନି କ୍ରୋଧ ଜଣାଇବି, ଏକା ମାତ୍ର ମୁହିଁ ସିନା ହେବି ବିନାଶ । ଏହା ମନେ କରି ବିଚାର । ଦୁର୍ବାସାଙ୍କୁ ରଖି ସେଠୁ ଗଲେ ଭିତର ॥ କଥା ହୋଉନ୍ତେ ବେନିଜଣ; ସେ କାଳେ ମିଳି ଲକ୍ଷ୍ମଣ, ଲକ୍ଷ୍ମଣଙ୍କୁ ଦେଖି ରାମ ହେଲେ ଚକିତ । କହନ୍ତି କି କାର୍ଯ୍ୟ କହ କଲୁ [illegible] ଅତି ଦୁଃସହ, ଆଜ୍ଞା ଭଙ୍ଗି ଶ୍ରୀମୁଖକୁ ଆଇଲ ତ୍ୱରିତ । ଶୁଣି ଜଣାଇଲେ ସାନୁଜ । ଦୁର୍ବାସା କୋପରେ କରିଛନ୍ତି ଦହିବା ॥ ଦୂତକୁ ମେଲଣି ଦେଲେ, ମୁନି ସଙ୍ଗେ ଭେଟ ହେଲେ, ଦୁର୍ବାସା ବୋଇଲେ ଶୁଣି ରାମରାଜନ । ତପ କଲୁ ବହୁ ଦିନ ଅନ୍ନ ନ କଲୁ ଅଶନ ଏବେ ତୁମ୍ଭ ନଗରେ କରିବୁ ଭୋଜନ । ଶୁଣି ରାମ ସାନନ୍ଦ ହେଲେ । ଷଡ଼ରସରେ ଭୋଜନ ମୁନିଙ୍କି ଦେଲେ ॥ ଭୋଜନେ ହୋଇ ତୃପତ, କଲ୍ୟାଣ କରି ଯତ; ମେଲଣି ହୋଇଣ ନିଜ ଆଶ୍ରମେ ଗଲେ । ରାମ ହୋଇ ଚିନ୍ତାଚିତ୍ତ; ନିରତେ ବିକଳ [illegible] ମୁଖ ମଣ୍ଡିକ କରି ଅଶ୍ରୁ ମୁଞ୍ଚିଲେ । ଏହା ଦେଖି ସୁମିତ୍ରାସୁତ । ଜଣାଇ[illegible] ମୋତେ ବଧ କର ତ୍ୱରିତ ॥ ଲକ୍ଷ୍ମଣ ବଚନ ଶୁଣି ଆଜ୍ଞାଦେଲେ ରଘୁମଣି, [illegible] ଗୁରୁ ବଶିଷ୍ଠ ଜାବାଳି କଶ୍ୟପ । କରିଣ ଥିଲେ ନିବନ୍ଧ

ଯେ ଅନ୍ତ ... ବଧ, ଏବେ ସତ୍ୟଭଙ୍ଗ ହେଲୁ ନାଶଲ ପାପ । ଲକ୍ଷ୍ମଣ ଆମ୍ଭର ... ବଧ କେମନ୍ତେ କରିବୁ ହୋଇଛୁ କ୍ରୋଧ ॥ ଏମନ୍ତ ଶୁଣି ବଶିଷ୍ଠ ବୋଲନ୍ତି ହେ ନୃପଶ୍ରେଷ୍ଠ, ଆଜ୍ଞାଭ୍ରଷ୍ଟ ନୃପ ହେଲେ ହୁଅନ୍ତି ନଷ୍ଟ । ସୁକୃତ ହୋଏ ବିନାଶ, ନାଶ ଯାନ୍ତି ସର୍ବ ଯଶ, ବଧରୁ ତ୍ୟାଗ ଅଟଇ ଦ୍ୱିଜ ଶ୍ରେଷ୍ଠ । ଏହା ଶୁଣି ରାମ ନୃପତି । ବୋଇଲେ ବଶି ଲକ୍ଷ୍ମଣଙ୍କୁ ଚାହିଁ ବୋଲନ୍ତି ॥

---

## ୩୮ଶ ଛାନ୍ଦ—ଲକ୍ଷ୍ମଣଙ୍କ ବୈକୁଣ୍ଠ ଗମନ

ରାଗ—ବରାଡ଼ି । ଦ୍ୱିପ୍ରସିଂହ ବାଣୀ

ଆହେ ସଉମିତ୍ରି ଶୁଣ, ଅଯୋଧ୍ୟାରୁ ଏହିକ୍ଷଣ, ବାହାର ହୋଇଣ ତୁମ୍ଭେ ଯାଅ । ଆମ୍ଭେ ତୁମ୍ଭଙ୍କୁ ତେଜିଲୁ, ସୁକୃତକୁ ଭୟ କଲୁ, ପ୍ରାଣ ଯେନ ଯଦି ତହିଁ ଥାଅ ହେ । ସଉମିତ୍ରି । ବଧକୁ ନୁହ ତୁମ୍ଭେ ଭାଜନ । ବନେ ସେବା କଲ ଯେତେ, ତାହା ମୁଁ କହିବି କେତେ, ମଲା ଗଲା ଦୁହେଁ ତ ସମାନ ହେ ॥ ଆମ୍ଭେ ପ୍ରତିଜ୍ଞା କରିଛୁ, ମାରିବୁ ବୋଲି ବୋଲିଛୁ; ତାହା ଆଜ ଯେବେ ନ କରିବା । ହୋଇବ ସୁକୃତ ଭଙ୍ଗ, ନରକେ ପଡ଼ିବ ଅଙ୍ଗ, ଆଜ୍ଞାଭ୍ରଷ୍ଟ ନୃପ ବୋଲାଇବା ହେ । ସଉମିତ୍ରି । ତୁମ୍ଭେ ଜାଣ ସବୁ ବ୍ୟବହାର । ତୁମ୍ଭଙ୍କୁ ମୁଁ କ କହିବି, ତୁମ୍ଭ ମୁଖ ନ ଦେଖିବି; ତୁମ୍ଭ ମନକୁ ... ବାହାର ହେ ॥ ଶ୍ରୀମୁଖ ନିଷ୍ଠୁର ବାଣୀ, ଲକ୍ଷ୍ମଣ ଶ୍ରବଣେ ଶୁଣି, ପଞ୍ଚାଞ୍ଜଳି ଦେଇ ପ୍ରଦକ୍ଷିଣ ଦେଲେ । ଶିରେ ଦେଲେ ବେଣୁପାଣି; ଶ୍ରୀମୁଖୁ ହୋଇ ମେଲାଣି, ଆଉ ତାଙ୍କ ପୁରକୁ ନ ଗଲେ ସେ । ସଉମିତ୍ରି । ସରଯୂତଟ ନିକଟେ ହେଲେ । ଗମନେ ନଦୀ ଭିତରେ, ଆକାଶେ ରହି ଅମରେ, କୁସୁମମାନଙ୍କୁ ବୃଷ୍ଟି କଲେ ସେ ॥ ସୁନାସୀର ଦେବବର, ବିମାନ ଘେନି ସଙ୍ଗର, ଲକ୍ଷ୍ମଣଙ୍କ ଶ୍ରୀମୁଖରେ ପ୍ରବେଶ । କରଯୋଡ଼ି ସ୍ତବ କଲେ, ବିମାନରେ ବସାଇଲେ, ବୋଇଲେ ସ୍ୱର୍ଗରେ କର ବାସ ହେ । ସଉମିତ୍ରି । ରାମସଙ୍ଗେ ବୈକୁଣ୍ଠକୁ ଯିବ । ଏତେ କହି ଶୂନ୍ୟେ ଦେଲେ, କେହି ତାଙ୍କୁ ନ ଦେଖିଲେ; ବୋଲେ ବଶି ରଖ ସୀତାଧବ ହେ । ୪ ।

—x—

## ୩୯ଶ ଛାନ୍ଦ

## ଲବ କୁଶାଦିଙ୍କର ରାଜ୍ୟାଭିଷେକ

ରାଗ—କୁସୁମସୌରଭ

ଶୁଣ ସୁଜନେ ରାମ ଚରିତ୍ର ରସ । ... ଚନ୍ଦ୍ର ... ॥ ... ନ ବସନ୍ତି ମଣିଲେ ବଶ । କୃଷ୍ଣପକ୍ଷ ... ଶେଷ ॥

ବୋଲେ ଶ୍ରୀରାମ ନଶ୍ଚେଁ ଯିବୁ ବନ । ସଦନରେ ରହିବାକୁ ଷଡ଼େଣ୍ଟ [illegible]ଧାହେ
ଣନ ॥ ଲକ୍ଷ୍ମଣ ଗଲାଦିନୁ ରାଜାବନେଇ । ଦିନକୁ ଦିନ ଷୀଣ ହୋଇଲେ ଗାତ୍ର ॥
ଅଜଳାକୁଳରୁଦ୍ଧ ପ୍ରାୟ ଲୋଚନ । ମର୍କତଜିତ କାନ୍ତି ଦିଶେ ବିବର୍ଣ୍ଣ ॥ କେତେବେଳେ
ଚ[illegible]ନ୍ତି ହା ହା ଲକ୍ଷ୍ମଣ ଜାନକୀ । ଦଇବ [illegible]ସିଣ ଏହା ପାଞ୍ଚିଥିଲା ନକି ॥ ବଶିଷ୍ଠ
ବାମଦେବ କଶ୍ୟପ ରାଇ । ସୁମନ୍ତ ମନ୍ତ୍ରୀ ଖ୍ରମ୍ଭୁକୁ ଡାକରାଇ ॥ ଆଜ୍ଞାଦେଲେ ଭରତଙ୍କୁ
ହୁଅ ନୃପତି । ଶୁଣିଣ ଭରତ ଛୁଇଁଲେ ଭୂମିଶ୍ରୁତି ॥ ଲବ କୁଶଙ୍କୁ ଦେବ କରିବ
ଅଭିଷେକ । ରାଜାକୁ ଯୋଗ୍ୟ ନୁହେଁ ମୁଁ ତୁମ୍ଭ ସେବକ ॥ ବନକୁ ଯେବେ ଯିବ
ସଙ୍ଗରେ ଯିବ । ଲକ୍ଷ୍ମଣ ପ୍ରାୟ ସେବା କରୁଣ ଥିବ ॥ ସଙ୍ଗେ ଯିବାକୁ ଯେବେ
ହେଲ ଅଯୋଗ୍ୟ । କେହ୍ନେ ମହୀପାଳ ମୁଁ ହୁଅନ୍ତି ଯୋଗ୍ୟ ॥ ଭରତ ମୁଖରୁ ଶୁଣି
ଲବ କୁଶଙ୍କୁ ଅଣାଇଲେ । ବେନି ପୁତ୍ରଙ୍କୁ ବେନି ଦେଶ ବାଣ୍ଟି ଦେଲେ ॥ କୁଶ
କୁମରଙ୍କୁ ଅଭିଷେକ କଲେ । ଦକ୍ଷିଣ କୋଶଳରେ ସେ ନୃପ ହେଲେ ॥ ଲବଙ୍କୁହିଁ
ଉତ୍ତର କୋଶଳ ଦେଲେ । ଅଭିଷେକ ହୋଇ ତହିଁ ସେ ନୃପ ହେଲେ ॥ ଭଣ୍ଡାର
ଆୟୁମାନ ସମସ୍ତ ବାଣ୍ଟି କରିଦେଲେ । ସ୍ୱଧନ ଅଶ୍ୱ ଗଜ ବାଣ୍ଟି କରି ନେଲେ ॥
ଶତ୍ରୁଘ୍ନ ପାଶକୁ ପେଷିଲେ ଦୂତ । ନଗରେ ଦୂତ ହେଲ ତ୍ୱରିତ ॥ କହିଲେ
ରାମ ବନ ଯିବା ବାରତା ॥ ଲକ୍ଷ୍ମଣ ତ୍ୟାଗ [illegible] ସମସ୍ତ କଥା ॥ ତୁମ୍ଭ ଯିବା
ନିମନ୍ତେ ଆଜ୍ଞା ଦେଇଛନ୍ତି ରାଘବ । ତୁମ୍ଭେ ବାହ୍ୟ ହେବ ବିଳମ୍ବ ନୋହିବ ॥
ଶୁଣି ସୁମିତ୍ରାସୁତ ରାଇ ପୁରୋହିତ । ସମସ୍ତ ବ୍ରାହ୍ମଣ ସମର୍ପିଲେ ସୁତ ॥ ସୁବାହୁଙ୍କୁ
ମଥୁରା ନୃପତି କଲେ । ଶତ୍ରୁଘାତୀ ବୈଧିବ ନଗର ଦେଲେ ॥ ବେନି କୁମର
ବେନିଦେଶେ ଅଭିଷେକ । ରଥ ଚଢ଼ି ଆଇଲେ ଅଯୋଧ୍ୟା କଟକ ॥ ଶତ୍ରୁଘ୍ନ
ରାମଙ୍କୁ ଦର୍ଶନ କଲେ । ପ୍ରଭୁଙ୍କୁ ରାଜା କରିବାର ହୋଇଲେ ॥ ତୁମ୍ଭ ସଙ୍ଗରେ
ଦେବ ଯିବାକୁ ଇଚ୍ଛା । ଅଛିଲା ପ୍ରଭୁଙ୍କୁ କରି ଏହା ବାଞ୍ଛା ॥ ଶୁଣି ରାମଚନ୍ଦ୍ର
ନେବାକୁ ସୀକାର କଲେ । ଏହି ସମୟରେ ବଶିଷ୍ଠ ଆଣାଇଲେ ॥ ଅଯୋଧ୍ୟା
ଜନେ ଦେବ [illegible] ପଡ଼ିଛନ୍ତି ଲୋକେ [illegible]ଚଳ । ବୋଲନ୍ତି ଆମ୍ଭେ
ରାଜା ସଙ୍ଗରେ [illegible] ଅଯୋଧ୍ୟାରେ ଥାଇ ଆମ୍ଭେ କାହାକୁ ଦେଖିବୁଁ ॥ ଶୁଣି ରାମ
ତାଙ୍କୁ ନେବାକୁ [illegible]ଗୁରୁ ବଚନମତ । ରୁଣ୍ଡ ହୋଇଲେ ଗୃହ ତେଜି ସମସ୍ତ ॥
ସୁଗ୍ରୀବ ଜାମ୍ବବ ହନୁ[illegible] ଶ୍ରୀରାମ ବଚନେ ଶୁଣି ହୋଇଲେ ବିକଳ ।
ଅଙ୍ଗଦଙ୍କୁ କହି [illegible]ନ । ସମସ୍ତେହେଁ ଆଇଲେ ଅଯୋଧ୍ୟା-

ଭୁବନ, . ଏଣେ ଅସୁରଗଣ ଘେନ ଅଇଲେ । ବୋଲେ ଵଶି ଯନ୍ତୁଁ ବାଉ ଆଇଲେ । ୧୦ ।

---

## ୪୦ ଛାନ୍ଦ—ଶ୍ରୀରାମ ଭ୍ରାତୃଲକ୍ଷ୍ମଣ ଶତ୍ରୁଘ୍ନଙ୍କର ବୈକୁଣ୍ଠ ଗମନ

ରାଗ—ମଙ୍ଗଳ

ଶ୍ରୀରାମ ବିଜୟ ଶୁଣି ସୁଗ୍ରୀବ ବିଭୀଷଣ । ଦର୍ଶନ କଲେ ସେ ଆସି ଶ୍ରୀରାମ ଚରଣ ॥ ଆଲିଙ୍ଗନ କରି ରାମ ହସ ହୋଇ ଦେଲେ । ବିଜୟ କରିବ ବୋଲି ଶ୍ରୀମୁଖେ କହିଲେ ॥ କପିରାଜ ଜଣାଇଲେ ବାରତା ପାଇଲି । ଅଙ୍ଗଦକୁ ଅଭିଷେକ କରିଣ ଅଇଲି ॥ ଆଜ୍ଞାଦେଲେ ଆହେ ବିଭୀଷଣ ତୁମ୍ଭେ ଥିବ । ଆମ୍ଭ ଇଷ୍ଟ ରଘୁନାଥ ଦର୍ଶନ କରିବ ॥ ଯେତେ କାଳ ପର୍ଯ୍ୟନ୍ତେ ଆମ୍ଭ ନାମ ଥିବ । ସେତେକାଳ ପର୍ଯ୍ୟନ୍ତେ ଚିରଜୀବୀ ହେବ ॥ ହନୁକୁ ବୋଇଲେ ତୁମ୍ଭେ ସବୁଦିନେ ଥିବ । ଆମ୍ଭର ଚରିତ ଶୁଣି ସାନନ୍ଦ ହୋଇବ । ମହେନ୍ଦ୍ର ଦୁର୍ବିନ୍ଦ ଜାମ୍ବବକୁ ଆଜ୍ଞାଦେଲେ । କଳଯାଏ ତୁମ୍ଭେମାନେ ଥିବ ଯେ ବୋଇଲେ । ଅଯୋଧ୍ୟା ଜନ ସକଳେ ହୋଇଛନ୍ତି ଠୁଳ । ସଙ୍ଗତେ ଯିବାକୁ କରିଛନ୍ତି ଅନୁକୂଳ । ବେଦପାଠେ ଗଛିଛନ୍ତି ଭରତ ଶତ୍ରୁଘ୍ନ । ବ୍ରତାସ୍ଥି ହୋଇ ରାମ ହୋଇଲେ ମଗନ ॥ ବିଜେ ସମୟ ଜାଣି ବଶିଷ୍ଠ ଜଣାଇଲେ । ସେହି ଅନୁକୂଳେ ରାମ ବାହାର ହୋଇଲେ ॥ ସ୍ତ୍ରୀ ପୁରୁଷ ବାଳକ ବୃଦ୍ଧ ଯେ ସକଳ । ସ୍ଥାବର କୀଟ ପତଙ୍ଗ ଆଦି ପଶୁକୁଳ ॥ ବିବିଧ ବାଦ୍ୟ ନାଦରେ ପୂରଇ ଆକାଶ । ସମସ୍ତ ଆଗେ ଶୁଭଇ ସୁମଙ୍ଗଳ ଘୋଷ । ଶ୍ରୀପଦ୍ମରେ ବିଜୟ କରନ୍ତି ରାମରାଜେ । ମଙ୍ଗଳଅଷ୍ଟକମାନେ ପଢ଼ୁଛନ୍ତି ଦ୍ୱିଜେ । ଅଯୋଧ୍ୟା ଶୂନ୍ୟ କରିଣ ହୋଇଲେ ବାହାର । ପ୍ରବେଶ ହୋଇଲେ ସରଯୂ ନଦୀର ତୀର ॥ ସରଯୂ ନଦୀରେ ରାମ ପଶିଲେ ଆପଣ । ହରଷ ହୋଇଲେ ଦେଖି ଅମରବୃନ୍ଦଗଣ ॥ ପୁରନ୍ଦର ସହିତେ ଆପଣେ ପରମେଷ୍ଠୀ । ସକଳ ଦେବେ ମିଳିଣ କଲେ ପୁଷ୍ପବୃଷ୍ଟି ॥ ସ୍ତବପଢ଼ି ଜଣାଇଲେ ଦେବ ବେଦବର । ପୁଷ୍ପବିମାନଉପରେ ଦେବ ବିଜେକର ॥ ହରଷେ ଶ୍ରୀରାମ ସେ ବିମାନ ଆରୋହିଲେ । ଶତ୍ରୁଘ୍ନ ସେ ବିମାନେ ବିଜେ କଲେ ॥ ସମସ୍ତେ ଯେ ସରଯୂନଦୀରେ ସ୍ନାନ କଲେ । ଦେବ ଦେହ ଧରି ସର୍ବେ ବିମାନେ ଚଢ଼ିଲେ ॥ ତରୁ ପାଷାଣ ପର୍ବତେ ମୂର୍ତ୍ତିମନ୍ତ ହୋଇ । ବିମାନମାନ ସମସ୍ତେ ଆରୋହିଲେ ଯାଇ ॥ ହନୁମନ୍ତ ଜାମ୍ବବ ବିଭୀଷଣ । ଦୁର୍ବିନ୍ଦ ମହେନ୍ଦ୍ର ଏ ରହିଲେ ପାଞ୍ଚଜଣ । ସ୍ୱର୍ଗ ପୁରେ । ଶ୍ରୀରାମ ପ୍ରବେଶ ହୋଇଲେ । ଲକ୍ଷ୍ମଣଙ୍କୁ ଦେଖି ରାମ ସନ୍ତୋଷ ହୋଇଲେ ॥ ଲକ୍ଷ୍ମଣ

ବୋଲେ ଶ୍ରୀରାମ ନଷ୍ଟେଁ ଯିବୁ ବନ । ସଦନରେ ରହିବାକୁ କ୍ଷଣେ ... ଦେ
ଣନ ॥ ଲକ୍ଷ୍ମଣ ଗଲାବନୁ ରାଜୀବନେତ୍ର । ଦିନକୁ ଦିନ କ୍ଷୀଣ ହୋଇଲା ଗାତ୍ର ॥
ଅଜଳ ... କରୁଛି ପ୍ରାୟ ଲୋଚନ । ମର୍କତକନ୍ତ କାନ୍ତି ଦିଶେ ବିବର୍ଣ୍ଣ ॥ କେତେବେଳେ
... ନ୍ତି ହା ହା ଲକ୍ଷ୍ମଣ ଜାନକୀ । ଦଇବ ନାଶିଣ ଏହା ପାଞ୍ଚିଥିଲା ନକ ॥ ବଶିଷ୍ଠ
ବାମଦେବ କଶ୍ୟପ ଆଦି । ସୁମନ୍ତ ମନ୍ତ୍ରୀ ସ୍ତ୍ରୀମୁକୁ ଡାକଗଲ ॥ ଆଜ୍ଞାଦେଲେ ଭରତଙ୍କୁ
ହୁଅ ନୃପତି । ଶୁଣିଣ ଭରତ ଢଳିଲେ ଭୂମିଶ୍ରୀ ପତି ॥ ଲବ କୁଶଙ୍କୁ ଦେବ କରିବ
ଅଭିଷେକ । ରାଜାକୁ ଯୋଗ୍ୟ ନୁହେଁ ମୁଁ ତୁମ୍ଭ ସେବକ ॥ ବନକୁ ଯେବେ ଯିବ
ସଙ୍ଗରେ ଯିବି । ଲକ୍ଷ୍ମଣ ପ୍ରାୟ ସେବା କରୁଣ ଥିବି ॥ ସଙ୍ଗେ ଯିବାକୁ ଯେବେ
ହେଲି ଅଯୋଗ୍ୟ । କେହ୍ନେ ମହୀପାଳ ମୁଁ ହୁଅନ୍ତି ଯୋଗ୍ୟ ॥ ଭରତ ମୁଖରୁ ଶୁଣି
ଲବ କୁଶକୁ ଅଣାଇଲେ । ବେନି ପୁତ୍ରଙ୍କୁ ବେନି ଦେଶ ବାଣ୍ଟି ଦେଲେ ॥ କୁଶ
କୁମରକୁ ଅଭିଷେକ କଲେ । ଦକ୍ଷିଣ କୋଶଳରେ ସେ ନୃପ ହେଲେ ॥ ଲବକୁହିଁ
ଉତ୍ତର କୋଶଳ ଦେଲେ । ଅଭିଷେକ ହୋଇ ତହିଁ ସେ ନୃପ ହେଲେ ॥ ଭଣ୍ଡାର
ଆଦିମାନ ସମସ୍ତ ବାଣ୍ଟି କରିଦେଲେ । ସୁଧନ ଅଶ୍ୱ ଗଜ ବାଣ୍ଟି କରି ନେଲେ ॥
ଶତ୍ରୁଘ୍ନ ପାଶକୁ ପେଷିଲେ ଦୂତ । ନଗରେ ଦୂତ ହେଲେ ଉପଗତ ॥ କହିଲେ
ରାମ ବନ ଯିବା ବାରତା ॥ ଲକ୍ଷ୍ମଣ ତ୍ୟାଗ ଆଦି ସମସ୍ତ କଥା ॥ ତୁମ୍ଭ ଯିବା
ନିମନ୍ତେ ଆଜ୍ଞା ଦେଇଛନ୍ତି ରାଘବ । ତୁମ୍ଭେ ... ହେବ ବିଳମ୍ବ ନୋହିବ ॥
ଶୁଣି ସୁମିତ୍ରାସୁତ ରାଇ ପୁରୋହିତ । ସମସ୍ତ କହିଣ ସମର୍ପିଲେ ସୁତ ॥ ସୁବାହୁକୁ
ମଥୁରା ନୃପତି କଲେ । ଶତ୍ରୁଘାତି ବୈଧବ ନଗର ଦେଲେ ॥ ବେନି କୁମର
ବେନଦେଶେ ଅଭିଷେକ । ରଥ ଚଢ଼ି ଆଇଲେ ଅଯୋଧ୍ୟା କଟକ ॥ ଶତ୍ରୁଘ୍ନ
ରାମଙ୍କୁ ଦର୍ଶନ କଲେ । ପୁତ୍ରକୁ ରାଜା କରିବାର କୋଇଲେ ॥ ତୁମ୍ଭ ସଙ୍ଗରେ
ଦେବ ଯିବାକୁ ଇଚ୍ଛା । ଆଇଲ ସ୍ତ୍ରୀମୁକୁ କରି ଏହି ବାଞ୍ଛା ॥ ଶୁଣି ରାମଚନ୍ଦ୍ର
ନେବାକୁ ସ୍ୱୀକାର କଲେ । ଏହି ସମୟରେ ବଶିଷ୍ଠ ଜଣାଇଲେ ॥ ଅଯୋଧ୍ୟା
ଜନେ ଦେବ ... ପଡ଼ିଛନ୍ତି ଶୋକେ ... । ବୋଲନ୍ତି ଆମ୍ଭେ
ରାଜା ସଙ୍ଗରେ ... ଅଯୋଧ୍ୟାରେ ଥାଇ ଆମ୍ଭେ କାହାକୁ ଦେଖିବୁଁ ॥ ଶୁଣି ରାମ
ତାଙ୍କୁ ନେବାକୁ ... ସନମତ । ରୁଣ୍ଡ ହୋଇଲେ ଶୁଦ୍ଧ ତେଜ ସମସ୍ତ ॥
ସୁଗ୍ରୀବ ଜାମ୍ବବ ... ସ୍ୱର୍ଗିଲ । ରାମ ... କେ ଖୁଣି ହୋଇଲେ ବିକଳ ।
ଅଙ୍ଗଦକୁ ... ନ । ସମସ୍ତେହେଁ ଆଇଲେ ଅଯୋଧ୍ୟା-

ଭୁବନ... ...ଣେ ଅସୁରଗଣ ଘେନି ଅଇଲେ । ବୋଲେ ଋଷି ଯହୁଁ ବାଢ଼ ... ଆଣିଲେ । ୧୦ ।

---

## ୪୦ ଛାନ୍ଦ—ଶ୍ରୀରାମ ଭ୍ରାତ ଶତ୍ରୁଘ୍ନଙ୍କର ବୈକୁଣ୍ଠ ଗମନ

ରାଗ—ମଙ୍ଗଳ

ଶ୍ରୀରାମ ବିଜୟ ଶୁଣି ସୁଗ୍ରୀବ ବିଭୀଷଣ । ଦର୍ଶନ କଲେ ସେ ଆସି ଶ୍ରୀରାମ ଚରଣ ॥ ଆଲିଙ୍ଗନ କରି ରାମ ହସି ହସି ଦେଲେ । ବିଜୟ କରିବ ବୋଲି ଶ୍ରୀମୁଖେ କହିଲେ ॥ କପିରାଜ ଜଣାଇଲେ ବାରତା ପାଇଲି । ଅଙ୍ଗଦକୁ ଅଭିଷେକ କରିଣ ଅଇଲି ॥ ଆଜ୍ଞାଦେଲେ ଆହେ ବିଭୀଷଣ ତୁମ୍ଭେ ଥିବ । ଆମ୍ଭ ଇଷ୍ଟ ରଘୁନାଥ ଦର୍ଶନ କରିବ ॥ ଯେତେ କାଳ ପରିଯନ୍ତେ ଆମ୍ଭ ନାମ ଥିବ । ସେତେକାଳ ପରିଯନ୍ତେ ଦୀର୍ଘଜୀବୀ ହେବ ॥ ହନୁକୁ ବୋଇଲେ ତୁମ୍ଭେ ସବୁଦିନେ ଥିବ । ଆମ୍ଭର ଚରିତ ଶୁଣି ସାନନ୍ଦ ହୋଇବ । ମହେନ୍ଦ୍ର ଦୁର୍ବିନ୍ଦ ଜାମ୍ବବକୁ ଆଜ୍ଞାଦେଲେ । କଳିଯାଏ ତୁମ୍ଭେମାନେ ଥିବ ଯେ ବୋଇଲେ । ଅଯୋଧ୍ୟା ଜନ ସକଳେ ହୋଇଛନ୍ତି ଠୁଳ । ସଙ୍ଗତେ ଯିବାକୁ କରିଛନ୍ତି ଅନୁକୂଳ । ବେଦପାଠେ ଗଢ଼ିଛନ୍ତି ଭରତ ଶତ୍ରୁଘ୍ନ । ବ୍ରତ... ହୋଇ ରାମ ହୋଇଲେ ମଞ୍ଜନ ॥ ବିଜେ ସମୟ ଜାଣି ବଶିଷ୍ଠ ଜଣାଇଲେ । ସେହି ଅନୁକୂଳେ ରାମ ବାହାର ହୋଇଲେ ॥ ସ୍ତ୍ରୀ ପୁରୁଷ ବାଳକ ବୃଦ୍ଧ ଯେ ସକଳ । ସ୍ଥାବର କୀଟ ପତଙ୍ଗ ଆଦି ପଶୁକୁଳ ॥ ବିବିଧ ବାଦ୍ୟ ନାଦରେ ପୂରଇ ଆକାଶ । ସମସ୍ତ ଦିଗେ ଶୁଭଇ ସୁମଙ୍ଗଳ ଘୋଷ । ଶ୍ରୀପଦ୍ମରେ ବିଜୟ କରନ୍ତି ରାମରାଜେ । ମଙ୍ଗଳ ଅଷ୍ଟକମାନେ ପଢ଼ୁଛନ୍ତି ଦ୍ୱିଜେ । ଅଯୋଧ୍ୟା ଶୂନ୍ୟ କରିଣ ହୋଇଲେ ବାହାର । ପ୍ରବେଶ ହୋଇଲେ ସରଯୂ ନଦୀର ତୀର ॥ ସରଯୂ ନଦୀରେ ରାମ ପଶିଲେ ଆପଣ । ହରଷ ହୋଇଲେ ଦେଖି ଅମରବୃନ୍ଦଗଣ ॥ ପୁରନ୍ଦର ସହିତେ ଆପଣେ ପରମେଷ୍ଠୀ । ସକଳ ଦେବେ ମିଳିଣ କଲେ ପୁଷ୍ପବୃଷ୍ଟି ॥ ସ୍ତବପଢ଼ି ଜଣାଇଲେ ଦେବ ବେଦବର । ...ବିମାନ ଉପରେ ଦେବ ବିଜେ କର ॥ ହରଷେ ଶ୍ରୀରାମ ସେ ବିମାନ ଆରୋହିଲେ । ଶତ୍ରୁଘ୍ନ ସେ ବିମାନେ ବିଜେ କଲେ ॥ ସମସ୍ତେ ଯେ ସରଯୂ ଘାଟେ ସ୍ନାନ କଲେ । ଦେବ ଦେହ ଧରି ସର୍ବେ ବିମାନେ ଚଢ଼ିଲେ ॥ ତରୁ ପାଷାଣ ଯେ ସର୍ବେ ମୂର୍ତ୍ତିମନ୍ତ ... । ...ମାନମାନ ସମସ୍ତେ ଆରୋହିଲେ ଯାଇଁ ॥ ହନୁମନ୍ତ ଜା... ...ବର ବିଭୀଷଣ । ଦୁର୍ବିନ୍ଦ ମହେନ୍ଦ୍ର ଏ ରହିଲେ ପାଞ୍ଚଜଣ ... ସ୍ୱର୍ଗ... ...ର ଶ୍ରୀରାମ ପ୍ରବେଶ ହୋଇଲେ । ଲକ୍ଷ୍ମଣଙ୍କୁ ଦେଖି ରାମ ସନ୍ତୋଷ ହୋ...ଲେ ॥ ଲକ୍ଷ୍ମଣ

ଙ୍କଲେ ଶଙ୍ଖ ଚକ୍ର ସୁଦର୍ଶନ । ଶଙ୍ଖ ଧନହୋଇଲେ ଯେ କମଳଜ,
ଦେବଯୁଗଳ ଲୋହିତ କମଳ । ପାନ ବଶି ମତ୍ତ ତହିଁ ହୋଇଲା ଭ୍ରମର ॥

———

## ୪୧ଶ ଛାନ୍ଦ—ଲକ୍ଷ୍ମୀନାରାୟଣ ଭେଟ

ରାଗ—ଭୈରବ

ଗନ୍ଧର୍ବ କିନ୍ନର ଯକ୍ଷ ତପୀ ସିଦ୍ଧଗୁରଣେ । ବୀଣାରତ ତାଳ ଟେ କରୁଛନ୍ତି ଗାୟନେ ॥ ଦୁନ୍ଦୁଭିର ବାଦ୍ୟ ବାଜେ ଅବିରତ ଗଗନେ । ବୈକୁଣ୍ଠ ବିଜୟ ବଇକୁଣ୍ଠ ଭୁବନେ । ସକଳ ଦେବତାଙ୍କୁ ଘେନି ଦେବ ପାକଶାସନେ ଶିବ ବିରଞ୍ଚି ସହିତେ ବୃଷ୍ଟି କଲେ ସୁମନେ । କୋଟି କୋଟି ଯନମାନ ତାରପ୍ରା ଶୋଭନେ ॥ ଦେବତା ପରସ୍ପେ ଶୋଭା ପାଉଛନ୍ତି ଗଗନେ ॥ ବୈକୁଣ୍ଠ ଧ୍ରୁ ବିଜୟ ତେଜ ଦିବ୍ୟ ଭୁବନ । ବୈକୁଣ୍ଠପୁରବାସୀଏ ଆସି କଲେ ଦର୍ଶନ ଅଯୋଧ୍ୟାଜନେ ନିବାସ କଲେ ବିଷ୍ଣୁ ଭବନେ । ମହା ଦୁଃସହ କର୍ମ ତ କରି ରଘୁନନ୍ଦନେ ॥ ସୁବର୍ଣ୍ଣରେ ମାର ଘେନି ଲକ୍ଷ୍ମୀ ବିଜୟ । ପାଦ ଘେ ପଦ୍ମାସନେ ଯାଇଁ କଲେ ବିଜୟ । ଅନନ୍ତ ଶୟନ କଲେ ବଠପୃଠ ଗହ୍ୱରେ ଲକ୍ଷ୍ମୀ ପାଦ ମଣ୍ଡାଳନ୍ତି ହୋଇ ଦିବ୍ୟ ସୁମନେ । ନାରାୟଣ ଗୁଣେନ୍ତେ କାମ ହୋଏ ସମ୍ପୂର୍ଣ୍ଣ । ସର୍ବଦା ନିବାସ କରି ସେହି ତାଙ୍କ ଭୁବନ ॥ ନାଶ ସ ବିପତ୍ତି ଜଗନ୍ନାଥ ଦର୍ଶନେ । ସାତକାଣ୍ଡ ରାମାୟଣ ବିଶ୍ୱନାଥ ମୁଁ ଭଣେ ॥

**ଉତ୍ତରକାଣ୍ଡ ସମାପ୍ତ**

———